ମହର୍ଷି ବେଦବ୍ୟାସଙ୍କ କୃତ

ମୂଳ ଗ୍ରନ୍ଥରୁ ଅନୁବାଦ

# ବୃହତ୍ ବ୍ରହ୍ମପୁରାଣ

## ଉତ୍ତର ଖଣ୍ଡ

(ଅନୁବାଦକ—୰ କ୍ଷେତ୍ରମୋହନ ପ୍ରଧାନ)

ନୂତନ ମୁଦ୍ରଣ

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ : ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ : ଶ୍ରୀ ଗଦାଧର ସାହୁ

ଅଲିଶା ବଜାର, କଟକ-୨

ଫୋନ୍ ନଂ—୨୪୭୯୭

ମୂଲ୍ୟ—ପଇଁତ୍ରିଶଟଙ୍କା ମାତ୍ର

ବ୍ରହ୍ମପୁରାଣ ଉତ୍ତର ଖଣ୍ଡ

# ସୂଚିପତ୍ର

**ବିଷୟ** **ପୃଷ୍ଠାଙ୍କ**

**ବିଷୟ** **ପୃଷ୍ଠାଙ୍କ**

| ବିଷୟ | ପୃଷ୍ଠାଙ୍କ |
|---|---|


—ବ୍ରହ୍ମ ପୁରାଣ ଉତ୍ତର ଖଣ୍ଡର ସୂଚିପତ୍ର ସମାପ୍ତ—

—ঃ*ঃ—

୬୨




# ବ୍ରହ୍ମ ପୁରାଣ

## ଉତ୍ତର ଖଣ୍ଡ





### ଗଣେଶଙ୍କ ବନ୍ଦନା

ବନ୍ଦଇ ଶ୍ରୀ ଗଣନାଥ ଚଉଷ୍ଠି ନନ୍ଦନ
ଏକ ଦନ୍ତ ବକ୍ରରାଜ ପୃଥୁଳ ବଦନ ।
ମୂଷିକ ବାହନେ ତୁମ୍ଭେ ସଦା ବିଜେକର
ତିନ ଭୁବନରେ ଜ୍ଞାନ କରଅ ପ୍ରସାର ।
ତେଣୁ ସକଳ ଇନ୍ଦ୍ରାଦି ଦେବଙ୍କ ମଧ୍ୟରେ
ତୁମ୍ଭ ଅଗ୍ରତରେ ଜଣେ ବସି କେ ନ ପାରେ
ପ୍ରତି ଅନୁକୂଳ କାର୍ଯ୍ୟେ ତୁମ୍ଭଙ୍କୁ ଲୋଡ଼ନ୍ତି ।
ଆଦ୍ୟେ ବସାଇଲେ ଆଜ ଦେବ ତୋଷହୋନ୍ତି
ମହାମାୟା ଆଦ୍ୟାଶକ୍ତି ଜନନୀ ତୁମ୍ଭର
ବନ୍ଦନା କରୁଛି ତବ ଅଭୟ ପୟର ।
ଅଗାଧ ସାଗର ପରି ଅଟେ ଯେଉଁ ଗ୍ରନ୍ଥ
ତାହାକୁ ପାର ହେବାକୁ ବଳୁଅଛି ଚିତ୍ତ ।
କେବଳ ମାତ୍ରକ ତୁମ୍ଭେ କରୁଣା ଭଣ୍ଡାର
ମଧ୍ୟରୁ କଣାଏ ମାତ୍ର ପାଇବା ଆଶାର ।
ଆଶାୟୀ ହୋଇଣ ଦାସ ରହିଅଛି ଚୁହିଁ
ଆଦେଶ ହେଲେ କର୍ତ୍ତବ୍ୟ ଯିବଇଁ ଆଗେଇ ।
ଏତିକ ମାତର କ୍ଷେତ୍ର ମୋହନର ଅଳି
ଆଶୀର୍ବାଦ କର ସର୍ବେ ଶିରେ କର ଥୁଳ ।



### ଦୁର୍ଗାଙ୍କ ବନ୍ଦନା

ନମୋ ନମୋ ଭଗବତୀ ଦେବୀ କାତ୍ୟାୟନୀ
ତବ ଅଭୟ ପୟରେ କରୁଛି ଦଣ୍ଡବତି ।
ଯେଉଁପରି ଦୟାକର ଗଣେଶଙ୍କ ପ୍ରତି
ପଢ଼ାଇଲେ ଲିହି କାଠ ମାତ ଭଗବତୀ ।
ସେହିପରି ବାରେ ଏ ସନ୍ତାନେ ଦୟାବହି
କଣ୍ଠତଟେ ବସି ମାତ ପଦ ଦ୍ୟନ୍ତୁ କହି ।
ଏ ଘୋର ତମିରେ ମାତ ଭ୍ରମିବୁଏ ମୁହିଁ
ପଥ ନ ଦିଶଇ ଆହା ରାହା ପାଉ ନାହିଁ ।
ଦୟା କରଣ ସନ୍ଧାନ ଦେଲେ ଆଲୋକର
ଅତିକ୍ରମ କରଯିବ ଘୋର ଅନ୍ଧକାର ।
ଏଣୁ ପଦ୍ମପାଦ ତଳେ କରୁଛି ଦଣ୍ଡବତି
କ୍ଷେତ୍ରମୋହନକୁ ଦୟାକର ଯାଜ୍ଞସେନୀ ।



## ବିଷ୍ଣୁଙ୍କ ବନ୍ଦନା

ନମୋ ନମୋ ନାରାୟଣ ଜଗତ କାରଣ
ନମୋ ନମୋ ନାରାୟଣ ବିଘ୍ନ ବିନାଶନ ।
ନମୋ ନମୋ ନାରାୟଣ ଅଗତିର ଗତି
ନମୋ ନମୋ ନାରାୟଣ କମଳାଙ୍କ ପତି ।
ନମୋ ନମୋ ନାରାୟଣ ଦୀନଜନ ବନ୍ଧୁ
ନମୋ ନମୋ ନାରାୟଣ ମହିମାର ସିନ୍ଧୁ ।
ତବ ଅଭୟ ପାଦରେ ପଶୁଛି ଶରଣ
ପଦ ଦେଇ ଅର୍ଥଗତ ଗୀତ ସହିତେଣ ।
ଦୟାବହି ଏ ଦାସକୁ ଦେବେ ତା ବତାଇ
ଯେପରି ସଂସାରେ ଯାର ଆଦର ବଢ଼ଇ ।
ସେହି ଅନୁଗ୍ରହ ରଖି ଏ ଦୀନ ଉପରେ
ସାହାଯ୍ୟ କରିବ ଦୟା ବହି ନିରନ୍ତରେ ।
ଏତିକ ମାତର ମାଗେ ଯୋଡ଼ି ବେନିକର
କ୍ଷେତ୍ର ମୋହନକୁ ଦୟାକର ଚକ୍ରଧର ।



## ପ୍ରଥମ ଅଧ୍ୟାୟ

### ସୂର୍ଯ୍ୟବଂଶର ସୁକୀର୍ତ୍ତି ବର୍ଣ୍ଣନ

ଚିନ୍ତାମଣି ପ୍ରକର-ପଦ୍ମସୁ କଳ୍ପବୃକ୍ଷ
ଲକ୍ଷାବୃତେଷୁ ସୁରଭିରଭି ପାଳୟନ୍ତଂ ।
ଲକ୍ଷ୍ମୀ-ସହସ୍ର ଶତସମ୍ଭ୍ରମ-ସେବ୍ୟମାନ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି
ନାରାୟଣ ନମସ୍କୃତଂ
ନରଞ୍ଚୈବ ନରୋତ୍ତମମ୍
ଦେବୀଂ ସରସ୍ୱତୀ ଞ୍ଚୈବ
ତତୋଜୟ ମୁଦୀରୟେତ୍ ।
ମହାତ୍ମନଂ କଥିତଂ ସମ୍ୟକ୍
ବିସ୍ତାରାତ୍ ସୂର୍ଯ୍ୟ ଚରିତମ୍
ବଂଶାନୁଚରିତଂ ତସ୍ୟ
ଅଧୂନା ପ୍ରବ୍ରବୀହିମେ ।

ଶୌନକ ଉବାଚ

ଶୌନକ ଋଷି ମନରେ ଆନନ୍ଦିତ ହୋଇ
ପୃଚ୍ଛନ୍ତି ପୁରାଣବକ୍ତା ସୂତଙ୍କୁ ଅନାଇ ।
ହେ ମହାତ୍ମା ଅନୁଗ୍ରହ କରି ଆମ୍ଭପରେ
ଶୁଣାଇଲ ଯେଉଁ ଯେଉଁ ବିଷୟ ଆଦ୍ୟରେ ।
ବ୍ରହ୍ମଜ୍ଞାନ ଆଉ ବ୍ରହ୍ମ ଲାଭର ଉପାୟ
ବୁଝାଇ ଦେଲ ଯେପରି ଚିତ୍ତ କରି ଥୟ ।
ପ୍ରକୃତ ମହାତ୍ମ୍ୟ ବ୍ରହ୍ମକ୍ଷେତ୍ରର ମହାତ୍ମ୍ୟ
ବର୍ଣ୍ଣନା କରିଲ ଯେଉଁପରି ତପୋବନ୍ତ ।
ତାହା ବର୍ଣ୍ଣନା କରିବା ସହଜ ନୁହଇ
ଦେବୀଙ୍କର ପୂଜାବିଧି ଆଦି ଛନ୍ତି କହି ।
ପୃଥ୍ୱୀ ବ୍ରହ୍ମଠାରୁ ଯେଉଁପରି ସୁରଗଣ
ବ୍ରହ୍ମ ଅଣ୍ଡ ମହାବିଷ୍ଣୁ ଉତ୍ପନ୍ନ କାରଣ ।
ଧାତାଙ୍କର ପୁଣି ସୃଷ୍ଟି ସୃଜନ ବୃତ୍ତାନ୍ତ
ପ୍ରାଣୀଙ୍କ ସ୍ଥାନ ଆଦିର କଳ୍ପନା ଯେମନ୍ତ ।
ରୁଦ୍ରାଦି ସୃଷ୍ଟି ସହିତେ ମନ୍ୱନ୍ତର କଥା
ଜମ୍ବୁଦ୍ୱୀପ ବା ଭାରତବର୍ଷର ବ୍ୟବସ୍ଥା ।
କୂର୍ମ ନିବେଶ ଉତ୍ତର କୁରୁର ବର୍ଣ୍ଣନ
କିଂପୁରୁଷ ଆଦି ବର୍ଷମାନଙ୍କ କଥନ ।
ସୁଶର୍ମା ବ୍ରାହ୍ମଣ ଅଗ୍ନି ସେବକ ଚରିତ
ସ୍ୱରୋଚିଷ ବିଷ୍ଣୁ ପ୍ରାପ୍ତି ହେବାର ବୃତ୍ତାନ୍ତ ।
ଔତ୍ତମ ମନୁ ଚରିତ ଉତ୍ତମ ବିଧାନ
ତାମସ ମନ୍ୱନ୍ତରାଦି ନାନା ବିବରଣ ।
ରୈବତକ ମନ୍ୱନ୍ତର ଚାକ୍ଷୁଷ ଆଦିର
ସୂର୍ଯ୍ୟଙ୍କର ତେଜକ୍ଷୟ ଚରିତ ସତ୍ୱର ।
ବୈବସ୍ୱତ ମନ୍ୱନ୍ତରୁ ପୁଣ ସାବର୍ଣ୍ଣିକ
ସର୍ବ ସାବର୍ଣ୍ଣିକ ମନ୍ୱନ୍ତର ଗାଥାଯାକ ।
ରୁଚି-ପ୍ରଜାପତି ଉପାଖ୍ୟାନ ଚମତ୍କାର
ପିତୃଗଣଙ୍କର ବର ପ୍ରସାର ବେଭାର ।
ବଢ଼ଇ ବିଚିତ୍ର ଭୌତ୍ୟ ମନ୍ୱନ୍ତର ଗିର
ଆତାପି ବାତାପି ଦେବ ଦ୍ୱିଜଙ୍କ ବେଭାର ।
ଅଂଶୁମାଳୀ ତେଜେ ଶସ୍ତ୍ର ନିର୍ମାଣ କଥନ
ଶ୍ରୀରାଜବର୍ଦ୍ଧନ ନୃପତିଙ୍କ ଉପାଖ୍ୟାନ ।
ସୂର୍ଯ୍ୟଙ୍କ ମହାତ୍ମ୍ୟ ଶତ ସ୍ତୋତ୍ର ଆଦିକରି
ପୂର୍ବ ଖଣ୍ଡରେ କହିଛ ଆମ୍ଭଙ୍କୁ ବିସ୍ତାରି ।
ଏବେ ତବ ନିକଟରେ କରୁଛୁ ଜଣାଣ
ସୂର୍ଯ୍ୟବଂଶ ଯଶକୀର୍ତ୍ତି କର ହେ ବର୍ଣ୍ଣନ ।
ଶୁଣିବାକୁ ଆମ୍ଭେମାନେ ସୂର୍ଯ୍ୟ ବଂଶାବଳୀ
ବିଶେଷ ଭାବରେ ଜାଣ ଶ୍ରଦ୍ଧା ଅଛୁ ବଳି ।
ଏମନ୍ତେ କୁହନ୍ତେ ଯେ ଶୌନକ ମୁନିବର
କହି ଆରମ୍ଭିଲେ ପୌରାଣିକ ସୂତବର ।

## ସୁତ ଉବାଚ

ବିଷ୍ଣୁଙ୍କ ନାଭି ପଦ୍ମରୁ ବ୍ରହ୍ମା ହେଲେ ଜାତ
ତାହାଙ୍କ ପୁତ୍ର ମରୀଚି ମହାତପୋବନ୍ତ ।
ଆବର ଧାତାଙ୍କ ସୁତ କଶ୍ୟପ ତାପସ
ତାହାଙ୍କ ନନ୍ଦନ ସୂର୍ଯ୍ୟ ଜଗତେ ପ୍ରକାଶ ।
ଶାସ୍ତ୍ରାନ୍ତରେ ସୂର୍ଯ୍ୟ ଦେବ ବ୍ରହ୍ମାଙ୍କର ଅଂଶ
ଅନ୍ତ ନାହିଁ ତାହାଙ୍କର ମହିମା ଅଶେଷ ।
ମନୁ ଆଉ ବୈବସ୍ୱତ ତାହାଙ୍କ କୁମର
ଇକ୍ଷ୍ୱାକୁ ଅଟନ୍ତି ସୁତ ମନୁ ଋଷିଙ୍କର ।
ତାହାଙ୍କ ନନ୍ଦନଙ୍କର ଯୁବନାଶ୍ୱ ନାମ
ସେ ଯୁବନାଶ୍ୱଙ୍କ ପୁତ୍ର ମାନ୍ଧାତା ରାଜନ ।
ମାନ୍ଧାତାଙ୍କର କୁମର ପୁରୁ ନାମ ସ୍ୱଚ୍ଛ
ପୁରୁ ନୃପଙ୍କ ନନ୍ଦନ ନାମ ଅଟେ କୁତ୍ସ ।
କୁତ୍ସଙ୍କ ତନୟ ନାମ ଅନରଣ୍ୟ ଖ୍ୟାତ
ତ୍ରିସଦସ୍ୟୁ ନାମେ ସେହି ଅନରଣ୍ୟ ସୁତ ।
ହର୍ଯ୍ୟଶ୍ୱ ନାମେଣ ତ୍ରିସଦସ୍ୟୁଙ୍କ ନନ୍ଦନ
ହର୍ଯ୍ୟଶ୍ୱଙ୍କ ପୁତ୍ର ନାମ ଅଟଇ ତ୍ର୍ୟରୁଣ ।
ତ୍ର୍ୟରୁଣ କୁମର ଅଟେ ତ୍ରିଶଙ୍କୁ ନୃପତି
ହରିଶ୍ଚନ୍ଦ୍ର ତାଙ୍କଠାରୁ ହେଲେ ଉତ୍ପତ୍ତି ।
ସେ ହରିଶ୍ଚନ୍ଦ୍ରଙ୍କ ପୁତ୍ର ଅଟନ୍ତି ରୋହିତ
ରୋହିତଙ୍କ ପୁତ୍ର ଯେ ଭରୁକ ନାମ ଖ୍ୟାତ ।
ଭରୁକ ପୁତ୍ର ନୃପତି ବୃକ ମହାତେଜା
ବୃକପୁତ୍ର ନାମ ଭବେ ଖ୍ୟାତ ଅସମଞ୍ଜା ।
ସେହି ଅସମଞ୍ଜାଙ୍କର ପୁତ୍ର ଅଂଶୁମାନ
ଅଶୁଂଙ୍କର ପୁତ୍ର ହେଲେ ଦିଲ୍ଲୀପ ରାଜନ ।
ଦିଲ୍ଲୀପ ନନ୍ଦନ ଭଗୀରଥ ମହାବୀର
ନାଭ ନାମେ ସନ୍ତତି ଯେ ଅଟନ୍ତି ତାଙ୍କର ।
ତାହାଙ୍କ କୁମର ସିନ୍ଧୁଦ୍ୱୀପ ମହୀପତି
ସିନ୍ଧୁଦ୍ୱୀପଙ୍କର ପୁତ୍ର ଅୟୁତାୟୁ ଖ୍ୟାତି ।
ଋତୁପର୍ଣ୍ଣ ଅଟନ୍ତି ଯେ ତାହାଙ୍କ ନନ୍ଦନ
ସୁଦାସ ନାମେଣ ସୁତ ହୋଇଲେ ରାଜନ ।
ସୁଦାସ ପୁତ୍ର ସୌଦାସ ତା ପୁତ୍ର ଅଶକ
ଅଶ୍ମକ କୁମର ନାମ ଅଟଇ ମୂଳକ ।
ତାହାଙ୍କ ତନୟ ଦଶରଥ ଦଣ୍ଡଧାରୀ
ଦଶରଥ ସୁତ ଏଡ଼ିବିଡ଼ ନୃକେଶରୀ ।

ଏଡ଼ିବିଡ଼ଙ୍କର ପୁତ୍ର ବିଶ୍ୱସହ ନାମ
ବିଶ୍ୱସହ ପୁତ୍ର ଯେହୁ ଖଟାଙ୍ଗ ତା ନାମ ।
ଦୀର୍ଘବାହୁ ପୁତ୍ର ରଘୁ ନୃପତି ଶେଖର
ଅଜ ତାଙ୍କଠାରୁ ଜାତ ହୋଇଲେ ମହୀର ।
ପୁତ୍ର ସେ ଅଜଙ୍କ ସୁତ ହେଲେ ଦଶରଥ
ତାହାଙ୍କଠାରୁ ଜନ୍ମିଲେ ରାମ ରଘୁନାଥ ।
ଶ୍ରୀରାମ ଚନ୍ଦ୍ରଙ୍କ ପୁତ୍ର ଲବକୁଶ ଦୁଇ
ଦୁହେଁ ଯେ ଯାମଳା ବୀର ନ ହୁଅନ୍ତି କେହି
କୁଶଙ୍କ ପୁତ୍ର ଅତିଥି ନାମ ସୁବିଦିତ
ନିଷଧ ନାମରେ ସେହି ଅତିଥିଙ୍କ ସୁତ ।
ତାହାଙ୍କର ପୁତ୍ର ନଭ ଅବନୀ ନାୟକ
ନଭ ରାଜନଙ୍କ ପୁତ୍ର ନାମ ପୁଣ୍ଡରୀକ ।
କ୍ଷେମଧନ୍ୱା ନରନାଥ ତାହାଙ୍କ କୁମର
ଦେବାନୀକ ପୁତ୍ର ଅଟେ କ୍ଷେମଧନ୍ୱା ବୀର ।
ହୀନ ନାମରେ ବିଖ୍ୟାତ ଦେବାନୀକ ସୁତ
ତାହାଙ୍କ ତନୟ ନାମ ଅଟେ ପାରିପାତ୍ର ।
ସେ ପାରିପାତ୍ରଙ୍କ ସୁତ ନାମ ବଳାହକ
ତାହାଙ୍କ କୁମରଙ୍କର ନାମ ଅଟେ ଅର୍କ ।
ଅର୍କ ପୁତ୍ର ରଜନାଭ ବିଖ୍ୟାତ ଭୁବନ
ରଜନାଭଙ୍କର ପୁତ୍ର ଖଗଣ ରାଜନ ।
ବିଧୃତ ନାମେ ରାଜନ ତାହାଙ୍କ କୁମର
ହିରଣ୍ୟ ନାଭ ତାଙ୍କଠୁଁ ହେଲେ ଅବତାର ।
ପୁଷ୍ପକ କୁମର ଧ୍ରୁବ ନାମରେ ବିଖ୍ୟାତ
ତାଙ୍କ ପୁତ୍ର ସ୍ୟନ୍ଦନ ଯେ ମହା ବଳବନ୍ତ ।
ସେହି ସ୍ୟନ୍ଦନଙ୍କ ପୁତ୍ର ଅଟେ ଅଗ୍ନିବର୍ଣ୍ଣ
ସୁବିଦିତ ତାଙ୍କ ସୁତ ମରୁ ତା ନନ୍ଦନ ।
ବୁଧ ଆଉ ଯେ ସୁମିତ୍ର ଅନ୍ୟ ବେନି ନାମ
ଏ ମହାମତି ଯେ କଳିଯୁଗର ରାଜନ ।
ସୂର୍ଯ୍ୟ ବଂଶାବଳୀ ଏହି ପ୍ରକାରେ ବିଖ୍ୟାତ
ସତ୍ୟ ତ୍ରେତା ଦ୍ୱାପର ଯେ କଳି ନରନାଥ ।
ମରୀଚି ଋଷି ବ୍ରହ୍ମାଙ୍କ ପୁତ୍ର ମହାମତି
କ୍ରମେ ତାଙ୍କ ପୁତ୍ର ନାତି ଅଣନାତି ଖ୍ୟାତି ।
ମରୀଚିଙ୍କଠାରୁ ମରୁ ନୃପତିଙ୍କ ଯାଏ
ଏକଉଣା ଷାଠିଏ ପୁରୁଷ ଏହି ପ୍ରାୟେ ।
ଏମାନଙ୍କ ଗୁଣ କର୍ମ ଯାହାର ଯେମନ୍ତ
କ୍ରମେ କ୍ରମେ କହିବଇଁ କର ବିସ୍ତାରିତ ।

ହରିଶ୍ଚନ୍ଦ୍ରଙ୍କର ଚକ୍ରବର୍ତ୍ତୀଙ୍କର ଯଶ କୀର୍ତ୍ତି
ତାଙ୍କ ଦାନର ମାହାତ୍ମ୍ୟ ଅକଥନ ଅତି ।
ଭଗୀରଥ ଆଦି ସୂର୍ଯ୍ୟବଂଶୀ ନୃପଙ୍କର
ଚରିତମାନ ବିଚିତ୍ର ଅତି ମନୋହର ।
ବିଶେଷରେ ରାମଚନ୍ଦ୍ର ପ୍ରଭୁଙ୍କ ଚରିତ
ସବୁଠୁଁ ଅଧିକ ଯେହୁ ସାକ୍ଷାତେ ଅମୃତ ।
କ୍ରମେ ବର୍ଣ୍ଣନ କରିଣ ସୂର୍ଯ୍ୟବଂଶ କୀର୍ତ୍ତି
ଯାହା ଶ୍ରବଣେ ହରଣ ହୁଅଇ ଦୁଷ୍କୃତି ।
ଆଉ ସୂର୍ଯ୍ୟବଂଶୀ ରାଜା ସୁଦ୍ୟୁମ୍ନ ଆଖ୍ୟାନ
ପୃଷଧ୍ର, କରୂଷ ନୃପଙ୍କର ବିବରଣ ।
ନାଭାଗ ଭିନନ୍ଦନ ଯେ ବୈଶ୍ରୀ ଶଉରୀ
ଖନୀନ ବିବିଂଶ ଖନୀନେତ୍ର ଦଣ୍ଡଧାରୀ ।
କରନ୍ଧମ ଅବିକ୍ଷିତ ମରୁତ ଚରିତ
ନରିଷ୍ୟନ୍ତ ଇନ୍ଦ୍ରସେନ ଦମଙ୍କ ବୃତ୍ତାନ୍ତ ।
ସମସ୍ତଙ୍କ ସମାଚାର କରିବି ବଖାଣ
ଯେବା ଯେଉଁପରି କାର୍ଯ୍ୟ କରିଥିଲେ ଜାଣ ।
ସକଳ ବିଷୟ ଏହି ସଭାରେ କହିବି
ଅଧମ କ୍ଷେତ୍ରମୋହନ ଗୀତେ କହେ ଭାବି ।

ଇତିଶ୍ରୀ ବ୍ରହ୍ମ ପୁରାଣେ
ଉତ୍ତର ଖଣ୍ଡେ ସୂତ ଶୌନକ ସମ୍ବାଦେ
ସୂର୍ଯ୍ୟବଂଶ ବର୍ଣ୍ଣନଂ ନାମ ପ୍ରଥମୋଽଧ୍ୟାୟ ।

—❋—

## ଦ୍ୱିତୀୟ ଅଧ୍ୟାୟ

### ସୂର୍ଯ୍ୟବଂଶ ଓ ସୁଦ୍ୟୁମ୍ନ ଚରିତ ବର୍ଣ୍ଣନ

ସୂତ ଉବାଚ

ଏବମ୍ଭୂତ୍ୱା ଭଗବାନନାଦି ନିଧନୋ ରବିଃ
ଯସ୍ୟତ୍ୱଂଶୌନକଭକ୍ତ୍ୟାମାହାତ୍ମ୍ୟଂମୟିପୃଚ୍ଛସି
ସୂତ ମୁନି ପଚାରନ୍ତି ଶୌନକେ ବହନ
ପଚାରିଥିଲ ଯାହାଙ୍କ କଥା ତପୋଧନ ।
ସେହି ଅନାଦି ନିଧନ ଦେବ ବିକର୍ତ୍ତନ
ଯେମନ୍ତ ପ୍ରଭାବଶାଳୀ କଲି ତ ଶ୍ରବଣ ।
ଯେଉଁ ସବୁ ଯୋଗୀ ଲୟ ଯୋଗକୁ ଭୋଗନ୍ତି
ସେଇଟି ପରମ-ଆତ୍ମା ବ୍ରହ୍ମ ମହା ଜ୍ୟୋତି ।
ଯଜ୍ଞର ଈଶ୍ୱର ସେହି ଦେବ ଦିନମଣି
ମନୁ ଯାହାଙ୍କର ପୁତ୍ର ଆହେ ବିଜ୍ଞ ମୁନି ।
ଇକ୍ଷ୍ୱାକୁ ନାଭାଗ ରିଷ୍ଟ ନରିଷ୍ୟନ୍ତ ଆଦି
ଲଭିଛନ୍ତି ଦିବାକର ବହୁ ପୁତ୍ର ନିଧି ।
ସକଳେହିଁ ମହାବଳୀ ପରାକ୍ରମବାନ
ଧରାତଳେ ସୁବିଖ୍ୟାତ ସର୍ବେ କୀର୍ତ୍ତିମାନ ।
ଶାସ୍ତ୍ର ପାରଦର୍ଶୀ ସର୍ବେ ସେ ଅବମ ପତି
ସେମାନଙ୍କ ଗୁଣ ସୀମା ବର୍ଣ୍ଣିବି କି ଅତି ।
ପୁତ୍ର କାମନା ନିମନ୍ତେ ମନୁ ବୈବସ୍ୱତ
ଅନୁଷ୍ଠାନ କରିଥିଲେ କେତେ ଯଜ୍ଞ ବ୍ରତ ।
ମିତ୍ରାବରୁଣ ଯଜ୍ଞ ଯେ ବିଦିତ ଭୁବନେ
ସେହି ଯଜ୍ଞ କଲେ ମନୁ ବିହିତ ବିଧାନେ ।
ମାତ୍ର କି ବିଚିତ୍ର ଦେଖ ବିଧିର ଲିଖନ
ହୋତାଙ୍କ ଦୋଷରୁ ଅଟେ ଅଘଟ ଘଟନ ।
ପୁତ୍ର ନ ପାଇ ଲଭିଲେ କନ୍ୟାଟିଏ ସେହି
ଇଳା ନାମେ ସେହି କନ୍ୟା ବିଖ୍ୟାତ ଅଟଇ
ସୁମଧ୍ୟମା ସୁକୁମାରୀ ପରମା ସୁନ୍ଦରୀ
ରହିଥାଏ ମନୁ ପୁର ଆଲୋକିତ କରି ।
ସେ କାଳେ କନ୍ୟାକୁ ଦେଖି ସେହି ମନୁଦେବ
ମିତ୍ରାବରୁଣାଙ୍କୁ ଲକ୍ଷ୍ୟକରି କଲେ ସ୍ତବ ।
ଆହେ ଦେବ ନିବେଦନ କରେ ତବ ପାଦେ
ଦେଇଅଛ କନ୍ୟାରତ୍ନ କୃପା ବହି ହାଦେ ।
ମାତ୍ର ପୁତ୍ର ଆଶା କରି ଆହେ ଭଗବାନ
ସର୍ବଶୁଭେ କରିଥିଲେ ଯଜ୍ଞ ଅନୁଷ୍ଠାନ ।
ପୁତ୍ର ବଦଳରେ କନ୍ୟା ଜନ୍ମିଲା ମୋହର
ଏବେ ମୋହର ପ୍ରାର୍ଥନା ଶୁଣ ଗୁଣାଧାର ।
ଯଦି ବରଦାନ କର ମୋତେ ଦୟାବହି
ଗୁଣବନ୍ତ ପୁତ୍ରଟିଏ ଦିଅନ୍ତୁ ଗୋସାଇଁ ।
ଏମନ୍ତେ ମନୁ ପ୍ରାର୍ଥନା ଶୁଣି ନାରାୟଣ
ତଥାସ୍ତୁ ବୋଲିଣ ତହୁଁ କହିଲେ ତକ୍ଷଣ ।
ବର ପାଇ ଇଳା କନ୍ୟା ରୂପ ତେଜି ତାର
ପୁତ୍ରଭାବେ ଦେଖାଦେଲା ତାହାଙ୍କ ଆଗର ।
ପ୍ରଦ୍ୟୁମ୍ନ ବୋଲି ତା ନାମ ଜଗତେ ବିଖ୍ୟାତ
ଶଶୀକଳା ପରି ଦିନୁଁ ଦିନ ବଢ଼େ ପୁତ୍ର ।
ଦିନେକ ପ୍ରଦ୍ୟୁମ୍ନ ଗଲା ମୃଗୟା କାରଣ
ବିଧିର ବିଧାନ କିଏ କରିପାରେ ଆନ ।
ସେହି ରାଜସୁତ ପଡ଼ି ଈଶ୍ୱର କୋପରେ
ପୁଣି ସେହୁ ପରିଣତ ହେଲା ଯୁବତୀରେ ।

ତାହା ଗର୍ଭରୁ ଗୋଟିଏ ଜନ୍ମିଲା ନନ୍ଦନ
ପୁରୁରବା ନାମ ତାର ଅଖଣ୍ଡ ଶୋଭନ ।
ଏହିପରି ପୁତ୍ର ଯହୁଁ ଜନ୍ମିଲା ତାହାର
ପୁଣି ସେ ନାରୀ ଧରିଲା ପୁରୁଷ ଶରୀର ।
ଅଶ୍ୱମେଧ ଯଜ୍ଞ ଏକ କରି ଅନୁଷ୍ଠାନ
ନାନା ଦାନ ପୁଣ୍ୟମାନ କରିଲା ରାଜନ ।
ବହୁ ଧର୍ମ କର୍ମ କରେ ଯୁବରାଜ ହୋଇ
କ୍ରମେ କ୍ରମେ ତାର ଯଶ କୀର୍ତ୍ତି ପ୍ରକାଶଇ ।
ସେହି ପୁତ୍ରକୁ ଯେ ମନୁ ଅତି ସ୍ନେହକରି
ବସାଇଲା ନେଇ ସିଂହାସନରେ ହକାରି ।
ସୁଦ୍ୟୁମ୍ନ ଆନନ୍ଦେ ବସି ରାଜ ସିଂହାସନେ
ପାଳନ୍ତି ପରଜା ଗଣ ଅତ୍ୟନ୍ତ ଯତନେ ।
କ୍ରମେ ତିନପୁତ୍ର ତାର ହୋଇଲେ ଜନମ
ଶୁଣ ଶୁଣ ସେହି ତିନ କୁମରଙ୍କ ନାମ ।
ଉତ୍କଳ ବୋଲିଣ ନାମ ଯେ ଜ୍ୟେଷ୍ଠ ପୁତ୍ରର
ବିନୟସେନ ଅଟଇ ମଧ୍ୟମ କୁମର ।
କନିଷ୍ଠ ନନ୍ଦନ ନାମ ମୟୁ ଅଟେ ଜାଣ
ମହୀମଣ୍ଡଳରେ ମହା ତେଜସ୍ୱୀ ସେ ପୁଣ ।
ରାଜ ପଦରେ ସେମାନେ ହୋଇଲେ ଭୂଷିତ
ଆହୁରି ଏକଇ କଥା ଶୁଣ ତପୋବନ୍ତ ।
ସେ କାଳରେ ଯେ ସୁଦ୍ୟୁମ୍ନ ପୁରୁଷ ଅବସ୍ଥା
ଏହି ତିନପୁତ୍ର ତାର ଜନ୍ମିଥିଲେ ଯଥା ।
ଥିଲା ଯେଉଁକାଳେ ନାରୀ ଅବସ୍ଥାରେ ସେହି
ପୁରୁରବା ତାହାଠାରୁ ଥିଲେ ଜନ୍ମହୋଇ ।
ଏଣୁ ପୃଥିବୀରୁ ଭାଗ ନ ପାଇଲେ ସେହି
ବୁଧଙ୍କ ନନ୍ଦନ ବୋଲି ରଟନା ହୁଅଇ ।
ବଶିଷ୍ଠଙ୍କ ଆଦେଶରେ ପ୍ରତିଷ୍ଠାନ ପୁରେ
ପୁରୁରବା ନିଜ ଗୁଣେ ରାଜ୍ୟ ଲାଭ କରେ ।
ଚନ୍ଦ୍ରବଂଶ ପ୍ରସଙ୍ଗରେ ସେ କଥା କହିବି
ପୃଷଧ୍ରୁ ଚରିତ ଏବେ ତହୁଁ ବଖାଣିବି ।
ଏମନ୍ତ ଭାବରେ ସୁତ ମୁନିଙ୍କୁଁ ବୁଝାଇ
ରହିଲେ ମଉନ ହୋଇ କ୍ଷେତ୍ରର କହଇ ।

ଇତିଶ୍ରୀ ବ୍ରହ୍ମପୁରାଣେ ଉତ୍ତରଖଣ୍ଡେ
ସୁତ ଶୌନକ ସମ୍ବାଦେ ସୁଦ୍ୟୁମ୍ନ ଚରିତ
ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟ ।



## ତୃତୀୟ ଅଧ୍ୟାୟ
## ପୃଷଧ୍ର ଶଙ୍କା
## ଶୂଦ୍ରତା ପ୍ରାପ୍ତ ହେବାର ବିବରଣ

ସୁତ ଉବାଚ

ପୃଷଧ୍ରାଖ୍ୟୋ ମନୋଃ ପୁତ୍ରୋ
ମୃଗବ୍ୟାମଗମହ୍ବନାମ୍
ତତ ସଙ୍କ୍ରମଣୋଽସୌ
ବିପିନେ ନିର୍ଜ୍ଜନେ ବନେ
ନାସସାଦ ମୃଗଂ କଞ୍ଚିତ୍ତାନୁଧାନ୍ତି ତାପିତଃ
କ୍ଷତ୍ତ୍ରୁଟ ତାପପରୀତଙ୍ଗକୃତଶ୍ଚେ ତଷ୍ଟଚଂକ୍ରମନ୍

ଶୁଣ ଶୁଣ ହେ ତାପସମାନେ ମନ ଦେଇ
ପୃଷଧ୍ରୁ ନାମରେ ମନୁ ପୁତ୍ର ଯେ ଅଟଇ ।
ଦିନେକ ମୃଗୟା ହେତୁ କାନନେ ପଶିଲା
ଖୋଜି ଖୋଜି ଏକମାସ ମୃଗ ନ ପାଇଲା ।
କ୍ରମେ ଖରତର ବୃଷ୍ଟି ସୂର୍ଯ୍ୟଙ୍କ କିରଣ
ରାଜାଙ୍କ ଅଙ୍ଗରୁ ଝାଳ ବୋହେ ଘନଘନ ।
ଅଖଣ୍ଡ ଆକୁଳ କ୍ଷୁଧା ତୃଷାରେ ହୁଅନ୍ତି
ନୀର ଆଉ ଫଳମୂଳ କାହିଁ ନ ପାଆନ୍ତି ।
କରେ ଧନୁଶର ଧରି କରନ୍ତି ଭ୍ରମଣ
କେବେ ନ ଦେଖିଲା କାହିଁ ମୃଗ ବର୍ଣ୍ଣ ଶବ୍ଦ ।
ଦୈବ ଯୋଗେ ବ୍ରାହ୍ମଣର ହୋମ ଧେନୁ ଏକ
ଚରୁଥିଲା ସେହି ବନେ ଦେଖିଲା ପ୍ରତ୍ୟକ୍ଷ ।
ଗବୟ ବୋଲି ତାହାକୁ ଭାବି ନରପତି
ଲକ୍ଷ୍ୟକରି ବିନ୍ଧେ ଶର ସେହି ଧେନୁ ପ୍ରତି ।
ଶର ଆଘାତେ ତା ଦେହ ବିଦୀର୍ଣ୍ଣ ହୁଅନ୍ତେ
ଛଟପଟ ହୋଇ ଧେନୁ ପଡ଼େ ଭୂମିଗତେ ।
ଯାହାର ସେ ହୋମ ଧେନୁ ପଡ଼ିଲା ଭୂମିରେ
ତାହା ପୁତ୍ର ଜଗି ରହିଥିଲା ଖଣ୍ଡେ ଦୂରେ ।
ରାଜାର ଏ କର୍ମ ଦେଖି ସେ ବିପ୍ର ନନ୍ଦନ
ଅବିଳମ୍ବେ ଅଭିଶାପ ଦେଲା ସେହିକ୍ଷଣ ।
ତା ନାମ ବ୍ରାଭ୍ରବ୍ୟ ସେ ଯେ ଅତି ଉଗ୍ରମୂର୍ତ୍ତି
କୋପନ ସ୍ୱଭାବ ସଦା ବ୍ରାହ୍ମଣ ସନ୍ତତି ।
ରୋଷଭରେ ସ୍ୱେଦ ଝରେ ତାହାର ଶରୀରେ
ଲୋହିତ ନୟନ କରି ରହେଁ ନୃପତିରେ ।
ତାକୁ ରୋଷଭର ଦେଖି ପୃଷଧ୍ରୁ ନୃପତି
କହି ଲଗିଲା ଅନେକ ବିନୟ ଭାରତୀ ।

ହେ ବିପ୍ର ନନ୍ଦନ ଏବେ ହୁଅ ସୁପ୍ରସନ୍ନ
ରୋଷବଶ ହୁଅ ମୋରେ କେଉଁଣ କାରଣ ।
ଶୁଦ୍ରଙ୍କ ସମାନ କ୍ରୋଧୀ ବିପ୍ରେ ନ ହୁଅନ୍ତି
ଏହେତୁ ସନ୍ତୋଷ ହୁଅ ତୁମ୍ଭେ ମୋହପ୍ରତି ।
ଯେପରି କ୍ରୋଧରେ ତୁମ୍ଭେ ହେଉଛ ଜଜର
କେହି କ୍ରୋଧ ନ ବହନ୍ତି ତେସନ ପ୍ରକାର ।
କିବା ବିପ୍ର କି କ୍ଷତ୍ରିୟ କିବା ବୈଶ୍ୟଜନ
ଏମନ୍ତ କ୍ରୋଧୀ କେ ନ ନୁହନ୍ତି କଦାଚନ ।
ଏପରି କହଇ ଯହୁଁ ପୃଷଧ୍ର ରାଜନ
ଋଷି ପୁତ୍ର ତା ନ ଶୁଣି ଶାପ କରେ ଦାନ ।
ଗୋବଧ କଲୁ ଯେପରି ତୁହି ଏ କାନନେ
ତେସନେ ଶୁଦ୍ର ହୋଇବୁ ମୋ ଶାପ ବଚନେ
ଯେଉଁ ବେଦ ଗୁରୁ ପାଶେ କରୁଛୁ ପଠନ
ତାହା କଦାପି ତୋହର ନୋହିବ ସ୍ମରଣ ।
ସକଳ ଶାସ୍ତ୍ର ପାଶୋର ମନୁଁ ଯିବ ତୋର
ଯେଣୁ ଯାଗ ଧେନୁ ବଧ କରିଛୁ ପାମର ।
ଏମନ୍ତେ ଶାପ ଦିଅନ୍ତେ ବ୍ରାହ୍ମଣ ନନ୍ଦନ
ପ୍ରତିଶାପ ଦେବାପାଇଁ ଉଦ୍ୟତ ରାଜନ ।
ଋଷି ପୁତ୍ର ଅଭିଶାପ ଦେବା ସମୟରେ
କହନ ଜଳ ଧରିଲେ ରାଜନ ହସ୍ତରେ ।
ତାହା ଦେଖି ଋଷି ପୁତ୍ର ରୋଷେ ପ୍ରଜ୍ୱଳିତ
ରାଜାର ବିନାଶ ପାଇଁ ବଳାଇଲା ଚିତ୍ତ ।
ସେକାଳେ ତାହାର ପିତା ପ୍ରବେଶିଣ ତହିଁ
ପୁତ୍ରକୁ ନିଷେଧ କରି ବୁଝାଇ କହଇ ।
ବୋଲେ ଆରେ ବ୍ରାଭ୍ରବ୍ୟ ତୁ ଶୁଣମୋବଚନ
କୋପର ସମାନ ଶତ୍ରୁ ନାହିଁ ଭଲେ ଜାଣ ।
ଏଭଳି କ୍ରୋଧ ନ ଧର ମନରେ ତୋହର
ଅବିଳମ୍ବେ ଏହି କୋପ କର ପରିହାର ।
ଶମ ହିଁ ବିପ୍ରର ଅଟେ ମଙ୍ଗଳ କାରଣ
ଇହ ପର ଦୁଇ ଲୋକେ ପରମ ସାଧନ ।
ତପ ଜପ ନଷ୍ଟ ହୁଏ କୋପର କାରଣେ
ଆୟୁ କ୍ଷୟ କରେ କୋପ ଶାସ୍ତ୍ର ଏହା ଭଣେ
କୋପରୁ ସୁଜ୍ଞାନ ନାଶ ହୁଅଇ ପ୍ରମାଣ
କୋପଟି ପରମ ଶତ୍ରୁ ଚଣ୍ଡାଳ ପ୍ରଧାନ ।
କୋପ ଯୋଗୁଁ ଧନ କ୍ଷୟ ହୁଅଇ ଅବଶ୍ୟ
କୋପ ଯେ ଘଟାଏ ବାବୁ ନିଶ୍ଚେ ସର୍ବନାଶ

ଅଧିକ ମୁଁ କି କହିବି ଅବା ତୋତେ ବର୍ଣ୍ଣି
କୋପ ହେତୁ ପ୍ରାଣ ପୀଡ଼ା ଶାସ୍ତ୍ରରେ କହିଛି ।
କ୍ରୋଧମନ୍ଦ ଯେଉଁ ଜନ ସଂସାର ମଧ୍ୟରେ
ଅର୍ଥ ଲାଭ ନ ହୁଅଇ ତାହା କରମରେ ।
ଧର୍ମ ଅର୍ଜି ନ ପାରଇ ସେହୁ କଦାଚନ
କାମନା ଲାଭରୁ ହୁଏ ବଞ୍ଚିତ ସେ ଜନ ।
ଏଣୁ ଶୁଣରେ ନନ୍ଦନ ବଚନ ମୋହର
ଯେବେ ଏହି ସୁଧାମ କି ନୃପତି ଶେଖର ।
ଜାଣି ଜାଣି କରିଥାଏ ଗାଭିକ ନିଧନ
ତଥାପି ଦୟାର ପାତ୍ର ଅଟଇ ଏ ଜାଣ ।
ଅଜ୍ଞାତରେ ଯଦି କରିଥାଏ ଧେନୁ ବଧ
ଶାପ ଯୋଗ୍ୟ ନୁହେଁ ରାଜା ସମ୍ଭାଳ ତୁ କ୍ରୋଧ
ଏହାର ଦେହରେ ପାପ ନାହିଁ କଦାଚନ
ତେଣୁ କହୁଅଛି ପାଳ ମୋହର ବଚନ ।
ଆପଣା ମଙ୍ଗଳ ବାଞ୍ଛା କରୁ ଯଦି ତୁହି
ସର୍ବଦା ରଖିବୁ ଦୟା ହୃଦୟରେ ତୁହି ।
ଯେଉଁ ଜନ ଅଜ୍ଞାନରେ କରିଥାଏ ପାପ
ତାହାକୁ ଯେହୁ ଦଣ୍ଡଇ ଶୁଣ ଆରେ ବାପ ।
ପଣ୍ଡିତ ନ କହେ ଶାସ୍ତ୍ର ତାହାକୁଟି ଜାଣ
ମହାମୂର୍ଖ ଅଟନ୍ତି ସେ ଶୁଣ ତପୋଧନ ।
ଏ ହେତୁ ମୋର କହିବା କଥା ମାନ ତୁହି
ରାଜାଙ୍କୁ ଶାପ୍ୟ ନ ଦିଅ ଆରେ ଧନ ବାଇ ।
କର୍ମ ବଳେ ଏହି ଧେନୁ ହୋଇଅଛି ହତ
ଏଥିରେ ଅନ୍ୟଥା ନାହିଁ ଜାଣ ତୁ ନିଶ୍ଚିନ୍ତ ।
ଏହିପରି ପୁତ୍ରେ କହି ପ୍ରବୋଧ ବଚନ
ମନେ ମନେ ବିଚାରିଲେ ପୁଣି ତପୋଧନ ।
ସେକାଳେ ପୃଷଧ୍ର ରାଜା ବିଚାରିଣ ମନେ
ନମିଣ ଋଷିଙ୍କୁ କହେ ବିନୟ ବଚନେ ।
ଧେନୁକୁ ଅଜ୍ଞାନେ ହତ କରିଅଛି ମୁହିଁ
ଦୟାକର ଦୟାକର ହେ ମୁନି ଗୋସାଇଁ ।
ଧେନୁକୁ ଗୟଳ ମନେ କରି ଦୂରୁ ଜାଣ
ଶର ପ୍ରହାରି ବିନାଶି ଅଛି ତାର ପ୍ରାଣ ।
ଏଣୁ ପ୍ରସନ୍ନ ହୋଇଣ ଏ ଦାସ ଉପରେ
ଦୟାକର ବାରେ ମାତ୍ର ବିନତି ପୟରେ ।
ତା ଶୁଣି ନୃପଙ୍କୁ ବୋଲେ ବ୍ରାହ୍ମଣ ନନ୍ଦନ
ନ ହୋଇବ ମୋରକଥା ଜାଣ କେବେହେଁ ଆନ

ଶାପ ଦେଇଅଛୁ ଯାହା ଆରେ ନରଧବ
ମୋହର ବଚନ କେବେଁ ଅନ୍ୟଥା ନ ହେବ ।
ଭାବଥିଲ ଆନ ଶାପ କରିଥାନ୍ତି ଦାନ
ତହିଁରୁ କ୍ଷାନ୍ତ ହୋଇଲ ଶୁଣ ହେ ରାଜନ ।
ଏତେ କହି ଆଶ୍ରମକୁ ଋଷି ସୁତ ଗଲେ
ଏଣେ ଯେ ପୃଷଧ୍ର ନୃପ ଶୂଦ୍ରତ୍ୱ ପାଇଲେ
ବିଧାତା ଲିଖନ ଆନ କେହୁ କରିପାରେ
ଅବଶ୍ୟ ଫଳଇ ତାହା ଆହେ ମୁନିବରେ ।
ଏହିପରି ପୌରାଣିକ ସୁତଙ୍କ ଭାଷଣ
ଶୁଣି ଶୌନକାଦି ସର୍ବେ ବିସ୍ମୟେ ମଜ୍ଜନ ।
ବ୍ରହ୍ମ ପୁରାଣ ଉତ୍ତର ଖଣ୍ଡର କଥନ
କହଇ କ୍ଷେତ୍ର ମୋହନ ଗୀତରେ ଚିନ୍ତଣ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ପୃଷଧ୍ର ରାଜା
ଉପାଖ୍ୟାନ ନାମ ତୃତୀୟୋଽଧ୍ୟାୟଃ ।



## ଚତୁର୍ଥ ଅଧ୍ୟାୟ
## ସୂର୍ଯ୍ୟବଂଶର ବିବରଣ ଓ
## କାରୁଷ ଉପାଖ୍ୟାନ

ସୁତ ଉବାଚ

କରୁଷାଃ କ୍ଷତ୍ରିୟାଃ ଶୂରାଃ
କରୁଷସ୍ୟା ଭବନ ସୁତାଃ
ହେ ତୁ ସପ୍ତଶତା ବୀରା
ସ୍ତେଭ୍ୟଶ୍ଚାନ୍ୟେ ସହସ୍ର କାଃ

ଶୁଣ ଶୁଣ ସୁଜ୍ଞଜନମାନେ ମନଦେଇ
ଏ ବ୍ରହ୍ମ ପୁରାଣ ଗାଥା ଅମୀୟ ଅଟଇ ।
ସୁତ ମୁନି କହୁଛନ୍ତି ଶୁଣ ତପୋଧନ
କାରୁଷର ଥିଲେ ସାତ ଶତ ଯେ ନନ୍ଦନ ।
ଜଗତରେ ଖ୍ୟାତ ଯେହୁ କରୁଷ ନାମରେ
ମହାବୀର ମହାଶୂର ସେ ସବୁ କ୍ରମରେ ।
ପୁଣ ପୌତ୍ରୀ ତାହାଙ୍କର ଜନ୍ମିଲେ ଅପାର
ବ୍ୟାପିଲେ ଚଉଦିଗରେ ଅବନୀ ମଧ୍ୟର ।
ନାଭାଗ ଅଟେ ବିଷ୍ଣୁର ପୁତ୍ର ଗୁଣବାନ
ତାହାର ଚରିତ ଏବେ ଶୁଣ ଦେଇ ମନ ।
ଯେ କାଳରେ ନାଭାଗର ପ୍ରଥମ ଯୌବନ
ସୁଖେ ଭ୍ରମଣ କରୁଥିଲ ନାନା ସ୍ଥାନ ।
ଏକଦାଦନେ ସେ ନାଭାଗ ଦେଶେ ବୁଲୁଥିଲା
ବୈଶ୍ୟ ଦୁହିତା ଏକ ନେତ୍ରବର ଦେଖିଲା ।
ତାହାଙ୍କୁ ଦର୍ଶନ ମାତ୍ରେ ସେ ନାଭାଗ ବୀର
କାମବାଣେ ତନୁ ତାର ହେଲା ଜର ଜର ।
ନାସାରୁ ତାହାର ଶ୍ୱାସ ବହେ ଘନ ଘନ
ଭାବ ଉପାୟ ସେ କରି ନପାରେ ଚିନ୍ତନ ।
ମନେ ମନେ ଚିନ୍ତାକରି ବହୁ ପରକାର
ଦୁହିତା ପିତା ପାଶକୁ ଚଳିଲା ସତ୍ୱର ।
ବିନୟୀ ହୋଇଣ ତାକୁ ବୋଇଲା ସେ ଗୀର
ଦୟାକରି ତବ ସୁତା ମୋରେ ଦାନ କରିଁ
ନାଭାଗର ପିତା ଥିଲା ମହା ବଳବାନ
ଅତଏବ ଉଗ୍ରମୂର୍ତ୍ତି ବିଶାଳ ବଦନ ।
କନ୍ୟାର ଜନକ ଡ଼ରି କହିଯାଏ ତାରେ
ତେଣୁ ନାଭାଗ କହିଲା ଅତି ବିନୟରେ ।
ହେ ରାଜ ନନ୍ଦନ ଶୁଣ ମୋର ନିବେଦନ
ତୁମ୍ଭେ ଅଟ ରାଜ ପୁତ୍ର ବଡ଼ କୁଳେ ଗଣ୍ୟ ।
ମୁହିଁ ଭୃତ୍ୟସମ ବଡ଼ ତବ ଅଧୀନ ଅଟଇ
ତୁମ୍ଭେ ପୃଥିବୀର ମାନ୍ୟଗଣ ନରସାଇଁ ।
କେବେ ନ ହୋଇବ ମୁହିଁ ତବ ସମକକ୍ଷ
ଏଣୁ ଯାହା କହୁଅଛି ଶୁଣନ୍ତୁ ପ୍ରତ୍ୟକ୍ଷ ।
ମୋ ସଙ୍ଗରେ ହେବ ତୁମ୍ଭ ସମ୍ବନ୍ଧ ବନ୍ଧନ
କହୁପେ ସମ୍ଭବେ ଏହା ହେ ନୃପ ନନ୍ଦନ ।
ତା ଶୁଣି ନୃପତି ପୁତ୍ର ବୈଶ୍ୟକୁ କହଇ
ମୋହର ବଚନ ଶୁଣ ଅନ୍ୟମନା ନୋହି ।
କାମ ମୋହରେ ମାନବ ଦେହରେ ସମତା
ବିହିତ କରିଛି ଯେ କି ବିଶ୍ୱର ବିଧାତା ।
କାଳ ବଶେ କାମ ମୋହ ଜନ୍ମଇ ଶରୀରେ
କାମ ମୋହେ ଉପକାର ହୁଏ ସମୟରେ ।
ପରସ୍ପର ଭିନ୍ନ ଜାତି ଅଟନ୍ତି ଯେ ଜନ
ତେବେ ପରସ୍ପରେ ହୁଏ ସମ୍ବନ୍ଧ ଘଟନ ।
ଅଯୋଗ୍ୟ ବସ୍ତୁରୁ କାଳେ ଯୋଗ୍ୟତା ଜନମେ
ଯୋଗ୍ୟ ଯେ ଅଯୋଗ୍ୟ ହୁଏ କୌଣସି କାରଣେ
କାଳର ଆସ୍ପଦ ଏହା ଆହେ ମହାଜନ
ଏହି ହେତୁ ମାଗୁଛି ମୁଁ ତୁମ୍ଭ କନ୍ୟାଧନ ।
ଅତଏବ ଏଥି ଆଉ ନ ଭାବ ହେ ଆନ
ସୁଦୟା ବହିଣ ମୋତେ କନ୍ୟା କର ଦାନ

ଯଦି ମୋରେ ତୁମ୍ଭ କନ୍ୟା ନକର ପ୍ରଦାନ
ନିଶ୍ଚୟ ତେଜିବି ମୁହିଁ ଏ ଘୋର ଜୀବନ ।
ବୈଶ୍ୟ କହଇ ଶୁଣ ହେ ନୃପତି ତନୟ
ମୁଁ ଯେ ପରାଧୀନ ଅଟେ ଏ କଥା ନିଶ୍ଚୟ ।
ଏଣୁ ପିତାଙ୍କ ପାଶରୁ ନେଇ ଅନୁମତି
ମୋ ନିକଟେ ଆସ ତୁମ୍ଭେ ହେ ନୃପସନ୍ତତି
ତୁମ୍ଭଙ୍କୁ ମୋ ଦୁହିତାକୁ କରିବି ପ୍ରଦାନ
ମୋର ଏ ବଚନ କେବେ ହେବନାହିଁ ଆନ
ଏହା ଶୁଣି ସେହିକାଳେ ରାଜପୁତ୍ର କହେ
ଯାହା କହିଲେତାସତ୍ୟମିଥ୍ୟାକେବେନୋହେ
ମସ୍ତକ ଉପରେ ଯାର ଗୁରୁ ରହିଛନ୍ତି
ଉଚିତ ଅଟେ ନେବାର ତାଙ୍କ ଅନୁମତି ।
ମାତ୍ର ଅକାର୍ଯ୍ୟରେ ଯେବେ ଧାଇଁଯାଏ ମନ
ଗୁରୁଙ୍କ ଆଦେଶ ନେବା ଅସମ୍ଭବ ଜାଣ ।
ଭଲ କାର୍ଯ୍ୟେ ସିନା ଗୁରୁ ଆଜ୍ଞା ଘେନିବାର
ଅସାର କାର୍ଯ୍ୟରେ ଆଜ୍ଞା ନେବା କି ପ୍ରକାର
କାମକଥା ଯହିଁ ହେଉଅଛି ଆଳାପନ
କି ରୂପେ କରାଇବା ତା ଗୁରୁଙ୍କୁ ଶ୍ରବଣ ।
ଗୁରୁଙ୍କ ଅଗ୍ରତେ କାମ କଥା କହିବାର
ଯୁକ୍ତିଯୁକ୍ତ ନୁହେଁ ଏହା ମନରେ ବିଚାର ।
ଅନ୍ୟାନ୍ୟ ବିଷୟ ଯାହା ଘଟେ ଏ ସଂସାରେ
ଗୁରୁଙ୍କ ନିକଟେ ତାହା କୁହାଯାଇ ପାରେ
ଯେଉଁ କଥା କହିବାର ଲଜ୍ଜାର ବିଷୟ
କେମନ୍ତେ ଗୁରୁଙ୍କୁ ଶୁଣାଇବା ତାହା କହ
ବୈଶ୍ୟ କହେ ଯା କହିଲ ସେ କଥା ଯଥାର୍ଥ
କିରୂପେ ପିତାଙ୍କ ପାଶେ କହିବ ତେମନ୍ତ ।
କାମ ଆଳାପ କରିବା ପିତୃ ସନ୍ନିଧାନେ
ଅଣ ଉଚିତ ଅଟଇ ବିହିତ ବିଧାନେ ।
ଉତ୍ତମ ଉପାୟ ଏବେ ତୁମ୍ଭକୁ କହୁଛି
ଧୈର୍ଯ୍ୟ ଚିତ୍ତରେ ବିଚାର ହେ ନୃପତି ବହ୍ନି ।
ମୁହିଁ ଯିବି ଯାଇ ତୁମ୍ଭ ପିତାଙ୍କର ପାଶେ
ତୁମ୍ଭଲାଗି ଜଣା କରେ ଯଥା ଅବକାଶେ ।
ଏଥିରେ କାମ ଆଳାପ କଦାଚ ନ ହେବ
ହେ ନୃପ ନନ୍ଦନ ଏ ନୁହଇ ଅସମ୍ଭବ ।
ଏଣୁକରି ମୁହିଁ ଯାଇ ତାଙ୍କ ସନ୍ନିଧାନ
ତୁମ୍ଭ ଅଭିପ୍ରେତ କଥା କରିବି ବଖାଣ ।

ଏହାଶୁଣି ରାଜପୁତ୍ର ସନମତି କଲା
ତାହାର ପିତା ନିକଟେ ବୈଶ୍ୟ ଚଳିଗଲା
ପୁତ୍ରର ମନ କଥା ଯା କହିଲା ତାହାଙ୍କୁ
ତହୁଁ ନୃପ ଡକାଇଲେ ଆପଣା ପୁତ୍ରକୁ ।
ଋତ୍ୱିକ ପ୍ରମୁଖ ଯେତେ ଶାସ୍ତ୍ରେ ବିଚକ୍ଷଣ
ଆଉ ବିପ୍ରମାନେ ଯେତେ ଶାସ୍ତ୍ରେ ବିଚକ୍ଷଣ ।
ସକଳ ରାଜାଙ୍କ ପାଖେ କହିଲେ ତୁରିତେ
ସମସ୍ତ ବୃତ୍ତାନ୍ତ ରାଜା କହିଲେ ତୁରିତେ ।
ବୋଇଲେ ଶୁଣିମା ହେଉ ଆହେ ବିପ୍ରଗଣ
ଏ ଯେଉଁ ଅବସ୍ଥା ମୋର ହୋଇଛି ଘଟନ ।
ଏ ହେତୁ କର୍ତ୍ତବ୍ୟ ଯାହା କହନ୍ତୁ ସତ୍ୱରେ
ତେସନେ କରିବି ମୁହିଁ ଆଜ୍ଞା ଅନୁସାରେ ।
ଏହା ଶୁଣି ରାଜପୁତ୍ରେ କରି ସମ୍ବୋଧନ
କହିଲେ ସଭା ସ୍ଥଳରେ ସେହି ବିପ୍ରଗଣ ।
ତବ ଅନୁଗ୍ରହ ଯଦି ବୈଶ୍ୟ ସୁତଠାରେ
ଧର୍ମ୍ମ ବୋଲିଣ ତାହାକୁ ଗଣ ସୁବିସ୍ତରେ ।
ମାତ୍ର ନ୍ୟାୟମତେ ତାହା ହୋଇବ ସାଧନ
କହୁଅଛୁ ସାବଧାନେ କର ହେ ଶ୍ରବଣ ।
ପ୍ରଥମେ ବିବାହ କର ରାଜ ଦୁହିତାକୁ
ପଛରେ ଆମେ ଯାଇଣ ବୈଶ୍ୟର ସୁତାକୁ
ଏହିପରକାରେ ଯଦି ଉପଭୋଗ କର
ତାହେଲେ କ୍ଷତି ହେବନି ଜାଣିଥା ତୁମ୍ଭର ।
ଯଦି ସେ ବାଳାକୁ ତୁମ୍ଭେ କରିବ ଗ୍ରହଣ
ହେବ ନିଶ୍ଚେ ଜାତିଭ୍ରଷ୍ଟ ଏ ସତ୍ୟ ବଚନ ।
ଏମନ୍ତ କହିଲେ ଯହୁଁ ତାଙ୍କୁ ବିପ୍ରବର
ସେ କଥା ଗ୍ରାହ୍ୟ ନକରି ନୃପତି କୁମର ।
ରାଜନଗର ମଧ୍ୟରୁ ବାହାର ହୋଇଲା
ହସ୍ତେ ଧନୁ ଶର ଘେନି ବେଗେ ବାହାରିଲା
କହିବି ହରିବି ଆଜ ବୈଶ୍ୟ ଯୁବତୀକୁ
କିଏ ଆସି ରକ୍ଷା କରୁ ମୋର କରୁ ତାକୁ ।
ଏତେ କହିଣ ବହନ ସେହି ନୃପବର
ବୈଶ୍ୟ କନ୍ୟାକୁ ଆଣିଣ ରଖିଲା ପାଶର ।
ସେ କାଳେ ଆସିଣ ବୈଶ୍ୟ ରାଜାଙ୍କ ସମ୍ମୁଖରେ
ରକ୍ଷାକର ବୋଲି ଭୂମେ ପଡ଼ିଲା ପୟରେ ।
ତତକ୍ଷଣେ କୋପଭର ହୋଇ ନରପତି
ସୈନ୍ୟଗଣକୁ ଡକାଇ ଦେଲେ ଅନୁମତି ।

ବିଳମ୍ବ ନକର ତୁମ୍ଭେମାନେ ଚାଲିଯାଅ
ଉତ୍ପ୍ରୋଧ ନ ରଖି ନାଭାଗର ପ୍ରାଣ ନିଅ ।
ରାଜାଙ୍କ ଆଦେଶ ମାତ୍ରେ ସେନା ଚାଲିଗଲେ
ଦଳଦଳ ସୈନ୍ୟ କ୍ରମେ ଉପସ୍ଥିତ ହେଲେ
ତୁମୁଳ ସଂଗ୍ରାମ ହେଲା ବେଳୁବେଳ ଜାଣ
ଅସ୍ତ୍ର ବିଦ୍ୟାରେ ନିପୁଣ ସେ ରାଜ ନନ୍ଦନ ।
ଅପାର ରାଜ ସେନାଙ୍କୁ କରିଲା ସେ ହତ
ପହଞ୍ଚିଲା ଯାଇ ରାଜା ପାଶେ ଏ ବୃତ୍ତାନ୍ତ ।
ନଭାଗ ହସ୍ତରେ ବହୁ ସୈନ୍ୟ ମରିଛନ୍ତି
ଶ୍ରବଣ ମାତ୍ରକେ ରାଜା ହେଲେ କୋପମୂର୍ତ୍ତି ।
ଅପାର ସଇନ ଚଉଦିଗରେ ଘେରାଇ
ଯୁଦ୍ଧ ସ୍ଥଳରେ ମିଳିଲେ ଆପେ ନରସାଇଁ ।
ପିତା ପୁତ୍ରଙ୍କର ରଣ ହୋଇଲା ଅପାର
ଦୁଇ ଆଡୁଁ ଦୁହେଁ ଶର କରନ୍ତି ପ୍ରହାର ।
ପରିବ୍ରାଟ ନାମେ ଥିଲେ ଜଣେ ତପୋଧନ
ଶୂନ୍ୟ ମାର୍ଗେ ସେହିକ୍ଷଣି ଆସିଲେ ବହନ ।
ରାଜାଙ୍କୁ ପ୍ରବୋଧି ସେହୁ ବୋଇଲେ ବଚନ
ଏ ରଣରୁ ବେଗ କ୍ଷାନ୍ତ ହୁଅ ନରସାଇଁ ।
ଏହି ଯେଉଁ ବୀର ଅଟେ ଆପଣଙ୍କ ସୁତ
ଧର୍ମ ନାମ ବହିଅଛି ଜାଣ ଏ ଦୁର୍ଦ୍ଦାନ୍ତ ।
ତେଣୁ ବୈଶ୍ୟ ସଙ୍ଗେ ରଣ ଉଚିତ ନୁହଇ
ତୁମ୍ଭ ପକ୍ଷେ ବିଶେଷତଃ ଅମଙ୍ଗଳ ଏହି ।
ପ୍ରାଣୀଏ ଯଦ୍ୟପି ଶାସ୍ତ୍ରାନୁସାରେ ଚଳନ୍ତି
ହୁଏ ନାହିଁ ଧର୍ମହାନି ଆହେ ନରପତି ।
ବ୍ରାହ୍ମଣ ପ୍ରଥମେ ବିପ୍ର କନ୍ୟାକୁ ବରିବ
ଅନ୍ୟ ବର୍ଣ୍ଣ ନାରୀ ପରେ ଗ୍ରହଣ କରିବ ।
ତହିଁରେ ବ୍ରହ୍ମତ୍ୱ ହାନି ନୁହେଁ କଦାଚନ
ସେହି ପ୍ରକାରେ କ୍ଷତ୍ରିୟମାନଙ୍କ ବିଧାନ ।
ଆଦ୍ୟରେ କ୍ଷତ୍ରିୟ କନ୍ୟା ବିବାହ କରିବ
ଇଚ୍ଛାହେଲେ ପରେ ଅନ୍ୟ ଜାଣ କନ୍ୟାନେବ
ତହିଁରେ ସ୍ୱଧର୍ମ ହାନି କଦାପି ନୁହଇ
ବୈଶ୍ୟର ପକ୍ଷରେ ମଧ୍ୟ ସେହିପରି ହୋଇ
ପ୍ରଥମେ ବୈଶ୍ୟ ନନ୍ଦିନୀ ବିବାହ କରିବ
ଇଚ୍ଛା ହେଲେ ତାର ଶୂଦ୍ର କନ୍ୟାକୁ ରଖିବ
ଏମନ୍ତ କରଇ ଯଦି ସେହି ବୈଶ୍ୟଜନ
ତାହାର କଦାପି ଧର୍ମ ନୁହେଁ ନାଶ ଜାଣ ।
ହେ ରାଜା ଏ ତୁମ୍ଭ ସୁତ ବଡ଼ ମନ୍ଦମତି
ବୈଶ୍ୟତ୍ୱ ଘଟିଛି ଏହାରି ହେ ନରପତି ।
ତୁମ୍ଭେ ଯେ ଅଟ ନରେଶ କ୍ଷତ୍ରିୟ ପ୍ରଧାନ
ଏହା ସହିତ ଯୁଝିବା ନୁହେ ପ୍ରୟୋଜନ ।
ସୂର୍ଯ୍ୟବଂଶୀ ନୃପ ତୁମ୍ଭେ ଧାର୍ମିକ ପ୍ରବର
ଜାତିଭ୍ରଷ୍ଟ ସହ ଆଉ ନକର ସମର ।
ଏମନ୍ତେ ସେ ପରିବ୍ରାଟ ମୁନିବର ଭଣିଲେ
ରାଜନକୁ ନାନା ମତେ ବୁଝାଇ କହିଲେ ।
ଏଥୁଅନ୍ତେ ଘଟିଲା ଯେସନ ସମାଚାର
ତୁମ୍ଭ ଅଗ୍ରତରେ ତାହା କରିବା ପ୍ରଚାର ।
ସୂତ ମୁନି ପ୍ରକାଶିଲେ ତାପସଙ୍କ ପାଶେ
ଶ୍ରବଣ କରି ବିସ୍ମିତ ହୋଇଲେ ତାପସେ ।
ଏ ବ୍ରହ୍ମ ପୁରାଣ ଅଟେ ଅତି ଭକ୍ତିମୟ
ପାଠକେ ପାନ କରିଣ ତୋଷ କର କାୟ
ନର ନାରୀମାନେ ଶୁଣି ଏ ପୁରାଣ ଗିର
ଲଭିଅ ମନୁ ପାତକ ରାଶି ନିରନ୍ତର ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଗୀତରେ ଭଣଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
କାରୁଷ ଉପାଖ୍ୟାନାଦି କଥନଂ
ନାମ ଚତୁର୍ଥୋଽଧ୍ୟାୟ ।

—*—

## ପଞ୍ଚମ ଅଧ୍ୟାୟ

## ମହର୍ଷି ପ୍ରମତିଙ୍କ ଶାପ କଥନଂ

ସୂତ ଉବାଚ

ନିବୃତ୍ତୋ ସୌ ତତୋ ଭୂପଃ
ସଂଗ୍ରାମତ୍ ସ୍ୱ ସୁତେନ ବୈ ।
ଉପଯେମେ ଚ ତାଂ ବୈଶ୍ୟ
ତନୟାଂ ସୋଽପି ତତ୍ ସୁତଃ

ପୌରାଣିକ ସୂତ ମୁନି କହନ୍ତି ସୁଧିରେ
ଶୁଣ ସର୍ବ ମୁନିଗଣ ମନ ଆନନ୍ଦରେ ।
ପରିବ୍ରାଟ ମୁନିଙ୍କର ମାନିଣ ବଚନ
ଯୁଦ୍ଧରୁ ନିବୃତ୍ତ ହେଲେ ବିଜ୍ଞ ନରରାଣ ।

ଆପଣା ଅନ୍ତପୁରକୁ ବାହୁଡ଼ି ଚଳିଲେ
ସନ୍ତାନର କଥା ଆଉ ମନେ ନ ଭାଳିଲେ ।
ନାଭାଗ ବୈଶ୍ୟ କନ୍ୟାକୁ ଘେନି ସଙ୍ଗତରେ
ଉପସ୍ଥିତ ହେଲା ଆସି ପିତା ନିକଟରେ ।
ସମ୍ବୋଧନ କରି ପୁତ୍ର ପିତାଙ୍କୁ କହଇ
କି କରିବି ମୋତେ ଆଜ୍ଞା ଦିଅନ୍ତୁ ନରସାଇଁ ।
ରାଜା ବୋଇଲେ ବାଭ୍ରବ ଆଦି ବିପ୍ରଗଣ
ଉପସ୍ଥିତ ହୋଇ ରହିଛନ୍ତି ଏହିସ୍ଥାନ ।
କେଉଁରୂପେ ତୁମ୍ଭେ ଧର୍ମ ଲଭ କରିପାର
ଏମାନେ କହନ୍ତୁ ତାହା ବିଚାରି ମନରେ ।
ସେହିପରି ଏବେ କର୍ମ କର ଅନୁଷ୍ଠାନ
ଏତେ ବୋଲି ନରପତି ହୋଇଲେ ମଉନ ।
ସେକାଳେ ତାପସଗଣ ସଭାସଦ ଯେତେ
ବିଧାନେ ବିଚାର କରି କହିଲେ ସମସ୍ତେ ।
ଏ ରାଜନନ୍ଦନ ବୈଶ୍ୟ ଜାତି ପାଇଛନ୍ତି
ଏଣୁ ବୈଶ୍ୟବୃତ୍ତି କରୁ ଶାସ୍ତ୍ରେ ଯା କହୁଛି ।
କୃଷି ବାଣିଜ୍ୟ ଆଉ ଯେ ଗୋଧନ ପାଳନ
ଏହି ତିନି ଧର୍ମ କରି କଟାଉ ଜୀବନ ।
ତେବେ ଉପଯୁକ୍ତ ଧର୍ମ ଲଭିବ ନାଭାଗ
ରାଜସିଂହାସନକୁ ଏ ଅଟଇ ଅଯୋଗ୍ୟ ।
ବୈଶ୍ୟ ବୃତ୍ତି ବିନୁ ଅନ୍ୟ ଗତି ଆଉ ନାହିଁ
ଏହି ପ୍ରକାରେ କହନ୍ତେ ସଭାଜନେ ତହିଁ ।
ସେ ରାଜପୁତ୍ର ନାଭାଗ ତାହାଙ୍କ ଆଦେଶେ
ସେହିଭଳି କାର୍ଯ୍ୟେ ରତ ହେଲା ଅବଶେଷେ ।
ବୈଶ୍ୟାର ଉଦରେ ତାର ଜନ୍ମିଲା ସନ୍ତାନ
ସେ ପୁତ୍ରର ନାମ ଖ୍ୟାତ ହେଲା ଭନନ୍ଦନ ।
ଦିନକୁ ଦିନ ସେ ବଢ଼େ ଶଶିକଳା ପରି
କ୍ରମେ ମହା ଗୁଣବନ୍ତ ହେଲା ଭକ୍ତିଭରି ।
ଦିନେକ ତାର ଜନନୀ କହିଲା ଏସନ
ମୋ କଲ୍ୟାଣେ ହୁଅ ବାବୁ ପୃଥିବୀ ରାଜନ ।
ଜନନୀ ମୁଖରୁ ଏ କଥା ଶୁଣନ୍ତେ ଶ୍ରବଣେ
ଭକ୍ତିଭାବେ ନମି ପୁତ୍ର ମାତାର ଚରଣେ ।
ଅଶ୍ୱ ଚଢ଼ି ହିମାଳୟେ କଲା ସେ ଗମନ
ଯେବଣ ଠାବେ ଅଛନ୍ତି ରାଜର୍ଷି ଜନ ।
ତାହାଙ୍କ ନିକଟେ ଯାଇଁ ପ୍ରବେଶ ହୋଇଲା
ବିନୟ କରି ଯୋଡ଼ି ପାଦେ ନମସ୍କାର କଲା ।

ବୋଇଲା ତୁମ୍ଭ ଚରଣେ ମୋର ନିବେଦନ
ମାତା ମୋତେ କରିଛନ୍ତି ଆଦେଶ ପ୍ରଦାନ ।
ପୃଥିବୀ ପାଳନ କର ବୋଲି ଆଜ୍ଞା ଦେଲେ
ଆହେ ନୃପମଣି ତାହା ଜଣାଇଛୁ ଭଲେ ।
କି ରୂପେ ମୁହିଁ ପୃଥିବୀ କରିବି ପାଳନ
ତାହାର ଈପ୍ସିତ କେମନ୍ତେ ପାଏ ବର୍ତ୍ତମାନ ।
ଏହି ଧରଣୀ ମଧ୍ୟରେ ବଳିଷ୍ଠ ଦାୟାଦ
ବଳେ ଆକ୍ରମିଣ ନେଇ ଯିବେ ମୋର ପଦ
ସେମାନଙ୍କ କରଗତ ଏବେ ବସୁମତୀ
ତେଣୁ ତବ ସମ୍ମୁଖରେ ମୁଁ କରୁଛି ଆପତ୍ତି ।
ଏକାନ୍ତ ଅନୁଗତ ମୁଁ ଅଟଇ ତୁମ୍ଭର
ତୁମ୍ଭ ବିନୁ ଆନ କିଛି ଗତି ନାହିଁ ମୋର ।
ଯହିଁରେ ପୃଥିବୀ ଭୋଗ କରିପାରେ ମୁହିଁ
ତହିଁର ଉପାୟ ଏବେ କର ଦୟା ବହି ।
ସେ କାଳେ ରାଜର୍ଷି ନୃପ ବୈଶ୍ୟପୁତ୍ରେ ଭଲେ
କୃପାକରି ନାନା ଅସ୍ତ୍ର ଶୀଘ୍ରେ ଦାନ କଲେ
ଅସ୍ତ୍ର ବିଦ୍ୟା ଲଭି ସେହି ବୈଶ୍ୟ ରାଜସୁତ
ପିତୃବ୍ୟଙ୍କ ରାଜ୍ୟେ ଯାଇଁ ହେଲା ଉପସ୍ଥିତ ।
ବସୁରାତ ଆଦି ସବୁ ପିତୃବ୍ୟ ତନୟେ
ଭନନ୍ଦନ ତାଙ୍କ ପାଶେ ପରବେଶ ହୋଏ ।
ଅଧେକ ରାଜ୍ୟ ମାଗନ୍ତେ ସେମାନଙ୍କୁ ପୁଣି
ସେ ସର୍ବେ କହିଲେ ଯାହା ସାବଧାନେ ଶୁଣ
ଆରେ ଭନନ୍ଦନ ତୁହି ଅଟୁ ବୈଶ୍ୟ ପୁତ୍ର
ଇଚ୍ଛାକରୁଛୁ ମେଦିନୀ ଭୋଗିବୁ କେମନ୍ତ ।
ଯେବେ ହୋଇଥାଆନ୍ତୁ ରେ କ୍ଷତ୍ରିୟ ସନ୍ତାନ
ପୃଥିବୀ ଭୋଗ କରନ୍ତୁ ନ ହୁଅନ୍ତା ଆନ ।
ଏହା ଶୁଣି ଭନନ୍ଦନ କ୍ରୋଧ ହୋଇ ଅତି
ସେମାନଙ୍କ ସଙ୍ଗେ ଯୁଦ୍ଧ ବାହାରେ ଚଢ଼ନ୍ତି ।
ତହୁଁ ବସୁରାତ ଆଦି ମିଳିଣ ସକଳେ
ଭନନ୍ଦନ ପ୍ରତି ନାନା ଅସ୍ତ୍ର ପ୍ରହାରିଲେ ।
ତେସନେ ନାନାଦି ଅସ୍ତ୍ର ମାରେ ଭନନ୍ଦନ
ତୁମୁଳ ଯୁଦ୍ଧ ଲାଗିଲା କ୍ରମେ ଦିନ ଦିନ ।
ବହୁତ ଦିନ ଯୁଝିଣ ଧର୍ମ ଅନୁସାରେ
ଜିଣିଲା ତାହାଙ୍କୁ ବୀର ଭନନ୍ଦନ ପରେ ।
ଏମନ୍ତେ ସମସ୍ତଙ୍କୁ ସେ କରି ପରାଜିତ
ଅଖିଳ ବସୁଧା ତାର ହେଲା କରଗତ ।

ଏହିରୂପେ ଶଙ୍ଖୁ ଜୟ କରି ଭନନ୍ଦନ
ଅଧିକାରି କରି ପୃଥ୍ୱୀ ଆହେ ତପୋଧନ ।
ନିଜ ପିତା କରେ କରନ୍ତେ ତା ସମର୍ପଣ
ସ୍ନେହରେ କହେ ନାଭାଗ ନକରି ଗ୍ରହଣ ।
ଆରେ ଭନନ୍ଦନ ତୁ କୁଳ ଚନ୍ଦ୍ରମା ମୋର
ବୁଝାଇ କହୁଛି ଧନ ଶୁଣ ମୋର ଗିର ।
ଆମ୍ଭର ପୂର୍ବ ପୁରୁଷ ନରପତି ଗଣେ
ଏହି ପୃଥ୍ୱୀ ପାଳିଛନ୍ତି ଅତ୍ୟନ୍ତ ଯତନେ ।
ତୁହି ମୋ କୁମାର ସେମାନଙ୍କ ବଂଶଧର
ଏବେ ଯେ ଆୟତ୍ତ ହେଲା ବସୁଧା ତୁମ୍ଭର ।
ପାଳନ କର ତୁ ସୁଖେ ଏହି ବସୁନ୍ଧରା
ହୋଇନାହିଁ ପୂର୍ବରୁ ମୁଁ ରାଜା ଅଧିକାରୀ ।
ରାଜନୀତି ଜାଣେ ମୁହିଁ ଆରେ ବାପଧନ
ପିତାଙ୍କ ଆଦେଶ ଯେଣୁ ନାହିଁ ଏ କାରଣ ।
ଏହା ଶୁଣି ଭନନ୍ଦନ କହେ ଯୋଡ଼ି କର
କାହିଁପାଇଁ ରାଜା ହୋଇ ନଥିଲ ପିଅର ।
ପାଳନ କରିବା ଲାଗି ଏ ନଗର ଦେଶ
କେବଣ କାରଣେ ପିତା ନ ଦେଲେ ଆଦେଶ
କେଉଁ ଦୋଷ ଅବା ତୁମ୍ଭେ କଲ ତାଙ୍କ ଠାଇଁ
ଆଜ୍ଞା ନ ଦେଲେ ତୁମ୍ଭଙ୍କୁ ରାଜା ହେବା ପାଇଁ
ଆହେ ତାତ କହ ମୋତେ ସଂଶୟ ଫିଟାଇ
କେଉଁ ଅପରାଧେ ପିତା ରାଜ୍ୟ ଦେଲେ ନାହିଁ
ଭନନ୍ଦନ ମୁଖୁଁ ଶୁଣି ଏମନ୍ତେ ବଚନ
ପୂର୍ବର ବୃତ୍ତାନ୍ତ କହେ ନାଭାଗ ସେକ୍ଷଣ ।
ଯାହା ପଚାରିଲୁ ମୋତେ ଶୁଣରେ କୁମାର
କହୁଅଛି ତୋ ଆଗେ ମୁଁ ସର୍ବ ସମାଚାର ।
ବୈଶ୍ୟ କନ୍ୟାକୁ ମୁଁ ସ୍ୱଇଚ୍ଛାରେବିବାହୋନ୍ତେ
ପିତାଙ୍କ ଅପ୍ରିୟ ପାତ୍ର ହୋଇଛି ଯୁକତେ ।
ମୋର ଅତିଶୟ କ୍ରୋଧ ବହି ପିତୃଦେବ
ବୋଇଲେ ତୁ ଆଜଠାରୁ ଲଭ ବୈଶ୍ୟ ଭାବ
ଚଳିହୋଇ ବିଶେଷରେ ମୋ ପିତା ଗୋସାଇଁ
ଆଜ୍ଞା ଦେଲେନାହିଁ ରାଜ୍ୟେ ରାଜା ହେବାପାଇଁ
ବୈଶ୍ୟ ବୃତ୍ତି କରି ଚଳ ବୋଲି କହିଛନ୍ତି
ତେଣୁ ବୈଶ୍ୟ ଜୀବିକା ମୋ ଜାଣରେ ସନ୍ତତି
ତାଙ୍କର ଏ ଆଦେଶକୁ ମୁଁ କରି ଲଙ୍ଘନ
ଯଦ୍ୟପି ପୁନଶ୍ଚ କରେ ପୃଥ୍ୱୀ ପାଳନ ।
କୋଟି କଳ୍ପ ମୋକ୍ଷଗତି ନହେବ ମୋହର
ବିଶେଷ ମୁଁ ଧର୍ମ ମାର୍ଗ ସଂସାର ମଧ୍ୟର ।
ତୋର ଅର୍ଜିତ ରାଜ୍ୟ ମୁଁ ଯଦି ଭୋଗକରେ
ଅଯଶ ହୋଇବ ମୋର ଜଗତ ଯାକରେ ।
ଅଧିକେ ଦୁର୍ବଳ ମୁଁ ହୋଇଛି ବର୍ତ୍ତମାନ
ଏଣୁ ତୁହି ପ୍ରଜା ପୁତ୍ର କର ଯା ଶାସନ ।
ଜ୍ଞାତିଙ୍କ ହସ୍ତରେ କିବା କରୁଛ ଅର୍ପଣ
ଯେପରି ତୋହର ଇଚ୍ଛା କର ଏହିକ୍ଷଣ ।
ଆରେ ଗୁଣମଣି ତୋର ଜନକ ଯେ ମୁହିଁ
ଯେଉଁ ପରକାରେ ତୋତେ ଆଦେଶ ଦେବଇଁ
ପାଳନ କରିବା ଅଟେ କର୍ତ୍ତବ୍ୟ ତୋହର
ପୃଥ୍ୱୀ ପାଳନ ବାପ ନୁହେଁ ସେ ପ୍ରକାର ।
ଏହାଶୁଣି ବୈଶ୍ୟ କନ୍ୟା ହସି ଉଚ୍ଚସ୍ୱରେ
ପୁତ୍ରର ଅଗ୍ରତେ କହେ ଆପଣା ପତିରେ ।
ଆରେ ଭୂପ ମୋର କଥା କରସି ଶ୍ରବଣ
ଅଚିରେ ସମୃଦ୍ଧ ରାଜ୍ୟ କରି ଯେ ଗ୍ରହଣ ।
ତୁମ୍ଭେ କେବେ ବୈଶ୍ୟ ନୁହଁ ଜାଣ ସୁନିଶ୍ଚୟ
ଅଟ ସୂର୍ଯ୍ୟବଂଶ ନାଥ ପ୍ରଧାନ କ୍ଷତ୍ରିୟ ।
ପ୍ରକୃତ ବୈଶ୍ୟର କୂଳେ ହୋଇନାହିଁ ଜାତ
ଆପଣାକୁ କମ୍ପା ଦିଅ ବୈଶ୍ୟ ପରିଚିତ ।
ତୁମ୍ଭେ ପ୍ରଶଂସାର ପାତ୍ର ଅଟ ସୁନିଶ୍ଚୟ
କ୍ଷତ୍ରିୟ ବଂଶରେ ଜନ୍ମ ଅଟଇ ନିଶ୍ଚୟ ।
ମୁଁ ମଧ୍ୟ କ୍ଷତ୍ରିୟ କନ୍ୟା ନୁହେଁ ବୈଶ୍ୟ ଝିଅ
କହୁଛି ସେ କଥା ଏବେ ଶୁଣ ପ୍ରାଣପ୍ରିୟ ।
ବୈଶ୍ୟକନ୍ୟା ଯେଉଁପରି ବୋଲାଇଲି ମାତ
ନ ମଣି ସଂଶୟ ତାହା ବୁଝନ୍ତୁ ଯଥାର୍ଥ ।
ସୁଦେବ ନାମରେ ପୂର୍ବେ ନରପତି ଥିଲେ
ମହା ବଳଶାଳୀ ବହୁ ଖ୍ୟାତି ଲଭିଥିଲେ ।
ନଳଙ୍କ ସଙ୍ଗରେ ତାଙ୍କ ସହୃଦତା ଥିଲା
ତାହାର ଚରିତ ଶୁଣ କହୁଅଛି ଭଲା ।
ଏକକାଳେ ମଧୁମାସ ହୋନ୍ତେ ଉପସ୍ଥିତ
ସୁଦେବ ରମଣୀଗଣ ହୋଇଲେ ବେଷ୍ଟିତ ।
ବିହାର ବାସନା କରି ନିଜ ମାନସରେ
ପ୍ରବେଶ ହୋଇଲେ ଯାଇ କାନନ ମଧ୍ୟରେ ।
ସେହି ଆମ୍ରବନ ଗୋଟି ମହାମନୋରମ
ସେହି ବନେ ମନ ସୁଖେ କରନ୍ତି ଭ୍ରମଣ ।

ପତ୍ନୀଗଣେ ଆଉ ସଖୀ ସଙ୍ଗେ ମିଳିକରି
ପାନ ଭୋଜନ କରୁଅଛନ୍ତି ମୋଦଭରି ।
ଭୋଜନ କରି ସମାଧା ଆନନ୍ଦିତ ମନେ
ଗଲେ ପୁଷ୍କରିଣୀ ତଟରେ ସନ୍ତୁରି କାରଣେ ।
ଏକ ପାର୍ଥିବ ନନ୍ଦନୀ ସେହିଠାରେ ଥିଲି
ପ୍ରମତି ଋଷିଙ୍କ ଭାର୍ଯ୍ୟା ସେହୁ ବୋଲାଇଲି ।
ପ୍ରମତି ଚେବନ ମହା ଋଷିଙ୍କ ନନ୍ଦନ
ମହାପଣ୍ଡି ପୁଣ ଆତ୍ମା ଶାସ୍ତ୍ର ବିଚକ୍ଷଣ ।
ଏମନ୍ତ ଋଷିଙ୍କ ପତ୍ନୀ ସତୀ ସାଧବାଣୀ
ଅପୂର୍ବ ସୁନ୍ଦରୀଶ୍ରୀବା ନବଯଉବନୀ ।
ସୁଦେବ ରାଜାଙ୍କ ପ୍ରିୟ ବାନ୍ଧବ ଯେ ନଳ
ଦେଖି ସୁନ୍ଦରୀକି କାମେ ହେଲା ଅତି ଭୋଳ ।
ମଦନ ବାଣେ ତା ହୃଦ ହୁଅନ୍ତେଣ ଘାରି
ବଳେ ପକାଇଲା ଋଷି ଘରଣୀକୁ ଧରି ।
ଜ୍ଞାନବନ୍ତ ହୋଇ ନଳ ହରାଇଲା ଜ୍ଞାନ
ନାଲ୍ଲ ଜ ଭାବରେ କଲା ହୀନ ଆଚରଣ ।
ନୃପଙ୍କ ଅଗ୍ରତେ ନଳ କରନ୍ତେ ଏ କର୍ମ
ସେ ନାୟିକା ଡାକେ ରକ୍ଷାକର ଆହେ ଧର୍ମ
ଉଚ୍ଚେ ରଡ଼ି କରି ବାଳା ଡାକେ ବାରବାର
କିଏ ଧାର୍ମିକ ପୁରୁଷ ମୋତେ ରକ୍ଷାକର ।
ତାହାର ଚିତ୍କାର ଆସି ବାଜନ୍ତେଣ କର୍ଣ୍ଣେ
ପ୍ରମତି ଋଷି ଯେ ଧାଇଁ ଅଇଲେ ତକ୍ଷଣେ ।
କିଏ କିଏ ବୋଲି ତହିଁ ହୋଇଲେ ପ୍ରବେଶ
ପ୍ରତ୍ୟକ୍ଷେ ଦେଖିଲେ ଯହୁଁ ଆଚମ୍ବିତ ଦୃଶ୍ୟ
ଅତିଶୟ କ୍ରୋଧଭରେ ହୋଇ ସେହି ଋଷି
ସୁଦେବ ରାଜନ ସେଠାବରେ ଛନ୍ତି ବସି ।
ନଳ କରିବାର ସେ ଅନ୍ୟାୟ ଆଚରଣ
କରୁ ନାହାନ୍ତି ରାଜନ ତାକୁ ନିବାରଣ ।
ଦୁରାତ୍ମା ନଳ ଦୁଃକର୍ମ କରେ ବଳାତ୍କାରେ
ଋଷି ପତ୍ନୀ କାନ୍ଦେ ତହିଁ ଅତି ବିକଳରେ ।
ପ୍ରମତି ଋଷି ସ୍ୱନେତ୍ରେ ଦେଖିଣ ଏସନ
ସମ୍ଭାଳ ହୋଇଣ ରହି ନ ପାରି ତକ୍ଷଣ ।
ନୃପତି ମୁଖକୁ ଚାହିଁ ବୋଇଲେ ଏମନ୍ତ
କ୍ରୋଧେ ଜର ଜର ହେଉ ଥାଆନ୍ତି ପ୍ରମତି ।
ବୋଇଲେ ରାଜନ ହୋଇ ତୋର ସମ୍ମୁଖରେ
ମନ୍ଦ ଆଚରଣ ଏକ ଦୁରାତ୍ମା କରେ ।

ଯଥା ବିହିତରେ ନିବର୍ତ୍ତାଅ ଏ କଥାକୁ
ତୁମ୍ଭେ ଯେ ନୃପତି ତେଣୁ ଜଣାଉ ତୁମ୍ଭକୁ ।
ଶାସନ କରତା ତୁମ୍ଭେ ଅଟ ସଭିଙ୍କର
ଦଣ୍ଡମଣ୍ଡ ବିଧି କର୍ତ୍ତା ତୁମ୍ଭେ ନରେଶ୍ୱର ।
ନେତ୍ରେ ତ ଦେଖୁଛ ଏହି ନଳ ଦୁରାଚାରୀ
ମୋହର ଭାର୍ଯ୍ୟାକୁ ବଳେ ନେଉଅଛି ହରି ।
ପ୍ରମତିଙ୍କଠାରୁ ଏହା କରନ୍ତେ ଶ୍ରବଣ
ନଳର ଗୌରବେ ବୋଲେ ସୁଦେବ ରାଜନ
ଶୁଣ ଶୁଣ ଆହେ ଋଷିବର ମହାମତି
ମୁହିଁ ଅଟେ ବୈଶ୍ୟ ନୁହେଁ କ୍ଷତ୍ରିୟ ସନ୍ତତି
ଏଣୁ ତୁମ୍ଭ ପତ୍ନୀ ଏଥୁ ରକ୍ଷାହେବା ପାଇଁ
ଅନ୍ୟ କ୍ଷତ୍ରିୟର ପାଶେ ଯାଅ ବେଗ ହୋଇ
ବୈଶ୍ୟ ବୋଲି ପରିଚୟ ଦେଲେ ଯହୁଁ ନୃପ
ପ୍ରମତିଙ୍କ ହୃଦେ ବଢ଼ିଗଲା ମହା କୋପ ।
କ୍ରୋଧେ ଜର ଜର ହୋଇ ବୋଇଲେ ତକ୍ଷଣ
ସତ୍ୟ ଏହା ବୈଶ୍ୟ ତୁମ୍ଭେ ଅଟ ହେ ରାଜନ
ଯେ ଜନ ରକ୍ଷା କରଇ କ୍ଷତରୁ ସଂସାରେ
କ୍ଷତ୍ରିୟ ବୋଲିଣ ଜନ ଗଣନ୍ତି ତାହାରେ ।
ଭୀତ ହୋଇ କେହି ପଛେ କରନ୍ତେ ଚିତ୍କାର
ଏ ହେତୁ କ୍ଷତ୍ରିୟ ଅସ୍ତ୍ର ଧରେ ନିରନ୍ତର ।
ତୁମ୍ଭର ଯେ ତାହା ନାହିଁ ଦେଖି ମୁଁ [illegible]ନୟନ
ଭାବୁଛି ତୁମ୍ଭେ କ୍ଷତ୍ରିୟ ନୁହ କଦାଚନ ।
ଅଦ୍ୟାବଧି ହେଲେ ତୁମ୍ଭେ ବୈଶ୍ୟ କୁଳାଙ୍ଗାର
ସତ୍ୟ ସତ୍ୟ ମୋର ବାକ୍ୟ ଘଟିବ ନିକର ।
ଏମନ୍ତେ ପ୍ରମତି ଋଷି ଦେଲେ ଅଭିଶାପ
କେ ଖଣ୍ଡି ପାରିବ ସେହି ମହାତ୍ମାଙ୍କ କୋପ ।
ଏହା କହି ସୁତ ମୁନି ହୋଇଲେ ମଉନ
ଗୀତ ଛନ୍ଦେ ଭାବି ଲେଖେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ
ପ୍ରମତି ଶାପ କଥନଂ
ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ
## ନାଭାଗ ଚରିତ୍ର ବର୍ଣ୍ଣନ
### ସୂତ ଉବାଚ

ତସ୍ମୈ ଦତ୍ତ୍ୱା ତତଃ ଶାପଂ
ନଳଂ କ୍ରୁଦ୍ଧୋଽଗ୍ନିର୍ଦ୍ଦଦହ
ପ୍ରମତି ର୍ଭାର୍ଗବଃ କୋପାତ୍
ତ୍ରୈଲୋକ୍ୟଂ ନିର୍ଦ୍ଦହନ୍ନିବ ।

ଭୃଗୁବଂଶୀ ମହାମତି ପ୍ରମତି ବ୍ରାହ୍ମଣ
ନୃପତିଙ୍କୁ ଶାପ ଦେଇ ଅନନ୍ତ ରୋଷେଣ ।
ରୋଷ ଅନଳରେ ଜାଳି ପୋଡ଼ି ଚରାଚର
ନଳକୁ ବୋଲେ ପୁଣ ଆରେରେ ପାମର ।
କାମେ ମତ୍ତ ହୋଇ ତୁହି ମୋର ଆଶ୍ରମରେ
ବଳତ୍କାରେ ହରିଲୁ ମୋ ପତ୍ନୀକୁ ଏଠାରେ ।
ଏଣୁ ତୋତେ ଶାପ ଆଜ ଦେଉଅଛି ମୁହିଁ
ଅବିଳମ୍ବେ କୁଳାଙ୍ଗାର ଯାଅ ଭସ୍ମ ହୋଇ
ମୋର ବାକ୍ୟ ଖଣ୍ଡିବାକୁ ଅଛି କେ ସମର୍ଥ
ଏମନ୍ତେ ଦେଲେକ ଶାପ ହୋଇ କ୍ରୋଧାନ୍ୱିତ
ଶୁଣ ଆହେ ତପିଗଣ ଦେଇ ମନକର୍ଣ୍ଣ
ସେ କାଳେ ହୋଇଲା ଏକ ଆଶ୍ଚର୍ଯ୍ୟ ଘଟନ
ନଳ ଶରୀରରୁ ଅଗ୍ନି ହୋଇଲା ବାହାର
ଦେଖୁ ଦେଖୁ ତାକୁ ଭସ୍ମ କଲା ଖରତର ।
ସୁନେତ୍ରେ ଦେଖିଣ ପ୍ରମତିଙ୍କ କରାମତି
ସୁଦେବ ରାଜନ ଭୟେ ଥରିଲେକ ଅତି ।
ପ୍ରମତି ଚରଣେ ବାରବାର ନମିକରି
ଅତି ବିନୟ ବଚନେ ନମସ୍କାର କରି ।
କ୍ଷମାକର ଅପରାଧ ଆହେ ତପୋଧନ
ମଦ୍ୟପାନେ ନଥିଲା ମୋ ହିତାହିତ ଜ୍ଞାନ ।
ଏଣୁ ମୋହର ଉପରେ ପ୍ରସନ୍ନ ହୋଇଣ
ସକଳ ଦୋଷ କ୍ଷମନ୍ତୁ ଋଷିଙ୍କ ପ୍ରଧାନ ।
ଏହିପରି ଯହୁଁ ରାଜା ନିବେଦନ କଲେ
ପ୍ରମତିଙ୍କ କ୍ରୋଧ ଶାନ୍ତ ହେଲା ମାତ୍ର ଭଲେ ।
ସଧୀରେ ବୋଇଲେ ତାକୁ ଶୁଣସି ରାଜନ
ଅନ୍ୟଥା ନୁହଇ କେଭେ ମୋହର ବଚନ ।
ବୈଶ୍ୟତ୍ୱ ଲଭିବୁ ତୁହି ନାହିଁ ସେ ସଂଶୟ
ତେବେ କଥାଏ କହୁଛି ଶୁଣ ନରରାୟ ।
ଏହି ଜନମରେ ପୁଣି ହୋଇବୁ କ୍ଷତ୍ରିୟ
ତାହାର ଉପାୟ ମୋହଠାରୁ ଶୁଣିଯାଅ ।
ଯେ କାଳେ କେହି କ୍ଷତ୍ରିୟ ବଳ ସହକାରେ
ତୋର ଦୁହିତାଙ୍କୁ ହରି ଘେନିଯିବ ଥରେ ।
କ୍ଷତ୍ରିୟତ୍ୱ ପୁଣି ଲାଭ କରିବୁ ସେ କ୍ଷଣ
ମୋର ବାକ୍ୟ ମିଥ୍ୟା ନ ହୋଇବ କଦାଚନ
ଏତେ ବୋଲି ବୈଶ୍ୟ କନ୍ୟା ପତିରେକହଇ
ଉଚିତରେ ମୋର ପିତା ସୁଦେବ ଅଟଇ ।
ଏହିରୂପେ ବୈଶ୍ୟ ମୋର ପିତା ମହାଶୟ
ଅଟନ୍ତି ସେ ଯଥାର୍ଥରେ ପ୍ରଧାନ କ୍ଷତ୍ରିୟ ।
ମୁଁ କଏ ସେକଥା ଏବେ କରସି ଶ୍ରବଣ
ଶୁଣିଲେ ବୁଝିବ ସବୁ ଆହେ ପ୍ରାଣଧନ ।
ସୁରଥ ନାମରେ ପୂର୍ବେ ରାଜର୍ଷି ଥିଲେ
ଅରଣ୍ୟ ଆଶ୍ରୟ କରି ସେ ତହିଁ ରହିଲେ ।
ତେଜଣ ଆହାର ନିଦ୍ରା ଭୟ ମଇଥୁନ
ଗନ୍ଧମାର୍ଦ୍ଦନରେ କଲେ କାଳକୁ ଯାପନ ।
ଏକଦିନେ ଶରୀରଟି ସଞ୍ଚାଣ ଭୟରେ
ଆଚମ୍ବିତେ ତଳେ ପଡ଼ୁଁ ତାଙ୍କ ସମ୍ମୁଖରେ
ତା ଦେଖି ହୃଦୟେ ହେଲା ଦୟା ତାହାଙ୍କର
ମୂର୍ଚ୍ଛା ହେତୁ ଜ୍ଞାନ ନାହିଁ ସେହି ସାରୀକାର ।
ମୂର୍ଚ୍ଛା ଅନ୍ତେ ସେହି ପକ୍ଷୀ ହୋନ୍ତେସଚେତନ
ତା ଦେହରୁ ମୁହିଁ ଜନମିଲି ତତକ୍ଷଣ ।
ଏମନ୍ତ ଦେଖନ୍ତେ ସ୍ନେହ କଲେ ଋଷିମାନେ
ଆଉଁଷି ପାଉଁସି କୋଳାଇଲେ ସେ ସାଦରେ
ଧୈରଧାଭରେ କହିଲେ ଏସନ ବଚନ
ମୋ କୃପାରୁ ଜନମିଛି ଏ କନ୍ୟା ରତନ ।
ଏଣୁ ଏହା ନାମ ଗୋଟି ଦେଲି କୃପାବତୀ
ଏତେବୋଲି ମୋତେପାଳିଲେସେ ଯତ୍ନେଅତି
ଦିନକୁ ଦିନ ବଢ଼େ ମୁଁ ରହି ସେ ଆଶ୍ରମେ
ଏ ବନେ ସେ ବନେ ସଖୀଗଣ ସଙ୍ଗେ ଭ୍ରମେ
ଅଗସ୍ତ୍ୟଙ୍କ ଭାଇ ଥିଲେ ସେ ଅତି ଉତ୍ତମ
ସର୍ବଗୁଣେ ସେହି ଋଷି ଅଗସ୍ତ୍ୟଙ୍କ ସମ ।
ବନ ମଧ୍ୟେ ଫଳ ମୂଳ ସେହୁ ତୋଳୁଥିଲେ
ସଖୀମାନେ ତାଙ୍କ ମନେ କ୍ରୋଧ ଜନ୍ମାଇଲେ
ବୈଶ୍ୟ ଶବ୍ଦ ମୁଖେ ଉଚ୍ଚାରଣ ସଖୀଗଣ
କେତେ ଉପହାସ କଲେ ତାହାଙ୍କୁ ସ୍ୱହିଁଣ ।

ମୋତେ ସେହିକାଳେ ଶାପଦେଲେ ତପୋଧନ
ବୈଶ୍ୟ କହିଲେକ ଯେଣୁ ତୋର ସଖୀଗଣ
ମୋହର ବଚନେ ତୁହି ବୈଶ୍ୟ ସୁତା ହେବୁ
ସହଜରେ ମୋ ଶାପରୁ ନିସ୍ତାର ପାଇବୁ ।
ଶାପ ଶୁଣି ଭୟେ ମୁହିଁ ହୋଇଲି କାତର
ଅପାର ଦଇନ୍ୟ କଲି ଚରଣେ ତାଙ୍କର ।
ଅତି ବିନୟ ବଚନେ ବୋଇଲି ତାହାଙ୍କୁ
କେଉଁ କାରଣରୁ ମୋତେ ଦେଲ ଏ ଦଣ୍ଡକୁ
ତୁମ୍ଭଠାରେ ଅପରାଧ କରିନାହିଁ ମୁହିଁ
ମୋ ଉପରେ ଏତେ କ୍ରୋଧ ହୁଅ କାହିଁପାଇଁ
ସେ କାଳେ କହିଲେ ଋଷି ଶୁଣି ଚନ୍ଦ୍ରାନନେ
ଦୁଷ୍ଟର ସଂସର୍ଗେ ପାପ ଅବଶ୍ୟ ଜନମେ ।
ଦୁଷ୍ଟଙ୍କ ସଂସର୍ଗେ ଦୁଷ୍ଟ ହୁଅନ୍ତି ନିଶ୍ଚୟ
ତାର ଦଣ୍ଡବିଧି ଅଛି ଶାସ୍ତ୍ରରେ ନିର୍ଣ୍ଣୟ ।
ବିନ୍ଦୁଏ ସୁରା ଯଦ୍ୟପି ପଡେ ପଞ୍ଚଗବ୍ୟେ
ସେହି ପଞ୍ଚଗବ୍ୟ ନଷ୍ଟ ହୋଇଯାଏ ତେବେ
ଯାହାହେଉ ତୋଠାରେ ମୁଁ ତୋଷ ଅତିଶୟ
ଏଣୁ ଦୟାବଶେ ନିଶ୍ଚେ କରିବି ଉପାୟ ।
ବୈଶ୍ୟର ଗୃହରେ ତୁହି ଜନମ ଲଭିଣ
ପୁତ୍ରକୁ ରାଜ୍ୟଲାଭରେ କରିବୁ ପ୍ରେରଣ ।
ସେହି କାଳେ ଜାତି ସ୍ମୃତି ଜନ୍ମିବ ତୋହର
ପତି ସଙ୍ଗେ ସନ୍ନିଧି ପାଇବୁ ଆବର ।
ସେହିକାଳେ ସୁଖଭୋଗ କରିବୁ ଗୋ ଧନ୍ୟା
ଏବେ ମୁଁ ଯାଉଛି ଚଳି ଆଗେ ସୁବଦନା ।
ଏହିରୂପେ ଶାପ ଦେଇଥିଲେ ତପୋଧନ
ପିତା ସେ ପ୍ରମତି ଶାପେ ହୋଇଲେ ପତନ
ଏହେତୁ କହୁଛି ଶୁଣ ହେ ନାଥ ତୁମ୍ଭରେ
ତୁମ୍ଭେ କେବେ ବୈଶ୍ୟ ନୁହ ବୁଝ ବିହିତରେ
ମୋର ପିତା ମଧ୍ୟ ବୈଶ୍ୟ ନୁହନ୍ତି ଜାଣ
ତୁମ୍ଭେ ମୁହିଁ ଦୋଷଗ୍ରସ୍ତ ନୋହୁ କଦାଚନ ।
ତେବେ ମୋହର ସଂସର୍ଗେ ଆହେ ଗୁଣମଣି
କିରୂପେ ତୁମ୍ଭେ ପତିତ ହେବ କହ ପୁଣି ।
ଏମନ୍ତେଣ ବୈଶ୍ୟ ସୁତା ନିଜ ପତି ଆଗେ
ପ୍ରବୋଧ କରି କହିଲା ଅତି ଅନୁରାଗେ ।
ଏ ବଚନ କର୍ଣ୍ଣେ ଶୁଣି ମୁନି ଶଉନକ
ବୋଇଲେ ସୁତ ମୁନିଙ୍କୁ ପୌରାଣିକ ବାକ୍ୟ

ଆହେ ପୁରାଣ ପାଠକ କହିଲ ଯେ ଭଲ
ଏଥି ଅନ୍ତେ ସମାଚାର କହ କସ ହେଲ ।
ପରମ ପବିତ୍ରମୟ ନାଭାଗ ଚରିତ
ଶ୍ରବଣ ମାତ୍ରକେ ଆମ୍ଭେ ହେଲୁ ଆନନ୍ଦିତ ।
ଧନ୍ୟ ସେହି ପବିତ୍ରତା ନାଭାଗର ପ୍ରିୟା
ବୁଝାଇଲା ରାଜଧର୍ମ ରାଜମାତ ହିୟା ।
ଯାହା ହୋଇବ ଏଣିକି ଆହେ ତପୋବନ୍ତ
ଏବେ ସଂକ୍ଷେପିଣ ତାହା କହ ସେ ଚରିତ ।
ଶୌନକ ମୁନିଙ୍କ ପ୍ରଶ୍ନ କର୍ଣ୍ଣପଥେ ଶୁଣି
କହି ଆରମ୍ଭିଲେ ପୌରାଣିକ ସୁତ ମୁନି ।
ସେହି ସାଧୁଜନଙ୍କର ଶ୍ରୀଚରଣ ଧୂଳି
କ୍ଷେତ୍ର ମୋହନର ହେଉ ମସ୍ତକ ମଣ୍ଡଳି ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ
ନାଭାଗ ଚରିତ ବର୍ଣ୍ଣନଂ ନାମ ଷଷ୍ଠୋଽଧ୍ୟାୟଃ

—✦—

## ସପ୍ତମ ଅଧ୍ୟାୟ
## ଭଳନନ୍ଦନ ଲକ୍ଷ୍ମୀଶ୍ରୀ ଚରିତ ବର୍ଣ୍ଣନ

ସୁତ ଉବାଚ

ଇତି ତସ୍ୟା ବଚଃଶ୍ରୁତ୍ୱା
ପୁତ୍ରସ୍ୟ ସ ଚ ପାର୍ଥିବଃ
ପୁନ ପ୍ରୋବେଚ ଧର୍ମଜ୍ଞ
ସ୍ତ୍ରୀଂ ପତ୍ନୀଂ ତନୟଂ ତଥା ।

ସୁତ ମୁନି କହନ୍ତି ଯେ ଶୁଣ ତପୋଧନ
ପତ୍ନୀ ପୁତ୍ରଙ୍କ ବଚନ କରନ୍ତେ ଶ୍ରବଣ ।
ପୁନଶ୍ଚ ନୃପତି କହେ ଆପଣା ନନ୍ଦନେ
ରାଜ୍ୟ ତେଜିଛି ପିତାଙ୍କ ଆଦେଶ ବଚନେ ।
ପୁନରାୟ ତାହା ମୁଁ ନ କରିବି ଗ୍ରହଣ
ବୃଥା ବାକ୍ୟ ବ୍ୟୟେ ଆଉ କିବା ପ୍ରୟୋଜନ
ତୁହି ବାବୁ ରାଜ୍ୟ କର ସୁଖେ ଆନନ୍ଦରେ
ନିୟମିତ କରି ମୁହିଁ ଦେବଇଁ ତୋ କରେ ।
ଦେଖ ମୁଁ ବୈଶ୍ୟ ବୃତ୍ତିକୁ ଆଶ୍ରୟ କରିଛି
ଏ ରୂପେ ଜୀବନ ମୋର କ୍ଷୟ ହେଉଅଛି ।
ଇଚ୍ଛା ହୁଏ କରି ରାଜ୍ୟ ନୁହେ ତେଜିବାର
ରାଜ୍ୟରୁ ଯେ ପରାଙ୍ମୁଖ ମୋହ ଅନ୍ତରର ।

ଶ୍ରବଣେ ଶୁଣନ୍ତେ ପିତାମୁଖଁୁ ଏହି ଗିର
ରାଜ୍ୟ ଶାସନରେ ମନ ହେଲା ଭନନ୍ଦର ।
ତାହାର ବଶ ହୋଇଲେ ଅନ୍ୟ ରାଜାଗଣ
ଚଉଦିଗେ ଯଶ ରାଶି ହୋଇଲା ଘୋଷଣ ।
ନାନା ଯଜ୍ଞମାନ କରେ ବିହିତ ବିଧାନେ
ଦୁଃଖୀ ରଙ୍କିକ ତୋଷଇ ଅନ୍ନବସ୍ତ୍ର ଦାନେ ।
ବ୍ରାହ୍ମଣ ବୈଷ୍ଣବ ସେବା ଅତିଥି ଆସନ୍ତ
ଧନ ରତ୍ନ ଦାନେ ତୋଷ କରେ ତାଙ୍କ ମତ
ଦୟା କ୍ଷମା ସତ ଶାନ୍ତ ଗୁଣେ ବିଚକ୍ଷଣ
ଅନବରତେ ସେ ନ୍ୟାୟ ଧର୍ମ ପରାୟଣ ।
ରାଜ୍ୟ ମଧ୍ୟରେ ଯେତେକ ପ୍ରଜା ନାରୀ ନର
ଅଧର୍ମ ମାର୍ଗରେ ମତି ନ ଗଲା କାହାର ।
ସମସ୍ତେ ମହା ସୁଖରେ ନେଲେ ନିଶିଦିନ
କାହାର ଅଭାବ କିଛି ନୁହେ କଦାଚନ ।
ବିଷ୍ଣୁ ପୂଜା ଶିବ ପୂଜା ଆଦି ଶୁଭ କର୍ମେ
ରତ ହେଲେ ପ୍ରଜାମାନେ ସର୍ବେ ଦାନଧର୍ମେ
ରୋଗ ଶୋକ ଦୁଃଖ କାହାକୁହିଁ ନ ବାଧଇ
ହସି ଉଠିଲା ଧରଣୀ ଉଲ୍ଲସିତା ହୋଇ ।
ଧେନୁମାନେ ବିଶେଷରେ ହେଲେ ଦୁଗ୍ଧବତୀ
ଆନନ୍ଦରେ ପ୍ରାଣୀମାନେ କାଳକୁ ହରନ୍ତି ।
ଅଶନ ବସନ ଚିନ୍ତା ନ ରହିଲା କାର
ଏହିରୂପେ ରାଜ୍ୟ ପାଳେ ଭନନ୍ଦନ ବୀର ।
ପୃଥିବୀରେ ଏକମାତ୍ର ହେଲା ଚକ୍ରବର୍ତ୍ତୀ
ଜଗତ ଯାକରେ ଖ୍ୟାତ ତାର ଯଶ କୀର୍ତ୍ତି ।
ଭାଗ୍ୟେ ଜନମିଲା ତାର ଗୋଟିଏ ନନ୍ଦନ
ବସୁଶ୍ରୀ ନାମ ତାହାର ରୂପ ସୁଶୋଭନ ।
ନାନା ଗୁଣରେ ଭୂଷିତ ସେ ରାଜକୁମାର
ସୁଯଶରେ ପୂରିଲା ଯେ ଏ ତିନି ସଂସାର ।
ସୌନନ୍ଦା ନାମେଣ ବିଦୂରଥର ନନ୍ଦିନୀ
ସେହି ସୁନ୍ଦରୀ ହେଲା ତା ପ୍ରେୟସୀ ରମଣୀ ।
ପତିବ୍ରତା ସତୀ ମାଧବୀ ସେ ସୁକୁମାରୀ
ସଂସାରେ କେ ନାହିଁ ଦେଖା ତାହାସମ ନାରୀ
କୁଜମ୍ଭ ନାମରେ ଏକ ଦାନବ ପ୍ରଧାନ
ତାକୁ ବଧ କଲା ବୀର ବସୁଶ୍ରୀ ଧୀମାନ ।
ଭକ୍ତିଭାବେ ସାଧୁଜନେ ସେ ପୂଜା କରଇ
ଦୁଷ୍ଟମାନଙ୍କୁ ଦେଖିଲେ ବଳେ ସଂହାରଇ ।
ମତି ତାର ଦିବାରାତ୍ରି ଶୁଭକର୍ମେ ଥାଏ
ଦୟାଧର୍ମେ ବିଚକ୍ଷଣ ସେହୁ ନର ରାୟେ ।

ଶୌନକ ଉବାଚ

ଶୌନକ ପୁଚ୍ଛା କରନ୍ତି ଆହେ ସୂତବର
କୁଜମ୍ଭ ନିଧନ କଥା କହନ୍ତୁ ସତ୍ୱର ।
ବସୁଶ୍ରୀ କପରି ତାକୁ ଧରାଇଲା ନାଶି
ଦାରୁଣ ଦଇତ୍ୟ ସେ ଯେ ବଡ଼ଇ ସାହସୀ ।
ସେହି ଦୁଷ୍ଟର ଅଟଇ ଭୀଷଣ ଆକୃତି
ତା ମରଣ ଗାଥା କୁହ ମଲା ସେ କେମନ୍ତି ।
ଏମନ୍ତ ଶୁଣି କହିଲେ ପୌରାଣିକ ସୂତ
ଶୁଣ ଆହେ ଶଉନକ ଆମ୍ଭର ଚରିତ ।
ଯାହା ଶୁଣିଲେ ଆଶ୍ଚର୍ଯ୍ୟ ହେବ ତପୋଧନ
ବିସ୍ତାର ଭାବରେ ତାହା କରୁଛି ବର୍ଣ୍ଣନ ।
ବିଦୁରଥ ନାମେ ରାଜା ଥିଲା ପୂର୍ବକାଳେ
ଅଖଣ୍ଡ ପ୍ରତାପ ତାର ଏ ମହୀ ମଣ୍ଡଳେ ।
ଲଭିଲେ କୁମର ଦୁଇ କ୍ରମରେ ତାହାର
ସୁମତି ସୁମନ୍ତ ନାମ ଗୁଣେ ଅସୁମାର ।
ବିଦୁରଥ ଏକଦିନେ ମୃଗୟାକୁ ଗଲା
ଅପାର ସେନା ବାହିନୀ ସଙ୍ଗତରେ ନେଲା ।
ଦେଖିଲା ଏକ ଗହ୍ୱର ବଡ଼ାଇ ଭୀଷଣ
ତାହାକୁ ଦେଖନ୍ତେ ରାଜା ଭାବିତ ସେ ମନ ।
ଏହିପରି ନିଜମନେ ଭାବଇ ରାଜନ
ସହସା ଏକ ତପସ୍ୱୀ କଲା ଦରଶନ ।
ତାହାକୁ ଦେଖିଣ ନୃପ ବଚନ ପଚାରେ
କିସ ଅଛି କୁହ ଏକ ଗହ୍ୱର ଭିତରେ ।
ସକଳ ରାଜାଏ ତାହା ହୋଇବେ ବିଦିତ
ଏହିତ କର୍ତ୍ତବ୍ୟ କର୍ମ ଅଟଇ ଉଚିତ ।
ଶୁଣନ୍ତୁ ଏ ଗୋପ୍ୟ କଥା ପଚାରିଲା ଯାହା
ହୃଦୟ ବିସ୍ମୟ ମୁହିଁ ମଣୁଅଛି ତାହା ।
ରସାତଳେ ବାସକରେ ସେ ଦୁଷ୍ଟ ଅସୁର
ଧରାକୁ ସବୁ ପରାୟେ ମଣଇ ମନର ।
କୁଜମ୍ଭ ନାମ ତାହାର ଯେଉଁ କାରଣରେ
ତା ଏକ ଅଦ୍ଭୁତ କଥା ଶୁଣନ୍ତୁ ସତ୍ୱରେ ।
ପୂର୍ବେ ବିଶ୍ୱକର୍ମା ଗଢ଼େ ଏକଇ ମୁଷଳ
ସୁନନ୍ଦ ତାହାର ନାମ ଅତ୍ୟନ୍ତ ବିମଳ ।

ଦୁରାତ୍ମର ଦାନବ ସେ ମୂଷଳକୁ ନେଇ
ତହିଁରେ ଦୁଷ୍ଟ ଶତ୍ରୁଙ୍କୁ ବିନାଶ କରଇ ।
ପାତାଳ ପୁରରେ ଥାଇ ଦାନବ ରାଜନ
ମୂଷଳେ ପୃଥିବୀକି ସଦା କରେ ବିଦାରଣ ।
ସେ ଦୁଷ୍ଟ ଏହି ଗର୍ତ୍ତକୁ ନିର୍ମାଣ କରିଛି
ଶୁଣ ଆହେ ନୃପମଣି ଯାହା କହୁଅଛି ।
ତାହାକୁ ଯଦ୍ୟପି ତୁମ୍ଭେ ନ କରିବ ଜୟ
କେମନ୍ତେ ଭୋଗିବ ମହୀ କହ ନରରାୟ ।
ପ୍ରଧାନ ଆୟୁଧ ତାର ଅଟଇ ମୂଷଳ
ଆଉ ଏକ ନାମ ତାର ଶୁଣ ମହୀପାଳ ।
ନାରୀଜାତି ଯଦି କେହି ଛୁଏଁ ସେ ମୂଷଳ
ନାଶ ହୋଇଯାଏ ସାଥେ ସାଥେ ବୀର୍ଯ୍ୟବଳ
ସେ ଦିନଠି ବୀର୍ଯ୍ୟହୀନ ହୋଇ ସେ ମୂଷଳ
ଆରଦିନ ପୁଣି ବୀର୍ଯ୍ୟ ଧରଇ ପ୍ରବଳ ।
ନାରୀ ସ୍ପର୍ଶେ ହୀନ ବୀର୍ଯ୍ୟ ସେ ମୂଷଳ ହୁଏ
ଏହା ନ ଜାଣଇ ଦୈତ୍ୟ କୌଣସି ସମୟେ
ସବୁକଥା ତୁମ୍ଭ ଆଗେ କହିଲି ରାଜନ
ଏବେ ହୋ ଉଚିତ ଯାହା କରନ୍ତୁ ବିଧାନ ।
ସମ୍ମୁଖେ ଏ ଗର୍ତ୍ତ ତୁମ୍ଭେ ନୟନେ ଦେଖୁଛ
କେମନ୍ତେ ନିଶ୍ଚିନ୍ତ ମନେ ଏଠାରେ ରହୁଛ ।
ମହାଭୟଙ୍କର ସ୍ଥାନ ଅଟେ ଏହା ଜାଣ
ଦାରୁଣ ଦାନବ କରୁଁ ନ ବର୍ତ୍ତନ୍ତି ଜନ ।
ସାବଧାନ ହୋଇ ରାଜା ନିଜ କାର୍ଯ୍ୟ କର
ଦୈତ୍ୟକୁ ବଧିଲେ ଯଶ ବଢ଼ିବ ଅପାର ।
ଏତେ କହି ଚଳିଗଲେ ତହୁଁ ତପୋଧନ
ନିଜର ଉଆସେ ବାହୁଡ଼ିଲେ ସେ ରାଜନ ।
ପାଶକୁ ହକାରି ମନ୍ତ୍ରୀମାନଙ୍କୁ ବହନ
ଆଦ୍ୟ ପ୍ରାନ୍ତ କରି ସବୁ କରିଲେ ବର୍ଣ୍ଣନ ।
ମୁଦ୍ରାବତୀ ବୋଲି ନାମ ଅଟେ ସେ କନ୍ୟାର
ସେହିକାଳେ ଥିଲା ଯହିଁ ବିଜୟ ଈଶ୍ୱର ।
ପିତାଙ୍କ ମୁଖରୁ ସବୁ ଶ୍ରବଣ କରିଣ
ମଜ୍ଜନ ଭାବେ ସେଠାରୁ ଗଲେ ତତକ୍ଷଣ ।
କିଛିଦିନ ଏହିପରି ଭାବେ ଯାନ୍ତେ ବହି
ସହଚରୀ ଗଣ ସଙ୍ଗେ ମୁଦ୍ରାବତୀ ତହିଁ ।
ଉପବନ ବିହାରକୁ ଚଳିଲା ବହନ
ସେଠାରେ ହୋଇଲା ଯାହା ମନଦେଇ ଶୁଣ

କୁଜୃମ୍ଭ ଆସିଣ ସେହି ଉଦ୍ୟାନ ଭିତରେ
ରାଜ ଜେମାକୁ ହରଣ କରିନେଲା ଖରେ ।
ଭୂମଣ୍ଡଳେ ଦେଖାନାହିଁ ଏଡ଼େ ଅତ୍ୟାଚାରୀ
ନିର୍ଭୟରେ ସବ କାର୍ଯ୍ୟ କରେ ଦୁରାଚାରୀ ।
ଯହୁଁ ରାଜ ଦୁଲାଳୀକୁ ନେଲା ଦୁରାତ୍ମର
ଶୁଣି ପାରିଲେ ସେ କଥା ମୁଢ଼ ନୃପବର ।
ଅତି କୋପାନଳ ହୋଇ ସେଠା ନରପତି
ପୁତ୍ର ଦୁହିଁକି ହକାରି ଦେଲେ ଅନୁମତି ।
ନର୍ମଦା ନଦୀର ତଟେ ଅଛି ଯେ ଗହ୍ୱର
ସେହି ପଥେ ଯାଅ ଶୀଘ୍ର ପାତାଳ ନଗର ।
କୁଜୃମ୍ଭ ନୃପତି ତହିଁ କରଇ ବସତି
ସେ ଦୁଷ୍ଟ ହରି ନେଇଛି ପୁଣି ମୋ ଯୁବତୀ ।
ପିତାଙ୍କ ଆଦେଶ ପାଇ ପୁତ୍ର ବେନିଜନ
ସେହିପଥ ମାର୍ଗେ କଲେ ପାତାଳେ ଗମନ ।
ରାଜକୁମାର ଦୁହିଁକି ଦେଖନ୍ତେ ନୟନେ
ସେ ଦାନବ ବୀର ରାଗିଗଲା ତତକ୍ଷଣେ ।
ତାହା ସଙ୍ଗେ ରଣ ଘୋର କଲେ ଦୁଇଭାଇ
ନାନା ଅସ୍ତ୍ର ପ୍ରହାରିଲେ ଶରୀରେ ନିଠାଇ ।
ଶକତି ଶୂଳ ପରଶୁ ପରିଘ କଟାରୀ
କୁନ୍ତ ଭଲ୍ଲ ଛୁରି ଶାବେଳୀ ଯେ ତରବାରୀ ।
କେତେ ଅସ୍ତ୍ର ଶସ୍ତ୍ର ମାନ କେବା ଗଣିପାରେ
ଦାନବ ଅଙ୍ଗେ ପ୍ରହାର କଲେ ସେ କ୍ରୋଧରେ
ସେ ଦୈତ୍ୟ ସଙ୍ଗରେ ପୁଣି କରିବାକୁ ରଣ
ସାଙ୍ଗେ ସାଙ୍ଗେ ନେଇଥିଲେ ଅପାର ସଇନ
ମେଘ ବର୍ଷା ହେବାପରି ସୈନ୍ୟଙ୍କର ବାଣ
ଗଦା ହୋଇ ପଡ଼ୁଥାଏ ସମର କ୍ଷେତ୍ରେଣ ।
ବହୁତ ସମୟ ଯାଏ ହୋଇଲା ସମର
ନ ଡରଇ ତିଳେ ସେହି ଦାନବ ପାମର ।
ଆଣ୍ଟେ ପ୍ରହାରି କରଇ ମୂଷଳକୁ ଧରି
ଅସଂଖ୍ୟ ସୈନ୍ୟଙ୍କୁ ସେ ପକାଉଥାଏ ମାରି ।
ତାହାପରେ ବନ୍ଧକରି ବେନି ରାଜପୁତ୍ରେ
ରଖିଲା ପାତାଳ ପୁରେ ଭୟ ଶୂନ୍ୟ ଚିତ୍ତେ ।
ଏଣେ ନୃପତିଙ୍କ ପାଶେ ଗଲା ଯେ ସନ୍ଦେଶ
କାତର ହୋଇଲେ ଏହା ଶୁଣି ନରଈଶ ।
ସଇନ୍ୟ ମାନଙ୍କୁ ବୋଧ କରିଣ କହିଲେ
ଆହେ ବୀରଗଣମାନେ ଶୁଣ ତୁମ୍ଭେ ହେଲେ ।

ଯେହୁ ବଧ କରିବ ସେ ଦାରୁଣ ଦୈତ୍ୟଙ୍କୁ
ଉଦ୍ଧାରିବ ବନ୍ଦଶାଳୁଁ ମୋ ବେନି ସୁତଙ୍କୁ ।
ଏହା ଯେ କରିବ ତାକୁ ମୋର କନ୍ୟା ଦେବି
ଗ୍ରାମ ଆଦି ଧନରତ୍ନ ଯଉତୁକ ଦେବି ।
ଏକଥା ପଡନ୍ତେ ହୁରି ଦେଶ ବିଦେଶରେ
ବତ୍ସଶ୍ରୀ ଏହି ବାରତା ଶୁଣିଲେ କର୍ଣ୍ଣରେ ।
ଭୂନନ୍ଦନ ସୁତ ସେ ଯେ ଅତି ବଳବନ୍ତ
ଧରଣୀରେ ଜଣେ କେହି ନାହିଁ ତା ସଙ୍ଗତ ।
ରାଜନଙ୍କ ଏ ଘୋଷଣା କରନ୍ତେ ଶ୍ରବଣ
ଚଞ୍ଚଳେ ଅଇଲେ ପିତୃ ସଖାର ସମାନ ।
ପ୍ରବେଶ ହୋଇଣ ନୃପତିଙ୍କ ସନ୍ନିଧାନେ
ଜଣାଇଲେ କରଯୋଡ଼ି ବିନମ୍ର ବଚନେ ।
ବୋଇଲା ତବ ଚରଣେ ନିବେଦନ ମୋର
ଆଜ୍ଞା ଦେଲେ ଚଳିବିଁ ମୁଁ ପାତାଳପୁର ।
ପ୍ରବେଶିଣ ସେ ପାତାଳେ ଆହେ ନରବର
ଅବଲମ୍ବି ଦଇତକୁ କରିବ ସଂହାର ।
ତବ ଦୁହିତା ରତ୍ନକୁ ଉଦ୍ଧାରି ଆଣିବି
ବନ୍ଦଶାଳାରୁ ଯେ ଦୁଇ ପୁତ୍ରେ ମୁକାଳିବି ।
ଏହା ପଣ କଲି ମୁହିଁ ନ ହୋଇବ ଆନ
ବେଗେ ଅନୁମତି ଦେବେ କରିବି ଗମନ ।
ଏ କଥା ଶୁଣି ସନ୍ତୋଷ ହୋଇ ନରପତି
ବୋଇଲେ ଅତ୍ୟନ୍ତ ପ୍ରୀତି ହେଲି ତୁମ୍ଭ ପ୍ରତି ।
ମୋହର ବଚନେ ବୀର ଦୟା ଲାଭ କରି
ବହନ ହୋଇଣ ଚଳ ଯେ ପାତାଳ ପୁର ।
ଏହି କାର୍ଯ୍ୟରେ ଯଦ୍ୟପି ଉଦଯୋଗି ଥାଅ
ଶୁଭହେଉ ଅବିଳମ୍ବେ ପାତାଳକୁ ଯାଅ ।
ଏରୂପେ ଆଦେଶ ଯହୁଁ ଦେଲେ ନରପତି
ଭୂନନ୍ଦନ ସୁତ ହେଲା ପୁଲକିତ ମତି ।
ଗମନ କରିବା ପାଇଁ ପାତାଳ ଭୁବନେ
ବୀର ବେଶକୁ ସାଜିଲା ପରମ ଯତନେ ।
ଖଡ଼ଗ ଧନୁଶର ସେ କଲକ ଧାରଣ
ଆଗୁଁ ଯାଇ ଦୈତ୍ୟ ସଙ୍ଗେ ସମର କାରଣ ।
ନିର୍ବିନ୍ଧ୍ୟା ନଦୀର ତଟେ ଯାଇ ଖରତରେ
ଦେଖିଲା ଅତି ଆଶ୍ଚର୍ଯ୍ୟ ଗହ୍ୱର ସେଠାରେ ।
ସେହି ଗର୍ଭ ବାଟେ କଲା ପାତାଳେ ଗମନ
ଧନୁରେ ଟଙ୍କାର ଦେଲା କରି ଘନ ଘନ ।

ସେ ଧନୁ ଟଙ୍କାରେ ପୂର୍ଣ୍ଣ ପାତାଳ ନଗର
ତାହା ଶୁଣି ରୋଷଭରେ କମ୍ପେ ଦୈତ୍ୟବର
ଆପଣା ସୈନ୍ୟମାନଙ୍କୁ ସଙ୍ଗରେ ଘେନାଇ
ତିଆରି ହୋଇଲା ରଣ କରିବାର ପାଇଁ ।
ମହାବଳୀ ସେ କୁଜମ୍ଭ ନିର୍ଭୟ ମନରେ
ଟଙ୍କାର ଉଦ୍ଦେଶି ସେହି ଦିଗେ ଧାଏଁ ଖରେ ।
ଦେଖିଲା ବତ୍ସଶ୍ରୀ ବୀର ଘେନି ସୈନ୍ୟଗଣେ
ଅପେକ୍ଷା କରି ରହିଛି ସଂଗ୍ରାମ କାରଣେ ।
ଗୃହିଁ ଦଅନ୍ତେ ଦୈତ୍ୟ ରୋଷେ ଜର ଜର
ଯୁଦ୍ଧ ଲାଗି ସେନା ତୁଲେ ହେଲା ଅଗ୍ରସର ।
ଦେଖୁଁ ଦେଖୁଁ ଲାଗିଗଲା ଯୁଦ୍ଧ ଘୋରତର
ଉଭୟେ ଯୁଝିଲେ ଆଶେ ଦୃଶ୍ୟ ଭୟଙ୍କର ।
ଏହିରୂପେ ଦିନଦିନ ଚଳିଲା ସଂଗ୍ରାମ
ଅସ୍ତ୍ର ଶସ୍ତ୍ର ବୃଷ୍ଟି ହୁଏ ନାହିଁ ଯେ ବିରାମ ।
ଦାନବ ମାନବ ଦୁହେଁ ଅତି ମହାବଳୀ
ଦୁଇଜଣଙ୍କର ବଳ ନ ହୁଅଇ କଳି ।
ଉଭୟେ ଜାଣନ୍ତି ଭଲେ ଯୁଦ୍ଧର କୌଶଳ
ତେଣୁ ଦୁଇଜଣ ଯାକ ସମରେ ଅଟଳ ।
ଜିଣିବା ହାରିବା ତାହାଙ୍କର ଦେଖାନାହିଁ,
ପ୍ରହାର କରନ୍ତି ଅସ୍ତ୍ର ଭୁହାଇ ଭୁହାଇ ।
ତାହାପରେ ରୋଷଭର ହୋଇ ଦୈତ୍ୟପତି
ଅନ୍ତ ପୁରରେ ପ୍ରବେଶ ହୋଇଲା ତଡ଼ିତି ।
ଆଣିବ ମୂଷଳ ଗୋଟା ମନରେ ପାଞ୍ଚିଣ
ଉଆସକୁ ଚଳିଗଲା ସେହୁ ତତକ୍ଷଣ ।
ଧାତାଙ୍କ ନିର୍ମିତ ସେହି ଅପୂର୍ବ ମୂଷଳ
ଦାଉ ଦାଉ ହୋଇ ତେଜେ ଝଟକେ କେବଳ
ପ୍ରକାଣ୍ଡ ମୂଷଳ ଗୋଟା ଅତି ଭୟଙ୍କର
ରଖି ଆସିଥିଲା ଦୁଷ୍ଟ ଅନ୍ତଃପୁରେ ତାର ।
ପ୍ରତିଦିନ ଗନ୍ଧ ମାଲ୍ୟ ଧୂପ ସହିତରେ
ସେହି ମୂଷଳକୁ ଦୈତ୍ୟ ପୂଜେ ଭକ୍ତିଭରେ
ମୂଷଳର ଯେଉଁରୂପେ ରହିଛି ଶକତି
ତାହା ଜାଣି ପାରିଥିଲା ଜେମା ମୁଦ୍ରାବତୀ ।
ତେଣୁ ସେ ମଥାକୁ ନୁଆଇଁ କରି ତତକ୍ଷଣ
ସେ ବିଶାଳ ମୂଷଳକୁ ଛୁଇଁଲା ବହନ ।
କୁଜମ୍ଭ ଗ୍ରହଣ କଲା ଯେ କାଳେ ମୂଷଳ
ସେତେବେଳେ ମୁଦ୍ରାବତୀ କରି ନାନା ଛଳ ।

ପୁନଃ ପୁନଃଶ୍ଚଶକରେ ମୂଷଳର ଦେହେ
ସେକ୍ଷଣି ମୂଷଳ ଧେନ ଦୈତ୍ୟପତି ଧାଏଁ ।
ରଣକ୍ଷେବେ ପଶି ଯହୁଁ କ୍ଷେପଇ ମୂଷଳ
କ ଆଶ୍ଚର୍ଯ୍ୟ ସବୁ ବ୍ୟର୍ଥ ସକଳ ନିଷ୍ଫଳ ।
ତାହା ଦେଖି ନାନା ଅସ୍ତ୍ର କରି ସେ ସ୍ମାରଣ
ବହ୍ରଶ୍ରୀ ଉପରେ କୋପେ କଲା ବରଷଣ ।
ମାତ୍ର ରାଜପୁତ୍ର ନ ହୁଅଇ ପରାଜୟ
ତା ଦେଖି ସେ ଦୈତ୍ୟପତି ମଣିଲା ବିସ୍ମୟ ।
ଏମନ୍ତେ କ୍ଷଣେକ କାଳ ଚଳାନ୍ତେ ସମର
ରଥହୀନ ହେଲା କ୍ରମେ ସେ ଦୈତ୍ୟ ଈଶ୍ୱର
ପୁଣି ଖଡ୍‌ଗଚର୍ମ କରେ କରିଣ ଗ୍ରହଣ
ବହ୍ରଶ୍ରୀ ବୀର ଆଗକୁ କରଇ ଗମନ ।
ଅସି ଆଦି ଯାହା ଦୁଷ୍ଟ ନିକ୍ଷେପଇ ବଳେ
ରାଜପୁତ୍ର ବିନାଶଇ ତାହା ଅବହେଳେ ।
ଶେଷରେ ଅଗ୍ନି ଅସ୍ତ୍ରକୁ କରିଣ ଗ୍ରହଣ
ଦୈତ୍ୟ ଉପରେ ପ୍ରହାରେ ନୃପତି ନନ୍ଦନ ।
ହୃଦୟ ବିଦୀର୍ଣ୍ଣ ହେଲା ତହିଁରେ ଦୈତ୍ୟର
ଉଡ଼ୁଗୁଡ଼ ନିଜ ଦେହ ତେଜିଲା ପାମର ।
ଏହିରୂପେ ଦୈତ୍ୟ ଯହୁଁ ପ୍ରାଣେ ହେଲା ହତ
ଆନନ୍ଦେ ମଗନ ହେଲେ ସର୍ବ ନାଗଯୂଥ ।
ବହୁ ମହା ମହୋତ୍ସବମାନ ସେତୁ କଲେ
ପୁଷ୍ପମାଳମାନ ତାର ଶିରେ ବୃଷ୍ଟି କଲେ ।
ଆନନ୍ଦରେ ଗନ୍ଧର୍ବେ ଯେ କଲେ ଜୟଗାନ
ଅମରେ ଦୁନ୍ଦୁଭି ବଜାଇଲେ ଘନଘନ ।
ସେ କାଳେ ରାଜନନ୍ଦନ ବହ୍ରଶ୍ରୀ ସୁମତି
ସେନାମାନଙ୍କ ସହିତେ ଧେନ ମୁଦ୍ରାବତୀ ।
ଚଳିଲା ରାଜାଙ୍କ ପାଶେ ହରଷିତ ମନେ
ଏଣେ ଯା ଘଟିଲା ତାହା ଶୁଣ ତୋଷମନେ ।
କୁଜମ୍ଭ ଯହୁଁ ଏମନ୍ତ ହୋଇଲା ନିଧନ
ଅନ୍ତର କଲେ ସୌନନ୍ଦ ମୂଷଣ ଗ୍ରହଣ ।
ମୁଦ୍ରାବତୀ ପ୍ରତି ତୋଷ ଥିଲେ ନାଗମଣି
ଅତି ଶୁଣବନ୍ତୀ ସେହୁ ନୃପତି ଦୁଲଣୀ ।
କେଉଁ ସ୍ତ୍ରୀ କର ସ୍ପରଶେ କେଉଁ ଫଳ ହୁଏ
ଏହି ତତ୍ତ୍ୱମାନ ମୁଦ୍ରାବତୀ ଜାଣିଥାଏ ।
ତେଣୁ ସେହୁ ମୂଷଳକୁ କରେ ଛୁଇଁଥିଲା
ଦୈତ୍ୟରାଜ ସେହି ହେତୁ ପରାଜିତ ହେଲା ।

ଏ ଗୁଣଟି ରାଜକନ୍ୟା କରିଛୁ ଧାରଣ
ଅନନ୍ତ ହୋଇ ଏହେତୁ ପୁଲକିତ ମନ ।
ସୁନନ୍ଦା ବୋଲି ତା ନାମ ଦେଲେ ସେହିକାଳେ
ତେଣୁ ସୁନନ୍ଦା ନାମଟି ଖ୍ୟାତ ଭୂମଣ୍ଡଳେ ।
ପରେ ମୁଦ୍ରାବଳି ସଙ୍ଗେ ସେ ରାଜ ନନ୍ଦନ
ଉପସ୍ଥିତ ହେଲା ଆସି ନୃପ ସନ୍ନିଧାନ ।
ସେକ୍ଷଣି ନୃପତି ହୋଇ ଆନନ୍ଦେ ମଗନ
କ କହିଲେ ବହ୍ରଶ୍ରୀ ଯେ କରି ସମ୍ବୋଧନ ।
ସାଧୁ ସାଧୁ ଆହେ ବସ କରୁଛି କଲ୍ୟାଣ
ଜୁଆଇଁ ହୋଇଲା ମୋର ଆଜଠାରୁ ଜାଣ ।
ଆଜ ମୋର ଶୁଭ ଦିନ ହେ ନୃପ ନନ୍ଦନ
ତୁମ୍ଭଙ୍କୁ ମୋ କନ୍ୟା ରତ୍ନ କରିବି ପ୍ରଦାନ ।
ମହାଧନୁର୍ଦ୍ଧର ବୀର ତୁମ୍ଭେ ମହାମତି
ଆଜଠାରୁ ତୁମ୍ଭ ପ୍ରିୟା ହେଲା ମୁଦ୍ରାବତୀ ।
ଏତେ ବୋଲି ସେହିଦିନ ବିହିର ବିଧାନେ
କନ୍ୟା ଦାନକଲେ ରାଜା ଆନନ୍ଦିତ ମନେ ।
ମହା ସମାରୋହେ ବଢ଼ିଲା ସେ ବାହାଘର
କ ବର୍ଣ୍ଣିବ ମୁହିଁ ସେହି ମଙ୍ଗଳ ସମ୍ଭାର ।
ନରପତି ଦେଲେ ଯେତେ ଦାନ ଯଉତୁକ
କେମନ୍ତ ପ୍ରକାରେ ତାକୁ ଗଣିବେକ ଲୋକ ।
କେମାମଣି ଦାସୀ ପରିବାରି ସହିତରେ
ରାଜପୁତ୍ରଙ୍କୁ ବରିଲା ଆନନ୍ଦ ମନରେ ।
ଧନ୍ୟ ସେହି ପତିବ୍ରତା ନୃପତି କୁମାରୀ
ଯଥା ଯୋଗ୍ୟ ପତି ଲଭ କରିଲା ସୁନ୍ଦରୀ ।
ବହ୍ରଶ୍ରୀ ବୀର ଆନନ୍ଦ ପାଇ ମୁଦ୍ରାବତୀ
ବିହାର କରଇ ସୁଖେ ଧେନ ପ୍ରିୟବତୀ ।
ଏବେ ବାର୍ଦ୍ଧକ୍ୟବସ୍ଥାର ଉପସ୍ଥିତ ଜାଣି
ତପସ୍ୟା କାରଣେ ଗଲେ ଘୋର ବନେ ପୁଣି
ସେହି ରାଜସିଂହାସନେ ବହ୍ରଶ୍ରୀ ବସିଲା
ସନ୍ତାନ ପରାୟେ ପ୍ରଜାମାନଙ୍କୁ ପାଳିଲା ।
ଚୌର ଭୟ ସର୍ପ ଭୟ ଦୁର୍ଜନଙ୍କ ଭୟ
ସର୍ବ ସୁଖ ଦୁଃଖମାନ ହୋଇଗଲା କ୍ଷୟ ।
ଏହା କହି ମୁନିବର ହୋଇଲେ ମଉନ
ଗୀତ ଛନ୍ଦେ ବିରଚିଲା କ୍ଷେତ୍ରବାସୀ ଦୀନ ।

ଇତିଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ଭନନ୍ଦନ ବହ୍ରଶ୍ରୀ
ଚରିତ ବର୍ଣ୍ଣନେ ନାମ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ
## ଖନନ୍ତ୍ର ରାଜାଙ୍କର ସ୍ୱର୍ଗାରୋହଣ ବିଷୟ ବର୍ଣ୍ଣନ

କ୍ରମେ ଶୁଭ ସମୟରେ ସୁନନ୍ଦାର ଗର୍ଭେ
ଜନ୍ମି ହେଲେ ଦ୍ୱାଦଶ କୁମାର ଏହି ଭବେ ।
ତାହାଙ୍କର ନାମ ମାନ କରୁଛି ବଖାଣ
ସକଳେ ଶ୍ରବଣ କର ଦେଇ ମନକର୍ଣ୍ଣ ।
ପ୍ରାଂଶୁ ପ୍ରବୀର ଶୂର ଯେ ସୁଚକ୍ର ବିକ୍ରମ
କ୍ରମ ବଳ ବଳାଇ ଯେ ଚଣ୍ଡଶ୍ରୀ ଉତ୍ତମ ।
ପ୍ରଚଣ୍ଡ ଯେ ସୁବିକ୍ରମ ସ୍ୱରୂପେ ସହିତେ
ସର୍ବ ଶୁଭେ ଜନମିଲେ ଏହି ବାର୍‌ପୁତେ ।
ରୂପକାନ୍ତ ମନୋହର ସବୁ ପୁଅଙ୍କର
ସକଳେହିଁ ମହାଭାଗ୍ୟବନ୍ତ ଗୁଣଧର ।
ସର୍ବ ଜ୍ୟେଷ୍ଠ ପ୍ରାଂଶୁ ଅଟେ ଅତି ବୁଦ୍ଧିମାନ
ସେହି ପୁତ୍ର ଆରୋହିଲା ରାଜ ସିଂହାସନ ।
ଅନ୍ୟ ଭାଇମାନେ ତାର ବଶୀଭୂତ ହେଲେ
ତାହାର ଆଶ୍ରୟେ ସେହି ସକଳେ ରହିଲେ ।
ପ୍ରାଂଶୁ ରାଜା ହୋଇ ନାନା ଯାଗ ଯଜ୍ଞକରେ
ବିହିତ ବିଧାନେ ଦାନ ଧର୍ମହିଁ ଆଚରେ ।
ଜଗତ ଯାକରେ କ୍ରମେ ପୂରିଲା ତା ଯଶ
ଧନ୍ୟ ଧନ୍ୟ ପଦ ଲୋକମୁଖରେ ପ୍ରକାଶ ।
ପ୍ରଜାତି ନାମରେ ତାର ପୁତ୍ରେକ ଜନ୍ମିଲା
ସେ ପୁତ୍ର ନୃପତି ହୋଇ ନାନା ଯଜ୍ଞ କଲା
ମହା ପରାକ୍ରମୀ ସେହି ପ୍ରଜାତି ଅଟଇ
ହରିଭକ୍ତି ପରାୟଣ ମହାଦାନୀ ହୋଇ ।
ଧର୍ମ କର୍ମ କରି ସୁଖେ ପାଳେ ବସୁନ୍ଧରା
ଦୈତ୍ୟମାନଙ୍କୁ ସଂହାରେ ଉଚିତ ବିଚାରି ।
ତା ଅମଳେ ପ୍ରଜାମାନେ ମହାସୁଖେ ଥାନ୍ତି
ସକଳ ମୁଖରେ ହରି ନାମକୁ ରଟନ୍ତି ।
କାହାରି ମନରେ ତିଳେ ନଥାଏ ଯେ ଚିନ୍ତା
ଆନନ୍ଦ ଉତ୍ସାହ ସର୍ବେ ହୋନ୍ତି ଉନ୍ମତ୍ତ
ସେ ପ୍ରଜା ପାଳକ ରାଜା କାହିଁ ଯେ ଅପାର
ଜନ୍ମ ହେଲେ କ୍ରମେ ପାଞ୍ଚପୁତ୍ର ତାହାଙ୍କର ।
ସର୍ବେ ମହା ବୁଦ୍ଧିମାନ ପୁଣି ଗୁଣବନ୍ତ
ଖନନ୍ତ୍ର ନାମରେ ତାର ହେଲା ଜ୍ୟେଷ୍ଠପୁତ୍ର ।
ମହା ବଳବନ୍ତ ସେହି ଶୌର୍ଯ୍ୟ ବୀର୍ଯ୍ୟଶାଳୀ
ପରମ ଧାର୍ମିକ ସେହୁ ବଳୀଠାରୁ ବଳି ।
ସତ୍ୟବାଦୀ ନ୍ୟାୟବନ୍ତ ଲୋକ ହିତକାରୀ
ସୁଶାନ୍ତ ମତି ବିବେକୀ ଧୀର ସଦାଚାରୀ ।
ବିଷ୍ଣୁରେ ଭକତି ସେ ଯେ ସୁଗୁଣ ସୁନ୍ଦର
ପ୍ରଜାବତ୍ସଳ ସୁମତି ପୁଣି ଅତି ଧୀର ।
ତାହାର ରାଜ୍ୟରେ ପ୍ରଜା ଥାଆନ୍ତି ସୁଖରେ
ସେ ପ୍ରଜାମାନଙ୍କୁ ପାଳେ ପୁତ୍ର ପରକାରେ ।
ଶ୍ରଦ୍ଧାରେ ଭାଇମାନଙ୍କୁ ଆଦର କରଇ
ଚାରି ସହୋଦର ଥାନ୍ତି ଆଜ୍ଞାବହ ହୋଇ ।
ସେ ଭାଇମାନଙ୍କ ପାଇଁ ପୃଥକ ପୃଥକ
ରାଜ୍ୟ ନିର୍ମାଣ କରିଣ ଦେଲା ଏକ ଏକ ।
ଶୌରୀ ଅଧିପତି ହେଲା ପୂର୍ବକ ଦିଗରେ
ଉଦ ବସୁ ନରପତି ଦେଲା ଦକ୍ଷିଣରେ ।
ସୁନୟ ରାଜ୍ୟ ପାଇଲା ପଶ୍ଚିମ ଦିଗରେ
ମହାରଥ ନରନାଥ ହୋଇଲା ଉତ୍ତରେ ।
ପାଞ୍ଚ ଭାଇଙ୍କର ହେଲେ ପାଞ୍ଚ ପୁରୋହିତ
ଗୋତ୍ର ପୃଥକ ପୃଥକ ମୁନି ତପୋବନ୍ତ ।
ବଂଶ ପରମ୍ପରା କ୍ରମେ ଏମନ୍ତ ପ୍ରକାର
ପାର୍ଥକ୍ୟ ଯେ ତାହାଙ୍କର ସୋଦରେସୋଦରେ
ଅତ୍ରିକୁଳେ ଜାତ ଯେ କି ସୁହୋତ୍ର ବ୍ରାହ୍ମଣ
ଶୌରିର ପୁରୋହିତ ସେହୁ ଖ୍ୟାତ ସର୍ବସ୍ଥାନ ।
ଉଦାବସୁ ପୁରୋହିତ କୁଶବର୍ତ୍ତେ କରେ
ଏହି କୁଶବର୍ତ୍ତେ ଜନ୍ମେ ଗୌତମ କୁଳରେ ।
ସୁନୟର ପୁରୋହିତ ପ୍ରମତି ଧୀମାନ
କଶ୍ୟପ ବଂଶରେ ଜନ୍ମ ସେହି ନିଷ୍ଠାବାନ ।
ମହାରଥ ପୁରୋହିତ ବଶିଷ୍ଠ ସୁମତି
ଏହିରୂପେ ଚାରିଜଣ ଚାରି ରାଜ୍ୟେ ସ୍ଥିତି ।
ସସାଗରା ଅଧିପତି ଖନନ୍ତ୍ର ରାଜନ
ଧାର୍ମିକ ନ ଥିଲେ କେହି ତାହାର ସମାନ ।
ଶୌରିର ଅମାତ୍ୟ ଥିଲା ବିଶ୍ୱବେଦୀ ନାମେ
ଏକଦିନେ କହେ ସେହୁ ରାଜାକୁ ନିର୍ଜନେ ।
ସମଗ୍ର ପୃଥିବୀ ଅଟେ ଯାହାର ଅଧୀନ
ସେହିଟି ପ୍ରକୃତ ରାଜା ସେହିଟି ପ୍ରଧାନ ।
ତାର ପୁତ୍ର ପୌତ୍ର ଆଦି ବଂଶ ପରମ୍ପର
କ୍ରମେ ରାଜପଦ ପାନ୍ତି ଅବନୀ ମଧ୍ୟର ।

ଅନ୍ୟ ଅନ୍ୟ ଭାଇମାନେ ଯେସନ୍ତୁ ରାଇଜରେ
କ୍ରମେ କ୍ରମେ କ୍ଷୟ ହୋଇନ୍ତି କାଳ ସହକାରେ
ମୋ ମନ୍ତ୍ରଣା ଯେବେ ତୁମ୍ଭେ କରିବ ଗ୍ରହଣ
ନିଖିଳ ରାଜ୍ୟର ପତି ହେବ ହେ ରାଜନ ।
ଶୌରି ନୃପବର ଶୁଣି ମନ୍ତ୍ରୀର ବଚନ
ମଧୁର ବାକ୍ୟେ ତାହାଙ୍କୁ କରି ସମ୍ବୋଧନ ।
ବୋଇଲେ ଆମ୍ଭେ ପାଞ୍ଚ ଯେ ଏକ ପିତା ସୁତ
ଜାଣ ଆହେ ମନ୍ତ୍ରୀ ବସୁମତୀ ଏକ ମାତ୍ର ।
ପୃଥକ ଭାବରେ ଆମ୍ଭେ ଅଛୁ କି କାରଣେ
ସମଗ୍ର ଧରଣୀ ଭୋଗ କରିବା କେସନେ ।
ଧରା ସାରା ଜଣଙ୍କର ହେବ ଅଧିକାର
କେବଣ ଉପାୟ ତାହା କହ ମୋ ଆଗର ।
ମନ୍ତ୍ରୀ ବୋଇଲେ ରାଜନ ଶୁଣ ମୋ ବଚନ
ଜଗତ ମଧ୍ୟରେ ତୁମ୍ଭେ ଅଟ ଯେ ପ୍ରଧାନ ।
ତୁମ୍ଭେ ଏକାକୀ ଯଦ୍ୟପି ଭୁଞ୍ଜିବ ଧରଣୀ
କହିଲେ ତାର ବ୍ୟବସ୍ଥା କରିବି ମୁଁ ଜାଣି ।
ଶୌରି ବୋଇଲେ ଧରାର ଶ୍ରେଷ୍ଠ ଜ୍ୟେଷ୍ଠଭାଇ
ସନ୍ତାନ ପରାୟେ ସ୍ନେହେ ପାଳଛନ୍ତି ସେହି ।
କେମନ୍ତେ କରିବି ତାଙ୍କୁ ମୁଁ ଅବମାନନା
ତେଣୁ ମୋ ଅନ୍ତରେ ଜନ୍ମେ ଦାରୁଣବେଦନା ।
ମନ୍ତ୍ରୀ କହେ ଶୁଣ ରାଜା ତୁମ୍ଭ ହିତକଥା
କନିଷ୍ଠ ବା ଜ୍ୟେଷ୍ଠଭେଦ ଏ ଭାବନା ବୃଥା ।
ରାଜପୁତ୍ର ସକଳେ ଯେ ଅଟନ୍ତି ସମାନ
ପ୍ରତିପାଳ କର ରାଜା ମୋହର ବଚନ ।
ସଚୀବଙ୍କର କଥାକୁ ଭାବଚନ୍ତି ମନେ
ଶୌରି ଅନୁମତି ଦେଲେ ତାଙ୍କୁ ସେହିକ୍ଷଣେ ।
ସେକାଳେ ଅମାତ୍ୟ ତାର ଅତି କୌଶଳରେ
ବିଜ୍ଞ ପୁରୋହିତ ଗଣେ ଆଣାଇ ସଭରେ ।
ଅଭିଚାର କାର୍ଯ୍ୟ ମାନ କରି ଆୟୋଜନ
ଯହିଁ ହୁଏ ଖନନତ୍ରର ଅନିଷ୍ଟ ସାଧନ ।
ତାହା ସେ କହି ଲଗିଲା ବିହିତ ବିଧାନେ
କାର୍ଯ୍ୟ କଲେ ପୁରୋହିତ ମିଳି ଗୁରୁଜଣେ ।
ବିଧି ବିଧାନରେ ଯଜ୍ଞ କରନ୍ତେ ତକ୍ଷଣ
ବିଚିତ୍ର ଘଟଣା ଏକ ଘଟିଲା ବହନ ।
ଦେଖୁ ଦେଖୁ ଗୁରିକୃତ୍ୟା ହେଲେ ଉତପନ
ଅତି ଆଚମ୍ବିତ ସେହୁ ବଡ଼ାଇ ଭୀଷଣ ।
କଳାବର୍ଣ୍ଣ ଖାଦ୍ୟ କାମ୍ୟ ଅଟେ ସବୁଙ୍କର
ରଟ ମଟ କରି ଯହିଁ କରନ୍ତି ଚିତ୍କାର ।
ଜନ୍ମହେବା ମାତ୍ରେ ସେହି ଦୁର୍ଦ୍ଦାନ୍ତ ଦୁର୍ଜ୍ଜନ
ଖନନତ୍ରକୁ ନାଶିବାକୁ ବଳୀରଣ ମନ ।
ସେହିକ୍ଷଣି ଯାଇ ତାଙ୍କ ପୁରେ ପ୍ରବେଶିଲେ
ପ୍ରାଣରୁ ନାଶିବେ ବୋଲି ସେ ଭାବନା କଲେ
କିନ୍ତୁ ସେ ନୃପତି ଅଟେ ମହା ପୁଣ୍ୟବନ୍ତ
ଥିଲେହେଁ ତାହାର କ୍ଷତି ନ କଲେ ଦୁର୍ଦ୍ଦାନ୍ତ ।
ତାର ପଣୁଁ ପରାଜୟ ହୋଇ କୃତ୍ୟାଗଣ
ଶୌରି ସମୀପକୁ କ୍ରୋଧେ ଆସିଲେକ ଫେରି
ଲୋହିତ ନୟନେ ତାକୁ ଦିଅନ୍ତେ ଅନାଇଁ
କୃତ୍ୟାପରି ମୁହୂର୍ତ୍ତକେ ଗଲା ଭସ୍ମ ହୋଇ ।
ପରର ମନ୍ଦ ଯେ ପ୍ରାଣୀ କରଇ ଚିନ୍ତନ
ତାହାକୁ ଦିଅନ୍ତି ଦଣ୍ଡ ପ୍ରଭୁ ଜନାର୍ଦ୍ଦନ ।
ପରହିଂସା ଲଭିବାରୁ ଶୌରୀ ନାଶ ଗଲା
ଆଗପଛ ଥିଲେ ମାତ୍ର ସେହୁ ନଭାବିଲା ।
ଦୁଷ୍ଟ ଜନଙ୍କର ସଙ୍ଗ ଫଳ ଅଟେ ଏହି
ଅକାଳେ ମୃତ୍ୟୁ ମୁଖକୁ ଠେଲି ଦିଅନ୍ତି ସେହି ।
ଏଣୁ ସାଧୁଜନମାନେ ସାବଧାନେ ଥାନ୍ତି
ଅନ୍ୟାୟ ମାର୍ଗରେ ଚଳେ ପାଦ ନଦିଅନ୍ତି ।
ଆହେ ସାଧୁଜନ ତୁମ୍ଭେ ମାନ ମୋହ ଗିରି
ସତ ଶାନ୍ତ ଦୟା କ୍ଷମା ଲୋକରେ ବିତରି ।
ଏହାକହି ସୂତ ମୁନି ନୀରବେ ରହିଲେ
କ୍ଷେତ୍ର ମୋହନ ଭାବଣ ପଦ ଯୋଡ଼େ ହେଲେ

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତଶୌନକ ସମ୍ବାଦେ ଶୌରଭସ୍ମବିବରଣେ
ନାମ ଅଷ୍ଟମୋଽଧ୍ୟାୟଃ ।

—•—

## ନବମ ଅଧ୍ୟାୟ

ସୂତ ଉବାଚ

ପୌରାଣିକ ସୂତମୁନି କହନ୍ତି ବୁଝାଇ
ଏହାପରେ ଯା ଘଟିଲା ଶୁଣ ମନଦେଇ ।
ଅଲଗେ ଅଲଗେ ଶୌରୀ ଆଦି ରହିଥିଲେ
ତଥାପି ସେମାନେ ସର୍ବେ ଭସ୍ମ ହୋଇଗଲେ
ପୌରଜନ ଏହା ଦେଖି ହୋଇଲେ ବିସ୍ମୟ
ଏହି ଖବର ପାଇଲା ଯେ ଖନନତ୍ରରାୟ ।

ଏଥିର କାରଣ କିବା ଭାବି ମାନସରେ
ଉପସ୍ଥିତ ହେଲେ ବଶିଷ୍ଠଙ୍କ ନିକଟରେ ।
ତାହାଙ୍କୁ ପ୍ରଣାମ କରି ପୁଚ୍ଛିଲା ବଚନ
ଆଚମ୍ବିତେ କିମ୍ପା ଶୌରି ହୋଇଲା ନିଧନ
ପୁରୋହିତଗଣ ଆଉ ମନ୍ତ୍ରୀ ସହିତେଣ ।
କାହିଁକି ଭସ୍ମ ହୋଇଲା ଶଉରୀ ରାଜନ
ଏମନ୍ତ ଅକାଳେ ମୃତ୍ୟୁ ଘଟିଲା କିମ୍ପାଇ
କହ ଆହେ ଋଷିବର ସଂଶୟ ଫିଟାଇ ।
ତକ୍ଷଣେ ବଶିଷ୍ଠ ଦେବ ନୃପ ସନ୍ନିଧାନେ
ବିସ୍ତାରି କହିଲେ ସବୁ କଥା ସ ଯତନେ ।
ତା ଶୁଣି ଖନିନେତ୍ର ହେଲା ଶୋକରେ କାତର
ହାହା ଭାଇ ବୋଲି କରେ ରୋଦନ ବିସ୍ତର
କାନ୍ଦି କାନ୍ଦି ପୁଣି କହେ ଧାର୍ମିକ ରାଜନ
ମୋର ସମ ହତଭାଗ୍ୟ ନାହିଁ କେଉଁଜନ ।
କିଛି ମାତ୍ର ନାହିଁ ମୋର ପୁଣ୍ୟର ସଂସ୍ଥାନ
ମୋର ଏ ପାପର ଆଉ ନାହିଁ ପରିତ୍ରାଣ ।
ଦେଖେ ଦୈବ ପ୍ରତିକୂଳ ହେଲା ମୋଉପରେ
ସର୍ବଲୋକ ବିଗର୍ହିତ ମୁଁ ଏକା ସଂସାରେ ।
ମୋ ଲାଗି ସ୍ନେହର ଭାଇ ଲଭିଲା ମରଣ
ମୋ ସମାନ ପାପୀ ଆଉ ନ ଦେଖେ ନୟନ
ଧିକ ଅଟେ ମୋ ବଞ୍ଚିବା ଧିକ ଏ ଶରୀର
ମଲେ ଆଜ ମୋହ ଲାଗି ଶୌରି ସହୋଦର ।
ଯଦି ମୁଁ ପୁରୁଷ ହୋଇ ଜନମି ନଥାନ୍ତି
ଶୌରି ଭାଇଙ୍କୁ କଦାପି ହରାଇ ନଥାନ୍ତି ।
ପୁରୋହିତ ମୋ କାରଣେ ଯିବା ଗଲେ ନାଶ
ମୋହସମ ପାପୀ କେହି ନାହାନ୍ତି ବିଦେଶ ।
ଧିକ ଧିକ ମୁହିଁ ଶତ ଧିକ ଅଟେ ମୋତେ
ଏତେ କୁଳାଙ୍ଗାର ଜନ୍ମ ହୋଇଲି ଏ ମର୍ତ୍ତ୍ୟେ
କାହିଁ କେଣେ ଯିବି ମାତ୍ର ବୁଝି ନ ପାରଇ
କେଉଁ କର୍ମ କଲେ ପ୍ରାୟଶ୍ଚିତ ହୋଇବଇଁ ।
ଏ ଜଗତେ ମୋହ ସମ ପାପୀ ଜଣେ ନାହିଁ
ବିଫଳ ଜୀବନ ଶରେ ବୃଥା ଅଛି ମୁହିଁ ।
ଏମନ୍ତେ ବିଳାପ କରି ଖନିନେତ୍ର ରାଜନ
ବନ୍ୟାଶ୍ରମେ ଯିବାପାଇଁ ବଳାଇଲା ମନ ।
କ୍ଷୁପ ନାମରେ କୁମର ରହିଥିଲା ତାର
ତାକୁ ଅଧିଶ୍ୱର କଲା ରାଜ୍ୟେ ନୃପବର ।
ତିନ୍ନ ଭାର୍ଯ୍ୟା ସଙ୍ଗେ ଘେନି ତପସ୍ୟା କାରଣେ
ଅବଲମ୍ବି ଚଳିଲା ସେ ଗହନ କାନନେ ।
ବାନପ୍ରସ୍ଥ ଧର୍ମ ଭଲେ ଥିଲା ତାକୁ ଜଣା
ସେହିରୂପେ ତପ ଆଚରିଲା ମହାମନା ।
ତିନିଶ ପଚିଶ ବର୍ଷ ଏମନ୍ତେ ରହିଲା
ତଦନ୍ତେଣ ଦେହ ଛାଡ଼ି ସ୍ୱର୍ଗେ ଚଳିଗଲା ।
ପରମ ପବିତ୍ର ଲୋକେ କଲା ସେ ଗମନ
ପତ୍ନୀମାନେ ସଙ୍ଗେ ଗଲେ ଅମର ଭୁବନ ।
ଖନିନେତ୍ର ଚରିତ ଯେଉଁଜନ ପାଠକରେ
ପାତକ ନ ରହେ ଆଉ ତାହାର ଦେହରେ
ବ୍ରହ୍ମ ପୁରାଣ ପ୍ରସଙ୍ଗ ପାପ ବିନାଶନ
ଭାଷା ଛନ୍ଦେ ଭଣେ କ୍ଷେତ୍ରବାସୀ ଦୀନହୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ଖନିନେତ୍ର ରାଜା ସ୍ୱର୍ଗାରୋହଣେ
ନାମ ନବମୋଽଧ୍ୟାୟଃ ।

—•—

## ଦଶମ ଅଧ୍ୟାୟ

### ବଂଶ ଚରିତ ବର୍ଣ୍ଣନ

ସୂତ ଉବାଚ

କ୍ଷୁପଃ ଖନିନେତ୍ର ପୁତ୍ରସ୍ତୁ
ପ୍ରାପ୍ୟ ରାଜ୍ୟଂ ଯଥୋଚିତ ।
ତଥୈବ ପାଳୟାମାସ,
ପ୍ରଜା ଧର୍ମେଣ ରଞ୍ଜୟନ୍ ।

କହନ୍ତି ପୁରାଣ ବକ୍ତା ସୁତ ମୁନିବର
ଏଥୁଅନ୍ତେ ଯାହା ହେଲା ଶୁଣ ସମାଚାର ।
ରାଜ୍ୟ ପାଇ କ୍ଷୁପ କରେ ପ୍ରଜାଙ୍କୁ ପାଳନ
ପ୍ରଜାମାନଙ୍କୁ ଦେଖଇ ପୁତ୍ରର ସମାନ ।
ଦାନ ଧର୍ମ ଯଜ୍ଞଶୀଳ ସେହି ନରପତି ।
ଶତ୍ରୁ ମିତ୍ରେ ସମ ଭାବ ପ୍ରଜ୍ଞବାନ ଅତି ।
ବସିଅଛି ଏକ ଦିନେ ରାଜ ସିଂହାସନେ
କହିଲେ ଯେ ସୁତଗଣ ବିନୀତ ବଚନେ ।
ଧାତାଙ୍କର ଏକ ପୁତ୍ର କ୍ଷୁପ ପୂର୍ବେ ଥିଲେ
ତାହାଙ୍କ ସୁଗୁଣ ଖ୍ୟାତ ହେଲା ଭବତଳେ ।
ତେମନ୍ତ ଚରିତ୍ର ତୁମ୍ଭଠାରେ ହେ ସୁମତି
ତବ ସୁଯଶ ବିଖ୍ୟାତ ଏହି ବସୁମତୀ ।

ପୁଣି ପଚାରଇ କ୍ଷୁପ୍ର ଆହେ ସୂତଗଣ
କପରି ଚରିତ୍ରବନ୍ତ ଥିଲେ କ୍ଷୁପ୍ରରାଣ ।
ଶୁଣିବା ପାଇଁକି ମୋର ବଳଅଛି ମନ
ବିସ୍ତାର ଭାବରେ ତାହା କରନ୍ତୁ ବଖାଣ ।
ସୂତମାନେ ବୋଇଲେକ ଶୁଣ ମହାମତି
ସେ କ୍ଷୁପ୍ର ରାଜନ ଥିଲେ ଧାତାଙ୍କ ସନ୍ତତି ।
ପ୍ରଜାଙ୍କ ନିକଟୁ କର ନେଇ ସେ ରାଜନ
ଷଷ୍ଠାଂଶ ଧନେ କରନ୍ତି ଯଜ୍ଞ ଅନୁଷ୍ଠାନ ।
ସେହିକାଳରେ ନଥିଲା ଗୋବ୍ରାହ୍ମଣେ କର
ଭୂମଣ୍ଡଳେ ମହା ଧର୍ମବନ୍ତ ନରେଶ୍ୱର ।
ସଦା ମନ ଧର୍ମ କର୍ମେ ଢ଼ାଳି ଦେଇଥାନ୍ତି
ସୁଖେ ପ୍ରଜା ପାଳି ଦିନ ଆନନ୍ଦେ ହରନ୍ତି ।
ବୋଇଲେ କ୍ଷୁପ୍ର ନରେଶ ଆହେ ସୂତଗଣ
ତାହାଙ୍କ ସଦୃଶ ହୋଇ ପାରିବ କି ଆନ ।
ଯେମନ୍ତ ଶୁଣିଲି ତାଙ୍କ ସୁଚରିତ୍ର ମୁହିଁ
ରାଜାର ତେମନ୍ତ ହେବା ଉଚିତ ଅଟଇ ।
ପ୍ରତିଜ୍ଞା କରଇ ମୁହିଁ କହୁଛି ତୁମ୍ଭରେ
କ୍ଷୁପ୍ରଙ୍କ ସମାନ ଯେହ୍ନେ ହୁଏ ମୁଁ ଧରାରେ ।
ତେଣୁ ପ୍ରାଣପଣେ ମୁହିଁ କରିବି ଯତନ
ଏଣୁ କରିବଇଁ ତିନ ଯଜ୍ଞ ଅନୁଷ୍ଠାନ ।
ଏଥିପୂର୍ବେ ଗୋ ବ୍ରାହ୍ମଣେ ନେଇଅଛି କର
ବୁଝି ନ ପାରିଲି ନ୍ୟାୟ ମାର୍ଗେ ରାଜ୍ୟଭାର
ନିଶ୍ଚୟ ସେ ସବୁ ମୁହିଁ କରିବି ପାଳନ
ନହେବ ଅନ୍ୟଥା କେବେହେଁ ମୋହର ବଚନ
ଏମନ୍ତ ପ୍ରତିଜ୍ଞା କରି କ୍ଷୁପ୍ର ନରପତି
ଯଜ୍ଞ ଆୟୋଜନ କଲେ ହୋଇ ତୋଷମତି ।
ଯଜ୍ଞ ନିମନ୍ତେ ଶିଷ୍ୟ ଯେଉଁ କରେ ସମ୍ପାଦନ
ନ ନେଇଲା ଗୋ ବ୍ରାହ୍ମଣଠାରୁ କରମାନ ।
ପ୍ରଥମା ନାମେଣ ତାର ପାଟରାଣୀ ଥିଲା
ତା ଗର୍ଭରୁ ଏକ ପୁତ୍ର କ୍ଷୁପ୍ରର ଜନ୍ମିଲା ।
ଦିନକୁ ଦିନ ବର୍ଦ୍ଧିତ ହୁଏ ରାଜ ସୁତ
କ୍ରମେ ଆସି ତା ଯୌବନ ହେଲା ଉପସ୍ଥିତ ।
ନାନାଦି ବିଦ୍ୟା ଶିଖିଲା ସେ ରାଜ କୁମାର
ସର୍ବ ଗୁଣେ ପରିପୂର୍ଣ୍ଣ ଅବନୀ ମଧ୍ୟର ।
ବିଦର୍ଭ ରାଜାର କନ୍ୟା ତା ନାମ ନନ୍ଦିନୀ
ହେଲା ସେହି ସୁଲକ୍ଷଣୀ ତାର ପାଟରାଣୀ ।

ବିବିଂଶ ନାମରେ ପୁତ୍ର ଜନମିଲା ତାର
ମହାତେଜା ସେ କୁମର ଗୁଣର ଆଧାର ।
ସେ ପୁତ୍ର ରାଜ ପଦରେ ହୁଅନ୍ତେ ବରଣ
ପ୍ରଜାମାନେ ଆନନ୍ଦରେ କରିଲେ ନର୍ତ୍ତନ ।
କାହାର ମନରେ କିଛି ଦୁଃଖ ନ ରହିଲା
ଯଥା ସମୟରେ ଇନ୍ଦ୍ର ଜଳ ବରଷିଲା ।
ଧରଣୀ ଶୋଭିଲା ନାନା ଫଳ ପୁଷ୍ପଭରେ
ଶସ୍ୟ ପରିପୂର୍ଣ୍ଣ ମହୀ ହେଲା ସେ କାଳରେ
ଖାଇ ପିଇ ପ୍ରଜାଗଣ ହୋଇଲେ ନିଶ୍ଚିନ୍ତ ।
ଅସାଧୁ ବ୍ୟକ୍ତି ଗୋଟିଏ ନ ରହିଲେ ମାତ୍ର ।
ତୃଣ ଆଉ ଜଳ ପାନ କରି ଗାଈମାନେ
ବହୁ ପରିମାଣେ କ୍ଷୀର ଦେଲେ ତୋଷମନେ
ଦୁଃଖି ହୋଇ ଜଣେମାତ୍ର କେହି ସେ ରାଜ୍ୟରେ
ନ ରହିଲେ ଧରା ଚମକଇ ଫସଲରେ ।
ନର ନାରୀଗଣ ସଦା ଧର୍ମ କର୍ମେ ରତ
ଦୁର୍ଭିକ୍ଷ କିଷଣ ନ ଜାଣନ୍ତି କିଛିମାତ୍ର ।
ବିହିତ ବିଧାନେ ଦେବାଦେବୀଙ୍କୁ ପୂଜନ୍ତି
ବିଶେଷ ସବୁରି ହୃଦେ ଜନ୍ମେ ବିଷ୍ଣୁ ଭକ୍ତି ।
ରୋଗ ବ୍ୟାଧି କିଛିମାତ୍ର ନଥାଏ କାହାର
ପୁଣ୍ୟ ଅର୍ଜନ କରନ୍ତି ସକଳେ ରାଜ୍ୟର ।
ଅପାର ଯଜ୍ଞ କଲେ ଯେ ବିବିଂଶ ରାଜନ
ମହା ଆନନ୍ଦରେ ଦିନ ନେଲେ ପ୍ରଜାଗଣ ।
ଏଥୁ ଅନ୍ତେ ଆନ କଥା କରିବି ଗାୟନ
କହଇ କ୍ଷେତ୍ରମୋହନ ଚିନ୍ତି ଭଗବାନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ବିବିଂଶ ଚରିତ
ବର୍ଣ୍ଣନ ନାମ ଦଶମୋଽଧ୍ୟାୟଃ ।

—❦—

## ଏକାଦଶ ଅଧ୍ୟାୟ
## କୀର୍ତ୍ତିଚନ୍ଦ୍ର ରାଜା ଉପାଖ୍ୟାନ

ସୂତ ଉବାଚ

ତସ୍ୟ ପୁତ୍ରଃ କୀର୍ତ୍ତିଚନ୍ଦ୍ରୋ
ମହାବଳ ପରାକ୍ରମଃ ।
ଯସ୍ୟ ଯଜ୍ଞେଷ୍ୱ ଗାୟନ୍ତି
ଗନ୍ଧର୍ବା ବିସ୍ମୟାନ୍ୱିତାଃ ॥

କହନ୍ତି ଯେ ସୂତମୁନି ଏଥୁ ଅନନ୍ତରେ
ମନଦେଇ ଶୁଣ ଆହେ ତାପସ ନିକରେ ।

ବିବଂଶ ରାଜା ଚରିତ କଲିତ ଶ୍ରବଣ
ଏବେ କହିବଇଁ ତାର ପୂର୍ବ ବିବରଣ ।
କୀର୍ତ୍ତିଚନ୍ଦ୍ର ନାମେ ସେହି ବିବଂଶ ନନ୍ଦନ
ସୁଗୁଣୀ ସୁନ୍ଦର ରୂପ ସାକ୍ଷାତେ ମଦନ ।
ମହାବଳ ପରାକ୍ରମୀ ସଂସାର ମଧ୍ୟରେ
ଅୟୁତ ସଂଖ୍ୟକ ଯଜ୍ଞ କଲା ସେ ସାଦରେ ।
ବିପ୍ରଗଣେ ବହୁ ଧନ କଲା ବିତରଣ
ଦୁଃଖୀ ରଙ୍କମାନେ ଅନ୍ନ ବସ୍ତ୍ରେ ତୋଷ ମନ
ଯେତେଦ୍ରବ୍ୟ ବଳିଲା ସେ ଯଜ୍ଞ ମହୋତ୍ସବେ
ବିହିନେଇ ମହାସୁଖୀ ହେଲେ ପ୍ରାଣୀ ସର୍ବେ
ବହୁ ଧନ ରତ୍ନ ରାଜା କରନ୍ତେଣ ଦାନ
ଆଉ କେହି ଜଣେ ଗଲେ ନାହିଁ ଅନ୍ୟସ୍ଥାନ ।
କାହାର କିଛିହିଁ ମାତ୍ର ନୋହିଲା ଅଭାବ
ତେଣୁ ପ୍ରଜାମାନେ ନ ଇଚ୍ଛିଲେ ଆନ ଠାବ
ଯେତେବେଳେ ଯାହା ଲୋଡ଼ାହୁଏ ପ୍ରାଣୀଙ୍କର
ସେ ସବୁ ଦିଅଇ ରାଜା ତାଙ୍କୁ ଯେ ସତ୍ୱର ।
ନାମ ଅନୁସାରେ ଉଡ଼ାଇଲା କୀର୍ତ୍ତିବାନା
ଜଗତେ ପୂରିଲା ତାର ସୁଯଶ ଘୋଷଣା ।
ସକଳ କଥାରେ ସୁଖୀ ଧରଣୀ ନାୟକ
ନ ଜନ୍ମିଲେ ସୁତା ସୁତ ଏଣୁ ଅପୁତ୍ରିକ ।
ସନ୍ତାନ ହୀନ ହେତୁରୁ ସେ ଦାମ୍ଭୀ ରାଜନ
ପିତୃଯଜ୍ଞ କରିବାକୁ ବଳାଇଲା ମନ ।
ମାଂସ ଆଣିବାକୁ ଇଚ୍ଛା କରି ଏକଦିନ
ଗହନ କାନନେ ଗଲା ମୃଗୟା କାରଣ ।
ନ ଘେନି ସୈନ୍ୟ ସାମନ୍ତମାନଙ୍କୁ ସଙ୍ଗରେ
ଅଶ୍ୱ ଚଢ଼ି ଏକା ବନେ ଚଳେ ନୃପବରେ ।
ହସ୍ତରେ ଧରିଣ ଖଡ୍‌ଗ ଆଉ ଧନୁଶର
ପ୍ରବେଶ ହୋଇଲା ଯାଇ କାନନ ମଧ୍ୟର ।
ମୃଗ ଖୋଜି ଖୋଜି କଲା ସେ ବନେ ଭ୍ରମଣ
ଦୈବେ ଦେଖିଲା ସେ ଏକ ମୃଗ ନାରାୟଣ ।
ସେହି ମୃଗଟିର ଦେହ ଅପୂର୍ବ ସୁନ୍ଦର
ମୃତ୍ୟୁ ସ୍ନେହ କରି ମିଳେ ନୃପତି ପାଶର ।
ବୋଇଲା ଶୁଣ ହେ ନୃପ ମୋର ନିବେଦନ
ବାଣ ମାରି ବେଗେ ମୋତେ କରସି ନିଧନ
ଅବିଳମ୍ବେ ମୋ ଜୀବନ କରିଣ ସଂହାର
ପିତୃଯଜ୍ଞ ଅନୁଷ୍ଠାନ କର ନୃପବର ।

ଏମନ୍ତ ଶୁଣି ନୃପତି ବିସ୍ମୟ ମଣିଲା
ଏକ ଆଚମ୍ବିତ କଥା ମୃଗ ବଖାଣିଲା ।
ଆପେ ଆପେ ମରଣକୁ କରୁଛି ବରଣ
ଜଣାତ ନଯାଏ କିଛି ଏଥିର କାରଣ ।
ଏତେ ଭାବି ମନେ ମନେ ସେହି ନରସାଇଁ
ମୃଗକୁ ସମ୍ବୋଧି ସୁମଧୁରେ ପଚାରଇ ।
ଏ କି ବିପରୀତ ବାଣୀ ଭାଷିଲୁରେ ମୃଗ
ମରିବା ପାଇଁକି କିମ୍ପା ବଳାଉ ସରାଗ ।
ମୋତେ ଦେଖନ୍ତେ ଯେ ବନବାସୀଜୀବମାନେ
ପ୍ରାଣ ଭୟେ ପଳାଇ ସେ ଯାନ୍ତି ଏଣେତେଣେ
କିମ୍ପା ତୁହି ପ୍ରାଣଦାନ ଇଚ୍ଛାକରୁ ମୋରେ
ତୋ କଥା ଶୁଣି ସଂଶୟ ଲାଗେ ମୋ ମନରେ
ମୃଗ କହେ ଶୁଣ ରାଜା କରେ ନିବେଦନ
କର୍ମ ଅବଳରୁ ମୁହିଁ ଅଟେ ନିଃସନ୍ତାନ ।
ଏଣୁ ମୋ ଜନମ ବୃଥା ବୃଥା ମୋ ଜୀବନ
ଏ ଛାର ଦେହରେ ଆଉ କିସ ପ୍ରୟୋଜନ ।
ବିଚାର କରି ମୁଁ ବୁଝି ପାରିଲଇଁ ମନେ
କିଛିମାତ୍ର ଫଳ ନାହିଁ ଜୀବନ ଧାରଣେ ।
ଏହିପରି ସେହି ମୃଗ କହନ୍ତେ ବଚନ
ଆଉ ଏକ ମୃଗ ଆସି କହେ ତତକ୍ଷଣ ।
ମୋର ନିବେଦନ ଶୁଣ ଆହେ ମହୀପାଳ
ଏହାକୁ ମାଇଲେ ତୁମ୍ଭେ ନାହିଁ କିଛି ଫଳ ।
ବିଳମ୍ବ ନ କରି ଘେନ ମୋହର ଜୀବନ
ମୋର ମାଂସେ କର ପିତୃ ଯଜ୍ଞ ତରପଣ ।
ଶୁଭ କର୍ମେ ମୋର ମାଂସ ଲାଗିଲେ ନିଶ୍ଚୟ
କୃତାର୍ଥ ହୋଇବି ମୁହିଁ ଜାଣ ନରରାୟ ।
ଶରୀର ତେଜିଣ ସୁଖେ ଯିବି ସ୍ୱର୍ଗ ପୁରେ
ଏତେ ବୋଲି ଉଭା ହେଲା ନୃପତି ଆଗରେ ।
ରାଜା କହେ ଆରେ ମୃଗ କେବଣ କାରଣ
ଆପେ ଆପେ ତୋର ବାଞ୍ଛା କରୁଛୁ ମରଣ ।
କେହି କି ମୃତ୍ୟୁକୁ ଭଲ ପାଆନ୍ତି ଏ ଭବେ
ମରିବା ନିମନ୍ତେ ତୁହି ଇଚ୍ଛା କଲୁ ଏବେ ।
ଏଥିର କାରଣ ବୁଝି ନ ପାରୁଛି ମୁହିଁ
ସତ୍ୟକରି କହ ମୋରେ ସଂଶୟ ଫିଟାଇ ।
ମୃଗ କହେ ଶୁଣ ନୃପ ଜଣାଏ ତୁମ୍ଭରେ
ବହୁ ପୂର୍ବ ଯୋନୀ ମୋର ଏ ମାୟା ସଂସାରେ

ତାଙ୍କର ଚିନ୍ତାରେ ସଦା ହୁଅଇ ମୁ ଘାର
କ୍ଷଣେ ହେଲେ ମାତ୍ର ସୁଖ ନ ପାଇଲି କିର ।
ସଦା ମୋ ଗଲେଣି ପିଲ କୁଟୁମ୍ବଙ୍କ ପାଇଁ
ମଲେ ଏ ଜଞ୍ଜାଳୁ ପାର ହୋଇଯାନ୍ତି ମୁହିଁ ।
ନ ଲଗିବ ଆଉ ପୁତ୍ର ପତ୍ନୀଙ୍କର ଚିନ୍ତା
ଏହି କଲବଲ ହୋଇ ବଞ୍ଚିବା ବୃଥା ।
ସହଜେତ ମୃଗ ଜାଣ ଅତି କ୍ଷୀଣ ବଳ
ଦେଖିଲେ ପୀଡ଼ନ୍ତି ପ୍ରାଣୀ ମାନେହିଁ କେବଳ
କୁକୁର ବିଲୁଆ ଯଦି ହାବୁଡ଼େ ପଡ଼ନ୍ତି
ଦେଖିବା ମାତ୍ରେ ତାହାଙ୍କୁ ଥରୁଥାଏ ଛାତି ।
ଗଧିଆ କଲରାପତ୍ରୀ ବାଘକୁ ଦେଖିଣ
ପଳାନ୍ତି ଆମ୍ଭର ମୃଗ ଦଳ ଏଣେତେଣେ ।
ଏମନ୍ତେ ହିଂସ ଜନ୍ତୁଙ୍କ ଆକ୍ରମଣ ଦାଉ
ଶାର୍ଦ୍ଦୂଳ ମହାବଳର କଥା ଦୂରେ ଥାଉ ।
ସେମାନେ କାଳେ ମୋ ବଂଶ କରିବେ ଭକ୍ଷଣ
ଏଣୁ ଭୟେ ସଦା ମୋର ଚିନ୍ତାକୁଳ ମନ ।
ସେ ଲାଗି ଜୀବନେ ଆଶା ନାହିଁଟି ମୋହର
ଦେଖେଁ ମୋହର ପରାଣ କରନ୍ତୁ ସଂହାର ।
ଆତୁର କଥାଏ କରୁଛି ମୁଁ ନିବେଦନ
ଏହି ଯେ ଆଣିଛି ମୃଗ ତବ ସନ୍ନିଧାନ ।
ବଧିଲେ ଏ ମୃଗ କାର୍ଯ୍ୟ ନ ହେବ ତୁମ୍ଭର
ନିଃସନ୍ତାନ ଅଟେ ଏହି ଜଗତ ମଧ୍ୟର ।
ସବୁ କଥା ତୁମ୍ଭ ଆଗେ କହିଲି ଗାୟନ
ଅବିଳମ୍ବେ ଏବେ ମୋତେ କର ହେ ନିଧନ
ଏହା ଶୁଣି ପୁଣି ମୃଗ କହେ ପୁନର୍ବାର
ସ୍ତ୍ରୀକୁ ବଧିଲେ କି ଫଳ ହୋଇବ ତୁମ୍ଭର ।
ସଂସାରେ ଏହାର ବହୁ ପୁତ୍ର ଜନ୍ମିଛନ୍ତି
ମହା ପୁଣ୍ୟବାନ ଅଟେ ଏହି ମୃଗ ଜାତି ।
ବିଳମ୍ବ ନକର ମୋତେ ପକାଅ ହେ ମାରି
ମୋହପରି ଅପୁତ୍ରିକା ନାହିଁ କେ ପାମରୀ ।
ଶୁଣି ଆନ ମୃଗ କହେ ପୁଣି ପୁନର୍ବାର
ତୁମ୍ଭେ ତ୍ରିଭୁବନେ ଧନ୍ୟ ଧନ୍ୟ ମୃଗବର ।
କେବଳ ତୁମ୍ଭର ଏକ ଦେହ ପାଇଁ ଦୁଃଖ
ବହୁ ଦେହଲାଗି ମୋ ଗଲେଣି ସଦା ଦେଖ ।
ପୂର୍ବେ ମୁଁ ଏକାକୀ ହୋଇଥିଲି ଯେଉଁକାଳେ
କିଛି ମାତ୍ର ଦୁଃଖ ମୋର ନ ଥିଲା ସେ ବେଳେ
ଭାର୍ଯ୍ୟା ହୋନ୍ତେ ମୋର ଦୁଃଖ ଦୁଇଗୁଣ ଜାତ
ଲଭିଲି ଅଶେଷ ଦୁଃଖ ଜନମନ୍ତେ ପୁତ୍ର ।
ମୋପରି ଦୁଃଖ ତୁମ୍ଭର ନାହିଁ କଦାଚନ
ଧରଣୀରେ କୃତ୍ୟକୃତ୍ୟ ଅଟ ତୁମ୍ଭେ ଧନ୍ୟ ।
ଏମନ୍ତେ ବେନି ମୃଗଙ୍କ କୁହା କୁହି ଶୁଣି
ତଟସ୍ଥ ହୋଇ ରହିଲେ ତହିଁ ନୃପମଣି ।
ସଂଶୟ ମନରେ ପୁଣି ପଚାରିଲେ ଧୀରେ
ଶୁଣ ଶୁଣ ମୃଗ ଦୁହେଁ କହୁଛି ତୁମ୍ଭରେ ।
ପୁତ୍ରବାନ ଧନ୍ୟ କି ଅପୁତ୍ର ଯେହୁ ଧନ୍ୟ
ସ୍ଥିର କରିବାକୁ ମୁହିଁ ନୁହଇଁ ଭାଜନ ।
କାନନେ ଆସିଛି ପୁତ୍ର ନିମନ୍ତରେ ମୁହିଁ
ମୃଗ ବଧି ମାଂସ ଘେନିଯିବ ଭାଳୁଛଇଁ ।
ପିତୃଶ୍ରାଦ୍ଧ ମୃଗ ମାଂସେ କରିବ ସାଧନ
ଏତିକ ମାତ୍ର ବ୍ୟାକୁଳ ହୁଏ ମୋର ମନ ।
ଶୁଣିଛି ନିସନ୍ତାନ ଯେ ଅବନୀ ମଧ୍ୟରେ
ପରିତ୍ରାଣ ନପାଏ ସେ ଯେ ପିତୃ ଋଣରେ ।
ଅତଏବ ଶୁଣ ମୃଗ ମୋହର ବଚନ
ନ କରିବ ପ୍ରାଣୀ ହତ୍ୟା ଆଉ କଦାଚନ ।
ଘୋର ତପ କରିବଇଁ ମୁହିଁ ଅନୁଷ୍ଠିତ
ପୁତ୍ରର ନିମନ୍ତେ ଏବେ କରିବଇଁ ଯତ୍ନ ।
ଏତେ ବୋଲି ପ୍ରାଣୀ ହିଂସା ତେଜିଲି ନୃପତି
ଏହାପରେ ଆନ କଥା କହିବି ସଂପ୍ରତି ।
ଏହିପରି କହି ସୂତ ହୋଇଲେ ମଉନ
ଗୀତ ଛନ୍ଦେ ଭବ ଲେଖେ କ୍ଷେତ୍ରବାସୀ ଦୀନ ।

ଇତିଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
କୀର୍ତ୍ତିଚନ୍ଦ୍ର ରାଜା ଉପାଖ୍ୟାନେ
ନାମ ଏକାଦଶୋଽଧ୍ୟାୟଃ ।

—❖—

## ଦ୍ୱାଦଶ ଅଧ୍ୟାୟ

### କରନ୍ଧମ ଚରିତ ବର୍ଣ୍ଣନ

ସୂତ ଉବାଚ

ତତଃ ସ ନୃପତିର୍ଭୀତା
ଗୋମତ୍ୟାଂ ପାପନାଶିନୀମ୍ ।
ତତ୍ର ତୁଷ୍ଟାବ ନିୟତୋ
ଭୂତ୍ୱା ଦେବଂ ପୁରନ୍ଦରମ୍

ଶୁଣ ଆହେ ମୁନିଗଣ ଅପୂର୍ବ କଥନ
ମୃଗୟାରୁ ବାହୁଡ଼ି ସେ କ୍ଷିତିଚନ୍ଦ୍ର ରାଣ ।
ଜୀବ ହିଂସାକୁ ମନରୁ ବରଜନ କଲା
ଗୋମତୀ ନଦୀତୀରକୁ ବେଗେ ଚଳିଗଲା ।
ତହିଁ ମିଳି ଯଥାବିଧି କରି ସେ ନିୟମ
ପୁରନ୍ଦରଙ୍କୁ ଧିଆନ କଲା ଦେଇ ମନ ।
କରଯୋଡ଼ି ଭକ୍ତିଭରେ ଆରମ୍ଭିଲା ସ୍ତବ
ମୁଖେ ରଟେ ଜୟ ଜୟ ଦେବେନ୍ଦ୍ର ବାସବ
ଜୟ ଜୟ ଶଚୀପତି ଦେବ ପୁରନ୍ଦର
ଜୟ ଜୟ ବଜ୍ରହସ୍ତ ଅମର ଈଶ୍ୱର ।
ଜୟ ଜୟ ପୀତବର୍ଣ୍ଣ ସହସ୍ର ଲୋଚନ
ଜୟ ଜୟ ନଗପତି ଜୟ ମଘବାନ ।
ଜୟ ଜୟ ଐରାବତ ଆରୂଢ଼ ଦେବେଶ
ଜୟ ଜୟ ପଦ୍ମକର ସ୍ୱର୍ଗପୁର ଈଶ ।
ଏମନ୍ତେ ପୁରନ୍ଦରଙ୍କୁ ସ୍ତବ କରି କରି
ଘୋର ତପେ ନିମଗନ ହେଲା ଦଣ୍ଡଧାରୀ ।
ବାକ୍ୟ ମନ ସୁସଞ୍ଜତ ବିଧାତ କରିଣ
ଦୃଢ଼ଭାବେ କରେ ରାଜା ତପ ଆଚରଣ ।
ତାଠାରେ ପ୍ରସନ୍ନ ହୋଇ ଦେବ ପୁରନ୍ଦର
ଉପସ୍ଥିତ ହେଲା ଆସି ତହିଁ ଧାଇଁକାରି ।
ବୋଇଲେ ସେ ନୃପତିଙ୍କ ମଧୁର ବଚନେ
ସନ୍ତୋଷ ହୋଇଲି ମୁହିଁ ତୁମ୍ଭର ସ୍ତବନେ ।
ଅଭିମତ ବର ଏବେ ମାଗ ହୋ ରାଜନ
ଯା ଗୃହିଁଛ ତାହା ନିଶ୍ଚେ କରିବି ପ୍ରଦାନ ।
ସେକ୍ଷଣି କହଇ ରାଜା କରି ପ୍ରଣିପାତ
ନମଇଁ ହେ ଦେବରାଜ ତବ ପାଦଗତ ।
ଏ ସଂସାରେ ଅଟେ ମୁହିଁ ଅପୁତ୍ରିକ ଜନ
ବାରେ ଦୟାକରି ଦିଅ ଏକ ପୁତ୍ର ଦାନ ।
ମୋ ନନ୍ଦନ ଶାସ୍ତ୍ରଧାରୀ ଗଣେ ଶ୍ରେଷ୍ଠ ହେବ
ଧର୍ମେ କର୍ମେ ସଦା ତାର ମନ ରହିଥିବ ।
ଏମୋର ଐଶ୍ୱର୍ଯ୍ୟ ଯେହ୍ନେ ଥିବ କାଳ କାଳ
ଏହି ମାତ୍ର ଇଚ୍ଛା ମୋର ଆହେ ଆଦିମୂଳ ।
ରାଜାର ପ୍ରାର୍ଥନା ଶୁଣି ଇନ୍ଦ୍ର ସେହିକ୍ଷଣ
ତଥାସ୍ତୁ ବୋଲିଣ ବର କଲେ ସେ ଅର୍ପଣ ।
ବରପାଇ ନରପତି ଆନନ୍ଦ ମନରେ
ଉପସ୍ଥିତ ହେଲା ଯାଇ ଆପଣା ନଗରେ ।

ଇନ୍ଦ୍ରଙ୍କ କୃପାରୁ ତାର ଜନ୍ମିଲା ନନ୍ଦନ
ବଳାଶ୍ୱ ବୋଲି ତା ନାମ ଦେଲା ସେ ରାଜନ
ଧନୁର୍ବେଦ ବଡ଼େ ପୁତ୍ର ଶିଖିଲା ଭ୍ରାୟ
ବହୁମତେ ବିଦ୍ୟା ଶିକ୍ଷା କରାଇଲା ରାୟ ।
ଅସ୍ତ୍ର ଶସ୍ତ୍ର ଶିଖି ଭଲେ ସେ ରାଜ ନନ୍ଦନ
ମହାବଳବନ୍ତ ହେଲା ଅବନୀ ମଧ୍ୟେଣ ।
କିଛିକାଳ ଗତ ହୁଅନ୍ତେଣ ଏହି ପ୍ରାୟ
ରାଜାର ହୋଇଲା ଆସି ଆସନ୍ନ ସମୟ ।
ନଶ୍ୱର ମାନବ ଦେହ କରି ବିସର୍ଜନ
ଅନନ୍ତ ଧାମକୁ ନୃପ କଲାକ ଗମନ ।
ପିତାର ମରଣ ଅନ୍ତେ ଉଚିତ ବିଧାନେ
ବଳାଶ୍ୱ-ବୀର ବସିଲା ରାଜ ସିଂହାସନେ ।
ପୁତ୍ର ସମାନ ପ୍ରଜାଙ୍କୁ କରଇ ପାଳନ
ତାହାର ବିକ୍ରମେ ବଶ ହେଲେ ନୃପଗଣ ।
କରଦ କରିଣ ସବୁ ନରପତିଗଣେ
ବଳାଶ୍ୱ ରାଜଙ୍କୁ କରେ ହରଷିତ ମନେ ।
ଏହିରୂପେ କିଛିଦିନ ହୁଅନ୍ତେଣ ଗତ
ନୃପତିମାନେ ସକଳେ ହେଲେ ସମବେତ ।
ବଳାଶ୍ୱ ଦାୟାଦଗଣ ସହିତ ମିଳିଣ
କୁପିତ ହୋଇ ସେ ବନ୍ଦ କଲେ କର ଦାନ ।
ବଳାଶ୍ୱର ପ୍ରତିକୂଳେ ହୋଇଲେ ସେମାନେ
ବଳେ ଆକ୍ରମଣ କଲେ ବିଶେଷ ପୀଡ଼ନେ ।
କ୍ରମେ ଦୁର୍ବଳ ହୋଇଲା ବଳାଶ୍ୱ ରାଜନ
ଚିନ୍ତା ସାଗରେ ନିରତେ ହେଲା ନିମଗନ ।
ତଦୁତ୍ତରେ ଶତ୍ରୁଗଣ ମିଳିଣ ସକଳେ
ବଳାଶ୍ୱ ନଗରେ ଆସି ଅବରୋଧ କଲେ ।
ଅତ୍ୟନ୍ତ କାତର ହେଲା ସେକାଳେ ବଳାଶ୍ୱ
ଉପାୟ ନ ଦେଖି ହୁଏଁ ବ୍ୟାକୁଳ ଅଶେଷ ।
ଆପଣା କପାଳ ନ୍ୟାସ କରି ତାର କରେ
ସ୍ଥିର ହେଲା ନିରବଧି ବ୍ୟଥିତ ଚିତ୍ତରେ ।
ଘନ ଘନ ଦୀର୍ଘ ଶ୍ୱାସ ଛାଡ଼ଇ ରାଜନ
ହାଇ ମାରନ୍ତେଣ ମୁଖୁଁ ବିଚିତ୍ର ଘଟନ ।
ରଥ ଗଜ ଅଶ୍ୱ ଆଦି କେଏଗଣି ପାରେ
ମୁଖ ମଧ୍ୟରୁ ତାହାର ବାହାରିଲେ ଖରେ ।
ତା ଦେଖି ନୃପତି ହେଲା ଆନନ୍ଦିତ ମନ
ସଙ୍ଗରେ ଘେନିଣ ସେହି ସବୁ ସୈନ୍ୟଗଣ ।

ଶତ୍ରୁଙ୍କ ସଙ୍ଗରେ ଘୋର ରଣ କଲା ସେହି
ସମୂଳେ ଅରାତିଗଣ ପକାଇଲା ଦହି ।
ଅନ୍ୟାୟରେ ଶତ୍ରୁଙ୍କୁ ସେ ଜିଣି ଏହିପରି
ପୁନଶ୍ଚ ଆନନ୍ଦେ ଗଲେ ଉଆସକୁ ଫେରି ।
କରଦ ହୋଇଲେ ତାର ସବୁ ରାଜାଗଣ
ଏ ହେତୁ ତାହାର ନାମ କରନ୍ଧମ ଜାଣ ।
ଧର୍ମଶୀଳ ମହାମନା ସେହି ନରରାୟ
ପ୍ରକଟିଲା ତ୍ରିଭୁବନେ ତାର ନାମ ଜୟ ।
ଧର୍ମଦତ୍ତ ବର ଲାଭେ ସେହି ଦଣ୍ଡଧାରୀ
ଏମନ୍ତେ ଶତ୍ରୁମାନଙ୍କୁ ବଳେ ଜୟକରି ।
ମହା ଆନନ୍ଦରେ ରାଜ୍ୟ କରିଲା ପାଳନ
ଶତ୍ରୁ ହୋଇ ନ ରହିଲେ ତାର କେଉଁ ଜନ
ନାନା ଯଜ୍ଞମାନ ରାଜ୍ୟେ ଆରମ୍ଭ କରିଲେ
ଧର୍ମ କର୍ମମାନ ସେହୁ ରାଜ୍ୟେ ପ୍ରଚରିଲେ ।
ସୂର୍ଯ୍ୟବଂଶର ମଉଡ଼ମଣି ସେ ରାଜନ
ଶୁଭ କର୍ମମାନ କରି ଅରଜିଲା ପୁଣ୍ୟ ।
ଧନ୍ୟ ସେ ନୃପତିବର ଧନ୍ୟ ସେହି ଦେଶ
ସୁଖ ସମ୍ପଦ ବ୍ୟତୀତ ଦୁଃଖ ନାହିଁ ଲେଶ ।
ଏହିପରି ପୌରାଣିକ ସୂତ ମୁନିବର
ବଖାଣିଲେ ମୁନି ମେଳେ ଚମତ୍କାର ଗୀର ।
ଜଗତ ଜନନୀ ଭଗବତୀ ପଦ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଏ ଗୀତ ରଚଇ ।

ଇତିଶ୍ରୀ ବ୍ରହ୍ମପୁରାଣେ ଉତ୍ତରଖଣ୍ଡେ
ସୂତ ଶୌନକ ସମ୍ବାଦେ,
କରନ୍ଧମ ଚରିତ ବର୍ଣ୍ଣନେ
ନାମ ଦ୍ୱାଦଶୋଽଧ୍ୟାୟଃ

—•—

## ତ୍ରୟୋଦଶ ଅଧ୍ୟାୟ

## ଅବୀକ୍ଷିତ ଚରିତ ବର୍ଣ୍ଣନ

ସୂତ ଉବାଚ

ବୀର୍ଯ୍ୟଚନ୍ଦ୍ର ସୁତା ସୁଭ୍ରୂ ତାର ନାମ ଶୁଭବ୍ରତା
ସ୍ୱୟମ୍ବରେ ସାଜଗୃହେ ମହାରାଜ କରନ୍ଧମ ।

ବୋଇଲେକ ସୂତମୁନି ଆନନ୍ଦିତ ହୋଇ
ବୀର୍ଯ୍ୟଚନ୍ଦ୍ର କନ୍ୟା ତାର ସୁଲକ୍ଷଣୀ ସେହି ।
ସ୍ୱୟମ୍ବରେ କରନ୍ଧମେ କଲା ମାଲ୍ୟ ଦାନ
ତା ଗର୍ଭୁ ଜନ୍ମିଲା ଏକ ଅପୂର୍ବ ସନ୍ତାନ ।
ଅବୀକ୍ଷିତ ନାମ ତାର ହେଲା ବିଧିମତେ
ସୁନ୍ଦର ସୁଗୁଣବନ୍ତ ସେ ପୁତ୍ର ହିତେ ।
ଏମନ୍ତ କୁମାର ଲଭି ରାଜା କରନ୍ଧମ
ପରମ ଆନନ୍ଦ ମନେ କଲା ଦାନ ଧର୍ମ ।
ଦେ ବିଜ୍ଞମାନଙ୍କୁ ଡାକି ପୁଛଇ ବଚନ
କେମନ୍ତ ଲଗ୍ନରେ ଜନ୍ମ ଏ ମୋର ନନ୍ଦନ ।
ଶୁଭ କି ଅଶୁଭ ଲଗ୍ନ କହ ଗଣି ପୋଛି
ଜାଣିବାପାଇଁ ମୁଁ ଅତି ଉତ୍ସୁକ ହୋଇଛି ।
ନକ୍ଷତ୍ର ଶୋଭନ କିକି କହ ମୋ ଆଗରେ
ଗ୍ରହମାନେ କେଉଁ ଭାବ ଧରନ୍ତି ଅମ୍ବରେ ।
କାହାର କି ରୂପେ ଦୃଷ୍ଟି ମୋ ପୁତ୍ର ଉପର
ବିସ୍ତାରି ସକଳ କଥା କରାଅ ଗୋଚର ।
ଏହାଶୁଣି ଗ୍ରହବିପ୍ରମାନେ ତତକାଳ
ବୋଇଲେ ଶୁଣିମା ହେଉ ଆହେ ମହୀପାଳ ।
ଗଣନା କରି ବୁଝିଲୁଁ ଆମ୍ଭେମାନେ ଜାଣ
ମୁହୂର୍ତ୍ତ ନକ୍ଷତ୍ର ଲଗ୍ନ ସକଳ ଉତ୍ତମ ।
ଏହି ପୁତ୍ର ଚକ୍ରବର୍ତ୍ତୀ ହୋଇବ ଧରାରେ
ଏଥିରେ ସଂଶୟ ନାହିଁ କହିଲୁଁ ତୁମ୍ଭରେ ।
ଏମନ୍ତ ଶୁଣି ରାଜନ ଆନନ୍ଦ ହୋଇଲେ
ପୁତ୍ରକୁ ଅତ୍ୟନ୍ତ ସ୍ନେହେ ପାଳନ କରିଲେ ।
କ୍ରମେ କ୍ରମେ ରାଜପୁତ୍ର ହୋଇଲା ବର୍ଦ୍ଧିତ
ଚନ୍ଦ୍ରକଳା ପରି ସେହୁ ବଢ଼େ ଅବିରତ ।
ଯଥା ସମୟରେ ନାନା ଶାସ୍ତ୍ର ନାନା ଗୁଣ
ଶିକ୍ଷା କରି ସର୍ବ ଗୁଣେ ହୋଇଲା ନିପୁଣ ।
ତାହାର ସୁଯଶ କ୍ରମେ ବ୍ରହ୍ମାଣ୍ଡେ ବ୍ୟାପନ୍ତି
ଭୟେ ବଶୀଭୂତ ହେଲେ ରାଜନ ସମସ୍ତେ ।
ତାହା ସମକକ୍ଷ କେହି ନ ରହିଲେ ଜଣେ
ସେ କୁମାର ବଳବନ୍ତ ଅଟେ ବୀରପଣେ ।
ତା ଯଶ କୀର୍ତ୍ତିରେ ପୂର୍ଣ୍ଣ ହେଲା ତ୍ରିଭୁବନ
ସମସ୍ତଙ୍କର ମୁଖରେ ତାର ଧନ୍ୟ ଧନ୍ୟ ।
ହେମ ଧର୍ମ କନ୍ୟା ବାରା ନାମେ ରୂପବତୀ
ସୁଦେବର କନ୍ୟା ଗୌରୀ ସୁସୁନ୍ଦରୀ ଅତି ।
ସୁଭଦ୍ରା ନାମେଣ ସତୀ ବଳର ଦୁହିତା
ରୂପେ ଅନୁପମା ବୀରକନ୍ୟା ଲୀଳାବତୀ ।

ବୀରଭଦ୍ରର ନନ୍ଦିନୀ ଅଟେ ନିଭାବତୀ
ସୋମକନ୍ୟା ଅତି ସୁକୁମାରୀ ମାଳାବତୀ ।
ଦମନ୍ତ ଦୁଲ୍ଲଣୀ କୁମୁଦବତୀ ଯେ ଅଟଇ
ଅବୀକ୍ଷିତଙ୍କର ରାଣୀ ହୋଇଲକ ସେହି ।
ଏହାଙ୍କ ବ୍ୟତୀତ ବହୁ ରାଜକନ୍ୟାଗଣ
ଯଥାକାଳେ ଅବୀକ୍ଷିତ ବିଭା ହେଲ୍ ପୁଣ ।
ଅନେକ ସୁନ୍ଦରୀ କନ୍ୟା ବଳେ ହରିନେଇ
ଆପଣା ନବରେ ତାଙ୍କୁ ରାଣୀ କରିଛଇଁ ।
ବିଶାଳ ନାମରେ ବୈଦିକର ଅଧୀଶ୍ୱର
ବୈଶାଳିନୀ ନାମେ କନ୍ୟା ଏକଇ ତାହାର
ମହା ସମାରୋହେ ହୋନ୍ତେ ସ୍ୱୟମ୍ବର ତାର
ଅବୀକ୍ଷିତ ସେହିସ୍ଥାନେ ହୋଇ ଆଗଭର ।
ସେ କନ୍ୟାକୁ ଆଣିବାକୁ ବଳାଇଲ୍ ମତି
ମାତ୍ର ନ ବରିଲ୍ ତାଙ୍କୁ ସେ ରାଜ ଦୁହିତା ।
ତେଣୁ ସେହି ଅବୀକ୍ଷିତ ମହା ରୋଷଭରେ
ହରଣ କଲ୍ ଆପଣେ ଅତି ବଳାତ୍କାରେ ।
ସମସ୍ତ ରାଜାଙ୍କୁ ସେ କରିଣ ପରାଜୟ
ବୈଶାଳିନୀଙ୍କୁ ଆଣିଲ୍ ଆପଣା ଆଳୟ ।
ତହୁଁ ସେ ରାଜନମାନେ ଲଜ୍ଜିତ ହୋଇଲେ
ଧିକ୍କାର କରିଣ ସର୍ବେ କହିଣ ଲାଗିଲେ ।
ଧିକ ଧିକ ଆମ୍ଭମାନଙ୍କର ବୀରପଣ
ଜନମିଥିଲୁ କିମ୍ପାଇଁ ନୃପତି ହୋଇଣ ।
ସମ୍ମୁଖେ କନ୍ୟାକୁ ହରେ ବୀର ଅବୀକ୍ଷିତ
ତାହାର ନିକଟେ ସର୍ବେ ହେଲୁ ପରାଜିତ ।
ସାହସ ଦେଖାଇ କିଛି କରି ନ ପାରିଲୁ
ମହା ବଳବନ୍ତ ଅବୀକ୍ଷିତେ ଭୟ କଲୁ ।
ସକ୍ଷମ ନୋହିଲୁ କେହି କନ୍ୟାକୁ ନେବାରେ
କିବା ପ୍ରୟୋଜନ ଏହି ଛାର ଜୀବନରେ ।
ଏତେ ପାଞ୍ଚି ରାଜାମାନେ ସର୍ବେ ମେଳହେଲେ
କନ୍ୟାର ଉଦ୍ଧାର ହେତୁ କଉଶଳ କଲେ ।
ଅତି ରୋଷଭରେ ସେହି ନରପତିଗଣ
ବିଚାରିଲେ ଏକାବେଳେ କରିବାକୁ ରଣ ।
ନିଜ ନିଜ ଅସ୍ତ୍ରମାନ କରି ସେ ଧାରଣ
ବାହାର ହୋଇଲେ ଶୀଘ୍ରେ ସମର କାରଣ
ରଥେ ଅଶ୍ୱେ ଗଜେ ସର୍ବେ ଆରୋହଣ କରି
ଚଳିଗଲେ ରୋଷଭରେ ଯେତେ ଦଣ୍ଡଧାରୀ ।

ଅବୀକ୍ଷିତ ନିକଟରେ ହୋଇଲେ ପ୍ରବେଶ
ଅକଳଣା ସୈନ୍ୟପନ୍ତି ଦେଖାନ୍ତି ସାହସ ।
ଇତି ସଂଗ୍ରାମ ସଜ୍ଜାସ୍ତେ
ଭୂପା ଭୂପସୁତାସ୍ତଥା
ନିରାକୃତା ସୁବହୁ ଶସ୍ତ୍ରୈ
କାଳଞ୍ଚାପ୍ୟ ବୀକ୍ଷିତା
ଏହିରୂପେ ରଣସଜ୍ଜା କରି ତତକ୍ଷଣ
ଯୁଦ୍ଧକୁ ଚଳିଲେ ରାଜା ରାଜପୁତ୍ରଗଣ ।
କ୍ରମେ ଦୁଇ ଦଳେ ଯୁଦ୍ଧ ହେଲ୍ ଘୋରତର
ହଣାହଣି ମରାମରି ଘଟିଲ୍ ବିସ୍ତର ।
ଅସି ଶକ୍ତି ଭଲ୍ଲ କୁନ୍ତ ଗଦା ଶୂଳ ବାଣ
ନଠାଇ ମାରନ୍ତି ରୋଷେ ସବୁ ରାଜାଗଣ ।
ଅବୀକ୍ଷିତ ବୀରବର ସମରେ ନିପୁଣ
ଆଚମ୍ବିତେ ଛେଦଣ ପକାଏ ଅସ୍ତ୍ରମାନ ।
କେତେ ସୈନ୍ୟ ମାଇଲ୍ ସେ ତା କଳଣା ନାହିଁ
ଶ୍ମଶାନ ସମାନ ହେଲ୍ ସେହି ରଣଭୂଇଁ ।
କାହା ବାହୁ କାହା ପାଦ କାହା କନ୍ଧ ଶିର
ଧରାରେ ଲୋଟଇ ରକ୍ତେ ହୋଇ ଜରଜର ।
କାହାର ସାରଥି ପଡ଼େ ସେହି ମହାରଣେ
ଅଶ୍ୱମାନେ କେତେ ମଲେ କେବା ତାହା ଗଣେ
ଚୂର୍ଣ୍ଣ ହୁଏ କାହା ରଥ ବଜ୍ର ବଜ୍ର ବାଣେ
ଏହିପରି ଅବୀକ୍ଷିତ ସର୍ବ ସୈନ୍ୟ ହାଣେ ।
ଅତି ଭୟଙ୍କର ଯୁଦ୍ଧ କରେ ସେହି ଖରେ
ନାନା ଅସ୍ତ୍ର ଶସ୍ତ୍ର ଚଳେ ବିଚିତ୍ର ଗତିରେ ।
ଅନେକ ନୃପତି ମଲେ ତାର ଅସ୍ତ୍ରାଘାତେ
ଗୋଟି ଗୋଟି କରି ବୀରମାନଙ୍କୁ ନିପାତେ ।
ତା ସଙ୍ଗେ ସମର କରି ରାଜନ୍ୟମଣ୍ଡଳ
କ୍ରମେଣ ବ୍ୟଥିତ ହୋଇ ଗଲେ ଯେ ସକଳ
କବଚ ଯେତେକ ଥିଲ୍ ରାଜାଙ୍କ ଶରୀରେ
ଅବୀକ୍ଷିତ ସବୁ ତାହା ଛେଦେ ବ୍ୟଗ୍ରଭରେ
ନ ଦେଖି ଉପାୟ କିଛି ସେକାଳେ ରାଜନ
ଶଠତାରେ ଧର୍ମଯୁଦ୍ଧ କରିଲେ ବର୍ଜ୍ଜନ ।
କେହି କେହି ଅବୀକ୍ଷିତ ଦେହ ଭେଦକରେ
କେହିବା ଧନୁକୁ କାଟି ଭୂତଳେ ଫିଙ୍ଗିଲେ ।
କେହି କେହି କଲେ ଅଶ୍ୱମାନଙ୍କୁ ନିଧନ
ଗଦାଘାତ ଶରାଘାତ କଲେ ଘନ ଘନ ।

ଏକ ରଜା ତାର ଅସି ଚର୍ମକୁ ଛେଦିଲା
ତତକ୍ଷଣେ ଅବୀକ୍ଷିତ ଗଦାକୁ ଧଇଲା ।
କ୍ଷୁରପ୍ର ଆଘାତେ ତାହା ହୋଇଲା ଛେଦନ
ଏକାବେଳେ କଲେ ସର୍ବେ ଶର ବରଷଣ ।
ବହୁ ବୀର ଯୋଗେ କ୍ରମେ ହୋଇଣ ପୀଡ଼ିତ
ଅବୀକ୍ଷିତ ଧରାପରେ ହୋଇଲା ପତିତ ।
ମିଳି ସେକାଳରେ ସର୍ବ ରାଜପୁତ୍ରଗଣ
ଧରିଣ ତାହାଙ୍କୁ କଲେ ସବଳେ ବନ୍ଧନ ।
ପୁଣି ତାହାଙ୍କୁ ଧରିଣ ସର୍ବେ ବଳାତ୍କାରେ
ଉପସ୍ଥିତ ହୋଇଲେକ ବୈଦିକ ନଗରେ ।
ରାଜକନ୍ୟା ଅନ୍ତପୁରେ ରହେ ତତକ୍ଷଣ
ଅବୀକ୍ଷିତ ବନ୍ଧ ହୋଇ କରଇ ଯାପନ ।
କନ୍ୟାକୁ ହକାରି ତହୁଁ ବୈଦିକ ନୃପତି
ସଧୀରେ ଭାଷଇ ତାଙ୍କୁ ମଧୁର ଭାରତୀ ।
ମିଳିଛନ୍ତି ଯେଉଁ ସର୍ବ ରାଜସୁତଗଣ
ଯାହାକୁ ଇଚ୍ଛା ତାହାକୁ କର ତୁ ବରଣ ।
ଏ ବଚନ ପିତା ମୁଖୁଁ ଶୁଣନ୍ତେ ଶ୍ରବଣେ
ଅସମ୍ମତ ହେଲା କନ୍ୟା ବିବାହ କାରଣେ ।
ସେକ୍ଷଣି ଦୈବଜ୍ଞ ଡାକି ବୈଦିକ ରାଜନ
ବୋଇଲେ କହ ତ ଦେଖି ଏଥିର କାରଣ ।
ଦୈବଜ୍ଞ କହେ ନୃପେନ୍ଦ୍ର ଶୁଣ ମୋର ଗୀର
ବିବାହ ସ୍ଥଗିତ ଏବେ ରଖନ୍ତୁ ତୁମ୍ଭର ।
ଯେହେତୁ ଘଟିଲା ଯୁଦ୍ଧ ଅତି ବିଘ୍ନକର
ବିବାହରୁ କ୍ଷାନ୍ତ ରହ ଆହେ ନୃପବର ।
ଅଚିରାତ ଶୁଭଦିନ ହୋଇଲେ ଘଟନ
ଅବଶ୍ୟ କନ୍ୟା କାହାକୁ କରିବ ବରଣ ।
ଦୈବଜ୍ଞ ମୁଖରୁ ଶୁଣି ଏହିପରି ବାଣୀ
ସେଦିନ ନିରସ୍ତ ହୋଇ ରହେ ନୃପମଣି ।
ଏଥିଅନ୍ତେ ସମାଚାର ଘଟିଲା ଯେମନ୍ତ
ଶୁଣାଇବି ତୁମ୍ଭଙ୍କୁ ମୁଁ ଆହେ ତପୋବନ୍ତ ।
ଏମନ୍ତେ କହିଣ ସୂତ ମଉନ ହୋଇଲେ
ଜନନୀ ପଦ୍ମର ଧ୍ୟାଇଁ କ୍ଷେତ୍ରବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ଅବୀକ୍ଷିତ ବନ୍ଦୀ କଥନଂ ନାମ
ତ୍ରୟୋଦଶୋଽଧ୍ୟାୟଃ ।

## ଚତୁର୍ଦ୍ଦଶ ଅଧ୍ୟାୟ

### ଅବୀକ୍ଷିତର ବନ୍ଧନ ମୋଚନ ଓ ବିଶାଳ ନନ୍ଦିନୀଙ୍କ ବନଗମନ ବିଷୟ ବର୍ଣ୍ଣନ

ସୂତ ଉବାଚ

ତତଃ ଶୁଶ୍ରାବ ତଂ ବଦ୍ଧଂ
ତନୟଂ ସ କରନ୍ଧମଃ
ତସ୍ୟପତ୍ନୀ ତଥା ବୀରା
ଅନ୍ୟେ ଗୃପି ମହୀଭୃତଃ

କରନ୍ଧମପତ୍ନୀ ଆଉ ଅନ୍ୟ ରାଜାଗଣ
ଅବୀକ୍ଷିତ ବନ୍ଦୀ କଥା କଲେ ଯେ ଶ୍ରବଣ ।
ରାଜପୁତ୍ରମାନେ ମିଳି ଅନ୍ୟାୟ ସମରେ
ବାନ୍ଧିଛନ୍ତି ଅବୀକ୍ଷିତଙ୍କୁ ଯେ ବଳାତ୍କାରେ ।
ଏହା ଶୁଣି କରନ୍ଧମ ହୋଇ ରୋଷମନା
ସୈନ୍ୟ ସାମନ୍ତଙ୍କ ସଙ୍ଗେ କରଇ ମନ୍ତ୍ରଣା ।
କେହୁ ବୋଲେ ବଧ କର ରାଜପୁତ୍ରଗଣେ
କେହୁ ବୋଲେ ଶୀଘ୍ରେ ଚଳ ସଂଗ୍ରାମକାରଣେ
ବିଶାଳ ସହିତ ଆଜ ଅନ୍ୟ ରାଜାଗଣ
ରଣକ୍ଷେତ୍ରେ ପଡ଼ିଯିବେ ଶମନ ସଦନ ।
ଏହା ଶୁଣି ବୀରପ୍ରସୂ ବୀରା ସେହିକ୍ଷଣି
ପ୍ରବୋଧ ବଚନେ ବୋଇଲା ଶୁଣ ନୃପମଣି ।
ଅବୀକ୍ଷିତ କରିଅଛି ପ୍ରଶଂସାର କାର୍ଯ୍ୟ
ଏଥିରେ ନ ଦେଖ ତାର କିଛିମାତ୍ର ଲାଜ ।
ଅବହେଳେ ସର୍ବ ରାଜ ପୁତ୍ରଙ୍କୁ ଜିଣିଣ
ନିଜ ବାହୁବଳେ କନ୍ୟା ଆଣିଲା ହରିଣ ।
ରାଜପୁତ୍ରଗଣ କରି ଅନ୍ୟାୟ ସମର
ବନ୍ଧନ କରିଛନ୍ତି ସେ ପୁତ୍ରକୁ ମୋହର ।
ତେଣୁ ମୋ ପୁତ୍ରର ତିଳେମାତ୍ର ଦୋଷ ନାହିଁ
ବଳାତ୍କାରେ ବାନ୍ଧିଛନ୍ତି ତାରେ ରୋଷ ବହି ।
ଏମନ୍ତ ନୁହେଁ କ୍ଷତ୍ରିୟ ମାନଙ୍କର ନୀତି
ରାଜପୁତ୍ରେ ନିନ୍ଦନୀୟ କର୍ମ କରିଛନ୍ତି ।
ଶୃଙ୍ଖଳେ ଯଦ୍ୟପି ବନ୍ଦୀ ହୁଏ କ୍ଷତ୍ରୀଜନ
ଦୈନ୍ୟ ତା ସ୍ୱୀକାର ନ କରିବ କଦାଚନ ।
କମ୍ପା ଏଥିପାଇଁ ଚିନ୍ତା କର ନରପତି
କରିଛି ଶ୍ଳାଘାର କାର୍ଯ୍ୟ ମୋହର ସନ୍ତତି ।
ତେଣୁ ମୋହର ବଚନ କରସି ଶ୍ରବଣ
ଅବିଳମ୍ବେ ରଣକାର୍ଯ୍ୟ କର ଏହିକ୍ଷଣ ।

ରାଣୀଙ୍କ ମୁଖରୁ ଏହା ଶ୍ରବଣେ ଶୁଣନ୍ତେ
ସଂଗ୍ରାମକୁ ଯିବେ ରାଜା ବାହାରିଲେ ସାଥେ
ଏଣେ ଆନ ରାଜା ଘେନ ବିଶାଳ ସଇନ
ଯୁଦ୍ଧହେତୁ କଲେ ରଣକ୍ଷେତ୍ରକୁ ଗମନ ।
ଦୁଇ ଦଳ ଯାଇ ମିଳି ସମର ଅଙ୍ଗନେ
ଘୋରତର ଯୁଦ୍ଧ ଆରମ୍ଭିଲେ ତତକ୍ଷଣେ ।
ତିନିଦିନ ଯାଏ କରନ୍ଧମ କଲି ରଣ
ପରାଜିତ ହେଲେ ତହିଁ ଏବୁ ନୃପଗଣ ।
ସେ କାଳେ ବିଶାଳ ରାଜା ଅର୍ଘ୍ୟ ଘେନିକରେ
ଉପସ୍ଥିତ ହେଲି କରନ୍ଧମ ସନ୍ନିଧରେ ।
ତାହା ନନ୍ଦନର କରି ବନ୍ଧନ ମୋଚନ
ବୁଝାଇଲି କେତେମତେ ମଧୁର ବଚନ ।
ତଦୁତ୍ତରେ ନିଜ କନ୍ୟା ପ୍ରଦାନ କାରଣେ
ଅବୀକ୍ଷିତକୁ ସେ କହେ କୋମଳ ବଚନେ ।
ଅବୀକ୍ଷିତ ତହିଁରେ ଯେ ହୋଇ ସନମତ
ବୋଇଲି ମୋ ନିବେଦନ ଶୁଣ ନରନାଥ ।
ତୁମ୍ଭର ଦୁହିତା ନ କରିବି ମୁଁ ଗ୍ରହଣ
ତାହାର କାରଣମାନ ମନଦେଇ ଶୁଣ ।
ତା ସମକ୍ଷେ ମୁଁ ଯେ ରାଜାମାନଙ୍କର ପାଶେ
ପରାଜିତ ହୋଇ ପୁଣି ବନ୍ଦୀ ହେଲି ଶେଷେ ।
ଏଥେ ମନୁଷ୍ୟତ୍ୱ ଆଉ କିବା ଅଛି ମୋର
ନାରୀଙ୍କ ସମାନ ହେଲି ଜଗତ ମଧ୍ୟର ।
ଯାହା ସମକ୍ଷରେ ମୋର ଏମନ୍ତ ଘଟନ
ତାହାକୁ ଏମୁଖ ଦେଖାଇବି ମୁଁ କେସନ ।
ଏଣୁକରି ମୋତେ କ୍ଷମାଦିଅ ମହାରାଜ
ତୁମ୍ଭ ଦୁହିତାରେ ମୋର ନାହିଁ କିଛି କାର୍ଯ୍ୟ
ତା ଶୁଣି ନୃପତି କହେ କନ୍ୟାକୁ ସେକ୍ଷଣି
ରାଜପୁତ୍ର କଥା ଶୁଣିଲୁ ତ ଗୋ କଲ୍ୟାଣି ।
ଏଣିକି ତୋହର ଇଚ୍ଛା ହେଉଛି ଯାହାରେ
ତାହାକୁ ବରଣ କର ରୁଚି ଅନୁସାରେ ।
ଏହା ଶୁଣି କନ୍ୟା କହେ ପିତା ସନ୍ନିଧାନ
ଅବୀକ୍ଷିତ ନ କରନ୍ତି ଯଦ୍ୟପି ଗ୍ରହଣ ।
ଅନ୍ୟ ପତି ମୁହିଁ ନ କରିବି ପୁନର୍ବାରେ
ତପସ୍ୟା କରିବି ଯାଇ କାନନ ମଧ୍ୟରେ ।
ଏ ଜନ୍ମେ ତପ ବିନୁ ମୋ ଅନ୍ୟ ଗତିନାହିଁ
ପ୍ରତିଜ୍ଞା କରି କହୁଛି ତୁମ୍ଭ ପାଦ ଛୁଇଁ ।

ଏ କଥା ଶୁଣି ନୃପତି ବିଷାଦେ ମଗନ
କହିବାକୁ ଆଉ କିଛି ନାହିଁ ତୁରି ବଚନ ।
ଅବୀକ୍ଷିତ ବୀରବର କର୍ମକୁ ସୁମରି
ଆପଣା ରାଜ୍ୟକୁ ଆନନ୍ଦରେ ଗଲି ଫେରି ।
ସ୍ୱଜନମାନଙ୍କୁ ତେଜି ବିଶାଳ ନନ୍ଦନୀ
ବନ ମଧ୍ୟେ ଉପସ୍ଥିତ ହେଲି ଏକାକିନୀ ।
ନିରାହାରେ ରହିକରି ସେହି ଘୋରବନେ
ତପସ୍ୟାକୁ ଆଚରିଲି ଏକାନ୍ତ ଯତନେ ।
ଶିରାମୟ ହେଲା କ୍ରମେ ତାର କଳେବର
ଦେହ ଛାଡ଼ିବାକୁ କଲି ଇଚ୍ଛା ତଦନ୍ତର ।
ତାହା ଦେଖି ଦେବଗଣ ଦୂତ ଏକଜଣ
ଅବିଳମ୍ବେ ପଠାଇଲେ ତାର ସନ୍ନିଧାନ ।
ଦେବଦୂତ ପହଞ୍ଚିଣ ରାଜସୁତା ପାଶେ
ସମ୍ବୋଧନ କରି ତାକୁ ସୁମଧୁର ଭାଷେ ।
ଦେବେ ପଠାଇଲେ ମୋତେ ତୁମ୍ଭର ନିକଟେ
ଦୂତପଣେ ଆସିଛି ମୁଁ ଜାଣ ଅକପଟେ ।
ଶରୀର ଦୁର୍ଲ୍ଲଭ ଅତି କହନ୍ତି ସୁଜନ
ଏ ଦେହ କଦାପି ତୁମ୍ଭେ ନ କର ବର୍ଜ୍ଜନ ।
ଥିଲେ ଏ ଶରୀର ସବୁ ହୁଅଇ ପ୍ରାପତ
ସ୍ଥିତ ଜଳରେ ଯେପରି ଚନ୍ଦ୍ର ଛାୟା ସ୍ଥିତ
ଚକ୍ରବର୍ତ୍ତୀ ମାତା ତୁମ୍ଭେ ହେବ ସୁଲୋଚନ
ବିଦିତ ହୋଇବ ପୁତ୍ର ଏ ତିନି ଭୁବନ ।
ସ୍ୱଧର୍ମେ ପ୍ରଜାମାନଙ୍କୁ କରିବ ସ୍ଥାପନ
ବୃତ୍ତିବର୍ଣ୍ଣକୁ ବିଧିରେ ପାଳିବ ରାଜନ ।
ଦେବତାଙ୍କ ଶତ୍ରୁ ସେହୁ କରିବ ସଂହାର
କରିବ ଯେ ନାମ ଯଜ୍ଞ ସେ ଗୁଣ ସାଗର ।
ଏମନ୍ତ ଶୁଣି କହଇ ନୃପତି ନନ୍ଦନୀ
କେମନ୍ତେ ପାଇବି ପୁତ୍ର କହ ସେ କାହାଣୀ ।
ପତି ବିନା ପୁତ୍ର ହେବ ଏ କେଉଁ ବିଧାନ
ଆହୁରି କଥାଏ ମୁହିଁ କହୁଅଛି ଶୁଣ ।
ଅବୀକ୍ଷିତ ବିନା ମୁଁ ନ ଭଜିବି କାହାରେ
ପ୍ରତିଜ୍ଞା ଅଟଳ ମୋର ଜାଣ ଉଚିତରେ ।
ଦେବଦୂତ ବୋଲେ ଶୁଣ ହେ ରାଜ ନନ୍ଦନୀ
ଏହି କାନନରେ ତୁମ୍ଭେ ଥାଅ ସୁବଦନୀ ।
କେବେହେଁ କଳେବରକୁ ନ କର ବର୍ଜ୍ଜନ
ତୁମ୍ଭ ତପସ୍ୟାରେ ବାଞ୍ଛା ହୋଇବ ପୂରଣ ।

ଏସନ ବୁଝାଇ ଦେବଦୂତ ଚଳିଗଲେ
ରାଜନନ୍ଦନୀ ସେ ବନେ ଅବସ୍ଥାନ କଲେ ।
ପରମ ବ୍ରହ୍ମରେ ସଦା ମନ ରଖି ସେହି
ନୃପ ସୁତ ଅଭୀଷ୍ଟିତ ରୂପ ମନେ ଧ୍ୟାୟି ।
ଫଳ ମୂଳ ଜଳ କଛୁ ଅର୍ପି ନାରାୟଣ
ସେହି ପ୍ରସାଦକୁ ବନେ ଭୁଞ୍ଜଇ ଆପଣେ ।
ମହା ତପସ୍ୱିନୀ ସେହୁ ନୃପତି କୁମାରୀ
ଦୃଢ଼ ବ୍ରତ ଭଙ୍ଗ ନ କରଇ ଜଟାଧରୀ ।
ଏକନିଷ୍ଠା ରଖିଅଛି ପରଂବ୍ରହ୍ମ ପଦେ
ଆରାଧନା କରେ ତାଙ୍କୁ ଭାବ ଗଦଗଦେ ।
ଏମନ୍ତେ ରାଜକୁମାରୀ ବନେ ରହିଥାଏ
କୌଣସି ପ୍ରକାରେ ଭ୍ରାନ୍ତି ତା ମନେ ନଥାଏ
ପରଂବ୍ରହ୍ମଙ୍କର ପାଦପଦ୍ମେ ରଖି ମନ
କ୍ଷେତ୍ରମୋହନ ଗୀତରେ କରଇ ରଚନ ।
ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ବିଶାଳନନ୍ଦନୀ
ତପ କଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

## ପଞ୍ଚଦଶ ଅଧ୍ୟାୟ

ପୁଣ୍ୟକାଳ ସୁସମୟେ ହୋନ୍ତେ ଉପସ୍ଥିତ
ପୁତ୍ରକୁ ଡ଼ାକଣ ବୀର କହିଲେ ଏକାନ୍ତ ।
ତୋର ପିତାଠାରୁ ଆଜ୍ଞା କରିଛି ଗ୍ରହଣ
କମିଚ୍ଛିକ ବ୍ରତ ମୁହିଁ କରିବି ପାଳନ ।
ତୋ ପିତା ଆୟତ୍ତ ଏହି ବ୍ରତ ଯେଉଁପରି
ତୋହର ଆୟତ୍ତ ବାପ ଜାଣିବୁ ସେପରି ।
ଯଦ୍ୟପି ପ୍ରତିଜ୍ଞା ବଦ୍ଧ କରୁ ଏହିକ୍ଷଣେ
ତେବେ ମୁଁ ପ୍ରବୃତ୍ତ ହେବି ଏ ବ୍ରତ ସାଧନେ
ଯେବଣ ଭଣ୍ଡାର ଅଛି ତୋର ପିତାଙ୍କର
ଜାଣିବୁ ଆୟତ୍ତ ତାହା ପିତାର ତୋହର ।
ତହିଁରୁ ଅର୍ଦ୍ଧେକ ଧନ କରିଣ ଗ୍ରହଣ
ବ୍ରତ ହେତୁ ତାହା ମୁହିଁ କରିବି ଅର୍ପଣ ।
ଏଥିପାଇଁ ଦିଅ ତୁହି ଅନୁମତି ମୋରେ
ଇଚ୍ଛାକରେ ଏବେ ତୋର ମତ ଜାଣିବାରେ
ଅବୀକ୍ଷିତ କହେ ମାତ ଶୁଣ ମୋ ବଚନ
ପିତାଙ୍କ ଆୟତ୍ତ ଅଟେ ସମୁଦାୟ ଧନ ।
ମୋହର ସ୍ୱାମୀତ୍ୱ ନାହିଁ କଦାପି ତହିଁରେ
ଯାହା ତବ ଇଚ୍ଛା ମାତ ତା କର ବିସ୍ତୃରେ ।
ସାଧ୍ୟ ହେବ ଯାହା ମୋର ଏ ଶରୀର ପାଇଁ
ତୁମ୍ଭର ଅଗ୍ରତେ ମୁହିଁ ତାହା ସାଧିବଇଁ ।
ଏ ବଚନ ପୁତ୍ର ମୁଖୁଁ କରନ୍ତେ ଶ୍ରବଣ
ବ୍ରତର ଉଦ୍‌ଯୋଗ ମାତା କଲା ତତକ୍ଷଣ ।
ଭକ୍ତିଭରେ ଯଥାବିଧି କରିଣ ସଂଯମ
କରିଲା କୁବେର ଆଦି ଦେବଙ୍କୁ ପୂଜନ ।
ନିଧିପାଳ ନିଧିଗଣ ପୂଜିଲା ଯତନେ
ଲକ୍ଷ୍ମୀଙ୍କ ଅର୍ଚ୍ଚନା କଲା ବହୁତ ବିଧାନେ ।
ଏଣେ ନିର୍ଜନେ ଯେତେକ ଅମାତ୍ୟନିକର
କହିଲେ କରନ୍ଧମଙ୍କୁ ଶୁଣ ନୃପବର ।
ଅନ୍ତିମ କାଳ ଯେ ଆସି ହେଲା ଉପସ୍ଥିତ
ଏ ପର୍ଯ୍ୟନ୍ତ ହୋଇ ନାହିଁ ଅବୀକ୍ଷିତ ପୁତ୍ର ।
ପରଲୋକ ଯାଏ ଯଦି ହୋଇ ନିସନ୍ତାନ
ତେବେ ସମ୍ପତ୍ତିକୁ ନେବେ ଯେ ବିପକ୍ଷଜନ ।
ପିତୃଗଣମାନେ ପିଣ୍ଡଦାନ ନ ପାଇବେ
ଏଥିର ଉପାୟ କିସ କୁହ ମୋହ ଆଗେ ।
ସେହିକାଳେ ପୁରୋହିତ ଆସି ରାଜଦ୍ୱାରେ
ବୋଇଲା ଥିଲେ ଯେତେକ ସେ ଅର୍ଥୀନିକରେ
କମିଚ୍ଛିକ ବ୍ରତ କରେ ମହିଷୀ ସୁନ୍ଦରୀ
ଯାହାର ଯାହା ବାସନା ନିଅ ବେଗକରି ।
ଅବୀକ୍ଷିତ ଏହିକଥା କରିଣ ଶ୍ରବଣ
ରାଜଦ୍ୱାରଠାକୁ ଯାଇ କହେ ତତକ୍ଷଣ ।
କମିଚ୍ଛକ ବ୍ରତ କରୁଛନ୍ତି ମୋ ଜନନୀ
କାହାର କି ଇଚ୍ଛା କହ ଆହେ ଅର୍ଥୀଶ୍ରେଣୀ
ପୁତ୍ରର ସମସ୍ତ କଥା କରନ୍ତେ ଶ୍ରବଣ
କରନ୍ଧମ ରାଜାକଲେ ସେଠାକୁ ଗମନ ।
ପୁତ୍ରେ ସମ୍ବୋଧନ କରି କହନ୍ତି ସାଦରେ
ମୁହିଁ ଏକ ପ୍ରାର୍ଥୀ ଅଛି ଏ ବ୍ରତ ବେଳରେ ।
ମୋହର ବାସନା ତୁମ୍ଭେ କରସି ପୂରଣ
ଏହା ଶୁଣି ପୁତ୍ର ବୋଲେ କୁହନ୍ତୁ ରାଜନ ।
ସାଧ୍ୟ ହେଲେ ତାହା ମୁହିଁ ଅର୍ପିବି ତୁମ୍ଭରେ
ମୋ କଥା ଆନ ନୋହିବ ଜାଣ ସାରୋଦ୍ଧାରେ
ରାଜା କହେ ଯଦି ବାଞ୍ଛା ପୂର୍ଣ୍ଣ ହେବ ମୋର
ନାତି ମୁଖ ଦେଖେଁ ଯେଉଁେ କର ସେ ବିସ୍ତର

ପୁତ୍ର କହେ ଶୁଣ ପିତା ମୋର ନିବେଦନ
ସର୍ବଦା ମୁଁ ବ୍ରହ୍ମଚର୍ଯ୍ୟ କରୁଛି ପାଳନ ।
ମୋହର ତ ପୁତ୍ର ନାହିଁ ଜାଣ ବିଶେଷରେ
ନାତି ମୁଖ ଦେଖାଇବି କେମନ୍ତ ପ୍ରକାରେ ।
ରାଜା କହେ ଶୁଣ ବାବୁ ମୋହର ବଚନ
ସତ୍ୟ ଅଟେ ବ୍ରହ୍ମଚର୍ଯ୍ୟ କରୁଛ ପାଳନ ।
ମାତ୍ର ଏଥି ତବ ପୁଣ୍ୟ କିଛି ହେଲେ ନାହିଁ
ରହିଛି କେବଳ ପାପ ବୋଝିକୁ ମୁଣ୍ଡାଇ ।
ଏଣୁ କହେ ନାତି ମୁଖ କରାଅ ଦର୍ଶନ
ଅବିଳମ୍ବେ ହେଉ ମୋର ବାସନା ପୂରଣ ।
ଅବୀକ୍ଷିତ କହେ ପିତା ଜଣାଏଁ ତୁମ୍ଭରେ
ମୋ ପକ୍ଷେ ଅସାଧ ଏହା ଜାଣ ନିଶ୍ଚିତରେ ।
ଏଣୁ ମୋତେ ଅନ୍ୟକିଛି ଦିଅ ଅନୁମତି
ସେ କାର୍ଯ୍ୟ ସାଧିବି ମୁହିଁ ଯତନରେ ଅତି ।
ନୃପ କହେ ଶୁଣ ପୁତ୍ର ତୋ ହିତ ବଚନ
ବୈରାଗ୍ୟ ଯଦ୍ୟପି କରୁଅଛ ଆଲମ୍ବନ ।
ସଂସାରେ ସର୍ବେ କହିବେ ଅପଣ୍ଡିତ ବୋଲି
ନ ହୋଇ ବିବାହ ସେ ବୈରାଗ୍ୟ ଆଶ୍ରେକରି
ପୁତ୍ର ନ ଜନ୍ମାଇ କଲେ ବୈରାଗ୍ୟ ଆଶ୍ରୟ
କେବେହେଁ ସଫଳ ନୁହଇ କାର୍ଯ୍ୟ ସମୁଦାୟ ।
ଅପୁତ୍ରିକ ଜନ ଯଦି ହୁଏ ବଇରାଗୀ
ପିତୃଗଣେ ଅସନ୍ତୋଷ ହୋନ୍ତି ଏଥିଲାଗି ।
ସଂସାରେ ଯେତେକ ପ୍ରାଣୀ ଅଟେ ପୁତ୍ରବନ୍ତ
ସ୍ୱର୍ଗ ସୁଖ ଭୋଗ କରେ ଅନ୍ତିମରେ ସେ ତ ।
ଇହକାଳେ ମହାସୁଖେ ଯାଏ ତାର ଦିନ
ଆଣ୍ଠୁ ଲୁଡ଼ା ବୋଲିଏଁଠି ଯେତ୍ହୁ ଧୂଳିସ୍ଥାନ ।
ପୁତ୍ର ନ ଥିବା ଜନର ଜୀବନଟା ବ୍ୟର୍ଥ
ସପ୍ତ ପୁରୁଷଙ୍କୁ ସେ କରାଏ ହସ୍ତସନ୍ତ ।
ଏଣୁ ମୁଁ କହୁଛି ବାବୁ ମୋର କଥା ମାନ
ବିବାହ କରଣ ଜାତ କରାଅ ସନ୍ତାନ ।
ପିତୃ ଆଜ୍ଞାକୁ ଅବଜ୍ଞା କରେ ଯେଉଁ ନର
ନରକ ପଥରେ ସେ ହୁଅଇ ଅଗ୍ରସର ।
କୁପୁତ୍ର ବୋଲି ତାହାଙ୍କୁ କହନ୍ତି ଜଗତେ
ଏହେତୁ ମୋ କଥା ପ୍ରତିପାଳ ଯଥୋଚିତେ ।
ଏମନ୍ତ ଶୁଣି କହଇ ଅବୀକ୍ଷିତ ବୀର
ବିବାହ କରିବି ପିତା ଆଦେଶେ ତୁମ୍ଭର ।
ଏତେ ବୋଲି ରାଜପୁତ୍ର ଅତି ଭକ୍ତିଭରେ
ନମସ୍କାର କଲା ନିଜ ପିତାର ପଦ୍ମରେ ।
ଏଥୁଅନ୍ତେ ଶୁଣ ମୁନି ଦ୍ରବ୍ୟ ସମାଗ୍ରର
ବିଶାଳ ନନ୍ଦିନୀ ଯେହ୍ନେ ହୋଇଲା ଉଦ୍ଧାର ।

—:୦:—

## ଅବୀକ୍ଷିତ କର୍ତ୍ତୃକ
## ବିଶାଳ ରାଜକନ୍ୟାର ଉଦ୍ଧାର

କଦାଚିତ୍ ରାଜପୁତ୍ରୋଽସୌ
ମୃଗବ୍ୟମଚରଦ୍ଧନେ ।
ମୃଗାନ୍ ବିଧ୍ୟନ୍ ବରାହାଂଶ୍ଚ
ଶାର୍ଦ୍ଦୂଳାଦୀଂଶ୍ଚ ଦଂଷ୍ଟ୍ରିଣଃ ॥

ଏକଦିନେ ଅବୀକ୍ଷିତ ମୃଗୟା କାରଣେ
ପଶିଲା ଯେ କୁତୁହଳେ ଗହନ କାନନେ ।
ବରାହ ଶାର୍ଦ୍ଦୂଳ ମୃଗ ବାଣେ ବିନ୍ଧିକରି
ଅବନୀ ଉପରେ ସେହୁ ଦେଲା ଗଦାକରି ।
ସହସା ଶୁଣିଲା ରମଣୀର କଣ୍ଠସ୍ୱର
ଅବିକଳ ତାର ସ୍ୱନେ କହୁଅଛି ଗୀର ।
ରକ୍ଷାକର ରକ୍ଷାକର ରକ୍ଷାକର ମୋତେ
ଶବ୍ଦ ବାରି ରାଜପୁତ୍ର ଧାଇଁଲା ତୁରିତେ ।
ଭୟ ନାହିଁ ଭୟ ନାହିଁ ବୋଲି କହି କହି
ଅଶ୍ୱ ଆରୋହଣ ଦ୍ରୁତ ଗତିରେ ଧାମଇ ।
ଦନୁ ପୁତ୍ର ଦୃଢ଼କେଶ ସେ ଅତି ଦୁର୍ଜ୍ଜନ
ଏକ ନାରୀ ପ୍ରତି ଦୁଷ୍ଟ କରେ ଆକ୍ରମଣ ।
କହୁଅଛି ସେ ରମଣୀ ଅତି ଆର୍ତ୍ତସ୍ୱରେ
କିଏ ଅଛ ବେଗେ ଆସି ରକ୍ଷାକର ମୋରେ
ଅବୀକ୍ଷିତ ରମଣୀ ମୁଁ ଜାଣନ୍ତି ସକଳେ
ଦେଖ ଏ ଦାନବ ମୋତେ ଧରୁଅଛି ବଳେ
ଯାହାଙ୍କ ରମଣୀ ମୁହିଁ ଅଟେ ଏ ସଂସାରେ
କାର ସାଧ ଅଛି ତାଙ୍କୁ ରଣେ ଜିଣିପାରେ ।
ଆହା ଏଡ଼େବଡ଼ ବୀରଙ୍କର ପତ୍ନୀ ହୋଇଁ
ଆଜ ଛାର ଅସୁରଟା ହାତେ ପଡ଼ିଛଇଁ ।
ସୂର୍ଯ୍ୟବଂଶେ ଜାତ ସେହୁ ପ୍ରବଳ ବିକ୍ରମୀ
ଅଟନ୍ତି ଧର୍ମାନୁସାରେ ସେହି ମୋର ସ୍ୱାମୀ ।
ତାହାଙ୍କ ବିହୁନେ ମୋର ନାହିଁ ଅନ୍ୟ ଗତି
ସେହି ବୀର ଅବୀକ୍ଷିତ ମୋ ନେତ୍ର ସମ୍ମୁଖି ।

ଅୱୀକ୍ଷିତ ଏହି କଥା କରନ୍ତେ ଶ୍ରବଣ
ମନେ ମନେ ଚନ୍ତାକୁଳ ହେଲା ତତକ୍ଷଣ ।
ବଚ୍ଛରେ ମୋ ଭାର୍ଯ୍ୟା ହୋଇ ପୁଣି ଏହିନାରୀ
ଗହନ କାନନେ କମ୍ପା ଭ୍ରମେ ଆସିକରି ।
ଜଣାଯାଏ ବୃକ୍ଷସର ମାୟା ଏ ସରବ
ଏହାର କାରଣ ଅଳ୍ପକ୍ଷଣେ ଜଣାଯିବ ।
ଏହା ଭାବ ଅତି ବେଗେ କରି ସେ ଗମନ
ଏକାକିନୀ କନ୍ୟା ରତ୍ନ କଲା ନିରୀକ୍ଷଣ ।
ଦଣ୍ଡହସ୍ତ ଦନୁ ପୁତ୍ର ତାର କେଶ ଧରି
ଠିଆ ହୋଇଅଛି ଚକ୍ଷୁ ରକ୍ତବର୍ଣ୍ଣ କରି ।
ସେକାଳେ ନରେଶ କହେ ଅତି କ୍ରୋଧଭରେ
କରନ୍ଧମ ପୁତ୍ର ମୁହିଁ ଜାଣ ସୁଚତୁରେ ।
କାହା ସାଧ ଏ କନ୍ୟାକୁ କରଇ ହରଣ
ପେଶିବରେ ମୂର୍ଖ ତୋତେ ଯମ ନିକେତନ ।
କାତରେ କହଇ ବାଳା ଅୱୀକ୍ଷିତେ ଗୃହି
ମୋତେ ରକ୍ଷାକର ଏ ବିପଦୁଁ ଦୟା ବହି ।
ମୁହିଁ ଅୱୀକ୍ଷିତ ପତ୍ନୀ ଟହେ ମହାମୁନ
କରନ୍ଧମ ରାଜାଙ୍କର ପୁତ୍ରବଧୂ ଜାଣ ।
ଆଜ ଅନାଥିନୀ ହୋଇ ବୁଲେ ଏ କାନନେ
ଦୟାବହି ରକ୍ଷାକର ହେ ବୀର ଆପଣେ ।
ଏହାଶୁଣି ଅୱୀକ୍ଷିତ ଭାବେ ମନେ ମନ
କେମନ୍ତେ ଅଟେ ମୋ ପତ୍ନୀ ଏ ନାରୀ ରତନ
ଯାହା ହେଉ ପଛେ ଯ୍ୱାକୁ ଆଗ ଉଦ୍ଧାରିବ
ଅନ୍ୟ ସମାଚ୍ଚର ପରେ ସମସ୍ତ ବୁଝିବ ।
ଏତେ ଭାବ କରେ ଅସ୍ତ୍ର ଧଇଲା ବହନ
ଦାନବକୁ ଡାକ ରୋଷେ କହେ ତତକ୍ଷଣ ।
ପଳାରେ ପାମର ବେଗେ ଛାଡ଼ ଏ କନ୍ୟାକୁ
ନଭୁବା ପେଶିବ ତୋତେ ଶମନ ପୁରକୁ ।
ଏତେ ବୋଲ ଘନ ଘନ ଟଙ୍କାରଣ ଧନୁ
ବଛା ବଛା ଶର ମାରେ କରନ୍ଧମ ସୁନୁ ।
ତାହା ଦେଖି ଦୈତ୍ୟବୀର କରେ ଧନୁ ଧରି
ଛେଦିଲା ସ୍ୱା ଶରମାନ ପ୍ରତିଶର କରି ।
ଏହିପରି ରଣଗୋଳ ହେଲା ଘୋରତର
ଶଙ୍କୁଶତାବୃତ ଦଣ୍ଡ ଧରଣ ହସ୍ତର ।
ଅୱୀକ୍ଷିତ ଉପରକୁ ମାରନ୍ତେ ନିଠାଇ
ଛେଦ ଦେଲା ରାଜପୁତ୍ର କ୍ଷଣକରେ ତହିଁ ।
ତା ଦେଖି ବୃକ୍ଷେକ କରେ ଧଇଲା ଦାରୁଣ
କ୍ରୋଧରେ ଧାଇଁ ଆସଇ ସେ ଦୁଷ୍ଟ ଦୁର୍ଜ୍ଜନ ।
ଭଲ୍ଲ ଅସ୍ତ୍ରେ ରାଜପୁତ୍ର ତାହାକୁ ଛେଦିଲା
ଯହୁଁ ଦୈତ୍ୟ ମାଇଲାକ କ୍ରୋଧେ ଏକ ଶିଳା
ସେ ଶିଳାକୁ ଶତଖଣ୍ଡ କଲା ଅୱୀକ୍ଷିତ
ଦେଖି ମୁଷ୍ଟି ଉଚ୍ଛାଇଣ ଧାଇଁଲାକ ଦୈତ୍ୟ ।
ତାହାଙ୍କୁ ଦେଖି ସେ ରାଜପୁତ୍ର କ୍ରୋଧ ହୋଇ
ନାଶକଲା ଗଣ୍ଡି ଠାରୁ ମୁଣ୍ଡକୁ ଛିଣ୍ଡାଇ ।
ଏହା ଦେଖି ଦେବତାଏ ସାଧୁ ସାଧୁ କହି
ପୁଷ୍ପ ବରଷିଲେ ରାଜପୁତ୍ର ଶିରେ ନେଇ ।
ସେମାନେ ବୋଇଲେ ଆମ୍ଭେ ସକଳେ ଅମର
ଯଦି ଆବଶ୍ୟକ ଅଛି ମାଗି ଘେନ ବର ।
ଏହାଶୁଣି ଅୱୀକ୍ଷିତ କହେ ସେହିକ୍ଷଣ
ପୁତ୍ର ବର ମାଗୁଛି ମୁଁ ଆହେ ଦେବଗଣ ।
ତହୁଁ ସେ ଦେବତାଗଣ କହିଲେ ସେହରେ
ଉଦ୍ଧାର କରିଲ ଆଜ ଯେଉଁ କାମିନୀରେ ।
ଏହାର ଗର୍ଭରୁ ହେବ ସନ୍ତାନ ତୁମ୍ଭର
ରାଜ ଚକ୍ରବର୍ତ୍ତୀ ଧନେ ହେବ ସେ କୁମର ।
ଯୁଗେ ଯୁଗେ ଏହି ନାରୀ ତୁମ୍ଭର ରମଣୀ
ଚିହ୍ନି ନ ପାରିଲ ଯାରେ ଭ୍ରମ ନୃପମଣି ।
ଆଜ ଏହାର ଅବସ୍ଥା ଯାହା ହୋଇଅଛି
କେବଳ ତୁମର ଲାଗି ଏମାନ ଘଟିଛି ।
ରାଜପୁତ୍ର କହେ ସର୍ବ ଦେବଙ୍କୁ ଅନାଇଁ
ଆଶ୍ଚର୍ଯ୍ୟ ଲାଗଇ ତବ କଥାରେ ଗୋସାଇଁ ।
ପଣ ହୋଇ ମୁହିଁ ପୁଣି ପତ୍ନୀଙ୍କୁ ନ ଚାହେଁ
କହୁଛ ଅବାଧି କଥା କମ୍ପା ତୁମ୍ଭେମାନେ
ଯେବେ ମୋର ପତ୍ନୀ ବୋଲ କୁହ ଏ ନାରୀକୁ
ଗୃହେଁ ମୁହିଁ ପରିଚୟ ତା ରେ ଜାଣିବାକୁ
ଏମନ୍ତେ କୁହନ୍ତେ ଅୱୀକ୍ଷିତ ତତକ୍ଷଣ
ବୁଝାଇ କହିଲେ ତାହା ସର୍ବ ଦେବଗଣ ।
ବୋଇଲେ ଯେଉଁ ନାରୀକୁ କରିଲେ ଉଦ୍ଧାର
ତୁନୟା ଗନ୍ଧର୍ବ କନ୍ୟାଅଟେ ସେ ନିକର ।
କୁବେର ସମାନ ମହା ଧନବନ୍ତ ସେହି
ଏକଇ ମାତର କନ୍ୟା ତାର ଏ ଅଟଇ ।
ତୁମ୍ଭେ ମଧ୍ୟ ଅଟ ଏକ ଗନ୍ଧର୍ବ ନନ୍ଦନ
ବିବାହ କଲା ତୁମ୍ଭଙ୍କୁ ସେ କନ୍ୟା ରତନ ।

ଆନନ୍ଦରେ ପଞ୍ଚ ପତ୍ନୀ କରୁଥିଲେ ଘର
ଏହା ପରେ ଯା ଘଟିଲା ଶୁଣ ତା ଉତ୍ତର ।
ଅମର ସଭା ମଧ୍ୟରେ ସର୍ବ ଦେବଗଣ
ଉନ୍ମତ୍ତ ହୋଇଥିଲେ ଯେ ନୃତ୍ୟ ଗୀତେଣ ।
ତୁମ୍ଭେ ପଞ୍ଚ ପତ୍ନୀ ବେନି ଥିଲ ସେ ସଭାରେ
ଏହି ସମୟେ ଅଗସ୍ତି ମିଳିଲେ ସେଠାରେ ।
ଯୌବନ ଗର୍ବରେ ତୁମ୍ଭେ ଉନ୍ମତ୍ତ ହୋଇ
ତାଙ୍କୁ ପରିହାସ କଲ ବାସ ମୁଖେ ନେଇ ।
ତେଣୁ କ୍ରୋଧଭରେ ଚକ୍ଷୁ କରି ରକ୍ତବର୍ଣ୍ଣ
ଅଭିଶାପ ଦେଲେ ଋଷି ସେଠାରେ ବହନ ।
ତାଙ୍କର ଶାପରେ ଆଜ ପଞ୍ଚ ପତ୍ନୀ ଦୁଇ
ବୁଲୁଅଛ ମର୍ତ୍ତ୍ୟେ ଭିନ୍ନ ଭିନ୍ନ ସ୍ଥାନେ ତହିଁ ।
ତୁମ୍ଭେ ରାଜକୁଳେ ଆସି ହୋଇଲ ଉତ୍ପନ୍ନ
ଏ ରମଣୀ ବନେ ଭ୍ରମେ ସର୍ବଦା ଖୋଜଣ ।
ଦିବସ ରଜନୀ ଚଉଦିଗେ ବୁଲିକରି
ତୁମ୍ଭେ ଅନ୍ୱେଷଣ କରେ ବାସ୍ତାଣୀଙ୍କ ପରି ।
ଆଜ ଦଇବ ଯୋଗରୁ ପଞ୍ଚ ପତ୍ନୀଙ୍କର
ଭେଟ ହେବା ସାଥେ ସାଥେ ମରିଲା ଅସୁର ।
ଆଉ ତୁମ୍ଭେ ମନ ମଧ୍ୟେ ସଂଶୟ ନକର
ଆପଣା ପତ୍ନୀଙ୍କୁ ନେଇ ଚଳ ରାଜପୁରୀ ।
କିଛିଦିନ ମାତ୍ର ମର୍ତ୍ତ୍ୟପୁରେ କରି ବାସ
ତାପରେ ଅମରପୁରେ ଯିବ ହୋଇ ତୋଷ ।
ଏ ନାରୀ ସତୀଙ୍କ ମଧ୍ୟେ ଅଟଇ ଅଗ୍ରଣୀ
ତିଳେହେଁ କଳୁଷ ନାହିଁ ଏହାଅଙ୍ଗେ ପୁଣି ।
ମରତରେ ଯେତେ ଯେତେ ନାରୀ ରହିଛନ୍ତି
ସତୀଙ୍କ ପରେ ଏହି ଅଟଇ ମହାସତୀ ।
ଏହାର ଉଦର ମଧ୍ୟୁ ଔରସୁ ତୁମ୍ଭର
ଯେଉଁ ସନ୍ତାନ ଜନ୍ମିବ ଏ ମର୍ତ୍ତ୍ୟପୁର ।
ମହା ବଳବାନ ଆଉ ବିଦ୍ୱାନ ହୋଇବ
ରାଜଚକ୍ରବର୍ତ୍ତୀ ହୋଇ ଶାସନ କରିବ ।
ଯାଅ ଯାଅ ଆଉ ମନେ ଭାବନା ନ କର
ହସ୍ତ ଧରି ନେଇ ଯାଅ ପତ୍ନୀଙ୍କୁ ତୁମ୍ଭର ।
ତୁମ୍ଭର କମନ୍ତେ ସେହି ଅପାର କଷଣ
ଲଭିଲାଣି ଖୋଜ ଖୋଜ ଆହେ ନରରାଣ ।
ଏମନ୍ତେ କହିଣ ଦେବେ ଅନ୍ତର୍ଦ୍ଧାନ ହେଲେ
କ୍ଷେତ୍ରମୋହନ ଭାବଣ ଗୀତେ ଏହାବୋଲେ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ
ଭୁନସ୍ଥା ଅବୀକ୍ଷିତ ଚରିତେ
ନାମ ପଞ୍ଚଦଶୋଽଧ୍ୟାୟ ।

—✣—

## ଷୋଡ଼ଶ ଅଧ୍ୟାୟ

### ମରୁତଙ୍କ ଜନ୍ମ ଓ ସମାଗ୍ରର ବର୍ଣ୍ଣନ

ସୁତ ଉବାଚ

ଇତି ତସ୍ୟା ବଚଃ ଶ୍ରୁତ୍ୱା
ମୁତ୍ୱା ପିତୃବଚଃ ଶୁଭମ୍
କମିଛକେ ପ୍ରତଜ୍ଞାଂତ
ଯଦୁକ୍ତଂ ତେନ ଭୂଭୃତା ।

ଶୁଣ ଶୁଣ ସୁଜ୍ଞଜନମାନେ ଡେରି ଶ୍ରୁତି
ଏହାପରେ କହିବଇଁ ଅମୀୟ ଭାରତୀ ।
ଦେବତାମାନେ ହୋଇଲେ ଯହୁଁ ଅନ୍ତର୍ଦ୍ଧାନ
ରାଜପୁତ୍ର କନ୍ୟା ପାଶେ ମିଳିଣ ବହନ ।
ବୋଇଲେ ଯଦ୍ୟପି ସଖୀ ଇଚ୍ଛାହୁଏ ତବ
ମୋହ ସଙ୍ଗତରେ ଚଳ ନକରି ବିଳମ୍ବ ।
କନ୍ୟା ଦରି ଦରି ହସି ମସ୍ତକ ନୁଆଇଁ
ଅବୀକ୍ଷିତ ପାଦତଂଳ ପଡ଼ିଲାକ ଯାଇ ।
ବୋଇଲେ ଏତେଦିନର ପରିଶ୍ରମ ମୋର
ଆଜ ସାର୍ଥକ କରିଲେ ପ୍ରଭୁ ଚକ୍ରଧର ।
କାନ୍ଦି କାନ୍ଦି ସାରାଦିନ ଯାଇଅଛି ଦିନ
କେତେ ଯେ ଖୋଜିଛି ତାହା କି କହିବ ଏଥି
ଆଜ ଦେଖିଲା ବେଳରୁ ସବୁ ଦୁଃଖମାନ
ମନରୁ ପାଶୋରି ସାରିଲିଣି ପ୍ରାଣଧନ ।
ଭୁନସ୍ଥା ମୁଖରୁ ଶୁଣି ସେ ରାଜକୁମାର
ବୋଇଲେ କିପରି ହୋଇବଇଁ ବିଭାଘର ।
ତୁମ୍ଭ ପିତା କେଉଁପରି ଏଠାକୁ ଆସିବେ
ବିଧି ଅନୁସାରେ କନ୍ୟା ଅର୍ପଣ କରିବେ ।
ଏପରି କହିବା କାଳେ ଅବୀକ୍ଷିତ ବୀର
ଶୁଭ ଶଙ୍ଖ ସ୍ୱନ ଶୁଣୁ୍ୟ ହେଲା ବାରବାର ।
ଅମର କାମିନୀଗଣ ଧେନ ସଙ୍ଗତରେ
ଭୁନସ୍ଥା ଗନ୍ଧର୍ବୀ ପିତା ମିଳିଲେ ସେଠାରେ ।

ବିଧିମତେ ବହୁ ଦାନ ଯଉତୁକ ଦେଇ
ଅବୀକ୍ଷିତ କରେ କନ୍ୟା ସମର୍ପିଲେ ତହିଁ ।
ବୋଇଲେ ମୋହର କନ୍ୟା ଯଥା ସମୟରେ
ଜନ୍ମ ଲଭିଅଛି ମର୍ତ୍ତ୍ୟେ ବିଶାଳର ଘରେ ।
ଅଗସ୍ତିଙ୍କ ଅଭିଶାପେ ହୋଇଲା ଏମନ୍ତ
ଆମ୍ଭେ ଋଷି ପାଦେ ପଡ଼ି କାନ୍ଦଣ ବହୁତ ।
ବହୁ ବିନୟ କରିବା ଦେଖି ତପୋମଣି
ଶାପ ମୋଚନ କାରଣ କହିଥିଲେ ପୁଣି ।
ସେହି ଦିନଠାରୁ କନ୍ୟା ତୁମ୍ଭଙ୍କୁ ଖୋଜୁଛି
ମୁହିଁ ଛାଇ ପର ତାର ପଛେ ପଛେ ଅଛି ।
ପୂର୍ବର କାହାଣୀମାନ କହିଲ ବୁଝାଇ
ଆନନ୍ଦରେ ବାସକର ପତି ପତ୍ନୀ ଦୁଇ ।
ଅବୀକ୍ଷିତ ଏ ବଚନ ଶୁଣି ତୋଷ ହେଲେ
ଆନନ୍ଦ ଜଳଧି ମାରେ ମଗନ ହୋଇଲେ ।
ସହଧର୍ମିଣୀ ସ୍ୱରୂପେ ସେହି ସୁନ୍ଦରୀକ
ଗ୍ରହଣ କଲ ତତକ୍ଷଣେ ହୋଇ ମହାସୁଖୀ ।
ଦେବାଙ୍ଗନାମାନେ ବର କନ୍ୟାଙ୍କୁ ବସାଇ
ବନ୍ଦାପନା ବିଧି କଲେ ହୁଳହୁଳି ଦେଇ ।
ତା ପରେ ବିବାହ ଶେଷେ କନ୍ୟା ଜାମାତାଙ୍କୁ
ନେଇଣ ଗନ୍ଧର୍ବ ହର୍ଷେ ଚଳିଲେ ସ୍ୱର୍ଗକୁ ।
ରହସାଇ ରାଜପୁତ୍ରେ ଧର୍ମ୍ମୀ ସହିତରେ
ବାସ କରିଲେ ଆନନ୍ଦ ମନେ ସ୍ୱର୍ଗପୁରେ ।
ନନ୍ଦନ କାନନେ ପତିପତ୍ନୀ ଦୁଇଜଣ
ଆନନ୍ଦ ମନରେ ଯାଇ କରନ୍ତି ଭ୍ରମଣ ।
ସେହିଠାରେ କିଛି ଦିନେ ହେଲା ଏକ ପୁତ୍ର
ଅତ୍ୟନ୍ତ ସୁନ୍ଦର ବପୁ ପୁଣି ବଳବନ୍ତ ।
ଯା ଦେଖି ଗନ୍ଧର୍ବ ସୁଖ ସୀମା ନ ରହିଲା
ନୃତ୍ୟ ଗୀତ ବାଦ୍ୟନାଦେ ଗଗନ କମ୍ପିଲା ।
ଅପ୍ସରାମାନେ ଆନନ୍ଦେ ଆରମ୍ଭିଲେ ନୃତ୍ୟ
ନାନା ଉତ୍ସବେ ହୋଇଲା ପୁର ପ୍ରକମ୍ପିତ ।
ତୁମ୍ବୁର ଗନ୍ଧର୍ବ ଆଜ ବିହିତ ବିଧାନେ
ସମ୍ପାଦିଲେ ଜାତ କର୍ମ ପ୍ରଫୁଲ୍ଲିତ ମନେ ।
ଦେବର୍ଷି ମହର୍ଷି ବ୍ରହ୍ମର୍ଷି ସହିତରେ
ଦେବତାମାନେ ଆସିଣ ମିଳିଲେ ସେଠାରେ
ଆନନ୍ଦରେ ଉଚ୍ଛୁଳିଲା ଗନ୍ଧର୍ବ ନଗର
ପୁତ୍ରକୁ କଲ୍ୟାଣ କଲେ ସର୍ବେ ସେହିଠାର ।
ଗୁରୁଦେବ ସେହିସ୍ଥାନେ ଉପସ୍ଥିତ ହୋଇ
କଲ୍ୟାଣ କଲେ ପୁତ୍ରକୁ ହରଷରେ ତହିଁ ।
ପୂରବ-ମରୁତ ଧୂଳି ନକରି ଉତ୍ଥିତ
ପୁତ୍ରେ କଲ୍ୟାଣ କରିଲେ ଶିରେ ଦେଇ ହସ୍ତ ।
ଏହିକଥା ପୁନ ପୁନ କହନ୍ତେ ତତ୍‌କ୍ଷଣ
ଆକାଶରୁ ଦୈବବାଣୀ ହେଲା ଘନ ଘନ ।
ଗୁରୁଦେବ ପୁନଃ ପୁନଃ ଆପଣା ବଦନେ
ମରୁତ ଶବ୍ଦ ଉଚ୍ଚାରିଲେ ଆନନ୍ଦିତ ମନେ ।
ଏ ହେତୁ ମରୁତ ନାମେ ଏହି ପୁତ୍ରବର
ବନ୍ଦିତ ହୋଇବ ସଦା ସଂସାର ମଧ୍ୟର ।
ଏ ଯେ ରାଜଚକ୍ରବର୍ତ୍ତୀ ହୋଇବ ନିଶ୍ଚୟ
ଏହାକୁ କେ ନପାରିବେ କରିବାରେ ଜୟ ।
ଏହିରୂପେ ଦୈବବାଣୀ କରିଣ ଶ୍ରବଣ
ସକଳ ଗନ୍ଧର୍ବ ହେଲେ ଆନନ୍ଦେ ମଗନ ।
ଗନ୍ଧର୍ବ ନଗରେ ମହା ସମାରୋହେ ଜାଣ
ମହୋତ୍ସବ ଭିଆଇଲେ ସେ ଗନ୍ଧର୍ବଗଣ ।
ସେ କାଳର ଯେ ଉତ୍ସବ ଅତି ଚମତ୍କାର
ସର୍ବ ଶୁଭେ ଜନ୍ମ ଯେଣୁ ସେ ରାଜକୁମାର ।
ସାମାନ୍ୟ ନୁହଇ ଅବୀକ୍ଷିତର ନନ୍ଦନ
ଚନ୍ଦ୍ରକଳା ପରି ଅଙ୍ଗ ପରମ ଶୋଭନ ।
ସର୍ବ ସୁଲକ୍ଷଣ ମାନ ପୂରିଛି ସେ ଦେହେ
ଦେବତାମାନେ କଲ୍ୟାଣ ବାଞ୍ଛନ୍ତି ସେ ସ୍ନେହେ
ବିଷ୍ଣୁ ତେଜ ବିକାଶଇ ସେ ପୁତ୍ର ଶରୀରେ
ଦେଖି ଅପୂର୍ବ ଆନନ୍ଦ ସବୁରି ମନରେ ।
ମରୁତଙ୍କ ଜନ୍ମ କଥା ଅତି ସୁମଧୁର
ସଞ୍ଚପି କହିଲେ ଲୋମହର୍ଷ ଋଷିବର ।
ପରଂବ୍ରହ୍ମ ଶ୍ରୀଗୁରୁଙ୍କ ପାଦଦ୍ୱନ୍ଦ୍ୱ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଏ ଗୀତ ରଚଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ମରୁତ ଜନ୍ମ କଥନଂ
ନାମ ଷୋଡ଼ଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ
## ମରୁତଙ୍କ ଅଭିଷେକ ବିଧି ବର୍ଣ୍ଣନ

ସୂତ ଉବାଚ

ତତଃ ସ ରାଜପୁତ୍ରସ୍ତୁ
ମାଦାୟ ଦୟିତଂ ସୁତମ୍
ପଶ୍ୟାଙ୍ଗାନୁଗତୋ ବିପ୍ର
ଗନ୍ଧର୍ବୈରଯାଯୌ ପୁରମ୍

କହନ୍ତି ସୂତ ସକଳ ଋଷିଙ୍କୁ ଅନାଇଁ
ହେ ଶୌନକ ଏହାପରେ ଶୁଣ ମନଦେଇ ।
ରାଜସୁତ ଅବୀକ୍ଷିତ ପତ୍ନୀ ପୁତ୍ର ଘେନି
ମନସୁଖେ ଚଳିଗଲା ନିଜ ରାଜଧାନୀ ।
ଆନନ୍ଦରେ ପଦବ୍ରଜେ ସେ ଗନ୍ଧର୍ବଗଣ
ପଛେ ପଛେ ଅନୁଗାମୀ ହୋଇଲେ ତକ୍ଷଣ ।
ପିତାଙ୍କ ନିକଟେ ଆସି ଆନନ୍ଦ ମାନସେ
ବନ୍ଦିଲା ସେ ଅବୀକ୍ଷିତ ତାଙ୍କ ପାଦଦେଶେ ।
ଶ୍ୱଶୁର ଚରଣ ତଳେ ପୁତ୍ରବଧୂ ଯାଇଁ
ନମସ୍କାର କଲା ତାର ମଥାକୁ ନୁଆଇଁ ।
ପୁତ୍ର ପୁତ୍ରବଧୂଙ୍କୁ ଯେ ଦେଖି ନରପତି
ମନେ ମନେ ଆନନ୍ଦିତ ହୋଇଲେ ତତ୍ତ୍ୱତି ।
ସମ୍ବୋଧନେ ଅବୀକ୍ଷିତ କହେ ପିତା ପାଶେ
ବେନିକର ଯୋଡ଼ି ନମ୍ର ଭାବରେ ବିଶେଷେ
ପ୍ରତିଜ୍ଞା ମୁଁ କରିଥିଲି କମିଚ୍ଛିକ ବ୍ରତେ
ଏତେଦିନେ ପୂର୍ଣ୍ଣ ହେଲା ନାମେ ପାଦଗତେ
ଏହି ନାତିକ କୋଳରେ ଘେନ ହେ ରାଜନ
ଏହା ମୁଖପଦ୍ମ ଗୋଟି କର ଦରଶନ ।
ଏତେବୋଲି ପୁତ୍ର ଦେଇ ପିତାଙ୍କ କୋଳରେ
କହିଲା ସକଳ କଥା ବିନୟ ଭାବରେ ।
ନାତିକ ସେ କରନ୍ଧମ କରି ଆଲିଙ୍ଗନ
ଆନନ୍ଦ ଅଶ୍ରୁ ବର୍ଷଣ କରେ ଘନ ଘନ ।
ଆସିଥିଲେ ଯେତେକ ସେ ଗନ୍ଧର୍ବ ନିକର
ସମସ୍ତଙ୍କୁ ଚର୍ଚ୍ଚା କରେ ନୃପତି ପ୍ରବର ।
ବିଦାୟ ଘେନି ଆନନ୍ଦେ ସେ ଗନ୍ଧର୍ବଗଣ
ଆପଣା ଆପଣା ସ୍ଥାନେ ଚଳିଲେ ବହନ ।
ବହୁ ଧନ ରତ୍ନ ଦାନକଲେ ନରପତି
ବସନ ଭୂଷଣ ମାନ ବାଣ୍ଟିଲେ ଝଟିତି ।
ବ୍ରାହ୍ମଣ ବୈଷ୍ଣବ ଯେତେ ଅତିଥି ଆଗତ
ସମସ୍ତଙ୍କୁ ଧନ ଦାନେ ତୋଷେ ନରନାଥ ।
ଦୁଃଖୀ ରଙ୍କି ଶୋଷି ଭୋକା ସକଳ ପ୍ରାଣୀଙ୍କି
ଅନ୍ନବସ୍ତ୍ରେ ସନ୍ତୋଷିଲେ ମନେ ହୋଇ ସୁଖୀ
ସଭିଙ୍କ ମୁଖରେ ଉଠେ ଜୟ ଜୟ ଧ୍ୱନି
ଧନ୍ୟବାଦ ଚଉଦିଗେ ପଡ଼ିଗଲା ପୁଣି ।
ଦେଶେ ଦେଶେ ସେରାଜାର ପ୍ରଶଂସାଘୋଷଣା
ପ୍ରଜାଙ୍କର ଯେ ଆନନ୍ଦ ତାର ନାହିଁ ସୀମା ।
ଦିନୁଦିନ ବଢ଼େ ଶିଶୁ ଶଶୀକଳା ପ୍ରାୟ
ଆନନ୍ଦ ସାଗରେ ଭାସେ କରନ୍ଧମ ରାୟ ।
କ୍ରମେଣ ପାଞ୍ଚ ବରଷ ବୟସ ହୁଅନ୍ତେ
ମରୁତ ପଢ଼ଇ ପାଠ ଗୁରୁ ପାଶେ ନିତ୍ୟେ ।
ସକଳ ପ୍ରକାର ବେଦ ବେଦାନ୍ତ ଶିଖିଲା
ଧନୁର୍ବିଦ୍ୟାରେ କୁଶଳ ଅଳ୍ପକାଳେ ହେଲା ।
ଅସ୍ତ୍ର ବିଦ୍ୟା ଖଡ୍ଗ ଆଦି ଚାଳନ ସମସ୍ତ
ଶିଖିଣ ହୋଇଲା ସର୍ବ ବୀର ପରେ ଖ୍ୟାତ ।
ଦୌହିତ୍ରର ବୁଦ୍ଧି ବିଦ୍ୟା କରଣ ଶ୍ରବଣ
ମହା ଆନନ୍ଦ ହୋଇଲେ ଚହୁଁ ନରଗଣ ।
ପୌତ୍ର ମୁଖ କରନ୍ଧମ କରି ଦରଶନ
ଅପାର ଧନ ଦୌଲତ କରିଦେଲା ଦାନ ।
କେତେ ସେ ବାଣ୍ଟୋଇ ଦୁଃଖୀ ଦରିଦ୍ରମାନଙ୍କୁ
ଅନ୍ନ ବସ୍ତ୍ରରେ ତୋଷଇ ସର୍ବ ଅତିଥିଙ୍କୁ ।
ବ୍ରାହ୍ମଣ ଭୋଜନ ଆଦି ବିଧାନେ କରାଏ
ସାଧୁଙ୍କ ସେବାରେ ମନ ପ୍ରାଣ ଢାଳିଦିଏ ।
ଦେବାଦେବୀଗଣ ଭକ୍ତିଭରେ ଆରାଧଇ
ଲକ୍ଷ୍ମୀ ନାରାୟଣ ମୂର୍ତ୍ତି ଗୃହରେ ପୂଜଇ ।
ଆପଣା ରାଇଜ ମଧ୍ୟେ ବୀର କରନ୍ଧମ
କେତେ ମେଳା ମହୋତ୍ସବ କଲେ ସମାପନ
ଏହାପରେ କରୁ କ୍ରମେ ତା ବୃଦ୍ଧ ବୟସ
ପ୍ରବେଶନ୍ତେ ଭାବିଲା ସେ ଯିବ ବନବାସ ।
ଅବୀକ୍ଷିତକୁ ପ୍ରବୋଧି କହଇ ରାଜନ
ପାଳ ମୋହ ଗିର ରାଜ୍ୟ ସମ୍ଭାଳରେ ଧନ ।
ଏ ବୃଦ୍ଧ ବୟସେ ବାପ ଯିବି ମୁହିଁ ବନେ
ତପ ସାଧନ କରିବି ରହିଣ ନିର୍ଜନେ ।
ଅତି ଯତନରେ ଆଉ ବିଧି ଅନୁସାରେ
ପାଳିବୁ ପ୍ରଜାମାନଙ୍କୁ ପୁତ୍ରପରକାରେ ।

ଆଉ ମଧ୍ୟ ଏକ କଥା ରଖିଥାଅ ମନେ
ବ୍ରହ୍ମ ନାରାୟଣେ ପୂଜୁଥିବୁ ସବୁଦିନେ ।
ଅତିଥି ଅଭ୍ୟାଗତଙ୍କ ମନ ଜାଣି ବାବୁ
ଅନ୍ନ ବସ୍ତ୍ର ଦେଇଣ ଯେ ତାହାଙ୍କୁ ତୋଷିବୁ
ଯେତେ ଧର୍ମ କର୍ମମାନ ଆଚରିବୁ ଧନ
ଆଉ ମଧ୍ୟ କରୁଥିବୁ ଯେତେ ଦାନ ଧ୍ୟାନ ।
ତାହା ସମସ୍ତ କଦାପି ବ୍ୟର୍ଥ ନ ହୋଇବ
ଶତେ ଗୁଣରେଣି ବାବୁ ପାଇବୁ ସେ ଲଭ ।
ଏହା ଶୁଣି ଅବୀକ୍ଷିତ କହେ ମଥା ପୋତି
ରାଜ୍ୟ ଧନରେ କଦାପି ନାହିଁ ମୋର ମତି ।
ବନ୍ଧ ହୋଇଥିଲ ମୁହିଁ ଜାଣିଛ ତ ତାହା
ରାଜ୍ୟ ସମ୍ଭାଳନେ ମୋର ନ ବଢ଼ଇ ସ୍ପୃହା ।
ଧରା ଭାର ବହନକୁ ନୁହେ ମୁଁ ସମର୍ଥ
ତେଣୁ ଆନ କରେ ନେଇ ହୁଅନ୍ତୁ ନିଶ୍ଚିନ୍ତ ।
ଜଗତେ ମୋର ଲୋଡ଼ା ନାହିଁ ଧନ ଦ୍ରବ୍ୟ କିଛୁ
ଏଣୁ ତବ ପାଦପଦ୍ମ ତଳେ ଜଣାଉଛୁ ।
ଏହା ଶୁଣି ପିତା ପୁଣି କହେ ସେହିକ୍ଷଣ
ତୁ ମୋହର ଅଟୁ ବାବୁ ଏକଇ ନନ୍ଦନ ।
ମୋ କହିବା କଥା ଭଲେ ମାନ ଯଥାର୍ଥରେ
ରାଜା ହୋଇ ପ୍ରଜା ପାଳ ଧର୍ମ ଅନୁସାରେ ।
ବାରମ୍ବାର କରି ପିତା କହନ୍ତେ ବୁଝାଇ
କେବେହେଁ ନ ଇଚ୍ଛେ ପୁତ୍ର ରାଜା ହେବାପାଇଁ
ସେକାଳେ ନାତିକି ଡାକି ସାଦରେ ନୃପତି
ବୋଲଇ ଶୁଣ ମରୁତ ମୋହର ଭାରତି ।
ତୋହର ପିଅର ରାଜ୍ୟ ନ କଲା ଗ୍ରହଣ
ତୁହି ରାଜା ହୋଇ କର ପରଜା ପାଳନ ।
ଏତେ ବୋଲି ମରୁତକୁ ରାଜ୍ୟ ଦାନକରି
କାନନେ ଚଳିଲା ରାଜା ସଙ୍ଗେ ରାଣୀ ଧରି ।
ଏମନ୍ତେ ମରୁତ ରାଜ୍ୟ କରିଣ ଗ୍ରହଣ
ଧର୍ମ ଅନୁସାରେ କରେ ପୃଥିବୀ ଶାସନ ।
ସେହି ମରୁତ ଚରିତ ଅତି ଚମତ୍କାର
ଶୁଣିବ ହେ ମୁନିବର ମାହାତ୍ମ୍ୟ ତାହାର ।
କ୍ରମେ ବୁଝାଇ କହିବି ମୁଁ ତୁମ୍ଭ ଆଗରେ
କର୍ଣ୍ଣଗୋଚର କରିବ ସର୍ବେ ସଭାଗରେ ।

ଶୌନକ ଉବାଚ

ମହର୍ଷେ କଥିତଂ ସମ୍ୟକ୍
ମମୈତଦ୍ କଥିତଂ ତ୍ୱୟା
କରନ୍ଧମସ୍ୟ ଚରିତମ୍
ଅବୀକ୍ଷିଚରିତଞ୍ଚ ଯତ୍ ॥

ଶୌନକ କହନ୍ତି ଶୁଣ ହେ ଲୋମହର୍ଷଣ
କରନ୍ଧମ କଥା ତୁମ୍ଭେ କଲ ଯେ ବଖାଣ ।
ଅବୀକ୍ଷିତର ଚରିତ କହିଲ ଯଥାର୍ଥେ
ମରୁତ କଥା ଶ୍ରବଣେ ଇଚ୍ଛା ହୁଏ ଚିତ୍ତେ ।
ସେ ମରୁତ ଚକ୍ରବର୍ତ୍ତୀ କରିଛନ୍ତି ଶ୍ରବଣ
ମହାଭାଗ ମହାମତି ଧର୍ମପରାୟଣ ।
ଏଣୁ ତାହା କଥା ଶୁଣିବାକୁ ହୁଏ ମନ
ବର୍ଣ୍ଣନା କରି କାମନା କରସି ପୂରଣ ।

ଲୋମହର୍ଷଣ ଉବାଚ

କହନ୍ତି ଲୋମହର୍ଷଣ ପୁରାଣ ବକତା
କହୁଅଛୁ ଏବେ ସେହି ଚକ୍ରବର୍ତ୍ତୀ କଥା ।
ରାଜ୍ୟ ଲଭି ଧର୍ମ ଅନୁସାରେ ଅନୁକ୍ଷଣ
କରୁଥାନ୍ତି ସେ ମରୁତ ପ୍ରଜାଙ୍କୁ ପାଳନ ।
ବିହିତ ବିଧାନେ ନାନା ଯଜ୍ଞ କରୁଥାନ୍ତି
ତିନି ଭୁବନେ ପୂରିଲା ତାହାଙ୍କ କୀରତି ।
ଅପାର ଦାନ ଯଜ୍ଞ ସେ କଲେ ଅନୁଷ୍ଠାନ
ସନ୍ତୋଷ ହୋଇଲେ ଶୁଣି ସର୍ବ ଦେବଗଣ ।
ଶତ ଶତ ଅଶ୍ୱମେଧ କରି ସେ ନୃପତି
ପରାଭବ କଲେ ଇନ୍ଦ୍ରେ ଦେଖାଇ ବିଭୂତି ।
ସମ୍ବର୍ତ୍ତ ଗୁରୁଙ୍କ ଭ୍ରାତା ବିଦିତ ଭୁବନ
ଋତ୍ୱିକ ଥିଲେ ସେ ଯଜ୍ଞେ ଆହେ ତପୋଧନ
ମୁଞ୍ଜବାନ ନାମେ ଜଗିଥିଲା ସ୍ୱର୍ଣ୍ଣମୟ
ମରୁତ ତାହାର ଶୃଙ୍ଗ କରିଣ ସଞ୍ଚୟ ।
ବହୁ ଯଜ୍ଞମାନ ରାଜା ସେ ଧନେ କରନ୍ତି
ଅକଳନ ଭାବେ ଦାନ ଧର୍ମାଦି ଦିଅନ୍ତି ।
ଏକଦିନେ ତପସ୍ୱୀଏ ଆସି ରାଜା ପାଶେ
କୋମଳ ବଚନେ ସେହି ସଦନସ୍ୱେ ଭାଷେ ।
ତବ ରାଜ୍ୟେ ରହିଅଛୁଁ ଯେତେ ମୁନିଜନ
ସକଳେ ସର୍ପଙ୍କ ବିଷେ ହେଉଛୁ ଦହନ ।
ଏଣୁ ଆମ୍ଭେମାନେ ବସି କରିଅଛୁ ସ୍ଥିର
ରାଜ୍ୟ ଶାସନକୁ ତୁମ୍ଭେ ନୁହଁ ଧୁରନ୍ଧର ।
ଯେବେ କରୁଥାନ୍ତ ଯଥା ବିଧାନେ ଶାସନ
କିମ୍ପାଇଁ ଘଟନ୍ତା ଅବା ଏହି ଦୁର୍ଘଟଣ ।

ତୁମ୍ଭର ପୂର୍ବ ପୂରୁଷେ ରାଜା ଥିଲେ ଯେବେ
ସେକାଳର ଏ ଘଟଣା ନ ଘଟଇ କେବେ ।
ତୁମ୍ଭେ ଅନୁକ୍ଷଣେ ଭୋଗ ସୁଖେ ରତ ହୋଇ
ମତ୍ତ ହୋଇଅଛ ଏବେ ଆହେ ନରସାଇଁ ।
କେଉଁପରି କଲେ ହୁଏ ପ୍ରଜାଙ୍କ ମଙ୍ଗଳ
କେବେ ତାହା ଦେଖୁନାହିଁ ସ୍ୱନେତ୍ରେ କେବଳ
ଦୁଷ୍ଟ ନାଗମାନେ ଆସି ପାତାଳୁ ଏ ସ୍ଥାନ
ସପ୍ତ ମୁନି ନନ୍ଦନଙ୍କୁ କରିଲେ ଦଂଶନ ।
ବିଷ ଆଉ ମଳମୂତ୍ର ମାନ ତ୍ୟାଗ କରି
ଜଳ ଜଳାଶୟ ଦେଲେଣି ଦୂଷିତ କରି ।
ମୁନିଗଣ ମାନେ କ୍ଷୁବ୍ଧ ହୋଇ ମନେ ମନେ
ଭସ୍ମ କରି ପାରନ୍ତି ସେ ଦୁଷ୍ଟ ସର୍ପଗଣେ ।
ମାତ୍ର ତହିଁ ତାହାଙ୍କର ନାହିଁ ଅଧିକାର
ଏ କାର୍ଯ୍ୟରେ ଅଧିକାରୀ ତୁମ୍ଭେ ନରେଶ୍ୱର
ଅଭିଷେକ-ଜଳ ଶିରେ ନ ପଡ଼େ ଯାବତ
ଭୋଗ ସୁଖେ ମତ୍ତଥାନ୍ତି ରାଜା ଏ ତାବତ ।
ସିଂହାସନେ ଅଭିଷିକ୍ତ ହୋଇଣ ନୃପତି
ଭୋଗସୁଖେ ଜଳାଞ୍ଜଳି ଦେବେ ନିତି ପ୍ରତି ।
କେହ୍ନେ ପ୍ରଜା ସୁଖୀ ହେବେ କରିବେ ଚିନ୍ତନ
ଯହିଁରେ ହୁଏ ରାଜ୍ୟର ମଙ୍ଗଳ ଘଟନ ।
ଧର୍ମ ଅନୁସାରେ ଯଦି ରାଜ୍ୟ ନ ପାଳନ୍ତି
ପ୍ରଜାଙ୍କ ମଙ୍ଗଳ ଯଦି ନେତ୍ରେ ନ ଦେଖନ୍ତି ।
ମହା କଷ୍ଟେ ପଡ଼ନ୍ତି ସେ ପାମର ନୃପତି
ଅନ୍ତମେ ତାଙ୍କର ହୁଏ ନରକରେ ଗତି ।
ଏଣୁ ଯାହା ଇଚ୍ଛା ତାହା କର ହେ ରାଜନ
ତୁମ୍ଭର ମଙ୍ଗଳ ହେତୁ କହିଲି ଏସନ ।
ଏମନ୍ତେ ସେହି ତପସ୍ୱୀ ବିନୟ ଭାବରେ
ଗୁହାରି କରଇ ଅତି ଧୀର ସ୍ୱଭାବରେ ।

ଇତି ତାପସଂବାକ୍ୟଂ ସ
ଶ୍ରୁତ୍ୱା ଲଜ୍ଜାପରୋ ନୃପଃ
ଧିର୍ତ୍ତ୍ମାଂ ତ୍ୱିବ୍ରାନ୍ମିତ୍ୟୁକ୍ତ୍ୱା
ନିଶ୍ୱସ୍ୟ ଜଗୃହେ ଧନୁଃ ।

ତାପସଙ୍କ ଏ ବଚନେ କରନ୍ତେ ଶ୍ରବଣ
ଲଜ୍ଜାରେ ବୁଡ଼ିଲେ ସେହି ମରୁତ ରାଜନ ।
ତହୁଁ ନରପତି ଦୀର୍ଘ ନିଃଶ୍ୱାସ ପକାଇ
ଧିକ ଧିକ ଅଟେ ମୁହିଁ ଏ ଭାରତୀ କହି ।
ଧନୁ ଶରାସନ ଆଦି ଧରି ନିଜ କରେ
ଔର୍ବଙ୍କ ଆଶ୍ରମଠାକୁ ଚଳିଲେକ ଖରେ ।
ସେହି ଆଶ୍ରମରେ ତାଙ୍କ ପିତାମହୀ ଥିଲେ
ତାହାଙ୍କ ଚରଣ ତଳେ ଯାଇ ଓଳଗିଲେ ।
ସେ ମଧ୍ୟ ତପସ୍ୱୀ ବେଶ କରିଣ ଧାରଣ
ଛଦ୍ମବେଶେ ଆସିଥିଲେ ମରୁତ ପାଶେଣ ।
ତାହାଙ୍କ ପାଦେ ମରୁତ କରି ନମସ୍କାର
ଅନ୍ୟ ଅନ୍ୟ ମୁନିମାନେ ନମିଲେ ସତ୍ୱର ।
ସର୍ପ ଦଂଷ୍ଟ୍ର ସପ୍ତଋଷି କରି ଦରଶନ
ବୋଇଲେ ଶୁଣିମା ହେଉ ଆହେ ସର୍ବଜନ
ଯେଉଁ ଦୁଷ୍ଟ ସର୍ପମାନେ କରିଲେ ଦଂଶିତ
ଅବିଳମ୍ବେ ତାହାକୁ ମୁଁ କରିବି ନିପାତ ।
ଏତେ ବୋଲି କୋପଭର ହୋଇଣ ରାଜନ
ନାଗକୁ ନାଶିବା ପାଇଁ ଚଳିଲେ ବହନ ।
ନାନା ଅସ୍ତ୍ର ସମ୍ବର୍ତ୍ତକ ଧରନ୍ତେ ହସ୍ତର
ଜଳ ଉଠିଲା ସେ ଅସ୍ତ୍ରମାନ ଧାଡ଼କାର ।
ଭୟରେ ଆକୁଳ ହୋଇ ସର୍ପଗଣ ତହିଁ
ହା ତାତ ମାତ ବୋଲିଣ କାନ୍ଦିଲେ ତୁହାଇ
ପୁଣି ଅସ୍ତ୍ରତେଜ ବ୍ୟାପି ପାତାଳ ନଗରେ
ପୋଡ଼ି ପକାଇଲା ସେହି ଅସ୍ତ୍ର ଯେ ସତ୍ୱରେ ।
କାହା ଫଣା କାହା ଲାଞ୍ଜ ହୋଇଲା ଦହନ
ବସ୍ତ୍ର ଅଳଙ୍କାରମାନ ଛାଡ଼ି ସର୍ପଗଣ ।
ପାତାଳକୁ ଛାଡ଼ି ସବେ ପୁତ୍ର ପତ୍ନୀ ସଙ୍ଗେ
ମରୁତ ଜନନୀ ପାଶେ ପ୍ରବେଶିଲେ ବେଗେ ।
ଚରଣ ତଳେ ତାଙ୍କର ପଶିଣ ଶରଣ
କହିଲେ ସମସ୍ତ କଥାମାନ ବିସ୍ତାରିଣ ।
ଆମ୍ଭମାନଙ୍କୁ ବହନ୍ତୁ ରକ୍ଷାକର ମାତ
ନୋହିଲେ ତୁମ୍ଭ ସନ୍ତାନେ ହୋଇବେ ନିପାତ
ମରୁତ ଜନନୀ ଶୁଣି ସର୍ପଙ୍କର ଗିର
ଆପଣା ପତିଙ୍କ ଆଗେ କହିଲେ ସତ୍ୱର ।
ଶରଣ ପଶିଲେ ଆସି ପନଗ ସକଳେ
ମରୁତକୁ ନିବାରଣ କର ଏତେବେଳେ ।
ଅବୀକ୍ଷିତ ପତ୍ନୀ କଥା କରନ୍ତେ ଶ୍ରବଣ
ବୋଇଲେ ମଧୁର ବାକ୍ୟେ ଆଗୋ ପ୍ରିୟେ ଶୁଣ
ମରୁତ ଯେ ରୋଷଭର ହୋଇଣ ଅନ୍ତରେ
ବିନାଶ କରୁଛି ସର୍ପ କୁଳକୁ କ୍ରୋଧରେ ।

ସହଜେ ସେଥିରୁ ସେହୁ ନିସ୍ତାର ନୋହିବ
ଏହା ଶୁଣି ସର୍ପ ମାନେ ଚଳିଲେକ ସର୍ବ ।
ଆମ୍ଭେ ଯେ ଶରଣାଗତ ଚରଣେ ତୁମ୍ଭର
ଦୟାକରି ବାରେ ମାତ୍ର କୃପା ଦାନ କର ।
ସର୍ପ ମାନଙ୍କ ବଚନ ଶୁଣି ଅବୀକ୍ଷିତ
ପାଶକୁ ହକାରି ନିଜ ପତ୍ନୀଙ୍କୁ ତୁରିତ ।
ବୋଇଲେ ଶରଣାଗତ ଏହି ପନ୍ନଗଙ୍କୁ
ରକ୍ଷା କରିବା ନିମନ୍ତେ ଯିବି ମୁଁ ଆଗକୁ ।
ସନ୍ତାନ ପାଶକୁ ବେଗେ କରିଣ ଗମନ
ପ୍ରଥମେ ବୁଝାଇ ତାକୁ କରିବି ବାରଣ ।
ମୋ କଥା ଯଦ୍ୟପି କାଳେ ନ ଶୁଣିବ ସେହି
ସମୁଚିତ ପ୍ରତିଫଳ ତାହାକୁ ଦେବଇଁ ।
ଏତେ ବୋଲି ବୀରବର ଧନୁ ଧରି କରେ
ଗମନ କରିଲେ କ୍ଷଣେ ନରହି ସେଠାରେ ।
ସୂର୍ଯ୍ୟବଂଶ ଯଶ କୀର୍ତ୍ତି ଅପୂର୍ବ କଥନ
ଶିବଚନ୍ଦ୍ର ବିରଚିଲେ କ୍ଷେତ୍ରବାସୀ ଘେନ ।

ଇତଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ମରୁତ ମହାତ୍ମ୍ୟ
ବର୍ଣ୍ଣନେ ନାମ ସପ୍ତଦଶୋଽଧ୍ୟାୟଃ ।

—※—

## ଅଷ୍ଟାଦଶ ଅଧ୍ୟାୟ

### ସର୍ପ ମାନଙ୍କର ଉଦ୍ଧାର ହେବା ବିଷୟ ବର୍ଣ୍ଣନ

ସୂତ ଉବାଚ:

ସ ତୁ ତସ୍ୟାଃ ସୁତଂ ଦୃଷ୍ଟ୍ୱା
ଗୃହୀତ ବର କାର୍ମୁକମ୍
ଧନୁଃ ଅସ୍ୱଞ୍ଚ ତସ୍ୟୋଗ୍ରଂ
ଜ୍ୱାଳା ବ୍ୟାପ୍ତ ଦିଗନ୍ତରମ୍ ।

ପୌରାଣିକ ସୁରବର ଆନନ୍ଦିତ ହୋଇ
କହନ୍ତି ହୋ ତପିଗଣ ଶୁଣ ମନ ଦେଇ ।
ସ୍ୱହିଁ ଦେଖିଲେ ନୃପତି ଆପଣା ନୟନ
ଧନୁଧରି ଉଭା ଅଛି ସ୍ନେହର ନନ୍ଦନ ।
ଧନୁ ତୁଳେ ବହୁ ବହୁ ଶରମାନ ବାତ
ପ୍ରଜ୍ୱଳିତ ଅଗ୍ନିସମ ବାଣ ବନ୍ଧିଅଛି ।
ସେହି ଅସ୍ତ୍ର ପ୍ରବେଶିଛି ପାତାଳ ନବରେ
ତାହା ଦେଖି କହେ ନୃପ ଆପଣା ମନରେ ।
ଅସ୍ତ୍ର ଚଳା ବନ୍ଦକରି ଆରେ ବାପଧନ
ରୋଷକଶ ହୁଅ ନାହିଁ ଘେନ ମୋ ବଚନ ।
ତା ଶୁଣି ମରୁତ ବୀର କହେ ସେହିକ୍ଷଣ
ମୋହ ନିକଟରେ ଅପରାଧି ସର୍ପଗଣ ।
ପୃଥିବୀ ଶାସନ ମୁହିଁ କରେ ଧର୍ମମତେ
ପ୍ରଜାମାନଙ୍କ ମଙ୍ଗଳ ଦେଖିବା ନିମନ୍ତେ ।
ଏହି ଦୁଷ୍ଟ ସର୍ପମାନେ କରି ଆଗମନ
ସପ୍ତଋଷି ପୁତ୍ରେ କରି ଅଛନ୍ତି ଦଂଶନ ।
ଦୂଷିତ କଲେ ସକଳ ଜଳାଶୟ ନୀର
ଏ ହେତୁ ବଧିବି ଯେତେ ପନ୍ନଗ ନିକର ।
ବ୍ରହ୍ମହତ୍ୟା କରିଛନ୍ତି ଏ ସର୍ପ ଗ୍ରାମରେ
ଅତଏବ ନିବାରଣ ନ କର ହେ ମୋରେ ।
ଅବୀକ୍ଷିତ ବୋଲେ ଶୁଣି ପୁତ୍ରର ବଚନ
ଯଦ୍ୟପି ନରକେ ଯାନ୍ତୁ ସକଳ ବ୍ରାହ୍ମଣ ।
ତଥାପି ମୁହିଁ ବାରଣ କରିବଇଁ ତୋତେ
ଅସ୍ତ୍ର ଜ୍ୱଳନରୁ କ୍ଷାନ୍ତ ହୁଅ ଏ ନିମନ୍ତେ ।
ମରୁତ ବୋଲଇ ତହୁଁ ପିତାଙ୍କୁ ତକ୍ଷଣ
ଯେବେ ନକରିବି ମୁହିଁ ପାପୀଙ୍କ ଦମନ ।
ମୋତେ ଯିବାକୁ ପଡ଼ିବ ନରକ ମଧ୍ୟରେ
ଏଣୁ ତୁମ୍ଭେ ନିବାରଣ ନକର ହେ ମୋରେ ।
ଅବୀକ୍ଷିତ କହେ ଶୁଣ ତୁ ମୋର ବଚନ
ସର୍ପମାନେ ଘେନିଛନ୍ତି ମୋ ପାଶେ ଶରଣ ।
ଏହି ଯୋଗୁଁ ମୋର କଥା ପାଳିତୋଅନ୍ତରେ
ଅସ୍ତ୍ରର ସଂହାର ବାବୁ କର ତୁ ସତ୍ୱରେ ।
ପୁନଶ୍ଚ ମରୁତ କହେ ଶୁଣ ମହୀପତି
ଏହି ସବୁ ଦୁଷ୍ଟ ସର୍ପ ଅପରାଧି ଅତି ।
ଏମାନଙ୍କୁ କ୍ଷମା ନ କରିବି କଦାଚନ
ନିଜଧର୍ମ କେବେ ନ କରିବି ମୁଁ ଲଙ୍ଘନ ।
ତୁମ୍ଭର ବଚନ ରଖି ପାରିବି କପରି
କେବେ ମୁଁ ନ ହେବି ଧର୍ମ ବିରୁଦ୍ଧ ଆଚାରୀ ।
ସେ କାଳରେ ମରୁତକୁ ବୁଝାଏ ଜନକ
ଦେଖ ଅତ୍ୟନ୍ତ ଭୟାକୁ ଏହି ସର୍ପ ଯାକ ।
ଏଣୁ ମୁହିଁ ବାରି ବାରି କରେ ନିବାରଣ
ମୋହର ବଚନ କିମ୍ପା କରୁଛ ଲଙ୍ଘନ ।

ଯଦ୍ୟପି ମୋହର କଥା ନ ରଖିବୁ ତୁହି
ଜାଣିବୁ ନିଶ୍ଚୟ ଅସ୍ତ୍ର ଗୃଳବଇଁ ମୁହିଁ ।
ମୋର ଅସ୍ତ୍ରେ ତୋ ଅସ୍ତ୍ରକୁ କରିବି ଛେଦନ
ମୋହର ସମକ୍ଷେ ତୋର ବୀରତ୍ୱ କେସନ ।
ଏତେ ବୋଲି ଅବୀକ୍ଷିତ ଅତି ରୋଷଭରେ
ଧନୁ ଶରକୁ ଧରି ସେ ଆପଣାର କରେ ।
ଭୀଷଣ କାଳ ଅସ୍ତ୍ରକୁ ଧନୁରେ ଯୋଚିଲି
ଅଗ୍ନି ସମ ଦୀପ୍ତିମାନ ସେ ଅସ୍ତ୍ର ହୋଇଲା ।
କ୍ଷୁଭିତ ହୋଇଲେ ତେଣୁ ପର୍ବତ ସାଗର
ତକ୍ଷଣେ ମରୁତ କହେ ଶୁଣ ହେ ପିଅର ।
ସଂବର୍ତ୍ତିକ ଅସ୍ତ୍ର ମୁହିଁ କରୁଛି ପେଷଣ
ବିନାଶିବ ଏହି ଶରେ ଦୁଷ୍ଟ ସର୍ପ ଗଣ ।
ତୁମ୍ଭ ବଧର ନିମନ୍ତେ ନୁହେଁ ତ କାମନା
ତେବେ କିମ୍ପା ତୁମ୍ଭେ ଅସ୍ତ୍ର କରୁଛ ଯୋଜନା
ଆପଣଙ୍କ ପୁତ୍ର ମୁହିଁ ଆହେ ମହୋଦୟ
ସତ୍ପଥେ ନିରତେ ଥାଏ ଯେ କେହି ତନୟ
ତାହା ଉପରେ କିମ୍ପାଇଁ ଏହି ଆଚରଣ
ତୁମ୍ଭ ଚରଣେ ପିତା ହେ ଏ ମୋ ନିବେଦନ
ଏହା ଶୁଣି ଅବୀକ୍ଷିତ କହେ ତତକ୍ଷଣ
ଶରଣାଗତଙ୍କୁ ମୁହିଁ କରିବି ରକ୍ଷଣ ।
ସଂକଳ୍ପ କରିଛି ମୁଁ ଯେ ଆପଣାର ମନେ
ଏଥିରେ ବ୍ୟାଘାତ କରୁ କେବଣ କାରଣେ ।
ଜୀବନ ଥାଉଁ ଥାଉଁ ତୁ ଜାଣରେ ନନ୍ଦନ
ମୋ ନିକଟେ ନ ପାରିବୁ ରଣେ କଦାଚନ ।
ହୁଏତ ତୁ ଅସ୍ତ୍ର ବୀର୍ଯ୍ୟେ ବଧକରି ମୋରେ
ତଦନ୍ତେ ସଂହାର କର ପନ୍ନଗ ନିକରେ ।
ନତୁବା ଅସ୍ତ୍ରେ ତୋତେ କରିଣ ନିଧନ
ଏମାନଙ୍କୁ ରକ୍ଷା କରିବଇଁରେ ନନ୍ଦନ ।
ପଡ଼ିଣ ବିପଦ ଯେବା ଘେନନ୍ତି ଶରଣ
ସେମାନଙ୍କୁ ଅନୁଗ୍ରହ ନ କରେ ଯେ ଜନ ।
ତାହାର ଜୀବନ ଧିକ ଧିକ ଶତବାର
ଅନ୍ତକାଳେ ମୋକ୍ଷ ଲଭ ନୁହଁଇଟି ତାର ।
ମୋ ପାଶରେ ସର୍ପମାନେ ଆସି ଭୟ ଚିତ୍ତେ
ଶରଣ ଘେନି ଅଛନ୍ତି ଆକୁଳେ ସମସ୍ତେ ।
ତୁହି କରୁଅଛୁ ଏମାନଙ୍କ ଉପକାର
ବାଧବୋଲି ସ୍ତରେ ସ୍ତରେ ଭବେ ମୁଁ ମନର

ମରୁତ କହଇ ଶୁଣ ପିତା ମହାଶୟେ
ଯେଉଁକାଳେ ପ୍ରଜା ପାଳନରେ ବିଘ୍ନ ହୁଏ ।
ପୁଣି ଯେହୁ ସେହି ବିଘ୍ନ କରେ ଆଚରଣ
ତାହାକୁ ଅବଶ୍ୟ ବଧ କରନ୍ତି ସୁଜନ ।
ସେ ହେତୁ ମୁହିଁ ସଂହାର କରିବି ତୁମ୍ଭରେ
ଏଣୁ ତୁମ୍ଭେ କୋପମୂର୍ତ୍ତି ନ ହୁଅ ମୋପରେ
ମୋହର କର୍ତ୍ତବ୍ୟ ଅଟେ ସ୍ୱଧର୍ମ ପାଳନ
ନାହିଁ ତୁମ୍ଭପରେ ମୋର ରୋଷ କଦାଚନ ।
ଏହିରୂପେ ପିତା ପୁତ୍ର ହୁଅନ୍ତେ ନିଶ୍ଚୟ
ମୁନିମାନେ ଦେଖି ହେଲେ ଅତ୍ୟନ୍ତ ବିସ୍ମୟ
ବହନ ସେ ମୁନିଗଣ କରି ଆଗମନ
ଉଭୟଙ୍କ ମଧ୍ୟେ ଉଭା ହୋଇଲେ ତକ୍ଷଣ ।
ପ୍ରବୋଧିଣ ମରୁତ୍ତକୁ କହିଲେ ସେ ଧୀରେ
ଅସ୍ତ୍ର ପ୍ରହାର ନକର ଜନକ ଉପରେ ।
ତା ପରେ ଅବୀକ୍ଷିତକୁ କରି ସମ୍ବୋଧନ
କହିଲେ ମଧୁର ବାକ୍ୟେ ତାଙ୍କୁ ମୁନିଗଣ ।
ମହା ବଳୟାର ଅଟେ ତୁମ୍ଭର କୁମର
ତାକୁ ବିଧାନ ନୁହଇଁ କରିବା ସଂହାର ।
ତା ଶୁଣି ମରୁତ ବୀର କହେ ତତକ୍ଷଣ
ମୁଁ ଅଟଇ ମହୀପତି ଆହେ ମୁନିଗଣ ।
ଦୁଷ୍ଟଙ୍କ ଦମନ ନିଜ କର୍ତ୍ତବ୍ୟ ମୋହର
ଶିଷ୍ଟ ପାଳନ କରିବା ଧର୍ମ ବ୍ୟବହାର ।
ସର୍ପମାନେ ଅପରାଧୀ ମୋହର ଗୋଚରେ
ନିବେଦନ କଲି ମୁନିମାନେ ବୁଝ ଧୀରେ ।
ଅବୀକ୍ଷିତ ଏହା ଶୁଣି କହେ ତତକ୍ଷଣ
ଶରଣାଗତକୁ ରକ୍ଷା ପ୍ରଧାନ ଧରମ ।
ଶରଣାଗତକୁ ମୋର ପୁତ୍ର ବଧ କରେ
ଏଣୁ ମୁହିଁ ଅପରାଧୀ ଶାସ୍ତ୍ରର ବିଚାରେ ।
ଏମନ୍ତ ଶୁଣି କହନ୍ତି ଋଷି ମୁନିଗଣ
ଭୟରେ ଚଞ୍ଚଳ ନେତ୍ର ଦେଖି ସର୍ପଗଣ ।
ନାଶି ଅଛନ୍ତି ଏମାନେ ଯେଉଁ ବ୍ରାହ୍ମଣଙ୍କୁ
ବଞ୍ଚାଇଣ ଦେବୁ ଆମ୍ଭେମାନେ ଯେ ତାହାଙ୍କୁ
ପିତା ପୁତ୍ର ବିବାଦରେ ନାହିଁ ପ୍ରୟୋଜନ
ରାଜାରେ ପ୍ରଧାନ ଅଟ ତୁମ୍ଭେ ଦୁଇଜଣ ।
ଧର୍ମବନ୍ତ ଗୁଣନିଷ୍ଠ ଉଭୟେ ସମାନ
ଆମ୍ଭର ବଚନ ଏବେ କର ଅବଧାନ ।

ଏହିରୂପେ କହୁଛନ୍ତି ଯେତେ ମୁନିଗଣେ
ଆଗମନ କରେ ବୀରଦେବୀ ସେହିକ୍ଷଣେ ।
ଅବୀକ୍ଷିତଙ୍କ ଜନନୀ ଆସିଣ ସେଠାକୁ
ମଧୁର ବାକ୍ୟେ ବୁଝାଇ ଲଗିଲା ପୁତ୍ରକୁ ।
ତବ ସୁତ ଏ ମରୁତ ମୋହର କଥାରେ
ଭୁଜଙ୍ଗ ବଧେ ଉଦ୍ୟତ ଜାଣନ୍ତୁ ବିଧିରେ ।
ଯଦ୍ୟପି ଯାଇଁ ଉଠନ୍ତୁ ମୃତ ଦ୍ୱିଜଗଣ
ତେବେ ବିବାଦରେ ଆଉ ନାହିଁ ପ୍ରୟୋଜନ
ଏହାଶୁଣି କହେ ତହିଁ ମରୁତ ଜନନୀ
ଯାହାର ନାମ ଜଗତେ ବିଦିତ ଭାମିନୀ ।
ପାତାଳେ ଅଛନ୍ତି ରହି ଯେତେ ନାଗଗଣ
ମୋତେ କରି ଆଣିଥିଲେ ସେହୁ ନିମନ୍ତ୍ରଣ ।
ସେ ହେତୁ ନିଯୁକ୍ତ ମୁହିଁ କରିଛୁ ପତିରେ
ଯାହା ଦ୍ୱାରା କାର୍ଯ୍ୟ ସିଦ୍ଧି କଲେ ସେଅଚିରେ
ଏବେ ବିବାଦର ଆଉ ନାହିଁ ପ୍ରୟୋଜନ
ଉଭୟେ ନିବୃତ୍ତ ଦୁଃଖେ ମାନ ମୋ ବଚନ
ଅବୀକ୍ଷିତ ସ୍ନେହଭରେ କଲା ଆଲିଙ୍ଗନ
ମରୁତ ପିତାର ପାଦେ କରିଲା ବନ୍ଦନ ।
ମନର ହରଷେ ବହୁ ଆଶୀର୍ବାଦ କରେ:
ଶତ୍ରୁଗଣ ବଧ ବୋଲି କହଇ ଅଚିରେ ।
ଚିରକାଳ ରାଜ୍ୟ ଭୋଗ କରି ବାପଧନ
ପୁତ୍ର ପୌତ୍ରୀ ଘେନି ସୁଖେ ରୁହ ଯା ସଦନ
ଏ ଉତ୍ତାରୁ ପିତା ପୁତ୍ର ସେ ବୀର ଭାମିନୀ
ରାଜଭବନକୁ ଗଲେ କରି ଜୟଧ୍ୱନି ।
ବହୁଦିନ ବୀରସତୀ ତପସ୍ୟା କରିଣ
ଅନ୍ତକାଳେ ହେଲା ଲାଭ ପତି ଦେବ ଜାଣ ।
ନିଃଶେଷେ ମରୁତ ଜୟ କରି ଶତ୍ରୁଗଣେ
ଧର୍ମତ ରହିଲା ସୁଖେ ପୃଥିବୀ ପାଳଣେ ।
ସାତ ଭାର୍ଯ୍ୟା ମରୁତର ବିଖ୍ୟାତ ଭୁବନ
ତାହାଙ୍କର ନାମ ଏବେ କହୁଅଛୁ ଶୁଣ ।
ବିଦର୍ଭ ତନୟା ଏକ ନାମ ପ୍ରଭାବତୀ
ସୁବତୀ କନ୍ୟା ସୌବୀରୀ ପତିବ୍ରତା ସତୀ ।
ତୃତୀୟ ମଗଧ କନ୍ୟା ସୁକେଶୀ ରମଣୀ
ଶ୍ରୀକୈକେୟୀ ମଦ୍ରସୁତା ସର୍ବ ସୁଲକ୍ଷଣୀ ।
ସୈରିନ୍ଧ୍ରୀ କୈକେୟ ସୁତା ଧର୍ମ ପରାୟଣା
ସିନ୍ଧୁପୁତ୍ରୀ ବପୁଷ୍ମତୀ ମୋହିନୀ ଲଳନା ।
ଚେଦି କନ୍ୟା ସୁଶୋଭନା ଅତି ରୂପବତୀ
ମରୁତର ଏହି ସାତଜଣ ପତ୍ନୀ ସତୀ ।
ଅଠର ପୁତ୍ର ଲଭିଲା ମରୁତ ରାଜନ
ମହାବଳୀ ମହାଯୋଦ୍ଧା ସେ ସବୁ ନନ୍ଦନ ।
ମରୁତ ସମାନ ରାଜା ନାହିଁ ଏ ଶଯୁନେ
ଏକଛତ୍ର ରାଜା ସେହୁ ଥିଲା ଭୂମଣ୍ଡଳେ ।
ମରୁତ ଚରିତ କର୍ଣ୍ଣେ ଶୁଣେ ଯେଉଁଜନ
ତା ଦେହେ ପାତକ ନ ରହଇ କଦାଚନ ।
ସୂର୍ଯ୍ୟବଂଶୀ ରାଜାଙ୍କର ଅସୀମ ଚରିତ
ବ୍ରହ୍ମ ପୁରାଣେ ରଚଇ କ୍ଷେତ୍ରବାସୀ ଗୀତ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ନାଗୋଦ୍ଧର କଥନଂ
ନାମ ଅଷ୍ଟାଦଶୋଽଧ୍ୟାୟଃ ।

---

## ଊନବିଂଶ ଅଧ୍ୟାୟ

## ନରିଷ୍ୟନ୍ତ ଚରିତ ବର୍ଣ୍ଣନ

ଶୌନକ ଉବାଚ

ମରୁତ ଚରିତଂ କୃତ୍ସ୍ନଂ
ସାଦରାତ୍ କଥିତଂ ତ୍ୱୟା
ତତ ସନ୍ତତିମଶେଷେଣ
ଶ୍ରୋତୁମିଚ୍ଛା ପ୍ରବର୍ତ୍ତତେ ।
ତତ୍ ସନ୍ତତୌ କ୍ଷିତିଶା
ଯେ ରାଜ୍ୟାର୍ହା ବୀର୍ଯ୍ୟଶାଳିନଃ
ତାନହଂ ଶ୍ରୋତମିଚ୍ଛାମି
ତ୍ୱୟା ଖ୍ୟାତାନ୍ ମହା ମୁନେ

ଶୌନକ ବୋଲନ୍ତି ଆହେ ବିଜ୍ଞ ପୌରାଣିକ
ମରୁତ ଚରିତ କହିଲ ଯେ ଠିକ ଠିକ ।
ବଖାଣ ଯତନେ ତାର ସନ୍ତତିର ଗୀର
ଶୁଣିବା ପାଇଁକ ଇଚ୍ଛା ହେଉଛି ଆମ୍ଭର ।
ତାଙ୍କ ସନ୍ତତି ମଧ୍ୟରେ ଯେହୁ ନରପତି
ରାଜ୍ୟ ଯୋଗ୍ୟ ଅଛନ୍ତି ଯେ ସେହି ମହାମତି ।
ତୁମ୍ଭ ମୁଖୁ କରିବାକୁ ତା ସବୁ ଶ୍ରବଣ
ଆମ୍ଭେ ସର୍ବ ମୁନିମାନେ ବଳାଉଛୁ ମନ ।

### ସୂତ ଉବାଚ

ସୂତ ମୁନି କହନ୍ତି ହେ ଶୁଣ ମୁନିଗଣ
ବର୍ଣ୍ଣନ କରିବି ସେହି ଅପୂର୍ବ କଥନ ।
ମରୁତର ଏକ ପୁତ୍ର ନରିଷ୍ୟନ୍ତ ନାମ
ଆଉ ଯେ ଥିଲେ ସତର ପୁତ୍ର ଗୁଣଧାମ ।
ନରିଷ୍ୟନ୍ତ ସର୍ବ ଜ୍ୟେଷ୍ଠ ସେ ଯେ ମହାବୀର
ସର୍ବ ଗୁଣେ ପରିପୂର୍ଣ୍ଣ ପରମ ସୁଧୀର ।
ସତୁରି ସହସ୍ର ବର୍ଷ ରାଜ୍ୟ ଭୋଗ କରି
ତଦନ୍ତେ ବିରାଗୀ ହେଲେ ରାଜ୍ୟର ଉପରି ।
ନାନାବିଧ ଯଜ୍ଞମାନ କରିଣ ସାଧନ
ନରିଷ୍ୟନ୍ତେ ରାଜ୍ୟଭାର କରି ସମର୍ପଣ ।
ମରୁତ ପଶିଲେ ସୁଖେ କାନନ ମଧ୍ୟରେ
ତପସ୍ୟା କରି ଲାଗିଲେ ବିଧି ଅନୁସାରେ ।
ତାର ଯଶେ ପୂର୍ଣ୍ଣ ହେଲା ଏ ତିନି ଭୁବନ
ଅବଶେଷେ ସ୍ୱର୍ଗ ପୁରେ କଲେ ସେ ଗମନ ।
ନରିଷ୍ୟନ୍ତ ମହା ବୁଦ୍ଧିମନ୍ତ ଜଗତରେ
ରାଜ୍ୟଲାଭ କରି ସେହୁ ଚିନ୍ତଇ ମନରେ ।
ମୋହର ବଂଶରେ ପୂର୍ବେ ଯେଉଁମାନେ ଥିଲେ
ସେମାନେ ମହୀମଣ୍ଡଳେ ଯଶ ରଖିଗଲେ ।
ସର୍ବେ ଥିଲେ ଯଜ୍ଞଶୀଳ ମହା ବଳବାନ
ସ୍ୱଧର୍ମରେ ରହି କଲେ ଧରାକୁ ପାଳନ ।
ରାଶି ରାଶି ଧନ ଦାନ କରିଛନ୍ତି ଭଲେ
ସଂଗ୍ରାମେ ହାରି ନାହାନ୍ତି କେହିକେବେହେଲେ
ସେମାନଙ୍କ ସମ କାରେ ନ ଦେଖେ ନୟନ
ଯାହା ହେଉ କଥାଏ ମୁଁ କରେ ବିବେଚନ
ସେମାନେ କରନ୍ତି ନାହିଁ ଏମନ୍ତ ଯେ କାର୍ଯ୍ୟ
ବିଖ୍ୟାତ ହୋଇବ ସାଧି ଅବନୀ ସମାଜ ।
ରାଜାର ସ୍ୱଭାବ ଏହି ଧର୍ମ ଅନୁସାରେ
ପାଳନ କରିବେ ଧରା ପ୍ରୀତି ପରକାରେ ।
ଅଧର୍ମ ମାର୍ଗରେ ଯଦି କରନ୍ତି ପାଳନ
ପାପ ଭାଗି ହୋନ୍ତି ନିଶ୍ଚେ ଏ ଶାସ୍ତ୍ର ବଚନ ।
ଅନ୍ତିମ କାଳରେ ନର୍କ ମଧ୍ୟରେ ପଡ଼ନ୍ତି
କେବେହେଁ ତହିଁରୁ ନାହିଁ ତାଙ୍କ ଅବ୍ୟାହତି
ଦାନ କରି ଅବସନ୍ନ ହୁଏ ଯେଉଁ ନର
ପରିଣାମେ ତାକୁ ରକ୍ଷା କରନ୍ତି ଠାକୁର ।
ଆଭିଜାତ୍ୟ କୋପ ଯୁଦ୍ଧ ଧର୍ମ ନୃପତିର
ମରୁତ ଥିଲେ ସେ ଏହି ଗୁଣର ଆଧାର ।
ମୋହର ଜନକ ଅତି ଧାର୍ମିକ ରାଜନ
ତାଙ୍କ ସମ ରାଜ୍ୟେ ନ ଦେଖଇ କଦାଚନ ।
ଏଣୁ ଭାବୁଛି ମୁଁ ଏବେ କେଉଁ କାର୍ଯ୍ୟ କରି
ଏ ସଂସାରେ ହେବି ପୂର୍ବ ପୁରୁଷଙ୍କ ପରି ।
କେମନ୍ତ ପ୍ରକାରେ ଧର୍ମ ଅର୍ଜିବି ମୁହିଁ
ମନରେ ବିଚାରି କିଛି ବୁଝି ପାରୁନାହିଁ ।
ମୋ ପୂର୍ବ ପୁରୁଷମାନେ ନକଲେଟି ଯାହା
ମୁହିଁ ଯଥାସାଧ୍ୟମତେ ସମ୍ପାଦିବି ତାହା ।
ସେମାନେ ଯାଜ୍ଞିକ ଥିଲେ ବ୍ରହ୍ମାଣ୍ଡ ମଧ୍ୟରେ
ଦମ ଗୁଣବନ୍ତ ସର୍ବେ ଖ୍ୟାତ ଅବନୀରେ ।
ନଥିଲେ ସଂଗ୍ରାମେ ସେ ବିମୁଖ କଦାଚନ
ଏହେତୁ ତାଙ୍କ ପୌରୁଷ ଖ୍ୟାତ ତ୍ରିଭୁବନ ।
ଏଣୁ ମୁଁ ନିଷ୍କାମ କର୍ମ କରିବି ଯତନେ
ଆହୁରି କଥାଏ ମୁହିଁ ବିଚାରୁଛି ମନେ ।
ଅବିଶ୍ରାମ ଯଜ୍ଞ ସେହୁ କଲେସୁଦ୍ଧା ଧନ
ମାତ୍ର ଅନ୍ୟ ଜନେ ନ କରନ୍ତି ସେ ବିଧାନ ।
ମୁହିଁ ଏବେ ସେହି କାର୍ଯ୍ୟ ସାଧନ କରିବି
ତାହେଲେ ଜଗତେ କୀର୍ତ୍ତି ସ୍ଥାପିଣ ପାରିବି ।
ଏହିପରି ମନେ ମନେ କରି ସେ ଚିନ୍ତନ
ଅବିଳମ୍ବେ କଲେ ଯଜ୍ଞ ବିଧି ଆୟୋଜନ ।
କେଉଁକାଳେ କରିନାହିଁ କେ ସେପରି ଯଜ୍ଞ
ଗୃହ ଦ୍ୱାରେ ଆୟୋଜନ କରାଏ ସରବ ।
ବିପ୍ରଙ୍କ ଜୀବିକା ଯହିଁ ହୁଏ ସମ୍ପାଦନ
ଏମନ୍ତ ଧନ ସେ ରାଜା କଲେ ବିତରଣ ।
ମତଗୁଣେ ଅନ୍ନ ଦେଲେ ଯଜ୍ଞବାଳେ ସେହି
ଭୂରି ଭୂରି ଧେନୁ ବସ୍ତ୍ର ଦେଲେ ହୃଷ୍ଟ ହୋଇ
ଅଳଙ୍କାର ଧାନ୍ୟାଗାର ସେ କଲେ ଅର୍ପଣ
ଏହିରୂପେ କଲେ ଯଜ୍ଞ କର୍ମ ଅନୁଷ୍ଠାନ ।
ସେ ଉତ୍ତାରୁ ପୁଣି ଯଜ୍ଞ ଆୟୋଜନ କରି
ମରୁତ ଘୋଷଣା ଦେଲେ ଅବନୀ ଉପରି ।
ନ ପାଏ ଯୋଗ୍ୟ ଯାଜକ ଗୋଟିଏ ବ୍ରାହ୍ମଣ
ଚିନ୍ତିତ ହୁଅଇ ତେଣୁ ମରୁତ ନନ୍ଦନ ।
ଋତ୍ୱିକ କାରଣେ ଯାଏ ଯାହା ପାଶେ ଭଲେ
ମୁହିଁ ଆନସ୍ଥାନେ ବ୍ରତୀ ରହିଛି ସେ ବୋଲେ

ଆମ୍ଭଙ୍କୁ ଆପଣେ ଯେଉଁ ଧନ ଦେଇଛନ୍ତି
ଆମ୍ଭେ ସେହି ଧନ ଯଜ୍ଞ କରୁ ନିବାରନ୍ତି ।
ସେ ଧନମାନ ତଥାପି ଶେଷ ହେଉନାହିଁ
କେମନ୍ତେ ବା ତବ ଯଜ୍ଞେ ଅବା ବ୍ରତ ପାଇଁ
ତା ପାଖକୁ ଗଲେ ନରଶ୍ୟନ୍ତ ନରପତି
ସେହି ବ୍ରାହ୍ମଣ କହିଲେ ତାଙ୍କୁ ଏହିମତି ।
ସର୍ବଧରା ଅଧୀଶ୍ୱର ଥିଲେ ନରଶ୍ୟନ୍ତ
ତଥାପି ଋତ୍ୱିକ ଜଣେ ନ ପାଇଲେ ସେ ତ
ରାଜ ଧନମାନ ନେଇ ସକଳ ବ୍ରାହ୍ମଣ
ମହାଧନୀ ହୋଇଛନ୍ତି ଅବନୀରେ ଜାଣ ।
କେଉଁ ବ୍ରାହ୍ମଣର କିଛି ଅଭାବ ଯେ ନାହିଁ
ରାଜଧନେ ନିଜେ ଯଜ୍ଞ କରୁଛନ୍ତି ସେହି ।
ସେକାଳେ ଚିନ୍ତଣ ମନେ ମରୁତ ନନ୍ଦନ
ବାହାର ବେଦୀରେ ଦାନ ଆରମ୍ଭିଲା ପୁଣ ।
ତେବେ ପରିଗ୍ରହ କରିବାକୁ ସେହି ଧନ
ରାଜ୍ୟ ମଧ୍ୟରୁ ନଇଲେ ଜଣେ କେ ବ୍ରାହ୍ମଣ ।
ତେଣୁ କାହାର କିଛିହିଁ ଅଭାବ ଯେ ନାହିଁ
ନ ଆସିଲେ ଆଉ ଥରେ ଦାନ ନେବା ପାଇଁ
ସେ ରାଜାଙ୍କ ଦେବା ଧନେ ସମସ୍ତଙ୍କ ଘର
ପରିପୂର୍ଣ୍ଣ ରହିଅଛି ରଜନୀ ବାସର ।
ରାଜ ଭଣ୍ଡାରେ ଯେପରି ଧନ ରତ୍ନ ଅଛି
ବ୍ରାହ୍ମଣମାନଙ୍କ ଘରେ ସେ ସବୁ ପୂରିଛି ।
ଏଣୁ ଧନ ଦ୍ରବ୍ୟ ଆଶା ନ କରନ୍ତି କେହି
ମହାସୁଖେ ଥିବେଛନ୍ତି ଯଜ୍ଞେ ମନ ଦେଇ ।
ତା ଦେଖି ନିର୍ବିଘ୍ନ ଚିତ୍ତେ ମରୁତ ନନ୍ଦନ
କହି ସେ ଲାଗିଲା ଆହେ ସାର୍ଥକ ଜୀବନ ।
ପୃଥିବୀରେ ଧନ ହୀନ ଜଣେ ନ ଦେଖଇ
ଆମ୍ଭର ଦାନରେ ଦ୍ୱିଜେ ଛନ୍ତି ଧନୀ ହୋଇ
ମୋର ସୌଭାଗ୍ୟର ସୀମା ନାହିଁ ଏଣୁକରି
ଧନ୍ୟ ଧନ୍ୟ ସେ ରାଇଜ ପରଜାଙ୍କ ଶିରୀ ।
ମାତ୍ର ଏହି କଷ୍ଟ ମୋର ରହିଲା ଅନ୍ତରେ
ଯଜ୍ଞ ବିନା ଏ ମୋ ଧନ ଅଛି ଯା ବ୍ୟର୍ଥରେ
ପୃଥିବୀର ସର୍ବଜନ ହେଲେ ଯଜମାନ
କ୍ୱାପି ଯାଜକ ଆଉ ନାହିଁ ବିଦ୍ୟବାନ ।
ଯେହେତୁ ଦାନକୁ କେହି ନକରେ ଗ୍ରହଣ
ଧନହୀନ ହୋଇ କେହି ନାହିଁ ବିପ୍ରଗଣ ।

ଏହିରୂପେ ରାଜା ମନେ ଚିନ୍ତି ନିରବଧି
ଯଜ୍ଞ ଆୟୋଜନ ପୁଣି କରି ଯଥାବିଧି ।
ବହୁ କଷ୍ଟେ କେତେଜଣ ଋତ୍ୱିକ ପାଇଣ
ପ୍ରଫୁଲ୍ଲ ମାନସେ ତାହା କଲେକ ସମ୍ପନ୍ନ ।
ଯେଉଁ ସବୁ ଧନ ଦେଇଥିଲେ ନରପତି
ତାହା ଘେନ ବିପ୍ରମାନେ ଯଜ୍ଞ ଆରମ୍ଭନ୍ତି ।
ପ୍ରାଚୀଦିଗେ ଅଷ୍ଟାଦଶ କୋଟି ଯଜ୍ଞ ହୁଏ
ସପ୍ତଦଶ କୋଟି ଯଜ୍ଞ ପଶ୍ଚିମରେ ହୁଏ ।
ଉତ୍ତରେ ପଞ୍ଚାଶ କୋଟି ଯଜ୍ଞ ସମ୍ପାଦନ
ଦକ୍ଷିଣେ ଚଉଦ କୋଟି ଯଜ୍ଞ ଅନୁଷ୍ଠାନ ।
ଏହି ସବୁ ଯଜ୍ଞ ହୁଏ ଏକଇଁ ସମୟେ
ନିରେଖନ୍ତି ଦେବଗଣ ବିସ୍ମିତ ହୃଦୟେ ।
ଏହିରୂପେ ଯଜ୍ଞ କରେ ମରୁତ ନନ୍ଦନ
ଧର୍ମ ଅନୁସାରେ କରେ ରାଜ୍ୟକୁ ପାଳନ ।
ତା ସମାନ ଧର୍ମନିଷ୍ଠା ଦେଖାନାହିଁ କେଣେ
ତାହାର ଯଶ ଗାଆନ୍ତି ଏ ତିନି ଭୁବନେ ।
ଧନ୍ୟ ଧନ୍ୟ ସେହି ଦାନୀ ମରୁତ ନନ୍ଦନ
ନାନା ଯଜ୍ଞ କର୍ମ କରି ବାଣ୍ଟଇ ଯେ ଧନ ।
ସେହି ଦାନବୀର ଚକ୍ରବର୍ତ୍ତୀର ଚରିତ
ଘୋଷି ହୁଅନ୍ତି ସର୍ବଦା ଅମର ସମସ୍ତ ।
ସୂର୍ଯ୍ୟବଂଶର ଚନ୍ଦ୍ରମା ମରୁତ କୁମାର
ଅକ୍ଷୟ କୀରତି ଧ୍ୱଜା ଉଡ଼ାଏ ସେ ବୀର ।
ନରିଷ୍ୟନ୍ତର ଚରିତ ଅମୃତ ସାଗର
କର୍ଣ୍ଣମୁଖେ ମୁନିମାନେ ସର୍ବେ ପାନ କର ।
ଭକ୍ତିଭରେ ଯେହୁ ଏହା କରେ ଅଧ୍ୟୟନ
ଅଥବା ଏକାନ୍ତ ମନେ ଯେ କରେ ଶ୍ରବଣ ।
ସର୍ବ ଯଜ୍ଞ ଫଳ ପାଏ ସେହି ମହାମତି
ଅନ୍ତେ ମେ ତାହାର ହୁଏ ବ୍ରହ୍ମପୁରେ ଗତି ।
ଇହକାଳେ ଧନ୍ୟ ଧାନ୍ୟ ଆଦି ପାଇ ସୁଖେ
ଆନନ୍ଦେ ଦିନ ହରଇ ରହି ନର ଲୋକେ ।
ପୁତ୍ର ପୌତ୍ର ପତ୍ନୀ ସୁଖେ ରହନ୍ତି ତାହାର
ଧର୍ମ ଅର୍ଥ କାମ ମୋକ୍ଷ ଲଭେ ସେହି ନର ।
ସେହି ଧାର୍ମିକ ପ୍ରାଣୀର ନ ରହେ କଳୁଷ
ଉଭୟ ଲୋକରେ ଭଲେ ବିକାଶଇ ଯଶ ।
ଏମନ୍ତେ ଲୋମହର୍ଷଣ ପୁରାଣ ବକତା
ମୁନିମେଳେ କହିଲେ ଯେ ନରିଷ୍ୟନ୍ତ କଥା ।

ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଏ ଗୀତ ଲେଖଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ନରଷ୍ୟନ୍ତ ଚରିତ ବର୍ଣ୍ଣନଂ
ନାମ ଊନବିଂଶୋଽଧ୍ୟାୟଃ ।



## ବିଂଶ ଅଧ୍ୟାୟ

## ସୁମନା ସ୍ୱୟମ୍ବର କଥନ

ସୂତ ଉବାଚ

ନରିଷ୍ୟନ୍ତସ୍ୟ ତନୟୋ
ଦୁଷ୍ଟାରି ଦମନୋ ଦମଃ ।
ଶକ୍ରସ୍ୟେବ ବଳଂ ତସ୍ୟ
ଦୟାଶୀଳଂ ମୁନେରିବ ।
ବାଭ୍ରବ୍ୟାମିନ୍ଦ୍ରସେନାୟାଂ
ସ ଯଜ୍ଞେ ତସ୍ୟଭୂପତେଃ ।
ନବ ବର୍ଷାଣି ଜଠରେ
ସ୍ଥିତ୍ୱା ମାତୁର୍ମହାଯଶାଃ ॥

ସୂତମୁନି କହନ୍ତି ଯେ ଶୁଣ ତପୋଧନ
ଦମ ନାମେ ଥିଲା ନରଷ୍ୟନ୍ତର ନନ୍ଦନ ।
ଦଳନ କରଇ ଦମ ଯେତେ ଦୁଷ୍ଟ ନରେ
ଦମନେ ରଖଇ ସଦା ଅରାତି-ନିକରେ ।
ଇନ୍ଦ୍ର ସମାନରେ ବଳ ଥିଲା ଯେ ତାହାର
ମୁନିଙ୍କ ସମାନ ଦୟାଶୀଳ ସେହି ବୀର ।
ବଭ୍ରୁର ନନ୍ଦିନୀ ଇନ୍ଦ୍ରସେନାର ଜଠରେ
ଜନମ ଧରିଥିଲା ସେ ଅବନୀ ମଧ୍ୟରେ ।
ନଅ ବର୍ଷ ମାତୃଗର୍ଭେ ରହିଥିଲା ସେହି
ତାହାପରି ମହା ଯଶ-ଦେଖା ଶୁଣାନାହିଁ ।
ସେ ଦମ ରାଜନ ବୃଷପର୍ବା ପାଶେ ଥାଇ
ଧନୁର୍ବିଦ୍ୟା ଶିକ୍ଷାକଲା ଯତ୍ନମତେ ସେହି ।
ପରଶେଷେ ଦୈତ୍ୟରାଜ ଦୁନ୍ଦୁଭି ପାଶରେ
ପ୍ରବେଶ ହୋଇଲା ଯାଇ ବନ ପ୍ରଦେଶରେ ।
ଅସ୍ତ୍ର ବିଦ୍ୟାରେ ଶିକ୍ଷିତ ହେଲା ତା ପାଶରେ
ପ୍ରୟୋଗମାନ ଶିଖିଲା ଯଶ ସହିତରେ ।
ତଦନ୍ତେ ଶକ୍ତି ସନ୍ନିଧେ କରିଣ ଗମନ
ଆଇନ ବେଦ ବେଦାଙ୍ଗ କଲା ଅଧ୍ୟୟନ ।
ଆତ୍ମ ଜ୍ଞାନୀ ହୋଇ ପରେ ସେହି ମହାସତ୍ତ୍ୱ
ଆର୍ଷ୍ଟିଷେଣ ପାଶେ ଶେଷେ କଲା ଶୁଭେଗନ୍ତ
ଯୋଗ ସାଧନା କଲା ସେ ତାଙ୍କ ସନ୍ନିଧିରେ
ତ୍ରିଭୁବନେ ଖ୍ୟାତ ହେଲା ଏମନ୍ତ ପ୍ରକାରେ ।
ଦଶାର୍ଣ୍ଣ ନୃପତି ସୁତା ରୂପବତୀ ଅତି
ତାହାର ନାମ ସୁମନା ସେ ନବ ଯୁବତୀ ।
ପିତାର ଆଦେଶେ ସ୍ୱୟମ୍ବର ହେଲା ତାର
ଦମ ରାଜାଙ୍କୁ ବରିଲା ସେହି ଇଚ୍ଛାବର ।
ମଦ୍ର ରାଜନ କୁମାର ମହାନନ୍ଦ ନାମେ
ସୁମନାର ଅନୁରାଗୀ ଥିଲା ମନେ ମନେ ।
ଅମିତ ବିକ୍ରମ ଅଟେ ବିଦୂରଥର ସୁତ
ଅନୁରାଗୀ ହେଲା ସେହୁ ସୁମନା ପ୍ରତିତ ।
ଶ୍ରୀସଂକ୍ରନ୍ଦନର ପୁତ୍ର ମହା ବଳଧାର
ସେହୁ ଥିଲା ଅନୁରାଗୀ ସୁମନା ଉପର ।
ଦମ ଗଳେ ମାଳା ଦାନ କରନ୍ତେ ସୁମନା
ସେହି ତିନି ବସି କରିଲେକ ଯେ ମନ୍ତ୍ରଣା ।
ଚାଲ ଏ କନ୍ୟାକୁ ଆମ୍ଭେ ହରି ନେଇଯିବା
ଅବଶ୍ୟ ଆମ୍ଭେ କାମନା ପୂରଣ କରିବା ।
ଏ କନ୍ୟା ରତ୍ନ ହରଣ କରିବା ଉତ୍ତାରେ
ତିନିଙ୍କ ମଧ୍ୟରୁ ସେହୁ ବରିବ ଯାହାରେ ।
ସେହି ହେତୁ କନ୍ୟାରତ୍ନ କରିବା ହରଣ
ତେବେ ଯଦି ଏହି କନ୍ୟା ହୁଏ ଅନ୍ୟ ମନ ।
ତା ହେଲେ ଦମକୁ ସେହୁ ସଂହାର କରିବ
ସେହି ଏ କନ୍ୟାକୁ ଏକମାତ୍ର ଉପଭୋଗିବ ।
ଏହିପରି ତିନିଜଣ ପରାମର୍ଶ କରି
ଦମକୁ ଯେ ଆକ୍ରମଣ କରିଲେ ସବୁରି ।
ଅନେକ ଭୂପାଳ ତାକୁ ସହାୟ ହୋଇଲେ
ଚଉଦିଗରେ ଯେ ନାନା ହାଲହୋଳ କଲେ
ତା ଦେଖି ରାଜାମାନଙ୍କୁ ସମ୍ବୋଧନ କରି
କହିଲା ଦମ ନୃପତି ଶୁଣ ଦଣ୍ଡଧାରୀ ।
ସ୍ୱୟମ୍ବର ରୀତି ମତ ଶାସ୍ତ୍ରେ ଅଛି ରହି
କନ୍ୟା ମୋତେ ସ୍ୱୟମ୍ବର ସ୍ଥାନେ ବରିଛଇଁ ।
ଆକ୍ରମଣ କରୁଛନ୍ତି ଏହି ତିନିଜଣ
ଧର୍ମ କି ଅଧର୍ମ ମନ ମଧ୍ୟେ ନ ଭାବଣ ।

ଏଥକୁ ଯାହା ଉଚିତ କରନ୍ତୁ ବିଧାନ
ମୀମାଂସା କରିବେ ଯାହା ତା ନୋହିବ ଆନ ।
କେଉଁ ନରପତି ଏହା ଶୁଣିଣ କହଇ
ମୋହର ବଚନ ସର୍ବେ ଶୁଣ ମନଦେଇ ।
ପରସ୍ପର ଅନୁରାଗ ଯେ ସ୍ଥାନେ ଜନ୍ମଇ
ଗାନ୍ଧର୍ବ ବିଧାନେ ତହିଁ ବିବାହ ହୁଅଇ ।
ଦମ ପ୍ରତି ସରାଗିଣୀ ହୋଇଣ ସୁମନା
ବରମାଳ୍ୟ ଅରପିଲା ତାହା ଗଳେ ସିନା ।
ଧର୍ମ ଅନୁସାରେ ଦମ ସ୍ତ୍ରୀ ପତି ଅଟଇ
ଏଥିରେ ଲୋକମାନଙ୍କ ଅନ୍ୟଥା ଯେ ନାହିଁ ।
ପୁଣି ଆନଜଣେ ରାଜା କହେ ସେହିକ୍ଷଣ
କ୍ଷତ୍ରୀ ପକ୍ଷେ ଯୁକ୍ତ ନୁହେଁ ଗାନ୍ଧର୍ବ ବିଧାନ ।
ଶାସ୍ତ୍ରଧାର୍ଯ୍ୟ କ୍ଷତ୍ରୀୟ ଯେ ଅବସ୍ଥା ମଧ୍ୟରେ
ରାକ୍ଷସ ବିଧାନଯୁକ୍ତ କ୍ଷତ୍ରିୟଙ୍କ ଠାରେ ।
ଦମକୁ ଏ ଲାଗି ବଧ କରିବ ଯେ ଜନ
ସେ ଜନ କରିବ ଏହି କନ୍ୟାକୁ ଗ୍ରହଣ ।
ନାନାମତେ ନାନା ଜନ କହନ୍ତି ଏମନ୍ତ
କାହିଁରେ କୌଣସିମତେ ନୁହେଁ ସ୍ଥିରିକୃତ
କ୍ରମେ କ୍ରମେ ଏ ବିଷୟେ କଳହ ବଢ଼ିଲା
ଅସ୍ତ୍ର ଶସ୍ତ୍ରେ ସମସ୍ତଙ୍କ ସଂଗ୍ରାମ ଚଳିଲା ।
ସେ କାଳେ କୁପିତ ହୋଇ ସେ ଦମ ରାଜନ
ଧନୁରେ ଟଙ୍କାର ଦେଇ କହଇ ବଚନ ।
ବଳାତ୍କାରେ ଏ କନ୍ୟାକୁ ଯଦି କେ ହରଇ
ମୁହିଁ କ୍ଳୀବ ବୋଲି ଅପବାଦ ହୋଇବଇଁ ।
ତେବେ ମୁଁ ପୁରୁଷ ଗଣା ନୁହେଁ କଦାଚନ
ବାହୁବଳେ ଆଉ ମୋର କିସ ପ୍ରୟୋଜନ ।
ଶୌର୍ଯ୍ୟେଧିକ ଅସ୍ତ୍ରେଧିକ ନାହେଲେମୋହର
ଶରେ ଧିକ ପ୍ରାଣେ ଧିକ ଧିକ ବଞ୍ଚିବାର ।
ଜନ୍ମେ ଧିକ କୂଳେ ଧିକ ବୃଥା ଏ ଜୀବନ
ଆପେ ଆପଣା ଗଳାକୁ କରିବ ଛେଦନ ।
ମୋର ସମ୍ମୁଖରୁ ଯଦି କନ୍ୟାକୁ କେ ହରେ
ମୋହର ଧନୁ ଧାରଣ ବୃଥା ଏ ସଂସାରେ ।
ଏତେ ବୋଲି ଦମ ରାଜ କ୍ରୋଧଭରେ ଅତି
ପୁନଶ୍ଚ ସବୁରି ଆଗେ କହିଲା ଭାରତୀ ।
ଯେମନ୍ତେ ସତ୍କୁଳେ ଜାତ ଏହି ସୁଲୋଚନା
ଅଟେ ତେସନ ଶୋଭାରେ ସଦା ସୁଶୋଭନା ।
ତହିଁକି ମୋହର ଭାର୍ଯ୍ୟା ଯଦି ଏ ନୁହଇ
ଜନ୍ମ ଜୀବନ ଏହାର ବୃଥା ମୁଁ ମଣଇ ।
ଏଣୁ କହୁଅଛି ଶୁଣ ରାଜନ୍ୟ ନିକର
କନ୍ୟା ହରଣରେ ଯଦି ହୁଅ ସ୍ଥିରାନ୍ତର ।
ତାହା ହେଲେ ଆଗେ ମୋତେ ପରାଜୟ କର
ପଛେ ହରି ନେଇ ଯାଅ ସୁମନା ସୁନ୍ଦରୀ ।
ଏତେ କହି କଲା ବୀର ଧନୁକୁ ଟଙ୍କାର
ଶରଜାଳେ ଦିଶଦିଗ କଲା ଅନ୍ଧକାର ।
ବିପକ୍ଷମାନେ ପ୍ରହାର ଲାଗିଲେ ଯେ ବାଣ
ବାଣେ ବାଣେ ନଭମାର୍ଗ ହୋଇଲା ଆଚ୍ଛନ୍ନ
ଶର ଶୂଳ ଶକ୍ତି ଶୂଳେ ଶୂଳ ମୁଦଗର
କେହି ଶେଲ କେ ଶାବଳୀ କେଶୂଳେତୋମର
ଅବହେଳେ ସେହି ସବୁ କରିଣ ଛେଦନ
ଦେଖାଇଲା ଦମ ତହିଁ ଅଦ୍ଭୁତ ବିକ୍ରମ ।
ସେକ୍ଷଣି ଶ୍ରୀ ମହାନନ୍ଦ ଅତି ରୋଷଭରେ
ଆସେ ଗଦା ପ୍ରହାରଣେ ଦମର ଉପରେ ।
ତାହା ଦେଖି ଦମ ହୋଇ ରୋଷେ କମ୍ପମାନ
ରାଶି ରାଶି ତୋମର କଲା ବରଷଣ ।
ଖଡ଼ଗରେ ମହାନନ୍ଦ ତା ସବୁ କାଟିଲା
ସେ ଅନନ୍ତେଣ ବାଣ ଯୁଦ୍ଧ ଆରମ୍ଭ ହୋଇଲା
ବହୁକ୍ଷଣ ଏହିମତେ କରନ୍ତେ ସଂଗ୍ରାମ
ଛାଡ଼ିଲା ସେ ଦମ ପୁଣି ଏକ ମହା ବାଣ ।
ସେ ବାଣ ପଡ଼ିଲା ମହାନନ୍ଦର ହୃଦୟେ
ତେଣୁ ତାର ବକ୍ଷସ୍ଥଳ ବିଦାରିତ ହୋଏ ।
ତଥାପି ସେ ବିଚଳିତ ନ ହୋଇଣ କ୍ଷଣେ
ବକ୍ଷରୁ ଶର କାଢ଼ିଣ ଫେଙ୍ଗିଲା ଆପଣେ ।
ସେ ଉତ୍ତାରୁ ଖଣ୍ଡା ଏକ କରି ସେ ଧାରଣ
ଦମର ଉପରେ ତାହା କଲାକ କ୍ଷେପଣ ।
ଶକ୍ତି ବାଣେ ଦମ ତାହା ଛେଦି ପକାଇଲା
ତା ଦେଖି ସବୁରି ମନେ ବିସ୍ମୟ ଜନ୍ମିଲା ।
ମାରଣାସ୍ତ୍ର ତହୁଁ ଦମ କରିଣ ଗ୍ରହଣ
ମହାନନ୍ଦ ପ୍ରତି କଲା ସେ ଶର କ୍ଷେପଣ ।
ଯହୁଁ ସେ ଶର ପଡ଼ିଲା ମହାନନ୍ଦ ପରେ
ମସ୍ତକ କାଟିଣ ତାର ପଡ଼ିଲା ଭୂମିରେ ।
ତଳେ ମହାନନ୍ଦ ଯହୁଁ ହେଲା ନିପତିତ
ଅନେକ ନୃପତି ଭୟେ କଲେ ପଳାୟନ ।

କୁଣ୍ଡିର ଦେଶର ରାଜା ନାମ ବପୁଷ୍ମାନ
ମହା ପରାକ୍ରମୀ ସେହୁ ଅତି ବଳବାନ ।
ରାଜାମାନେ ପଳାଇବା ଦେଖି ସେ ରାଜନ
କ୍ରୋଧେ ଆଗୁସାର ହେଲା କରିବାକୁ ରଣ ।
ଦମ ସଙ୍ଗେ ଘୋରଯୁଦ୍ଧ ହୋଇଲା ତାହାର
ପରସ୍ପର ଦୁହେଁ କଲେ ଅସ୍ତ୍ରକୁ ପ୍ରହାର ।
ନାନାମତେ ଦିବ୍ୟଅସ୍ତ୍ର କଲେ ବରଷଣ
ଉଭୟେ ଅଟଳ ରହେ ଯୁଦ୍ଧେ ବିଚକ୍ଷଣ ।
ଯେ ଉତ୍ତାରୁ ଦିବ୍ୟ ଅସ୍ତ୍ର ଯୋଖି ଶରାସନେ
ବପୁଷ୍ମାନ ପ୍ରତି ଦମ ପ୍ରହାରେ ସଘନେ ।
ସାରଥି ଧ୍ୱଜ ତହିଁରେ ହୋଇଲା ଛେଦନ
ଅଧିକନ୍ତୁ ଖଡ଼୍ଗ ଛେଦି କଲା ନିପାତନ ।
ତାହା ଦେଖି ବପୁଷ୍ମାନ ଅ... ରୋଷଭରେ
ଧଇଲା ଭୀଷଣ ଗଦା ଚଞ୍ଚଳ ହସ୍ତରେ ।
ତା ଦେଖି ଦମ ହୋଇଣ ରୋଷ ପରାୟଣ
ଅର୍ଦ୍ଧଚନ୍ଦ୍ର ବାଣେ କଲା ସେ ଗଦା ଛେଦନ
ଯେଉଁ ଅସ୍ତ୍ର ଯେତେବେଳେ ଧରେ ବପୁଷ୍ମାନ
ଦମ ତାହା ଛେଦି ଛେଦି କରେ ନାନଖାନ
ଅବଶେଷେ ବାଣ ବିଦ୍ଧକରି ତାକୁ ବଳେ
ଭୂମି ଲାଗିଲା ସେ ଦମ ରଣଭୂମି ସ୍ଥଳେ ।
ବାଣ ଜାଳେ ବ୍ୟଥା ପାଇ ରାଜା ବପୁଷ୍ମାନ
ପ୍ରାଣ ଘେନି ପଳାଇଲା ସେଠାରୁ ବହନ ।
ଅନ୍ୟ ସବୁ ରାଜାମାନେ ହୋଇ ବ୍ୟାକୁଳିତ
ଗୃହବେଗେ ପଳାଇଲେ ହୋଇ ଇତସ୍ତତଃ ।
ଦମର ବିବାହ ହେଲା ସୁମନା ସଙ୍ଗରେ,
ସୁଖେ ଚଳିଗଲା ସେହୁ ଆପଣା ନଗରେ ।
ଅନେକ ଯୌତୁକ ଦେଲା ଦଶାର୍ଣ୍ଣ ରାଜନ
ହାତୀ ଘୋଡ଼ା ଦାସ ଦାସୀ କେ କରେ ଗଣନ
ସୂର୍ଯ୍ୟବଂଶୀ ଦମର ବିକ୍ରମ ଏହିପରି
ତାର ଯଶରାଶି ଯେତେ କହିଲେ ନ ସରି ।
ଏପରି ଦମ ଚରିତ କରିଲି ବର୍ଣ୍ଣନ
ଯେଉଁରୂପେ ସୁମନାଙ୍କୁ କଲା ସେ ଗ୍ରହଣ ।
ଶୁଣିଲ ତ ଏ ବିଚିତ୍ର କଥା ମୁନିମାନେ
ପରମ ପବିତ୍ର ବ୍ରହ୍ମ ପୁରାଣ ବିଧାନେ ।
ଏହା କହି ସୂତମୁନି ହୋଇଲେ ମଉନ
ଗୀତ ଛନ୍ଦେ ରଚିଲା କ୍ଷେତ୍ରବାସୀ ହୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ସୁମନା ସ୍ୱୟମ୍ବର କଥନଂ ନାମ
ବିଂଶୋଽଧ୍ୟାୟଃ ।

—◦—

## ଏକବିଂଶ ଅଧ୍ୟାୟ

## ଇନ୍ଦ୍ରସେନାର ଅଗ୍ନି ପ୍ରବେଶ ବୃତ୍ତାନ୍ତ ବର୍ଣ୍ଣନ

ସ ତାଂ ଲବ୍ଧା ତଥା ପତ୍ନୀ
ସୁମନାଂ ସୁମହାମୁନେ
ପ୍ରଣମ୍ୟ ସ ପିତ୍ରୋଃ ପାଦୌ
ମାତୁଷ୍ଟ ଶ୍ଚିତ ପାତ୍ମଜଃ
ସା ଚ ତୌ ଶ୍ୱଶୁରୌ
ସୁଭ୍ରୂର୍ନ ନାମ ସୁମା ତଦା
ତାଭ୍ୟାଂ ତୌ ଚ ତଦା ବତ୍ସୌ
ଆଶୀର୍ଭିରଭି ବନ୍ଦିତୌ ।

ବଦନ୍ତି ଯେ ପୌରାଣିକ ସୂତ ମୁନିବର
ବୋଇଲେ ସୁମନା ଲଭି କରି ଦମେଶ୍ୱର ।
ପୁରେ ପ୍ରବେଶିଣ ପିତା ମାତାଙ୍କ ପୟରେ
ନମସ୍କାର କଲା ଦମ ଆନନ୍ଦ ମନରେ ।
ସୁମନା ଭକ୍ତିରେ ଶାଶୁ ଶ୍ୱଶୁର ଦ୍ୱୟଙ୍କୁ
ପ୍ରଣାମ କରନ୍ତେ କଲେ କଲ୍ୟାଣ ତାହାଙ୍କୁ ।
ପୁତ୍ର ଜୟ ଶୁଣି ନରଷ୍ୟନ୍ତ ରାଜା ତୋଷ
ବହୁ ଧନ ଅନାଥଙ୍କୁ ବାଣ୍ଟିଲେ ନରେଶ ।
ଧନ ବସନ ନେଇଣ ଦୁଃଖୀ ରଙ୍କମାନେ
ରାଜାଙ୍କର ଜୟଗାନ କଲେ ତୋଷମନେ ।
ସୁମନା ସହିତେ ଦମ ନୃପ ହରଷରେ
ଦିବା ରଜନୀ ବଞ୍ଚିଲେ ନିଜ ଅନ୍ତପୁରେ ।
କେବେ ଅଟ୍ଟାଳିକାପରେ କେବେ ବାଉଦ୍ୟାନେ
ବିହାର କରଇ କେବେ ପ୍ରମୋଦ କାନନେ
ଗିରି ଶୃଙ୍ଗ ପରେ କେବେ କରନ୍ତି ଭ୍ରମଣ
ଏହି ରୂପେ ବିହରନ୍ତି ତହିଁ ଦୁଇଜଣ ।

ବାର୍ଦ୍ଧକ୍ୟ ବୟସେ ଏବେ ରାଜା ନରିଷ୍ୟନ୍ତ
କାନନେ ଯିବାକୁ ମନ କଲା ଅକସ୍ମାତ ।
ରାଜ୍ୟଭାର ପୁତ୍ର କରେ କରି ସମର୍ପଣ
ବାନପ୍ରସ୍ଥକୁ ଚଳିଲା ନରିଷ୍ୟନ୍ତ ପୁଣ ।
ତାର ପତ୍ନୀ ଇନ୍ଦ୍ରସେନା ସଙ୍ଗେ ସଙ୍ଗେ ଚଳେ
କାନନ ନିବାସେ ଯାଇ ଉଭୟେ ରହିଲେ ।
ଅନେକ ଦୁରନ୍ତ ବପୁଷ୍ମାନ ମହୀପତି
ସଂକ୍ରନ୍ଦନ ସୁତ ଯେହୁ ଦମର ଅରାତି ।
କାନନ ପ୍ରଦେଶେ ଗଲା ମୃଗୟା କାରଣେ
ପତ୍ନୀ ସହ ନରିଷ୍ୟନ୍ତ ବସନ୍ତି ଯେ ସ୍ଥାନେ ।
ତହିଁ ପ୍ରବେଶି ଦେଖିଲା ରାଜ ବପୁଷ୍ମାନ
ତାପସ ବେଶରେ ନରିଷ୍ୟନ୍ତ ହରେ ଧ୍ୟାନ ।
ତପସ୍ୱିନୀ କୃଶାଙ୍ଗିନୀ ଇନ୍ଦ୍ରସେନା ପାଶେ
ପତି ସେବା କରେ ବସି ମନର ହରଷେ ।
ତାଙ୍କୁ ଦେଖି ବପୁଷ୍ମାନ ସମ୍ବୋଧନ କରି
ପଚାରିଲା କିଏ ତୁମ୍ଭେ କହ ଗୋ ସୁନ୍ଦରୀ ।
ବିପ୍ର କ୍ଷତ୍ରି ବୈଶ୍ୟ ଶୂଦ୍ର ଅଟ କେଉଁ ଜାତି
ଏ ବନେ କାହିଁକି ବାସ କରିଣ ଅଛନ୍ତି ।
ମୌନବ୍ରତ ପାଳିଥିଲେ ରାଜା ନରିଷ୍ୟନ୍ତ
ଇନ୍ଦ୍ରସେନା ପରିଚୟ ଦେଲାକ ସମସ୍ତ ।
ଶ୍ୱଶୁର ଜନମୀଠାରୁ ପରିଚୟ ପାଇ
ବପୁଷ୍ମାନ କ୍ରୋଧାନଳେ ଜଳି ଉଠେ ତହିଁ ।
ଏତେଦିନେ ମୁଁ ସୁଯୋଗ ପାଇଛି ବୋଲିଣ
ନରିଷ୍ୟନ୍ତଙ୍କ ଜଟାକୁ କଲା ଆକ୍ରମଣ ।
ଇନ୍ଦ୍ରସେନା ତାହା ଶୁଣି କରେ ହାହାକାର
ଗଛପକ୍ଷ ରୋଦନ୍ତି ଯେ କାନ୍ଦ ଶୁଣି ତାର ।
ବପୁଷ୍ମାନ ରୋଷଭରେ ଖଣ୍ଡା ଧରି କରେ
କମ୍ପାଇ ଅଧର କହିଲା ସେ ଉଚ୍ଚସ୍ୱରେ ।
ଯେଉଁ ଦୁଷ୍ଟ ମୋରେ ପୂର୍ବେ କରିଅଛି ଜୟ
ସୁମନାକୁ ହରିଅଛି ଯେଉଁ ଦୁରାଶୟ ।
ସେହି ଦମ ଜନକ ଏ କରିବଇଁ ନାଶ
କେଉଁ ଦୁରାତ୍ମର ଆସି ରଖୁ ମୋର ପାଶ ।
ଯେଉଁ ଦୁଷ୍ଟ କନ୍ୟା ଲାଗି ସର୍ବ ରାଜାଗଣେ
କରିଅଛି ପରାଜୟ ସମର ପ୍ରାଙ୍ଗଣେ ।
ଆଜ ତାହାର ପିତାକୁ କରିବି ନିଧନ
ରକ୍ଷାକରୁ ମୋର କରୁ ଆସି ସେ ଦୁର୍ଜ୍ଜନ ।

ଏତେ ବୋଲି ବପୁଷ୍ମାନ ଅତି କ୍ରୋଧଭରେ
ନରିଷ୍ୟନ୍ତ ଶିର କାଟି ଫିଙ୍ଗିଲା ଧରାରେ ।
ତାହାଦେଖି ଇନ୍ଦ୍ରସେନା ରୋଦନ କରଇ
ଘନ ଘନ କାନ୍ଦେ ବକ୍ଷେ କର କଚଡ଼ାଇ ।
ବନବାସୀଗଣ ଆଉ ତାପସ ନିକର
ଏମନ୍ତ ଘଟଣା ଦେଖି ବ୍ୟାକୁଳ ଅନ୍ତର ।
ଧିକ୍କାର କଲେ ସକଳ ବପୁଷ୍ମାନପରେ
ବପୁଷ୍ମାନ ଚଳିଗଲା ତହୁଁ ନିଜ ପୁରେ ।
ଏଣେ ଦୀର୍ଘ ଶ୍ୱାସ ଇନ୍ଦ୍ରସେନା ମାରି କରି
ଏକ ଶୂଦ୍ର ତାପସକୁ ସମ୍ବୋଧନ କରି ।
ବୋଇଲା ଶୁଣ ହେ ମୁନି ମୋହର ବଚନ
ମୋହ ପୁତ୍ର ନିକଟକୁ କରସି ଗମନ ।
ମୋ ସ୍ୱାମୀଙ୍କ ମୃତ୍ୟୁ କଥା କହିବ ତାହାରେ
ଅଧିକ କହିବ କିବା ମୁଁ ତୁମ୍ଭ ଗୋଚରେ ।
ମୋର ପୁତ୍ରକୁ କହିବ ଏତିକି ମାତର
ରାଜ୍ୟ ଅଧିକାରୀ ତୁମ୍ଭେ ଅଟ ଗୁଣାଧାର ।
ସମସ୍ତଙ୍କ ରକ୍ଷା ଭାର ତୁମ୍ଭର ଉପରେ
ଏଣୁ ଏକ କଥା ତୁମ୍ଭେ ଭାବ ମାନସରେ ।
ତାପସଙ୍କ ରକ୍ଷା କରୁନାହଁ କି କାରଣ
ଉଚିତ କି ଏହା ତବ ଆହେ ବାପଧନ ।
ତୁମ୍ଭ ପିତା ଥିଲେ ଏହି କାନନ ମଧ୍ୟରେ
ତପସ୍ୟା କରୁଥିଲେ ସେ ଏକାନ୍ତ ଅନ୍ତରେ ।
ଅନାଥ ପରି ତାହାଙ୍କ ହୋଇଲା ମରଣ
ତାହାଙ୍କୁ ବଧିଲା ଦୁଷ୍ଟମତି ବପୁଷ୍ମାନ ।
ଯାହା ତୁମ୍ଭ ବିବେଚନା ଏହି ଅବସ୍ଥାରେ
ତାହା କର ଅଧିକ କି କହିବି ତୁମ୍ଭରେ ।
ବୀର ମନ୍ତ୍ରୀ ଅଛି ତବ ରାଜ୍ୟର ଭିତରେ
ମନ୍ତ୍ରଣା କରିଣ ଯାହା ବୁଝିବ ଅନ୍ତରେ ।
ତାହାଇଁ କରିବ ତୁମ୍ଭେ ହେ ପୁତ୍ର ରତନ
ଏସବୁ କହିବ ମୋ କୁମାର ସନ୍ନିଧାନ ।
ଏତେ ବୋଲି ଇନ୍ଦ୍ରସେନା ଶୂଦ୍ରେ ସେହିକ୍ଷଣ
ଭକ୍ତିଭରେ ପତି ଦେହ କରି ଆଲିଙ୍ଗନ ।
ପ୍ରବେଶ କରି ଅନଳ ପରାଣ ତେଜିଲା
ସ୍ୱର୍ଗ ପୁରକୁ ସେ ପତି ସହ ଚଳିଗଲା ।
ଏ ବ୍ରହ୍ମ ପୁରାଣ କଥା ଶୁଣେ ଯେଉଁ ନର
ନ ରହେ ପାତକ ତାହା ଅଙ୍ଗରେ ମାତର ।

ନରଷ୍ୟନ୍ତର ଚରିତ କଳୁଷ ନାଶନ
ପରଂବ୍ରହ୍ମ ପଦେ ଯାର ସମର୍ପିତ ମନ ।
ଏମନ୍ତ ପରମ ଭକ୍ତ ଗୁଣ ଅକଥନ
ଶ୍ରବଣ କଲିତ ତୁମ୍ଭେ ସର୍ବ ମୁନିଗଣ ।
ସୂତ ମୁନିଙ୍କ ଭାଷଣ ଏ ଅମିୟ ରସ
ଦୁଃଖୀ ଅଧମ କ୍ଷେତର କରଇ ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ଇନ୍ଦ୍ରସେନା ଅଗ୍ନି ପ୍ରବେଶ କଥନଂ
ନାମ ଏକବିଂଶ ଅଧ୍ୟାୟଃ ।

—❊—

## ଦ୍ୱାବିଂଶ ଅଧ୍ୟାୟ

## ବପୁଷ୍ମାନ ବଧ ଲାଗି ଦମ ନୃପତିଙ୍କର ପ୍ରତିଜ୍ଞା

ସୂତ ଉବାଚ

ଇନ୍ଦ୍ରସେନା ସମାଜ୍ଞପ୍ତଂ
ସ ଗତ୍ୱା ଶୂଦ୍ର ତାପସଂ
ସମାବଷ୍ଟେ ଯଥା ପ୍ରୋକ୍ତଂ
ଦମାୟ ନିଧନଂ ପିତୁଃ ।
ତାପସେନ ସମାଖ୍ୟାତେ
ଦମସ୍ତେନ ପିତୁର୍ବଧେ
କ୍ରୋଧେନାଶିବ ଜଜ୍ୱାଳ
ହବିଷେବାଗ୍ନି ରିଦ୍ଧତଃ ।

କହନ୍ତି ଯେ ସୂତ ମୁନି ଏଥୁ ଅନନ୍ତରେ
ଶୁଣିମା ହେଉ ସଧୀରେ ସର୍ବ ମୁନିବରେ ।
ରାଜାମାତା ଇନ୍ଦ୍ରସେନା ଆଜ୍ଞା ପାଇକରି
ବିଳମ୍ବ ନକରି ସେହି ଶୂଦ୍ର ତପସ୍ୱୀ ।
ଉପସ୍ଥିତ ହେଲା ଦମରାଜା ନିକଟରେ
ପିତାର ନିଧନ ବାର୍ତ୍ତା ଜଣାଇଲା ଖରେ ।
ନିଜ ପିତା ମୃତ୍ୟୁ କଥା କରନ୍ତେ ଶ୍ରବଣ
କ୍ରୋଧରେ ଜଳି ଉଠିଲା ଦମ ସେହିକ୍ଷଣ ।
ଆପଣା ବାହୁ ମର୍ଦ୍ଦନ କରି ନିଜ କରେ
କହିଲା ସେ ଶୂଦ୍ର ତାପସକୁ ଏ ପ୍ରକାରେ ।
ଜୀବନେ ମୁଁ ଆଉଁ ଆଉଁ ଦୁଷ୍ଟ ଦୁରାଚାର
ମୋହର ଜନ୍ମଦାତାଙ୍କୁ କଲା ଯା ସଂହାର ।

ଅନାଥ ପରାୟ ହେଲେ ମୋ ପିତା ନିଧନ
ନିଶ୍ଚୟ କରିବି ମୁହିଁ ସେ ଦୁଷ୍ଟେ ଦମନ ।
ତାହାର ରକ୍ତେ ତର୍ପଣ କରି ପିତାଙ୍କର
ହୋଇବି ମୋହର ପିତୃ ଋଣରୁ ଉଦ୍ଧାର ।
ବ୍ରାହ୍ମଣ ଭୋଜନ ତା ମାଂସରେ କରାଇବି
ଯଦ୍ୟପି ମୁହିଁ ପ୍ରତିଜ୍ଞା ରଖି ନ ପାରିବି ।
ଅନଳ ଜାଳିଣ ପ୍ରାଣ ତେଜିବି ମୋହର
ନତୁବା ନିଜ କଣ୍ଠରେ ଚଳାଇବି ଛୁରି ।
ତପେ ନିମଗନ ଥିଲେ ଜନକ ମୋହର
ସେ କାଳେ ତାଙ୍କୁ ନିଧନ କଲା ଦୁରାଚାର ।
ଯେମନ୍ତ ଭାବେ କରିଛି ସେ ଅନ୍ୟାୟମାନ
ତେମନ୍ତେ ତାହାକୁ ମୁହିଁ କରିବି ନିଧନ ।
ଏ ମୋର ବଚନ କେବେହେଁ ନ ହୋଇବ ଆନ
ସେ ଦୁଷ୍ଟର ଅବଳମ୍ବେ ଯେନିବି ଜୀବନ ।।

ବ୍ରୁତି ପ୍ରତି ଜ୍ଞାୟ ତଦା
ନରଷ୍ୟନ୍ତ ସୁତୋ-ତମ
କୋପାମର୍ଷ ବିବୃତାକ୍ଷଃ
ଶୁଶ୍ରୁମ୍ନ କୃତ୍ୟ ପାଣିନା ।

ଏମନ୍ତେ ପ୍ରତିଜ୍ଞା କରି ସେ ଦମ ରାଜନ
ବପୁଷ୍ମାନ ବଧ କରି ବାହାରିଲା ପୁଣ ।
ଯୁଦ୍ଧ ସାଜିଲା ସେ ଅବିଳମ୍ବେ ରୋଷଭରେ
ରଣ ଯାତ୍ରା କରି ଚଳେ କମ୍ପିତ ଶତ୍ରୁରେ ।
ବପୁଷ୍ମାନ ରାଜ୍ୟ ପାଶେ କରିଣ ଗମନ
ପଠାଇଲା ଏକ ଦୂତ ତାର ସନ୍ନିଧାନ ।
ବୋଇଲା ମୋହର ବାଣୀ ଶୁଣରେ ପାମର
ଯେମନ୍ତେ ବଧିଛୁ ତୁହି ପିତାକୁ ମୋହର ।
ତେସନେ ମୁଁ ତୋତେ ନିଶ୍ଚେ କରିବି ନିଧନ
ଆସ ଆସ ସଂଗ୍ରାମକୁ ଆରେ ମୂଢ଼ଜନ ।
ଦୂତ ମୁଖୁ ଏହି ବାଣୀ ଶୁଣିଣ ଶ୍ରବଣେ
ବପୁଷ୍ମାନ କ୍ରୋଧେ ଜଳି ଉଠେ ତତକ୍ଷଣେ ।
ଚତୁରଙ୍ଗ ବଳ ବେଗେ କରି ଆୟୋଜନ
ଦମ ଆଡ଼କୁ ଧାଇଁଲା ବୁଲାଇ ନୟନ ।
ଶିବିରରେ ଥିଲା ଯହିଁ ଦମ ନରପତି
ବପୁଷ୍ମାନ ଉପସ୍ଥିତ ହେଲା ଯାଇଁ ସେଥି ।
ଦଳ ବଳରେ ଉଭୟେ ହୁଅନ୍ତେ ମିଳନ
ରଣ ଗୋଳ ଲାଗିଗଲା ଅତିହିଁ ଭୀଷଣ ।

ବିପୁଷ୍ମାନ ପରେ ଦମ ଅଷ୍ଟ ଶ୍ୱେତ ମାରେ
ଆକାଶ ମଣ୍ଡଳ ଦେଖୁ ପୂରିଲା ବାଣରେ ।
ଦମର ଉପରେ ବପୁଷ୍ମାନ ମାରେ ଶର
ପାଦଭରେ ବସୁମତୀ ହେଲା ଥରହର ।
ବହୁ ବେଳଯାଏ ଦୁହେଁ ବାଣ ଯୁଦ୍ଧ କଲେ
ପୁଣି ଅତି କୋପେ ଖଣ୍ଡାଯୁଦ୍ଧ ଆରମ୍ଭିଲେ ।
ବିଚିତ୍ର ଚର୍ମରେ କରି ଦମ ନରପତି
ଖଡ୍ଗ ଧରି କୋପଭରେ ଧାଇଁଲା ତଡ଼ିତି ।
ପ୍ରହାର କରନ୍ତେ ବପୁଷ୍ମାନ ବକ୍ଷସ୍ଥଳେ
ପ୍ରାଣେ ହାରିଣ ସେ ବୀର ପଡ଼ିଲା ଭୂତଳେ ।
ତାହା ଦେଖିଣ ପଳାଇ ଗଲେ ସୈନ୍ୟଗଣ
ଦମ ପକ୍ଷେ ଜୟଧ୍ୱନି ଉଠିଲା ତକ୍ଷଣ ।
ଏମନ୍ତେ ଅରାତି ନାଶ କରି ରୋଷଭରେ
ଆନନ୍ଦେ ଚଳିଲା ଦମ ଆପଣା ନଗରେ ।
ସୂର୍ଯ୍ୟ ବଂଶର ଅକ୍ଷୟ ଯଶ ସେ ରଖିଲା
ଧନ୍ୟ ସେହି ଦମ ନୃପ ନରିଶ୍ୟନ୍ତ ବଳା ।
ଶୂନ୍ୟ ମାର୍ଗେ ଥାଇ ଦେବ ଗାଇଲେ ତା ଯଶ
ଧରଣୀରେ ପ୍ରଶଂସା ଯେ ତାହାର ବିଶେଷ ।
ମହାଦାନୀ ଯେବଣ ମରୁତ ଚକ୍ରବର୍ତ୍ତୀ
ଦମ ବୀର ତାହାଙ୍କର ଅଟେ ଯୋଗ୍ୟ ନାତି ।
କୁଳ ଉଜ୍ଜ୍ୱଳକାରୀ ସେ ଦମ ମହୀପତି
କହିଲେ ନସରେ ଯେ ତାହାର ଯଶ କୀର୍ତ୍ତି ।
ଯେଉଁ ବଂଶେ ଭଗୀରଥ ଧାର୍ମିକ ନରେଶ
ପିତୃ ଉଦ୍ଧାରଣେ ହୋଇଥିଲେ ଅବତଂସ ।
ଯେଉଁ ବଂଶେ ପୂର୍ଣ୍ଣ ବ୍ରହ୍ମହରି ଦେହ ଧରି
ଅଯୋଧ୍ୟାରେ ତ୍ରେତାଯୁଗେ ଥିଲେ ଅବତରି ।
ହରିଶ୍ଚନ୍ଦ୍ର ପରି ଦାନୀ ଥିଲେ ଯେ ବଂଶରେ
ଏମନ୍ତ ବଂଶର କୀର୍ତ୍ତି କେବା ବର୍ଣ୍ଣିପାରେ ।
ଏସନକ ପୌରାଣିକ ସୂତ ମୁନିବର
ସନକ ଆଦି ମୁନିଙ୍କୁ କହିଲେ ସତ୍ୱର ।
ସେହି ସାଧୁ ସନ୍ଥଙ୍କର ଚରଣ ସରୋଜେ
ଅଧମ କ୍ଷେତ୍ରମୋହନ ଦିବା ନିଶି ଭଜେ ।

ଇତିଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ବପୁଷ୍ମାନ ବଧ
କଥନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—❖—

## ତ୍ରୟୋବିଂଶ ଅଧ୍ୟାୟ

## ସୁକନ୍ୟା ସୁନ୍ଦରୀ ଚରିତ ବର୍ଣ୍ଣନ

### ସୂତ ଉବାଚ

ଶୁଣ ଶୁଣ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ଏହି ବ୍ରହ୍ମ ପୁରାଣ ଯେ ଅପୂର୍ବ ବିଧାନ ।
ମୁନିମାନଙ୍କୁ ଅନାଇ ପୌରାଣିକ ସୂତ
ବୋଇଲେ କଳ୍ମଷ ନାଶେ ଶର୍ଯ୍ୟାତି ଚରିତ ।
ଅତି ଜ୍ଞାନବନ୍ତ ରାଜା ନାରାୟଣେ ମନ
ସୁକନ୍ୟା ନାମେଣ ତାର ଦୁହିତା ରତନ ।
କି କହିବି ତା ଚରିତ ଭାବିଲେ ଅପାର
ସେ କନ୍ୟା ଚରିତ୍ର ଗୁଣେ ସୁଖ୍ୟାତି ରାଜାର
ଏକଦିନ ଇଚ୍ଛାକଲା ସେହୁ ମୃଗୟାରେ
ପିତା ସହିତ ଯିବାକୁ କାନନ ମଧ୍ୟରେ ।
ଅଶ୍ୱ ଗଜ ପଦାତିକ ଚତୁରଙ୍ଗ ବଳ
ଘେନିଣ ଚଳିଲା ରାଜା କରି କୋଳାହଳ ।
ପ୍ରବେଶିଲା ଯାଇକରି ଏକ ମହାବନେ
ଋଷିଙ୍କ ଆଶ୍ରମ ତଥା ଦେଖିଲା ନୟନେ ।
ମହାତେଜା ସେହି ମୁନି ନାମ ଯେ ଚ୍ୟବନ
ସେ ମୁନିଙ୍କ ଏ ଆଶ୍ରମ ଶୁଣିଲା ରାଜନ ।
ମୁନିଜନ ପୁଣ୍ୟାଶ୍ରମ ଜାଣି ନରପତି
ହୋଇଲା ତା ମନେ ମନେ ସଶଙ୍କିତ ଅତି ।
ସଙ୍ଗେ ଥିଲେ ନିଜ କନ୍ୟା ସହ ସଖୀଗଣ
ଅକଳଙ୍କ ଚନ୍ଦ୍ରମୁଖୀ ବୟସେ ଯୌବନ ।
ଚଉଦିଗେ ମହାବଳୀ ଚତୁରଙ୍ଗ ଦଳେ
କହିଲେକ ନରପତି ଡାକିଣ ସକଳେ ।
ଶୁଣ ସର୍ବେ ଏକମନେ ମୋହର ବଚନ
ପବିତ୍ର ଆଶ୍ରମ ଏ ଜାଣନ୍ତୁ ସର୍ବଜନ ।
ଭୃଗୁଙ୍କ ନନ୍ଦନ ଋଷି ନାମ ଯେ ଚ୍ୟବନ
ଏ ସ୍ଥାନେ କରନ୍ତି ସେହୁ ଶ୍ରୀହରି ଭଜନ ।
ଏହି ସ୍ଥାନେ ନାହିଁ ହିଂସା ନାହିଁ ଦ୍ୱେଷଚୟ
ଋଷିଙ୍କ ପ୍ରସାଦେ ବନେ ନାହିଁ ହିଂସାଭୟ ।
ନ କରନ୍ତୁ ଏଠି କେହି ମୃଗର ସନ୍ଧାନ
ଜୀବ କରି ନ ବଧେ କେ ପଶୁ ପକ୍ଷୀ ପ୍ରାଣ ।
ସ୍ଥିର ହୋଇ ଚଳ ସର୍ବେ ଯାନ୍ତୁ ଆନସ୍ଥାନେ
ଅପରାଧ ହେଲେ ଋଷି ବଧିବେ ଜୀବନେ ।

ଶୁଣନ୍ତେ ଏ ଗୀର ସର୍ବେ ହୋଇ ସାବଧାନ
ଏକେ ଏକେ ଖିନ୍ନମନେ କରିଲେ ପ୍ରୟାଣ ।
ଦୈବର ନିର୍ବନ୍ଧ କେବା ଅତିକ୍ରମ କରେ
ଶୁଣ ହେ ରାଜନ ଯାହା ଘଟିବ ତାପରେ ।
ନୃପତି ନନ୍ଦିନୀ ସେହି ହରିଣୀ ନୟନା
ଆଶ୍ରମର ଶୋଭା ଦେଖି ହେଲା ସେ ଉନ୍ମନା
କାହିଁ ପିକକୁଳସ୍ୱନ କାହିଁ ଫୁଟେ ଫୁଲ
କାହିଁ ବତ୍ସାସଙ୍ଗେ ଧେନୁ ଆଶ୍ରେ ବୃକ୍ଷମୂଳ ।
ହରିଣ ହରିଣୀ କେତେ ଘେନି ଶିଶୁଗଣ
ଆନନ୍ଦରେ ଖେଳି ବୁଲି କରନ୍ତି ଭ୍ରମଣ ।
ସେ ଶୋଭା ଦେଖି ସୁନ୍ଦରୀ ଆନନ୍ଦିତ ମତି
ନାନା କଥା କହେ ନିଜ ସଖୀଗଣ ପ୍ରତି ।
କେବେ ଫଳ ଫୁଲ ଦେଖି କେତେକଥା କହେ
ମୟୂର ନର୍ତ୍ତନ ଚାହିଁ ବିମୋହିତ ହୁଏ ।
ଏହିରୂପେ କିଛି ଦୂର କରିଣ ଗମନ
ସମ୍ମୁଖେ ବଲ୍ମୀକ ଏକ କରେ ଦରଶନ ।
କ୍ଷୁଦ୍ର ପର୍ବତର ସମ ଦେଖିଣ କାମିନୀ
ତାହା ନିକଟକୁ ଗଲା ହୋଇ କୌତୁକିନୀ ।
ସଖୀଗଣ ସଙ୍ଗେ ତଥା କରିଣ ଗମନ
ଉଜ୍ଜ୍ୱଳ ପଦାର୍ଥ ନେତ୍ରେ କଲେ ବିଲୋକନ ।
ମୃତ୍ତିକାରେ ଜ୍ୟୋତିସ୍ଥାନ ନେତ୍ରେ ଦେଖିକରି
ଆଣିବାକୁ ଇଚ୍ଛାକଲା ସେ ରାଜକୁମାରୀ ।
ସଖୀଗଣ ସହ ଏକ କଣ୍ଟକ ଘେନିଣ
କୁତୁହଳେ ସେ ସ୍ଥାନକୁ ଫୋଡ଼ିଲା ବହନ ।
ବିନ୍ଧିବା ମାତ୍ରେ ତହିଁରୁ ବହିଲା ରକତ
ତା ଦେଖି ରାଜନନ୍ଦିନୀ ମଣିଲା ଚକିତ ।
ମୃତ୍ତିକା ମଣ୍ଡିତ ସ୍ଥାନ ବଲ୍ମୀକ ନାମରେ
ଏହାର ମଧ୍ୟେ ଶୋଣିତ ଋଷିଙ୍କ ରୂପରେ ।
ଏହିକଥା କ୍ରମେ ଶୁଣି ଶର୍ଯ୍ୟାତି ନୃପତି
ନୟନେ ଦେଖି ହୋଇଲେ ଅତି ଖିନ୍ନମତି ।
ଯୋଗରେ ତନ୍ମୟ ହୋଇ ଭୃଗୁଙ୍କ ନନ୍ଦନ
ଅନାହାରେ ଅନିଦ୍ରାରେ କରନ୍ତି ସାଧନ ।
ଭକ୍ତର ଅଧୀନ ମୁହିଁ ତେଣୁ ପରାଧୀନ
ମୋହର ଅତ୍ୟନ୍ତ ପ୍ରାଣପ୍ରିୟ ଭକ୍ତଜନ ।
ମୋଠାରେ ଶରଣ କେବେ ଯେବେ ନେଲେ ପ୍ରାଣୀ
ତାହାକୁ କଦାପି ତ୍ୟାଗ ନକରେ ମୁଁ ଜାଣି

ସାଧୁମାନେ ମୋ ହୃଦୟେ ବାସ କରିଥାନ୍ତି
ମୁହିଁ ମଧ୍ୟ ମଣ୍ଡିଥାଏ ତାଙ୍କ ହୃଦ ନିତି ।
ଏଣୁ ଯେ ଅମ୍ବରୀଶଙ୍କୁ କରିଣ ବିନୟେ
ପ୍ରସନ୍ନ କଲେଟି ମୁକ୍ତ ମିଳିବ ନିଶ୍ଚୟେ ।
ଶ୍ରୀହରିଙ୍କ ଆଦେଶରେ ଦୁର୍ବାଶା ବହନ
ଚଳିଲେ ଯେଉଁଣଠାରେ ଥିଲେକ ରାଜନ ।
ଥୋକାଏ ଦୂରରୁ ଦୁର୍ବାଶା ଋଷିଙ୍କୁ ଦେଖିଣ
ପ୍ରମାଦ ଗଣିଲେ ଅମ୍ବରୀଶ ମନେ ମନ ।
ଭାବିଲେ ସରିଲା ମୋର ଆଜ ଧର୍ମ କର୍ମ
ଅତିଥି ସତ୍କାର ନ କରିଲି ମୁଁ ଅଧମ ।
ପୁଣି ବ୍ରାହ୍ମଣର ପାଦେ କେତେ ଦ୍ରୋହ କରି
ଏ କି ଘୋର କଷ୍ଟ ବ୍ରହ୍ମଶାପ ଯେ ପାଇଲି ।
ହରିଙ୍କ ରହସ୍ୟ ରାଜା ବୁଝି ଯେ ନ ପାରେ
ଧର୍ମ ରଖ ଶ୍ରୀହରି ବହନ୍ତି ବାରମ୍ବାରେ ।
ଋଷିଙ୍କୁ ଦେଖି ନୃପତି ପରିଶୁଷ୍କ କାୟେ
ତାଙ୍କ ପାଦ ସେବା ଲାଗି ବେଗହୋଇ ଧାଏ
ତହୁଁ ଋଷି ପ୍ରାଣସହ ବ୍ୟାକୁଳିତ ହୋଇ
ଅମ୍ବରୀଶ ପାଦଯୁଗ ଧଇଲେକ ଯାଇ ।
କହିଲେ ଧରିଲି ରାଜା ତୁମ୍ଭର ଚରଣ
ଏ ଘୋର ବିପଦୁ ମୋତେ କରନ୍ତୁ ତାରଣ
ପୂର୍ବରୁ ଯେବଣ ଦମ୍ଭ ଗର୍ବ ମୋର ଥିଲା
ତୁମ୍ଭ ଲାଗି ଆଜ ସବୁ ଦୂର ହୋଇଗଲା ।
ଜାଣିଲି ସଂସାର ମଧ୍ୟେ ଯେତେ ଅଛନ୍ତି ରହି
ସର୍ବପରେ ବିଷ୍ଣୁଭକ୍ତ ସାର ଯେ ଅଟଇ ।
ଅନେକ ପରାଭବ ପାଇଥିଲି ଦ୍ରୌପଦୀରେ
ଏଥର ତାଠାରୁ ବଳିଗଲା ଏହିଠାରେ ।
ଧରୁଛି ତବ ଚରଣ ଆହେ ଭକ୍ତବର
ଦୟାଧିଷ୍ଠି ଏ ଗର୍ବୀର ପ୍ରାଣ ରକ୍ଷାକର ।
ଦେଖ ଦେଖ ମୋର ପଛେ ଧାଏଁ ସୁଦର୍ଶନ
କ୍ଷଣକ ମଧ୍ୟରେ ନେବ ମୋହର ଜୀବନ ।
ଶିବପୁରଠାରୁ ବଇକୁଣ୍ଠ ପର୍ଯ୍ୟନ୍ତ
ଗଲି କେହି ରଖିବାକୁ ନହେଲେ ସମର୍ଥ ।
ଶେଷରେ ବିଷ୍ଣୁ ପେଶିଲେ ପାଶକୁ ତୁମ୍ଭର
ସୁଦର୍ଶନ ଚକ୍ର ଦାଉ ମୋତେ ରକ୍ଷାକର ।
ଏମନ୍ତ ଶୁଣନ୍ତେ ରାଜା ହୋଇଲେ ଚକିତ
ଅନାଇଁ ଦେଖିଲେ ଚକ୍ର ଘୂରେ କାଳବତ ।

କେବଳ ଦୁର୍ବାଶାଙ୍କର ଗଳା ସଳଖରେ
ଘୁରୁଅଛି ଚକ୍ରବର ପ୍ରବଳ ବେଗରେ ।
ଛୁଇଁଲା ମାତ୍ରକେ ଗଣ୍ଡିଠାରୁ ମୁଣ୍ଡ ଜାଣ
ଅଲଗା ହୋଇ ପଡ଼ିବ ସହସ୍ର ଯୋଜନ ।
ଏହା ଦେଖି ଅମ୍ବରୀଶ ରାଜା ଯୋଡ଼ିକର
ବୋଇଲେ ଋଷିଙ୍କ ପ୍ରାଣ ରଖ ଚକ୍ରଧର ।
ତୁମ୍ଭେ ମହାବଳବାନ ଅଟ ତ୍ରିଜଗତେ
ତୁମ୍ଭଙ୍କୁ ଜିଣିବା ପାଇଁ କାହାନ୍ତିକେ ମର୍ତ୍ତ୍ୟେ ।
ଯେବେ ଇଚ୍ଛାକର ତୁମ୍ଭେ ଦଣ୍ଡକ ମଧ୍ୟରେ
ସାରା ପୃଥିବୀକୁ ନାଶ କରିବ ଅଚିରେ ।
ହରିଙ୍କ କରରେ ତୁମ୍ଭେ ସଦା ଶୋଭାପାଅ
ପ୍ରଭୁଙ୍କ ଆଦେଶ ମାନ କାର୍ଯ୍ୟ କରୁଥାଅ ।
ଏତିକି ମାତର ଅଟେ ନିବେଦନ ମୋର
ଦୁର୍ବାଶା ଋଷିଙ୍କ ପ୍ରାଣ ଆଜ ରକ୍ଷାକର ।
ଏହିରୂପେ ନିବେଦନ କରନ୍ତେ ନୃପତି
ସୁଦର୍ଶନ ଚକ୍ର ଶାନ୍ତ ହୋଇଲା ତଡ଼ିତ ।
ପରିତ୍ରାଣ ପାଇ ଋଷି ବୋଇଲେ ରାଜାଙ୍କୁ
ଚିହ୍ନି ପାରି ନଥିଲି ମୁଁ ଏ ଯାଏ ତୁମ୍ଭଙ୍କୁ ।
ଏତେବଡ଼ ଦ୍ରୋହ ମୁହିଁ କଲି ତବ ପାଶ
ତଥାପି ମୋହର ପ୍ରାଣ ରଖିଲେ ନରେଶ ।
ଧନ୍ୟ ଭକ୍ତବର ଧନ୍ୟ ମହିମା ତୁମ୍ଭର
ଯାହାକୁ ସ୍ତବ କରନ୍ତି ସ୍ୱୟଂ ଚକ୍ରଧର ।
ଏହିପରି ବହୁମତେ ସାନ୍ତ୍ୱନା କରିଣ
ଭୋଜନ କରିଲେ ରାଜାଙ୍କର ଦ୍ୱାରେ ପୁଣ ।
ନୃପତିଙ୍କୁ ଉପବାସ ଦେଖି ତପୋଧନ
କରିଧରି କରାଇଲେ ତାହାଙ୍କୁ ଭୋଜନ ।
ଋଷିଙ୍କୁ ବିଦାୟ ଦେଲେ ରାଜା ଅମ୍ବରୀଶ
ଆନନ୍ଦେ କଲ୍ୟାଣ କରି ଚଳିଲେ ତାପସ ।
ଏହିପରି ମହାଭକ୍ତ ଅମ୍ବରୀଶ ଗୀର
ଶ୍ରବଣ କରି ଏ ଭବୁ ତରି ସର୍ବନର ।
ଏମନ୍ତ ଅଟଇ ଜାଣ ଭକ୍ତର ମହିମା
ବର୍ଣ୍ଣି ନ ପାରନ୍ତି ଯାରେ ସ୍ୱୟଂ ବେଦବ୍ରହ୍ମା ।
ଏବେବୋଲି ପୌରାଣିକ ସୁତ ହେଲେମୌନ
ଗୀତେ ଛନ୍ଦେ ରଚି ଲେଖେ କ୍ଷେତ୍ରବାସୀ ହୀନ
ନାହିଁ ମୋର ବୁଦ୍ଧି ଜ୍ଞାନ ଅଟେ ମୁଁ ମୂରୁଖ
ସାଧୁ ସନ୍ଥ ପାଶେ ବସି ନାହିଁ ଲବଲେଶ ।
କେବଳ ଜଗତ ମାତାଙ୍କର ପାଦ ଧ୍ୟାଇଁ
ଲେଖିଛି ଏ ଗ୍ରନ୍ଥ ମାତୃଭାଷାରେ ଯେ ମୁହିଁ ।
ତ୍ରୁଟି ହେଲେ ସୁଜ୍ଞଜନ କରିବେ କରୁଣା
ମୁନିମାନେ ମଧ୍ୟ ପଥ ହେଉଥିଲେ ବଣା ।

ଇତିଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଅମ୍ବରୀଶ ନୃପ
ଉପାଖ୍ୟାନେ ନାମଚତୁର୍ବିଂଶୋଽଧ୍ୟାୟଃ ।



## ପଞ୍ଚବିଂଶ ଅଧ୍ୟାୟ

## ସୌଭରି ଋଷିଙ୍କ ଚରିତ ବର୍ଣ୍ଣନ

ସୂତ ଉବାଚ

କହନ୍ତି ମୁନିଙ୍କୁ ଚାହିଁ ସୂତ ତୋଷମନେ
ଅପୂର୍ବ ଶ୍ରୀ ଶୁକବାଣୀ ଶୁଣ ସାବଧାନେ ।
ସୌଭରି ନାମେଣ ଥିଲେ ଏକ ତପୋଧନ
ଚତୁର୍ବେଦ ଜ୍ଞାନବନ୍ତ ବ୍ରହ୍ମ ପରାୟଣ ।
ସହସା ଆସକ୍ତ ହେଲା ତାଙ୍କର ପ୍ରକାଶ
ତପ ତେଜ ସଂସାରେ କଲେ ସେ ବିଳାସ ।
ଅବଶେଷେ ମହାମାୟା ନ ସହି ଆଦର
ପୁନଶ୍ଚ ବୈରାଗ୍ୟେ ଯାନ୍ତି ବୈକୁଣ୍ଠ ଆଧାର
ଏହା ଶୁଣି ପୁଚ୍ଛିଲେ ଶୌନକ ତପୋବନ୍ତ
ଆଶ୍ଚର୍ଯ୍ୟ ଲାଗୁଛି ଶୁଣି ଏସନ ବୃତ୍ତାନ୍ତ ।
ନିଷ୍ଠିତ ବ୍ରହ୍ମଙ୍କ ଭକ୍ତ ମହାତପୋଧନ
କେମନ୍ତେ ସଂସାର ପ୍ରତି ଫେରାଇଲେ ମନ
କେମନ୍ତେ ବା ମହାମାୟା ବୁଝିଣ ଛଳନ
ଅନ୍ତିମେ ହୋଇଲେ ହରି ପ୍ରେମରେ ମଗନ
ଅତି ବିଚିତ୍ର ଏ ବାଣୀ କହନ୍ତ ନିଶ୍ଚୟ
ଶ୍ରୀହରିଙ୍କ ମହାଲୀଳା ଏଥି ଯେ ଆଶ୍ରୟ ।।
ଏହା ଶୁଣି ପୌରାଣିକ-ସୁତ ମୁନିବର
ଆରମ୍ଭିଲେ ସୌଭରିଙ୍କ ଆଖ୍ୟାନ ସତ୍ୱର ।
ବୋଇଲେ ସକଳେ ଶୁଣ ହୋଇ ତୋଷମନ
ଶୁକଦେବ ପରୀକ୍ଷିତେ କଲେ ଯା ବଖାଣ ।
ପରଂବ୍ରହ୍ମ ଶ୍ରୀହରିଙ୍କ ଯେଉଁ ଭକ୍ତବର
ଅମ୍ବରୀଶ ବୋଲି ନାମ ଅଟେ ଯାହାଙ୍କର ।
ତାହାଙ୍କର ବଂଶ କେତେ ଗଣି ନ ହୁଅଇ
ସୂର୍ଯ୍ୟବଂଶଧର ଟେକ ରଖିଥିଲେ ସେହି ।

କ୍ରମେ କ୍ରମେ ପରିଚୟ ଦେଇ ତାହାଙ୍କର
ବୁଝାଇ କହନ୍ତି ବ୍ରହ୍ମରେତା ମୁନିବର ।
ଅମ୍ବରୀଶ ବଂଶେ ହେଲେ ଏକଇ ରାଜନ
ନାମ ମାନଧାତା ପୃଥ୍ୱୀ କରନ୍ତି ଶାସନ ।
ପୁତ୍ର କନ୍ୟା ଯଶୋବୀର୍ଯ୍ୟ ଊଣା ସେ ନଥିଲେ
ହରିପଦେ ତାଙ୍କମନ ସଦା ରଖିଥିଲେ ।
ଶ୍ରୀହରି ପ୍ରସାଦେ ହେଲେ ଯେ ତିନି ନନ୍ଦନ
ପଞ୍ଚାଶ ଦୁହିତା ପୁଣି ହେଲେ ଉତପନ୍ନ ।
ସେ ରାଜା ରାଜୁତି କାଳେ ଏକ ମହାଋଷି
ସୌଭରି ନାମେଣ ତପ କରେ ବନବାସୀ ।
ତପସ୍ୟାରେ ମହା ତେଜା ତାଙ୍କ ସମ ନାହିଁ
ଗ୍ରୀଷ୍ମ କାଳେ ଅଗ୍ନିମଧ୍ୟେ ରହନ୍ତି ଯେ ସେହି
ବର୍ଷାକାଳେ ତିନ୍ତି କରୁଥାନ୍ତି ହରିନାମ
ଏକମନେ ତପ ଜପ କରନ୍ତି ସାଧନ ।
ଶରତେ ପର୍ବତେ ଶିଖେ, ହିମେ ହିମ ପରେ
ଶୀତ କାଳେ ଧ୍ୟାନମଗ୍ନ ଜଳର ମଧ୍ୟରେ ।
ବସନ୍ତେ ପବନେ ବସି ମଗ୍ନ ସାଧନାରେ
କାହା ସାଧ୍ୟ ତାଙ୍କ ବଳ ବର୍ଣ୍ଣିବ କଥାରେ
ଏମନ୍ତ ତେଜସ୍ୱୀ ଋଷି ବୈରାଗ୍ୟ-ମଣ୍ଡିତ
ହରିଙ୍କି ଚିନ୍ତନ୍ତି ରଖି ହରି ପଦେ ଚିତ୍ତ ।
ଆଜନ୍ମ ବୈରାଗ୍ୟ ଅଟନ୍ତି ସେ ତପୋଧନ
ଭୋଗ ସୁଖେ ରତ ନ ହୁଅନ୍ତି କଦାଚନ ।
ନ ଜାଣନ୍ତି କିବା ଅଟେ ସଂସାର ଜଞ୍ଜାଳ
କେମନ୍ତ ବିଷୟ ରସ କୁଟୁମ୍ବର ଜାଳ ।
ଏକ ଦିନ ସେହି ସିଦ୍ଧଦେହୀ ତପୋନିଧି
ଇଚ୍ଛିଲେ ଜଳରେ ବୁଡ଼ିବଇଁ ଯୋଗ ସାଧି ।
ସୁରମ୍ୟ ଆଶ୍ରମେ ତାଙ୍କ ଥିଲା ସରୋବର
ସିଦ୍ଧି ନେଇକରେ ବୁଡ଼ିଲେ ତାହାରି ମଧ୍ୟର ।
ଏମନ୍ତେ କଠୋର ବ୍ରତ କରି ସମାପନ
ଧ୍ୟାନ ମାର୍ଗରେ ଯେ ଋଷି ଫେଡ଼ିଲେ ନୟନ
ସେକାଳେ ଯେ ଦୁଇଗୋଟି ମତ୍ସ୍ୟ ସରୋବରେ
କାମଭୋଳେ ପ୍ରୀତକଲେ ତପିଙ୍କ ଆଗରେ ।
ତାହାଙ୍କ ମୈଥୁନ ଋଷି ଦେଖନ୍ତି ନୟନେ
କାମ ଭାବ ଜାତ ହେଲା ତାଙ୍କ ହୃଦମନେ ।
ଭାବିଲେ ସିଦ୍ଧି ସହିତେ ଭୋଗ ମୁଁ କରିବି
ନୋହିଲେ ସଂସାରେ ଅକାରଣ ସିନା ହେବି ।

ତାପରେ ସେ ଋଷିବର ବିଚାରିଲେ ମନ
ପ୍ରେମଲାଗି ନବଯୁବା ନାରୀ ପ୍ରୟୋଜନ ।
ଏମନ୍ତ ସୁନ୍ଦରୀ ନାରୀ ଯଦି ମୁଁ ପାଇବି
ବିଭାହୋଇ ଘରଦ୍ୱାର ସଂସାର ଗଢ଼ିବି ।
ତେବେ ଯାଇ ଭୋଗ ଶାନ୍ତ ହେବ ମୋର ମନ
ଭାବିଲେ ପାଇବି କାହୁଁ ରମଣୀ ରତନ ।
ଏହିପରି ଭାବୁ ଭାବୁ ମନେ ଏକ ଗୀର
ପଡ଼ିଲା ତାଙ୍କର ହର୍ଷ ହେଲେ ସେ ଚତୁର ।
ମାନଧାତା ରାଜା ଅଟେ ସତ୍ୟସନ୍ଧ ଅତି
ଶୁଣିଛି ପଚାଶ କନ୍ୟା ତାହାର ଅଛନ୍ତି ।
କେବଳ ତିନୋଟି ମାତ୍ର କୁମର ତାହାର
କନ୍ୟାମାନେ ଏକୁଁ ଏକ ସୁନ୍ଦରୀ ସୁଧର ।
ତାହାଙ୍କ ପାଶକୁ ଯାଇ ବିନୟ ଭାବରେ
ମାଗିଲେ ସେ କନ୍ୟାଏକ ନିଶ୍ଚେ ଦେବତାରେ
ଏହାଭାବି ତପିବର ସାଥେ ସାଥେ ଗଲେ
ମାନ୍ଧତା ରାଜାଙ୍କ ପାଶେ ପ୍ରବେଶ ହୋଇଲେ
ଏମନ୍ତ ଋଷିଙ୍କୁ ନେହେ କରି ଦରଶନ
ମାନ୍ଧାତା ବୋଇଲେକ ହେଲି ମୁହିଁ ଧନ୍ୟ ।
ଏହାକହି ଯଥାବିଧି ସତକାର କଲେ
ଆସନେ ବସାଇ କମ୍ପା ଆସିଛ ପୁଛିଲେ ।
ତପସ୍ୱୀ ବୋଇଲେ ଶୁଣ ଆହେ ପୁରନ୍ଦର
ପ୍ରବଳ ଇଚ୍ଛା ଆମ୍ଭର କରିବୁଁ ସଂସାର ।
ଆନମାନେ ଯେଉଁପରି ପୁତ୍ର କନ୍ୟା ପାଇଁ
ମହା ଆନନ୍ଦରେ କାଳ ଯାପୁଛନ୍ତି ରହି ।
ସେହିପରି ଆମ୍ଭେ ଏକ ସଂସାର ଗଢ଼ିବୁ
ଆସିଛୁ ତବ ପାଖକୁ କରିଅ ତା ସବୁ ।
ପଚାଶ ଗୋଟି ସୁନ୍ଦରୀ କନ୍ୟାଛନ୍ତି ତବ
ତହିଁରୁ ଗୋଟିଏ ଦାନ କର ନରଧବ ।
ମାନ୍ଧାତା ବୋଇଲେ ଯାହା କହିଲ ତାପସ
ମାନୁଛି ମୋହର କନ୍ୟା ଅଛନ୍ତି ପଚାଶ ।
କିନ୍ତୁ ତାଙ୍କ ପରେ ମୋର ଅଧିକାର ନାହିଁ
ଆଦେଶ ଦେଇଛି ତାଙ୍କୁ ବହୁଦିନୁ ମୁହିଁ ।
ସ୍ୱୟମ୍ବର କରି ତୁମ୍ଭେ ଇଚ୍ଛା ଅନୁସାରେ
ବାଛି କନ୍ୟା ମନ ମନାଇଣ ନିଅ ଘରେ ।
ଏକଥା ଶ୍ରବଣ କରି ଭାବିଲେକ ମୁନି
ଅସୁନ୍ଦର ହେତୁ ରାଜା କହିଲେ ଯା ଜାଣି ।

ଏପରି ମନେ ବିଚାରି ଋଷି ତହୁଁ ଯାଇ
ଯୋଗବଳେ ଦିବ୍ୟ ରୂପ ଧଇଲେକ ତହିଁ ।
ସ୍ୱର୍ଗର ଗନ୍ଧର୍ବ ଠାରୁ ଆହୁରି ସୁନ୍ଦର
ଶରୀର ଧାରଣ କଲେ ତହୁଁ ଋଷିବର ।
ରାଜାଙ୍କ କହିବା ମତେ କନ୍ୟାଙ୍କ ପାଶରେ
ମିଳି ବୋଇଲେ ତାପସ ସହାସ୍ୟ ମୁଖରେ ।
ପ୍ରବଳ ବାସନା ଜାଗିଅଛି ଆମ୍ଭ ଚିତ୍ତେ
ବିବାହ କରଗୋ କନ୍ୟା ମଧ୍ୟୁ ଜଣେ ମୋତେ
କନ୍ଦର୍ପ ଜିଣା ରୂପକୁ କରି ଦରଶନ
ଷୋଡ଼ଶୀ ସୁକେଶୀମାନେ ପ୍ରେମେ ହେଲେ ମଗ୍ନ ।
ଏକାବେଳେ ସେ ପଚାଶ କନ୍ୟା ମାଳ ନେଇ
ଋଷିବରଙ୍କର ଗଳେ ଦେଲେକ ଲମ୍ବାଇ ।
ସମସ୍ତ ବିଷୟ ମାନ ଶୁଣି ନରପତି
ମନ ମଧ୍ୟରେ ହୋଇଲେ ଆନନ୍ଦ ଯେ ଅତି ।
ତାପରେ ପଚାଶ କନ୍ୟାମାନଙ୍କ ସହିତ
ରାଜ୍ୟ ଧନ ଯଉତୁକ ଦେଲେ ଅଗଣିତ ।
କଚ୍ଛନ୍ଦନ ସୁଖଭୋଗ ଆନନ୍ଦରେ କରି
ପ୍ରତ୍ୟେକଙ୍କ ଗର୍ଭେ ପୁତ୍ର ଦେଲେକ ସଞ୍ଚରି ।
ପଚାଶ ନାରୀଙ୍କ ହେଲେ ସୁତ ପାଞ୍ଚଶତ
ଏହିପରି ହେଲେ ଋଷି ମହାବଂଶ ଭୁକ୍ତ ।
ଯେତେ ଭୋଗ କଲେ ମଧ୍ୟ ମନ ତୃପ୍ତି ନୁହଁ
ପ୍ରତ୍ୟେକଙ୍କୁ ନ୍ୟୂନେଇଚ୍ଛା ହୁଅଇ ଉଦୟ ।
କାହିଁରେ ସନ୍ତୋଷ ନୋହି ସେହି ଋଷିବର
ଏକରୁ ହୋଇଲା ଏତେ ଭୋଗର ପ୍ରଖର ।
ଆଜନ୍ମ ତପସ୍ୟା କରି ପାଇ ସିଦ୍ଧି ଫଳ
ମର୍ତ୍ତ୍ୟର ମୈଥୁନେ ମନ ହୋଇଲା ଚଞ୍ଚଳ ।
ଏହି ପରି ମନ ମଧ୍ୟେ ପାଞ୍ଚି ତପିବର
ପତ୍ନୀମାନଙ୍କୁ ସେ ଜ୍ଞାନ ଦେଇଣ ସତ୍ୱର ।
ପୁତ୍ରମାନଙ୍କ ହସ୍ତରେ ସର୍ବ ସମର୍ପଣ
ପରଂବ୍ରହ୍ମ ପାଦେ ମନ ନିବେଶିଲେ ପୁଣ ।
ପଚାଶ ନାରୀଙ୍କ ସହ ଏକ ସମୟରେ
ପ୍ରାଣ ବିସର୍ଜନ କରି ବସିଲେ ସ୍ୱର୍ଗରେ ।
ଏମନ୍ତ କହିଲେ ସୁତ ଶୁଣି ମୁନିବର,
ବୋଇଲେ ଏକଇ କଥା କହନ୍ତୁ ସତ୍ୱର ।
ଆପଣ କହିଲେ ମାନଧାତା ନୃପତିଙ୍କୁ
ପୁରନ୍ଦର ବୋଲି କମ୍ପା ଡ଼ାକନ୍ତି ତାହାଙ୍କୁ ।

ତାଶୁଣି ବୋଇଲେ ସୁତ ଶୁଣ ମୁନିବର
ଯୁବନାଶ୍ୱ ନାମେ ଥିଲେ ଜଣେ ନୃପବର ।
ଏକଶତ ଭାର୍ଯ୍ୟା ସେହି ରାଜାଙ୍କର ଥିଲେ
କାହାରି ଗର୍ଭରୁ ପୁତ୍ର ପୌତ୍ରୀ ନ ହୋଇଲେ
ପୁତ୍ରହୀନ ହେତୁ ରାଜା ମନେ ଘାରିହୋଇ
ଦିବସ ରଜନୀ ସଦା ଭାବିଲେକ ତହିଁ ।
ପୁତ୍ର ହୀନ ଜନ କେବେଁ ନହୁଏ ଉଦ୍ଧାର
ମନଦୁଃଖେ ରାଜା ଗଲେ ଅରଣ୍ୟ ମଧ୍ୟର ।
ରାଜାଙ୍କୁ ଦୁଃଖିତ ଦେଖି ସର୍ବ ଋଷିଗଣେ
ମହାଯଜ୍ଞ ଆରମ୍ଭିଲେ ବନସ୍ତ ମଧ୍ୟେଣ ।
ତେମନ୍ତ ପ୍ରକାରେ ପୁତ୍ର ହେବ ଉତ୍ପନ
ଯେମନ୍ତ ହବିରେ ସୁଧା କଲେ ମୁନିଗଣ ।
ଏକଥା ରାଜା ବା ରାଣୀ ନ ଜାଣନ୍ତି କେହି
ଦିବସ ରଜନୀ ଦୁଃଖେ ବଞ୍ଚିଲେକ ତହିଁ ।
ସେହି ରାତ୍ରେ ଉପବାସ ଥାଆନ୍ତି ନୃପତି
ତୃଷାରେ କାତର ସେହୁ ହୋଇଲେକ ଅତି
ଆଶ୍ରମେ ଖୋଜିଣ ଜଳ ନ ପାଇଲେ କାହିଁ
ପ୍ରବେଶ ହୋଇଲେ ରାଜା ଯଜ୍ଞାଳୟେ ଯାଇ
ଜଳ ଭାବି ସୁଧା ସେହୁ କରିଲେକ ପାନ
ତାହାପରେ ପ୍ରବେଶିଲେ ସର୍ବ ଋଷିଗଣ ।
ସେମାନେ ଦେଖିଲେ ସୁଧାଭାଣ୍ଡେ ସୁଧା ନାହିଁ
କିଏ ସୁଧା ନେଲା ବୋଲି ବ୍ୟତିବ୍ୟସ୍ତ ହୋଇ
ରାଜାଙ୍କୁ ପୁଚ୍ଛନ୍ତେ ରାଜା କହିଲେ ସମସ୍ତ
ତାହାଶୁଣି ତପିଗଣେ ହୋଇଲେ ଚିନ୍ତିତ ।
ବୋଇଲେ ରାଜନ ବଡ଼ ମନ୍ଦ କର୍ମ କଲ
ରାଣୀ ଭକ୍ଷିବା ସୁଧାକୁ ତୁମେ ଯେ ଭକ୍ଷିଲ
ଏଣୁ ଦଇବ ଉଆଣ ଆନ ନ ହୋଇବ
ଆପଣଙ୍କ ଗରଭରୁ ପୁତ୍ର ଜାତ ହେବ
ଏପରି କହନ୍ତେ ତପିଗଣ କଚ୍ଛନ୍ଦନେ
ରାଜା ଏକ ପୁତ୍ର ପ୍ରସବ ଯେ କଲେ ବନେ ।
ବାହୁ ବାଟେ ଦେଇ ମାନଧାତା ଜନ୍ମ ହେଲେ
ଜନ୍ମ ମାତ୍ରେ କ୍ଷୀର ଖାଇବାକୁ ଯେ ଖୋଜିଲେ
ଯା ଦେଖି ତପସ୍ୱୀ ଗଣେ ଏକାଗ୍ର ଚିତ୍ତରେ
ଇନ୍ଦ୍ରଙ୍କୁ ସ୍ମରଣ କଲେ ଯହୁଁ ସେଠାବରେ
ସାଥେ ସାଥେ ଇନ୍ଦ୍ର ଆସି ପ୍ରବେଶ ହୋଇଲେ
ପୁତ୍ରର ମୁଖରେ ପ୍ରତିଦିନ ଖାଦ୍ୟ ଦେଲେ ।

ହୋଇଥିବା ନିମନ୍ତେ ଆନ ନାମ ତାହାଙ୍କର
ପୁରନ୍ଦର ବୋଲି ହୁଏ ଘୋଷିତ ମହୀରେ ।
ଏମନ୍ତ ଅଟଇ ମାନଧାତାଙ୍କ ଚରିତ
ଶୁଣିଲେ ଋଷିଗଣ ହୋଉ ଆନନ୍ଦିତ ।
ସୂର୍ଯ୍ୟବଂଶ ଯଶକୀର୍ତ୍ତି ଅପୂର୍ବ କଥନ
କହିଲେ ସରିବ ନାହିଁ ଜାଣ ନିଶିଦିନ ।
ଏହା କହି ମୁନିବର ହୋଇଲେ ମଉନ
ଗୀତେ ଛନ୍ଦେ ଗ୍ରହିଲେ ଜଗନ୍ନାଥ କ୍ଷେତ୍ରବାସୀ ହୀନ

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ମାନଧାତା ରାଜାଙ୍କ
ସମାଚାର ବର୍ଣ୍ଣନେ ନାମ
ପଞ୍ଚବିଂଶୋଽଧ୍ୟାୟଃ ।

—❧—

## ଷଡ଼ବିଂଶ ଅଧ୍ୟାୟ
## ଭଗୀରଥଙ୍କ ସମାଚାର ବର୍ଣ୍ଣନ

ସୂତ ଉବାଚ

କହନ୍ତି ଯେ ପୌରାଣିକ ସୂତ ମୁନିବର
ଶୁଣିଲେ ସୂର୍ଯ୍ୟବଂଶ କୀର୍ତ୍ତି ମୁନିବର ।
ସେହି ବଂଶେ ଯେତେ ଯେତେ ବୀର ଜନ୍ମିଛନ୍ତି
ତାହାଙ୍କ କୀର୍ତ୍ତି ଆଜ ଘୋଷୁଛି ଧରଣୀ ।
ପୁଣି ବହୁ ପୁଣ୍ୟବାନ ଭକ୍ତ ସେ ବଂଶରେ
ଜନମ ହୋଇଣ ବସି ଅଛନ୍ତି ସ୍ୱର୍ଗରେ ।
ହରିଶ୍ଚନ୍ଦ୍ର ସେହି ବଂଶେ ଜନ୍ମ ହୋଇଥିଲେ
ସ୍ୱ ଦେହରେ ପତ୍ନୀ ସହ ସ୍ୱର୍ଗ ବାସ କଲେ ।
ଏହି ପରକାରେ କେତେ ବର୍ଣ୍ଣିବି ଯେ ମୁହିଁ
ଆଉ ଏକ ଗାଥା ତୁମ୍ଭେ ଶୁଣ ମନ ଦେଇ ।
ସଗର ନାମରେ ଜଣେ ରାଜା ଜନ୍ମିଥିଲେ
ସାଠିଏ ସହସ୍ର ପୁତ୍ର ତାଙ୍କର ହୋଇଲେ ।
ସେମାନେ କପିଳ ମୁନିଙ୍କର ଶାପ ପାଇ
ଅନଳେ ସର୍ବଦା ହେଉଥିଲେ ପ୍ରାଣେ ଦହି ।
ଏହାଶୁଣି ବୋଇଲେକ ତାହାଙ୍କୁ ଶୌନକ
ସଗର ନାମ କାହିଁକି ହୋଇଲା ତାହାଙ୍କ ।
କାହାର ସନ୍ତାନ ସେହୁ କହନ୍ତୁ ବୁଝାଇ
ତାହାଙ୍କୁ ଅନଳୁ ପୁଣି ଉଦ୍ଧାରିଲା କେହି ।

ସୂତ ବୋଇଲେ ବାହୁକ ନାମେ ନରପତି
ତାହାଙ୍କ ସଙ୍ଗରେ ରଣ କରିଲେ ଅରାତି ।
ସେମାନଙ୍କ ଭୟେ ରାଜା ଅରଣ୍ୟ ମଧ୍ୟରେ
ବାସକଲେ ଯାଇ ରାଣୀମାନଙ୍କ ସଙ୍ଗରେ ।
ଔର୍ବନାମେ ମହାମୁନି ସେହିବନେ ଥିଲେ
ନୃପତି ସହିତେ ସମସ୍ତଙ୍କୁ ବାସ ଦେଲେ ।
ଋଷିଙ୍କ ଆଦେଶମତେ ତାଙ୍କ ଜ୍ୟେଷ୍ଠ ରାଣୀ
ଅଳପ ଦିନରେ ଗର୍ଭ ହୋଇଲେକ ଜାଣି ।
ତାହା ମଧ୍ୟ ଜାଣି ରାଜା ରାଜ୍ୟ ନାଶ ଲାଗି
ଡେଙ୍ଗଲେ ଚରଣ ବନେ ସଦା ଭାବି ଭାବି ।
ସପତ୍ନୀ ଗର୍ଭ ବିନାଶ ଲାଗି ଏକ ରାଣୀ
ବିଷ ଖୁଆଇଲା ମନେ ହିଂସା କରି ପୁଣି ।
ଯୋଗବଳେ ସେ କଥାକୁ ଜାଣି ଋଷିବର
ବିଷକୁ ଅମୃତ କଲେ ଜନ୍ମିଲା କୁମର ।
ତେଣୁ ସେ ପୁତ୍ରର ନାମ ଦେଲେ ଯେ ସଗର
ତାହାପରେ ଯାହା ହେଲା ଶୁଣ ଋଷିବର ।
ମହାବଳବନ୍ତ ହେଲା ସେ ସଗର ରାଣ
ବାହୁବଳେ ପିତାଙ୍କର ରାଜ୍ୟ ଫେରାଇଣ ।
ଅବଶେଷେ ଚକ୍ରବର୍ତ୍ତୀ ହୋଇବା ନିମନ୍ତେ
ଅଶ୍ୱମେଧ ଯଜ୍ଞ ଇଚ୍ଛା କଲେ ନିଜ ଚିତ୍ତେ ।
ଷାଠିଏ ସହସ୍ର ପୁତ୍ରଗଣ ସହିତରେ
ଅଶ୍ୱ ଭ୍ରମଣ କରିଲା ଯାଇଣ ଦେଶରେ ।
ସଗରଙ୍କର ଏ ରୀତି ଦେଖି ସୁନାଶିର
ଭାବିଲେ ଏ ଇନ୍ଦ୍ର ପଦ କାଳେ ନେବ ମୋର
ଏହିପରି ପାଞ୍ଚ ଯଜ୍ଞ ଅଶ୍ୱକୁ ସେ ନେଇ
ପାତାଳ ଦ୍ୱାରେ କପିଳ ଋଷି ଥିଲେ ଯହିଁ ।
ତାହାଙ୍କ ପଛରେ ଗୁପ୍ତେ ବାନ୍ଧି ଅଶ୍ୱବର
ପଳାଇଲେ ଗୁପତରେ ସେହି ସୁନାଶିର ।
ଏଣେ ସଗର ନନ୍ଦନ ଖୋଜି ଖୋଜି ଅଶ୍ୱ
କାହିଁ ନଦେଖିଣ ମନେ ହୋଇଲେ ହତାଶ
ସ୍ୱରଗ ପୁରେ ଯାଇଣ ସେମାନେ ଖୋଜିଲେ
ତହିଁ ନପାଇ ପାତାଳେ ଯିବାକୁ ଇଚ୍ଛିଲେ ।
ଯିବାପାଇଁ ପଥଘାଟ ସେମାନେ ନ ପାଇ
ସ୍ୱହସ୍ତେ ଖୋଳିଲେ ମାଟି ସର୍ବେ ମେଳହୋଇ
ଖୋଳୁ ୨ ପାଣି ଯହୁଁ ହୋଇଲା ବାହାର
ସଗର ନାମରେ ନାମ ଦେଲେ ଯେ ସାଗର ।

ଏମନ୍ତେ ବାର୍ଷ୍ୟର ତେଜେ ଏତେ ଦୂର ଗବ
କେହ୍ବ ବୁଝି ନ ପାରନ୍ତ ବିଷ୍ଣୁ ମାୟାଭାବ ।
ବହୁକାଳ ଯାଏ ମେତୁ ଖୋଳ ସେହ୍ସ୍ଥାନ
ପାଇଲେ ଉତ୍ତର ଦ୍ୱାରେ ପାତାଳ ସନ୍ଧାନ ।
ସେଠାରେ ପ୍ରବେଶି ସବେ କଲେ ନିରୀକ୍ଷଣ
ଯଜ୍ଞ ଅଶ୍ୱ ବନ୍ଧା ହୋଇଅଛୁ ସେହ୍ସ ସ୍ଥାନ ।
ତାହା ସନ୍ନିଧିରେ ଛନ୍ତ ଏକ ଋଷିବର
ସେ ଅଙ୍ଗ ଜ୍ୟୋତିରେ ପୂର୍ଣ୍ଣ ପାତାଳ ନଗର
ଋଷିରୂପରେ ଅଛନ୍ତ ସର୍ବ ଦର୍ପହାରୀ
ସଗର ନନ୍ଦନ ତାଙ୍କୁ ଚିହ୍ନି ସେ ନପାରି ।
ଅହଙ୍କାରେ କହ୍ଲେ ସେ ନାନା ଅକଥନ
କିଏ ଅଟୁ ଭଣ୍ଡ ବେଗେ କହରେ ବଚନ ।
ପୃଥ୍ୱୀର ଅଧିପତି ସଗର ନୃପତି
ଆମ୍ଭେମାନେ ଅଟୁ ସବେ ତାହାଙ୍କ ସନ୍ତତି
ଅଶ୍ୱମେଧ ଯଜ୍ଞ ଲଗି ଅଶ୍ୱ କିଣିବାରେ
ଆଣିଅଛୁ ଆମ୍ଭେ ଅଶ୍ୱ ଗର୍ବ ସହକାରେ ।
ତୁହ୍ ଯେ ସାମାନ୍ୟ ଋଷି କି ଶକ୍ତି ତୋହର
ଆଣିଅଛୁ ଏ ଅଶ୍ୱଙ୍କୁ ପାତାଳ ନଗର ।
ଏତେ ବୋଲି ସବେ ଗଲେ ତାଙ୍କୁ ମାରିବାକୁ
ଚେତନା ଲଭିଣ ତପି ଦେଖିଲେ ତାହାଙ୍କୁ
ଚାହିଁବା ମାତ୍ରକେ ଜଳ ଉଠିଲା ଅନଳ
ତା ମଧ୍ୟେ ପଡ଼ିଣ ଦଗ୍‌ଧ ହୋଇଲେ ସକଳ
ଦୂତ ଯାଇ ଏ ସମ୍ବାଦ ଦିଅନ୍ତେ ରାଜାରେ
ସଗର ନୃପତି ଶୁଣି ମୋହଗଲେ ଖରେ ।
କାନ୍ଦନ୍ତ ତାତ ଜନନୀ କରି ହାହାକାର
ଯଜ୍ଞ ଶେଷେ ନ ହେଉଣୁ ପାପର ସଞ୍ଚାର ।
ଅଂଶୁମାନ ନାମେ ପୌତ୍ର ଥିଲା ତାହାଙ୍କର
କୁଳଶୀଳ ରୂପ ଗୁଣେ ସେ ନାତ୍ତ ସୁନ୍ଦର ।
ଆଶ୍ୱାସନ ଥାଏ ତାର ହରି ପ୍ରତି ମନ
ରାଜାଙ୍କର ଯଜ୍ଞ ସେହ୍ କଲା ସମାପନ ।
ଭକ୍ତିବଳେ ତେଜା ସେହ୍ ନୃପତି କୁମାର
ପ୍ରତିଜ୍ଞା କଲା ସେ ଯଜ୍ଞ କରିଣେ ଉଦ୍ଧାର ।
ସଙ୍କଟରେ ଦୁଃଖୀ ବେଶେ ହରି ନାରାୟଣ
ଦୂତ ସଙ୍ଗେ ଚଳିଗଲା ପାତାଳ ଭୁବନ ।
ପାତାଳକୁ ଯାଇ ଦେଖେ ଋଷିରୂପୀ ହରି
ସମ୍ମୁଖେ ସଗର ବଂଶ ଯାଉଛନ୍ତ ଜଳି ।

ଅଦୂରେ ରହ୍ଛୁ ଅଶ୍ୱ ଦୃଶ୍ୟ ମନୋହର
କାହା ସାଧ ଦେଖେ ସେହ୍ ଋଷି କଳେବର
କାନ୍ତ କୋଟି ଶଶଧର ସୂର୍ଯ୍ୟଙ୍କ ସମାନ
ରବି ଶଶୀ ଏକ ଏଙ୍ଗେ ଅତ୍ୟନ୍ତ ଶୋଭନ ।
ଋଷିଙ୍କି ଅନାଇଁ ତହିଁ ଅଂଶୁମାନ କହି
ନମସ୍କାର ତବ ପଦେ ହୀନ ଦାସ ମୁହିଁ ।
ସେ ବାର ବଚନ୍ତ ଦେଖି ସର୍ବ ଗୁଣାଶ୍ରୟ:
ବୁଝିପାରିଲେ ଏ ଜନ ଭକ୍ତ ସୁନିଶ୍ଚୟ ।
କପିଳ ରୂପରେ ଯେତୁ କରୁଣ ବିଗ୍ରହ
ସାଂଖ୍ୟ ଶାସ୍ତ୍ର ଲେଖିଛନ୍ତ ରକ୍ଷଣେ ସଂସାର ।
ଏମନ୍ତ କୃପାଳୁ ଋଷି ଦେଖି ଅଂଶୁମାନ
ଭକ୍ତିରେ ହୋଇଲା ତାର ସମାକୁଳ ପ୍ରାଣ ।
ଋଷିଙ୍କି ପ୍ରସନ୍ନ ଦେଖି ସୂର୍ଯ୍ୟ ବଂଶଧର
ସ୍ତବକଲା ବିଶେଷରେ ଯୋଡ଼ି ବେନିକର ।
ଜୟ ଜୟ ଋଷି ରୂପୀ ପ୍ରଭୁ ଭଗବାନ
ଜୟ ଜୟ ହେ କପିଳ କରୁଣା ନିଧନ ।
ଋଷିରୂପେ ଅଟ ତୁମ୍ଭେ ପରମ ଈଶ୍ୱର
ଦେହଧାରୀ ହୋଇ ଅଛ ତିନି ଭୁବନର ।
ଦେବାଦି ସକଳେ ଅଟନ୍ତ ଯେ ଅଗୋଚର
ମୁହିଁ ହିନ ହୀନ ମାନ ଅଟେ ଛାର ନର ।
ଆପଣଙ୍କୁ ଚିହ୍ନିବାକୁ ନାହିଁ ମୋ ଶକତି
ଶୁଦ୍ଧ ସତ୍ୟମୂର୍ତ୍ତି ତୁମ୍ଭେ ଅଟ ଜଗଜ୍ୟୋତି ।
ମୁଁ ଯେ ଅତି ମୂଢ଼ମତି କି ଶକ୍ତି ମୋହର
ତୁମ୍ଭ ଶ୍ରୀ ଚରଣ ପଦ୍ମେ କରେ ନମସ୍କାର ।
ପୁରାଣ ପୁରୁଷ ତୁମ୍ଭେ ପାପ ପୁଣ୍ୟ ହୀନ
ନାମ ରୂପ ଶୂନ୍ୟ ତୁମ୍ଭେ ଅଟ ଅନୁକ୍ଷଣ ।
ଦାନ କରିବାର ପାଇଁ ଜ୍ଞାନ ଉପଦେଶ
ଶରୀର ଧାରଣ କରି ଥିନା ହୃଷୀକେଶ ।
ସର୍ବଭୂତ ଆତ୍ମା ତୁମ୍ଭେ ଦେଖି ତବ ମୂର୍ତ୍ତି
ମୋର ମୋହ ପାଶ ଛିନ୍ନ ହେଲା ହେ ଶ୍ରୀପତି
ଆହେ ତତ୍ତ୍ୱମୟ କି ବୁଝିବି ତବ ତତ୍ତ୍ୱ
କ୍ଷମାକର ଏ ଦାସରେ ଯା ହୁଏ ଉଚିତ ।
ଅଂଶୁମାନ ଦୈନ୍ୟ ଶୁଣି ଋଷି ରୂପୀ ହରି
ବୋଇଲେ କି ବର ମାଗ ଅଭିଳାଷ କରି ।
ଅଂଶୁ କହେ ଯଦି ବର ଦେବେ ନାରାୟଣ
ଦିଅନ୍ତୁ ଗତି ଯେତେକ ସଗର ନନ୍ଦନ ।

ଅନ୍ୟବରେ ମୋ ଅଜାଙ୍କ ଯଜ୍ଞ ଶେଷକର
କୃପା କରି ଦିଅ ମୋତେ ଏହି ଦୁଇବର ।
ଅଂଶୁମାନର ବିନୟେ ସଦୟ ହୃଦୟେ
ଦେଲେ ସେ ତାହାଙ୍କୁ ଅଶ୍ୱ ବନ୍ଧା ଯହିଁ ରହେ
ଶୁଣି ବୋଇଲେ ଶୁଣସି ହେ ରାଜନନ୍ଦନ
ଗଙ୍ଗା ବିନା ଦଗ୍ଧ ବଂଶ ନହେବେ ମୋଚନ
ଯଦି ଆଣିବାରେ ପାର ସେ ଗଙ୍ଗାଙ୍କୁ ଏଥି
ଉଦ୍ଧାର ହୋଇବେ ବଂଶ କହିଲି ଯଥାର୍ଥ ।
ଏକଥା ଶୁଣନ୍ତେ ତହିଁ ବୀର ଅଂଶୁମାନ
ଅଶ୍ୱକ୍ ଘେନି ଅଇଲା ପିତାମହ ସ୍ଥାନ ।
ଯଜ୍ଞକର୍ମ ଶେଷକରି ସଗର ରାଜନ
ଅହଙ୍କାର ତେଜି କଲେ ଶ୍ରୀହରି ଭଜନ ।
ଅନ୍ତମେ ଶ୍ରୀହରି ପାଦେ ସମର୍ପି ସେ ପ୍ରାଣ
ସ୍ୱଚ୍ଛନ୍ଦେ ବୈକୁଣ୍ଠେ ଗଲେ ସଶରୀରେ ଜାଣ
ଏଣେ ଅଂଶୁମାନ ବଂଶ ଉଦ୍ଧାର ନିମନ୍ତେ
ଗଙ୍ଗାକ୍ ଆଣିବା ଲାଗି ତପକଲେ କେତେ ।
ଆଜନ୍ମ ତପସ୍ୟା କରି ଆଣି ନ ପାରିଲେ
ସଗରଙ୍କ ବଂଶମାନେ ଉଦ୍ଧାର ନୋହିଲେ ।
କ୍ରମେ କାଳ ତାଙ୍କୁ ଦେହ ହୁଅନ୍ତେଣ କ୍ଷୟ
ଦିଲ୍ଲୀପ ନାମେଣ ପୁତ୍ର ହୁଏ ନରରାୟ ।
ବିଷ୍ଣୁଙ୍କ ପରାୟେ ତେଜ ଅଟେ ସେ ରାଜାର
ବିଚାରିଲେ କରିବି ମୁଁ ବଂଶକ୍ ଉଦ୍ଧାର ।
ତପସ୍ୟା ଆଚରି ରାଜ୍ୟ କରି ସେ ପାଳନ
ତେଜିଲେ ହରିଙ୍କ ପାଦେ ଆପଣା ଜୀବନ ।
ମାତ୍ର ତାହାଙ୍କର ଦୁଇଗୋଟି ରାଣୀ ଥିଲେ
ବିବାହର ଅଳ୍ପଦିନେ ବିଧବା ହୋଇଲେ ।
ତେଣୁ ସେ ଅତ୍ୟନ୍ତ ମନ ଦୁଃଖେ ସେସିହାଣୀ
ବଞ୍ଚିଲେ ଦିବା ରଜନୀ ହରି ଗୁଣ ଗୁଣି ।
ଏହିପରି କିଛି ଦିନ ହୋଇଯାନ୍ତେ ଗତ
ରାଣୀଦ୍ୱୟ ପୁଷ୍ପବନ୍ତ ହୋଇଲେ ଭରତ ।
ଶୁଦ୍ଧ ସ୍ନାନ କରିବାକୁ ସାଗରକୁ ଗଲେ
ସ୍ନାହାନ ସାରିଣ ବେନି ରାଣୀ ଯେ ଫେରିଲେ
ଫେରିବା ପଥରେ ସେହୁ ଦେଖିଲେ ନେତ୍ରରେ
ଏକ ଦିବ୍ୟ ଭଗାବନ ପଡ଼ିଲା ନେତ୍ରରେ ।
ତହୁଁ ସେ ରମଣୀ ଦ୍ୱୟ କାମେ ବାଇହୋଇ
ପୀରତି ଆରମ୍ଭ କଲେ ସେହି ବନେ ତହିଁ ।

ଏହାପରେ ଯାହା ହେଲା ଶୁଣ ତପିଗଣ
ଭଗାବନେ ପୀରତି କରନ୍ତେ ଦୁଇଜଣ ।
ନାୟିକା ମୂରତି ଧରିଥିଲା ଯେଉଁ ନାରୀ
ଗୃହୁଁ ଗୃହୁଁ ଗର୍ଭବାସ ହେଲା ସେ ତରୁଣୀ ।
ଦଇବ ଲିଖନ କେହୁ କରିପାରେ ଆନ
ଯଥାକାଳେ ରାଣୀ ଜନ୍ମ କରିଲା ନନ୍ଦନ ।
ପୁରୁଷ ଅଭାବେ ଅସ୍ଥି ନଥିଲା ତାହାର
କେବଳ ମାଂସ ପିଣ୍ଡୁଳା ଜନ୍ମିଲା ମହୀର ।
ତାହାକୁ ଯତନ କରି ମାତୃଥାନ୍ତି ରାଣୀ
କ୍ରମେ କ୍ରମେ କେତେ ଦିନ ଗତ ହେଲା ପୁଣି
ସେ କୁମର ଖେଳୁଥିଲା ରାଜା ଅଗଣାରେ
ଅଷ୍ଟାବକ୍ର ମୁନି ଆସି ମିଳିଲେ ସେଠାରେ ।
ଆଠ ଧରକାର ବାଙ୍କ ଅଟେ ତାଙ୍କ କାୟ
ଏ କୁମର ସେହିପରି କରେ ଅଭିନୟ ।
ତାହାର ଏପରି ଗତି ଦେଖି ମୁନିବର
ମନେ ବିଚାରିଲେ ମୋତେ ଦେଖିଣ ଏ ସ୍ଥିର
ଇଙ୍ଗିତ କରୁଛି ମନେ ମନେ ଗର୍ବ ବହି
ଏହିକ୍ଷଣି ସମୁଚିତ ଫଳ ଦେବି ମୁହିଁ ।
ଏହା କହି ଋଷି କ୍ରୋଧେ କରି ଗରଜନ
ବୋଇଲେ ଆରେରେ ହୀନ କୁମତି ଦୁର୍ଜ୍ଜନ ।
ଆମ୍ଭଙ୍କୁ ବକ୍ର ଦେଖିଣ କଜେ ସେହିପରି
ଅଭିନୟ କରୁଅଛୁ ଟିକେ ନ ବିଚାରି ।
ଏହାକହି କମଣ୍ଡଳୁ ମଧ୍ୟୁ ଜଳ ନେଇ
ବୋଇଲେକ କ୍ରୋଧଭରେ ଗରଜଣ ତହିଁ ।
ଆରେରେ ପାମର ଫଳ୍ଗୁ ଶାପ ଯେ ଆମ୍ଭର
ଯଦି ତୁହି ଜାଣି ଶୁଣି କରୁ ଏ ପ୍ରକାର ।
ତାହେଲେ ଏକ୍ଷଣି ଯିବୁ ତୁ ପାଉଁଶ ହୋଇ
ନତୁବା ତୋ ରୂପ ଯଦି ଏହା ଥିବ ରହି ।
ଆମ୍ଭର ବଚନେ ହେବୁ ସୁ ଦିବ୍ୟ ପୁରୁଷ
କନ୍ଦର୍ପ ଜିଣା ତୋ କାନ୍ତି ହୋଇବ ଅବଶ୍ୟ
ଏପରି କହିଲେ ଯହୁଁ ସେ ବ୍ରହ୍ମଣ୍ୟ ଋଷି
କୁମର ରୂପ ବିକାଶ ହେଲା ଯେସନ୍ତେ ଶଶୀ ।
ପୂର୍ବର ସ୍ୱରୂପ ତାରେ କେଣେ ଉଭାଇଲା
ନୂତନ ଶରୀରେ ତହିଁ ଉଭା ସେ ହୋଇଲା ।
ଏହାଦେଖି ମୁନିବର ଆନନ୍ଦ ହୋଇଲେ
ଭଗାବନ୍ତୁ ଜାତ ହେତୁ ଭଗୀରଥ ଦେଲେ

ସେହି ଭଗୀରଥ ଅଟେ ମହା ପୁଣ୍ୟବନ୍ତ
ଆବର ଅଟଇ ସଦା ଶ୍ରୀହରି ଭକତ ।
କର୍ତ୍ତବ୍ୟରେ ରାଜ୍ୟପାଳ ଶୁଚି ରଖି ମନ
ସର୍ବଦା ହୃଦୟେ ଚିନ୍ତାକରେ ନାରାୟଣ ।
ଦୁଃଖୀ ରଙ୍କି ଦରିଦ୍ରଙ୍କୁ ଦେଖିଲେ ନେତ୍ରରେ
ବହୁଦାନ ଦିଅନ୍ତି ସେହି ରାଜା ଅକାତରେ ।
ପୂର୍ଣ୍ଣଚନ୍ଦ୍ର ପରି ଦିନୁ ଦିନ ବଢ଼େ ସୁତ
ଦେଖି ବେନରାଣୀ ମନେ ହୋନ୍ତି ଆନନ୍ଦିତ ।
ଯେତେବେଳେ ଭଗୀରଥ ମାତାଙ୍କୁ ତାହାର
ପୁଚ୍ଛିଲ ପୂର୍ବ ପୁରୁଷଙ୍କର ସମାଚାର ।
ମାତାମାନେ ତା ଆଗରେ ଗୋଟି ଗୋଟିକର
କହିଲେ ସକଳ କଥା ପୁତ୍ରକୁ ବିସ୍ତାରି ।
ତାହା ଶୁଣି ବିଚାରିଲ ଭଗୀରଥ ମନେ
ଗଙ୍ଗା ଆଣି ବଂଶ ଉଦ୍ଧାରିବି ମୁଁ କେମନେ ।
ଯେଉଁ ସଗରଙ୍କ ବଂଶ ନୁହନ୍ତି ଉଦ୍ଧାର
ସେହି ବଂଶେ ମୋ ଜନମ ଅଟେ ମୁହିଁ ଛାର ।
ଆଉ କ୍ଷଣେମାତ୍ର ମୁହିଁ ଗୃହେ ନ ରହିବି
ଶ୍ରୀହରିଙ୍କୁ ଧ୍ୟାନକରି କାଳ ବିତାଇବି ।
ଦୃଢ଼ମନ ସମର୍ପିବି ଶ୍ରୀହରି ପଦରେ
ଦେଖିବି ଗଙ୍ଗାଙ୍କୁ ଆଣିପାରେ କି ନପାରେ ।
ଦୃଢ଼ ପ୍ରତିଜ୍ଞା କରିଣ ତେଜି ରାଜ୍ୟଧନ
ଗଙ୍ଗା ଗଙ୍ଗା ବୋଲି ସଦା କରିଲ ଭଜନ ।
ତାର ତପବଳେ ତିନି ଭୁବନ କମ୍ପିଲ
ବିଧାତାକୁ ଏହିକଥା ମାନ ଜଣା ହେଲା ।
ବ୍ରହ୍ମା ଶିବ ଏକ ସଙ୍ଗେ ହୋଇଣ ମିଳନ
ବିଷ୍ଣୁଙ୍କ ଆଗରେ ତାହା କରିଲେ ବଖ୍ୟାନ ।
ଶ୍ରୀହରି ତାହା ଶୁଣିଣ ଆନନ୍ଦ ହୋଇଲେ
ଭଗୀରଥ ପାଶେ ଗଙ୍ଗା ପହଞ୍ଚାଇ ଦେଲେ ।
ପ୍ରବେଶ ହୋଇଣ ଦେବୀ କହିଲେ ବଚନ
ହେ ବତ୍ସ ତପସ୍ୟା ତ୍ୟାଗକର ତୁ ବହନ ।
ତୁମ୍ଭେ ହରି ଭକ୍ତ ଅଟ ସଂସାର ମଧ୍ୟରେ
ଜଣେ କେହି ନାହିଁ ତୁମ୍ଭ ସମ ଜଗତରେ ।
ଯାହାଙ୍କର ପାଦ ଧୌତ ଜଳେ ଜନ୍ମ ମୋର
ତାହାଙ୍କୁ ଭଜ ଜନମ ପବିତ୍ର ତୁମ୍ଭର ।
କିବା ତବ ଇଚ୍ଛା ବତ୍ସ କହ ମୋ ଅଗ୍ରତେ
ଦେଖିଣ ବୋଇଲେ ଭଗୀରଥ ସ୍ନେହଚିତେ

ଦେଖ ମାତା ମୋର ବଂଶ କପିଳ ଶାପରେ
ଦହର୍ଯ୍ୟ ହେଉଣ ଛନ୍ତି ଅନଳ ମଧ୍ୟରେ ।
ଦୟାକରି ଯଦି ତୁମ୍ଭେ ଦେଲ ଦରଶନ
ସଗର ବଂଶ ଉଦ୍ଧାରି ତୋଷକର ମନ ।
ନିସ୍ୱାର୍ଥ କାମନା ଶୁଣି ଦେବୀ ନାରାୟଣୀ
ସ୍ନେହଭରେ କହିଲେ ଯେ ତାହାଙ୍କୁ ସେକ୍ଷଣି
ଭକ୍ତିଭରେ ତବ ଆଶା ନାହିଁ କିଛି ଆନେ
ଚାହୁଅଛ ସଗରଙ୍କ ବଂଶ ଉଦ୍ଧାରଣେ ।
ଧନ୍ୟ ଧନ୍ୟ ଭଗୀରଥ ତୁମ୍ଭେ ତ୍ରିଭୁବନେ
ତୁମ୍ଭ କୀର୍ତ୍ତି ବିକଶିବ ଏହି ତ୍ରିଭୁବନେ ।
କଥାଏ ଶୁଣ ରାଜନ କହୁଛି ତୁମ୍ଭରେ
ମହା ବେଗେ ମୁଁ ପତନ ହୋଇବି ମହୀରେ
ନୋହିଲେ ପଡ଼ିବ ରସାତଳରେ ଧରଣୀ
ଭଗୀରଥ ବୋଲେ ଶିବେ ଜଣାଇବି ପୁଣି ।
ତାହା ଶୁଣି ଗଙ୍ଗା ଦେବୀ ହୋଇଣ ପ୍ରସନ୍ନ
ବୋଇଲେ ଧରାକୁ ମୁହିଁ ଯିବଇଁ ବହନ ।
ଆଉ ଏକ କଥା ତୁମ୍ଭେ ଶୁଣ ଦେଇ ଚିତ୍ତ
ପାପୀ ମୋର ଜଳେ ନିଶ୍ଚେ ହୋଇବେ ପବିତ୍ର
ପୁଣ୍ୟ ଦାନକରି ପାପ ରଖିବି ମୁଁ କାହିଁ
ନେଇପାରେ ପାପ ମାତ୍ର ରଖି ନ ପାରଇ ।
ଏହା ଶୁଣି ଭଗୀରଥ କହନ୍ତି ବିନୟେ
ପାପ ହାରି ରହିଥାନ୍ତି ସାଧୁଙ୍କ ହୃଦୟେ ।
ସାଧୁମାନେ ତୁମ୍ଭ ଜଳେ କରିଲେ ସ୍ନାହାନ
ପାପ ତାପ ତବ ଦେହୁଁ ହୋଇବ ଦହନ ।
ଏହା ଶୁଣି ହସି ହସି କହିଲେ ଜନନୀ
ଶିବଙ୍କୁ ତୋଷିବା ପାଇଁ ଯାଅ ନୃପମଣି ।
ମହାଦେବ ସେବାକରି ତୋଷି ତାଙ୍କ ମନ
ଜଣାଇଲେ ଧରିବାକୁ ଗଙ୍ଗାଙ୍କ ପତନ ।
ହରି ପଦ ରଜ ଶିବ ଘେନିଲେ ମଥାରେ
ଧରିବାକୁ ଗଲେ ତହିଁ ସୁରଧୁନୀ ଧାରେ ।
ଆଗେ ଭଗୀରଥ ଯାନ୍ତି ଗଙ୍ଗା ଯାନ୍ତି ପଛେ
କ୍ରମେ କ୍ରମେ ବେଗ ପଡେ ମହେଶଙ୍କ ପାଶେ ।
ଆନନ୍ଦରେ ନାଚି ଶିବ କରିଲେ ଗ୍ରହଣ
କ୍ରମେ ଆସିଲେ ସେ ଗଙ୍ଗା ଯେ ଠାରେ ଭୁବନ
ହଜାର ହଜାର ପାପୀ ସ୍ପର୍ଶେ ମୁକ୍ତ ହୋନ୍ତି
କ୍ରମେ ଗଙ୍ଗା ନୃପ ସଙ୍ଗେ ପାତାଳକୁ ଯାନ୍ତି ।

ଯେଉଁଠୁଁ ସଗରସୁତ ଦହସ୍ୟ ହୁଅନ୍ତି
ସେଠାବରେ ଗଙ୍ଗା ପଦ୍ମେ ମିଳିଲେ ତତ୍ତ୍ୱ ।
କପିଳଙ୍କ ଶାପେ ଜଳୁଥିଲା ଯେ ଅନଳ
ଗଙ୍ଗା ପ୍ରବେଶନ୍ତେ ତାହା ହୋଇଲା ଶୀତଳ ।
ଷାଠିଏ ହଜାର ସୁତ ଯେ ସଗରଙ୍କର
ଆବର ଯେତେକ ବଂଶ ଥିଲେ ତାହାଙ୍କର ।
ଗଙ୍ଗାଙ୍କ ପ୍ରତାପେ ସର୍ବେ ଗଲେ ମୁକ୍ତହୋଇ
ଭଗୀରଥଙ୍କୁ କଲ୍ୟାଣ କଲେ ସର୍ବ ତହିଁ ।
ଅମରପୁରୁ ବିମାନ ଆସି ପ୍ରବେଶନ୍ତେ
ବସି ତା ମଧ୍ୟରେ ସର୍ବେ ଗଲେ ଆନନ୍ଦତେ ।
ଦେଖ ଦେଖ ହରିଭକ୍ତ ମହାତ୍ମ୍ୟ କପରି
କେତେ ଅସାଧ୍ୟକୁ ଦେଲା ସାଧନ ସେ କରି ।
ଭକ୍ତର ସଙ୍ଗାଳ ହରି ଭକ୍ତର ଜୀବନ
ଭକତ ନିମନ୍ତେ ଭବେ ହୋନ୍ତି ଅବତୀର୍ଣ୍ଣ ।
ଭକ୍ତର ବାନ୍ଧବ ହରି ଭକତର ବଳ
ତେଣୁ ନାମ ବହୁଛନ୍ତି ଭକତବତ୍ସଳ ।
ଭକତ ଯେଉଁଠି ଥାଏ ହରି ଥାନ୍ତି ତହିଁ
ଭକତ ମୁଖରୁଁ ନାମ ଶୁଣିବାର ପାଇଁ ।
ତେଣୁ ଭକତକୁ ବଡ଼ କରି ହୋନ୍ତି ସାନ
ଭକ୍ତ ଗାଳକ ମଣନ୍ତି ଚନ୍ଦନ ସମାନ ।
ଭକ୍ତ ଚିନ୍ତାମଣି ହରି ଭକ୍ତଭାବେ ଭୋଳା
ଭକ୍ତର ସର୍ବସ୍ୱ ପ୍ରଭୁ ଶ୍ୱେତପଦ୍ମ ଡୋଳା ।
ଭକ୍ତର କ୍ଷମତା ମୁନି କଲେତ ଶ୍ରବଣ
ଭଗୀରଥ ମହିମା ଯା କରିଲି ବର୍ଣ୍ଣନ ।
ଏ ଚରିତ ଯେହୁ ଶୁଣେ ପାପ ଦୂରେଯାଏ
ଗଙ୍ଗାର ମହାତ୍ମ୍ୟେ ମୋହ ସତ୍ୱର ପଳାଏ ।
ସୂର୍ଯ୍ୟବଂଶର କରଣ ସୂର୍ଯ୍ୟବଂଶ ଯଶ
ଏହି ନୈମିଷ୍ୟା ଅରଣ୍ୟେ କଲି ମୁଁ ପ୍ରକାଶ
ଏହାପରେ କହିବଇଁ ଶ୍ରୀରାମ ଚରିତ
ସୂର୍ଯ୍ୟବଂଶରେ ସମ୍ଭୁତ ଜଗତର ନାଥ ।
ତାହାଙ୍କର ପୁତ୍ରେ ଥିଲେ କୁଶ ଆଉ ଲବ
ଠିକେ ୨ ତାଙ୍କ କଥା କହିବଇଁ ସର୍ବ ।
ଇକ୍ଷ୍ୱାକୁ କୁମର ଥିଲେ ନିମି ନୃପବର
ତାଙ୍କ ବିବରଣମାନ କହିବି ସତ୍ୱର ।
ସୋମବଂଶଙ୍କ ଚରିତ ଅଛିହିଁ ମହାନ
କ୍ରମେ କ୍ରମେ ବଖାଣିବି ତବ ସନ୍ନିଧାନ ।

ପଶୁରାମ ଆଉ କାର୍ତ୍ତବୀର୍ଯ୍ୟଙ୍କର ଗୀର
ବିଶ୍ୱାମିତ୍ର ବଂଶ କଥା କହିବା ଏଠାର ।
ପୁରୁବଂଶ ଆଉ ଯଯାତିଙ୍କ ବିବରଣ
ରନ୍ତିଦେବ ନୃପତିଙ୍କ ଅପୂର୍ବ କଥନ ।
ଜନ୍ମସନ୍ଧି ଯୁଧିଷ୍ଠିର ଆଉ ଦୁର୍ଯ୍ୟୋଧନ
ତାହାଙ୍କର ଉତ୍ପାଦେସୁ ଯେତେକ ବିବରଣ ।
ନିମେ ବର୍ଣ୍ଣନ କରିବି ଭୂମ୍ଭ ନିକଟରେ
ଅପୂର୍ବ କଥନ ଏହି ବ୍ରହ୍ମ ପୁରାଣରେ ।
ଶୁଣିଥିଲେ ଶୁଣୁଥିବେ ନ ପୂରିବ ମନ
ଯଦୁବଂଶେ ଅବତୀର୍ଣ୍ଣ ପ୍ରଭୁ ଭଗବାନ ।
ଅତ୍ୟନ୍ତ ବିଚିତ୍ର ଅଟଇ ଚରିତ ତାଙ୍କର
ସଂକ୍ଷେପେ ବର୍ଣ୍ଣିବି ମୁହିଁ ତବ ଅଗ୍ରତର ।
କଳୁଷ ନାଶନ ହୁଏ ଯାହା ଶ୍ରବଣରେ
ନରଦେହ ବର୍ଣ୍ଣ ତାହା କେ ଭଣେ ମୁଖରେ
ଏବେ ଯାହା ଶୁଣିବାକୁ ହୁଏ ତବ ମନ
ପୁଚ୍ଛିଲେ କହିବି ତାହା ଆହେ ତପୋଧନ
ଏମନ୍ତେ କହିଣ ପୌରାଣିକ ସୂତବର
ଶୌନକାଦି ମୁନିପାଶେ କରିଲେ ଗୁହାର ।
ସେହୁ ସାଧୁଜନଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଏ ଗ୍ରନ୍ଥ ରଚଇ ।

ଇତଶ୍ରୀ ବ୍ରହ୍ମପୁରାଣେ ଉତ୍ତରଖଣ୍ଡେ
ସୂତ ଶୌନକ ସମ୍ବାଦେ ଭଗୀରଥଙ୍କ
ପୁଣ୍ୟ କୀର୍ତ୍ତି ବର୍ଣ୍ଣନେ ନାମ
ଷଡ଼ବିଂଶୋଽଧ୍ୟାୟଃ ।

—o—

## ସପ୍ତବିଂଶ ଅଧ୍ୟାୟ
## ଯଦୁବଂଶ ଓ ଚନ୍ଦ୍ରଧ୍ୱଜଙ୍କ ଚରିତ୍ର ବର୍ଣ୍ଣନ

ଶୌନକ ଉବାଚ

ଏଥୁଅନନ୍ତରେ ଯେ ଶୌନକ ମୁନିବର
ସୂତମୁନିଙ୍କୁ ଗୁହାରି ପୁଚ୍ଛିଲେ ଆବର ।
ଆହେ ପୌରାଣିକ ମହାଜ୍ଞାନୀ ଋଷିବର
ସୂର୍ଯ୍ୟବଂଶ କୀର୍ତ୍ତି ଯାହା କହିଲ ଏଠାର ।
ଶ୍ରବଣ କରି ସକଳ ମୁନିମାନେ ଆମ୍ଭେ
ଆନନ୍ଦ ସିନ୍ଧୁରେ ନିମଜ୍ଜନ ହେଲୁଁ ଏବେ ।

ପୁନଶ୍ଚ କହନ୍ତୁ ରବି ଚନ୍ଦ୍ର ବଂଶ କଥା
ଶୁଣି କୃତାର୍ଥ ହୋଇବୁ ସେ ପ୍ରସଙ୍ଗ ଯଥା ।
ଆବର କହିବେ ଯଦୁବଂଶ ବିବରଣ
ଯେଉଁ ବଂଶେ ପରଂବ୍ରହ୍ମ ପୂର୍ଣ୍ଣ ଅବତୀର୍ଣ୍ଣ ।
କେସନ ପ୍ରକାରେ ହରି ଜଗତର ନାଥ
ଯଦୁବଂଶେ କୃଷ୍ଣ ରୂପେ ହୋଇଥିଲେ ଜାତ ।
ସେହି ସମସ୍ତ ବିଷୟ ଆଦ୍ୟ ପ୍ରାନ୍ତ କରି
ଠିକେ ବୁଝାଇ କହିବା ହେଉ ତପବରି ।
ଶୌନକ ମୁନିଙ୍କ ମୁଖୁ ଏହି ପ୍ରଶ୍ନ ଶୁଣି
କହି ଆରମ୍ଭିଲେ ସୂତ ମହର୍ଷି ସେକ୍ଷଣି ।

### ସୂତ ଉବାଚ

ଶୁଣ ସର୍ବ ମୁନିଜନ ଏକ ମନ ହୋଇ
ପରିବରା କଥା ଏବେ କହୁଅଛୁ ମୁହିଁ ।
ନରରୂପେ ଯଥା କୃଷ୍ଣ ହେଲେ ଅବତୀର୍ଣ୍ଣ
ବଂଶ ଅନୁକ୍ରମେ ତାହା କରିବି ବର୍ଣ୍ଣନ ।
ଅପୂର୍ବ ପୁରାଣ ବାଣୀ ବ୍ୟାସଙ୍କ ରଚିତ
ସୂକ୍ଷ୍ମ ଭାବେ ବୁଝି ଜନା ଆହେ ତପୋବନ୍ତ ।
ଚରିତ୍ର ଆରୋପ କରେ ଇଙ୍ଗିତର ଛଳେ
ତତ୍ତ୍ୱ ଜ୍ଞାନ ଥାଏ ଯହିଁ ଶ୍ରୀପୁରାଣ ବଳେ ।
ସଂସାର ଚରିତୋପରି ଈଶ୍ୱର ଚରିତ୍ର
ମିଳାଇ ରଚିଲେ ବ୍ୟାସ ପୁରାଣ ପବିତ୍ର ।
ଯଦୁବଂଶେ ଜନ୍ମି କୃଷ୍ଣ ମାନବ ରୂପରେ
ଅପୂର୍ବ ପ୍ରଭାବ ବିସ୍ତାରିଲେ ତିନିପୁରେ ।
ତାହାଙ୍କ ଚରିତ୍ରମାନ ଆରୋପ କରିଣ
ବିଶୁଦ୍ଧ ଈଶ୍ୱର ଲୀଳା ଦେଲେ ଦେଖାଇଣ ।
ଅପ୍ରାକୃତ ଅଟେ ତାଙ୍କ ଜନ୍ମ କର୍ମ ଲୀଳା
ମାନବ ରୂପରେ ମରତରେ କଲେ ଖେଳା ।
ଧନ୍ୟ ସେ ମାନବ ଜନ୍ମ ଧରେ କୃଷ୍ଣ ନାମ
କୃଷ୍ଣରୂପେ କୃଷ୍ଣ ଗୁଣେ ପୂର୍ଣ୍ଣ ଯାର ନାମ ।
ନରକୃଷ୍ଣ କଥା ଯେଉଁ ଜନ ବୁଝିପାରେ
ମହାକୃଷ୍ଣ ତତ୍ତ୍ୱ ସେହି ବୁଝେ ଏ ସଂସାରେ ।
ଏହି କଥା କ୍ରମେ କ୍ରମେ ହୋଇବ ବିସ୍ତର
ପୁରାଣେ ଈଶ୍ୱର ଲୀଳା କରିବି ବିସ୍ତାର ।
ଶୁକ ମହର୍ଷିଙ୍କ ବାଣୀ ଶୁଣି ମୁନିଗଣ
କରାଇଲେ ସାଧୁବାଣୀ ତାହାଙ୍କୁ ଶ୍ରବଣ ।

ମାନବ ମାନବ ନୁହେ କୃଷ୍ଣ ନାମ ଧରେ
ଯାହାଙ୍କ ଚରିତ୍ରେ ବ୍ୟାସ ବ୍ରହ୍ମାରୋପ କରେ
ଉଭୟ ଚରିତ୍ର ଅଟେ ଇଙ୍ଗିତ ପର୍ଯ୍ୟାୟେ
ବୁଝାଇଣ ଦିଅ ଯଦି ତେବେ ବୁଝାଯାଏ ।
ସୂତ ମୁନି କହନ୍ତି ହେ ଶୁଣ ମୁନି ଜନ
ଆରୋପର ଭାବ କିଛି କରିବି ବର୍ଣ୍ଣନ ।
ସେହି ନର ରୂପୀ କୃଷ୍ଣ କରେ ନିତ୍ୟ ଲୀଳା
ଦେଖନ୍ତି ବ୍ରହ୍ମଙ୍କ ସହ ଅଭିନ୍ନ ସେ ଖେଳା ।
ବାଲ୍ୟ ଯଉବନ ଆଉ ଅନ୍ତ୍ୟଲୀଳା ଗତ
ମହାଯୋଗୀ ଐଶ୍ୱର୍ଯ୍ୟରେ ଅଧିକାରୀ ହୋନ୍ତି
ବିସ୍ମିତ ଯାଦବ ବଂଶେ ତାହାଙ୍କ ପ୍ରକାଶ
ଯତ୍ନଗୁଣେ ଜନ୍ମ ତାଙ୍କ ସାତ୍ତ୍ୱିକ ଆଭାଷ ।
ସତ୍ତ୍ୱଗୁଣ ମୟ ଶିଶୁ ଅଜ୍ଞାନ ନ ପାନ୍ତି
ମଧୁର ମଧୁର ବାକ୍ୟେ ସଭିଙ୍କୁ ଭୁଲାନ୍ତି ।
ଏମନ୍ତେ ପରମ ବ୍ରହ୍ମ ସୃଷ୍ଟି ଲୀଳା କରେ
ମାୟାର ସାତ୍ତ୍ୱିକ ଗର୍ଭେ ଆତ୍ମ ନାମ ଧରେ
ଆତ୍ମା ରୂପେ ସମସ୍ତଙ୍କ ବାସନା ବୁଝିଣ
ସଭିଙ୍କ କରନ୍ତି ମୁଗ୍ଧ ଚୈତନ୍ୟ ବ୍ୟାପିଣ
ଯୌବନେ ମାନବ କୃଷ୍ଣ ଐଶ୍ୱର୍ଯ୍ୟ ଈଶ୍ୱର
ନର ନାରୀ ସମସ୍ତଙ୍କ ହୃଦ ସହଚର ।
ପ୍ରକୃତି ସହିତ ତେଣୁ ବ୍ରଜର ଜୀବନ
ସେହିକାଳେ ଆତ୍ମା ରୂପେ ଭୋଗେ ନିମଗନ
ଧର୍ମ ପଥେ ଜୀବରକ୍ଷା କର୍ତ୍ତବ୍ୟ ଆତ୍ମାର
କୁରୁକ୍ଷେତ୍ରେ ଏହି ଧର୍ମ ହୋଇଲା ପ୍ରଚାର ।
ନରରୂପେ ନାରାୟଣ ପାଣ୍ଡବମାନଙ୍କ
ସହାୟ ହୋଇଲେ ଆସେ ଚଳାଇ ରଥକୁ ।
କୁରୁକ୍ଷେତ୍ରେ ଥାଇ ନରଗଣଙ୍କ ସହିତ
ଅହରହ ଦେଖାଇଣ ଦେଲେ ନରକୃତ ।
ବ୍ରହ୍ମଙ୍କ ଅନ୍ତିମ ଲୀଳା ବ୍ରହ୍ମାଣ୍ଡ ହରଣ
ଯଦୁବଂଶେ ହେଲା ଯଥା କୃଷ୍ଣରେ ନିଧନ ।
ଅପୂର୍ବ ଚରିତ୍ର କୃଷ୍ଣ କରି ଯେ ଧାରଣ
ପରମ ବ୍ରହ୍ମଙ୍କ ତତ୍ତ୍ୱ କଲେ ବିଜ୍ଞାପନ ।
ବ୍ୟାସ ମୁନିବର ଏହି ଦୁଇତତ୍ତ୍ୱ ଗୀର
ଅଷ୍ଟାଦଶ ପୁରାଣରେ କରିଲେ ବିସ୍ତାର ।
ନରକୃଷ୍ଣେ ବ୍ରହ୍ମା ରୋପ ବୁଝେ ଯେଉଁ ଜନ
ସେହି ପାଏ ତତ୍ତ୍ୱଜ୍ଞାନ ମହାମୁକ୍ତି ଧନ ।

ଦଶମେ ସର୍ବ ଚରିତ ଭାଗବତ ସାର
ମହାମୁନି କରିଛନ୍ତି ବିଶେଷେ ବିସ୍ତାର ।
ଅନ୍ୟାନ୍ୟ ପୁରାଣ ଥୋକେ କଲେଟି ସେ ବ୍ୟକତ
ଅଧିକେ ବ୍ରହ୍ମ ବୈବର୍ତ୍ତେ ହୋଇଛି ବର୍ଣ୍ଣିତ ।
ବ୍ରହ୍ମାଣ୍ଡ ପୁରାଣେ ପୁଣି ବିଷ୍ଣୁ ପୁରାଣରେ
ବେଦବ୍ୟାସ ବର୍ଣ୍ଣିଛନ୍ତି ବିଚିତ୍ର ମନରେ ।
ସକଳ ପୁରାଣେ ଅଛି କୃଷ୍ଣ ଭକ୍ତିସାର
ଏବେ ସେହିକଥାମାନ କରିବି ପ୍ରଚାର ।
ଶୁକ ସମ୍ବୋଧନ କରି ପାଣ୍ଡୁ ବଂଶଧରେ
କହିଛନ୍ତି ଯାହା ତାହା ସୁରଧୂନୀ ତୀରେ ।
ତାହା ବଖାଣ କରିବି ଭୂମ୍ଭ ଅଗ୍ରତରେ
ଶ୍ରବଣ କର ସକଳେ ବସି ହରଷରେ ।
ଯେଉଁ ସୂର୍ଯ୍ୟବଂଶ ଗାଥା କରିଲି ବର୍ଣ୍ଣନ
ତେମନ୍ତ ବଂଶେ ଜନମି ଥିଲେ ଭଗବାନ ।
ଅପୂର୍ବ ଚରିତେ ତାଙ୍କ ମୁଗ୍ଧ ତ୍ରିପୁର
କରିଛନ୍ତି ବ୍ୟାସ ବ୍ରହ୍ମ ବୋଲିଣ ପ୍ରଚାର ।
ମାନବ ରୂପରେ କୃଷ୍ଣ ସଂସାରେ ଖେଳନ୍ତି
ବ୍ରହ୍ମଙ୍କର ଲୀଳା କରି ଅଛନ୍ତି ଭଣନ୍ତି ।
ବିଚିତ୍ର କଥନ ତାଙ୍କ କଲେ ସୁଶ୍ରବଣ
ନିମିଷକେ ବ୍ରହ୍ମତତ୍ତ୍ୱ ବୁଝିବେ ସୁଜାଣ ।
ସେହି ବଂଶେ ଯେଉଁ ଭାବେ କୃଷ୍ଣ ସେହିଧନ
ଜନମି ପବିତ୍ର କଲେ ଏ ତିନି ଭୁବନ ।
ତାହାଙ୍କ ଚରିତ ପୂର୍ଣ୍ଣ ସର୍ବ ପୁରାଣରେ
ବ୍ରହ୍ମ ବିଦ୍ୟମାନ ହୋନ୍ତି ଯେଉଁ ଚରିତରେ ।
ସେହି ପ୍ରଭୁଙ୍କର ଗାଥା ଆହେ ମୁନିବର
ଶ୍ରବଣ କରିଲେ ଶାନ୍ତି ମିଳିବ ଅପାର ।
ହେ ମୁନି ଉତ୍ତମ ପୂର୍ବେ କହିଅଛି ମୁହିଁ
ମରୀଚି ଜନମ ହେଲେ ବ୍ରହ୍ମାନାମ ସେହି ।
ତାହାଙ୍କ ନନ୍ଦନ ଯେ କଶ୍ୟପ ତପୋଧନ
କଶ୍ୟପଙ୍କ ସୁତ ମହାତ୍ମା ବିବସ୍ୱାନ ।
ସେହି ବିବସ୍ୱାନଠାରୁ ସଂସାର ଉଆଣ
ଶ୍ରାଦ୍ଧ ଦେବ ନାମେ ଖ୍ୟାତହେଲେ ତ୍ରିଭୁବନ
ଶ୍ରାଦ୍ଧ ଦେବ ନିଜ ତେଜେ ଆଉ ଜ୍ଞାନବଳେ
ବାନ୍ଧିଲେ ପ୍ରାଣୀମାନଙ୍କୁ ସମାଜେ ତତ୍କାଳେ
ବିବସ୍ୱାନଙ୍କ ତେଜରୁ ତାହାଙ୍କ ଉତ୍ପନ୍ନ
ଏହି ହେତୁ ବୈବସ୍ୱତ ବୋଲନ୍ତି ସୁଜନ ।

ହେଲେ ଅଧୀଶ୍ୱର ମନ୍ୱନ୍ତର ଜ୍ଞାନବଳେ
ନୃପତି ଅଟନ୍ତି ବୈବସ୍ୱତ ମହୀତଳେ ।
ବଶିଷ୍ଠଙ୍କ ଯତ୍ନ ଆଉ ଯଜ୍ଞର ବିଧାନେ
ପୁତ୍ରକନ୍ୟା ରୂପ ହୁଏ ଏକଇ ସନ୍ତାନେ ।
ପୁତ୍ର ଭାବ ପାଏ ଯେବେ ସେ ରାଜକୁମାର
ତା ନାମ ସୁଦ୍ୟୁମ୍ନ କହୁଥାନ୍ତି ସର୍ବ ନର ।
ଇଳା ନାମ କନ୍ୟାରୂପେ ହୋଇଲା ପ୍ରକାଶ
ଦେଇଛି ଯା ଆଗୁଁ ମୁହିଁ ତାହାର ଆଭାଷ ।
ମୃଗୟା ସମୟେ ସେହି ସୁଦ୍ୟୁମ୍ନ ନିଶ୍ଚୟେ
ଶିବଙ୍କର ଶାପେ ଯେ ତହୁଁ ନାରୀ ରୂପ ହୁଏ ।
ସେ କାଳେ ମୋହିତ ହୋଇ ଚନ୍ଦ୍ରଙ୍କ କୁମର
ତା ସଙ୍ଗରେ ମନ ସୁଖେ କରିଲେ ବିହାର ।
ଉଭୟ ସଂଯୋଗୁ ଗର୍ଭବାସ ହେଲା ସେହି
ପୁରୁରବା ନାମେ ପୁତ୍ର ପ୍ରସବିଲା ତହିଁ ।
ସୁଦ୍ୟୁମ୍ନର ବୀର୍ଯ୍ୟେ ଜାତ ଯେବଣ ନନ୍ଦନ
ସୂର୍ଯ୍ୟବଂଶ ନାମେ ଖ୍ୟାତ ହେଲା ତ୍ରିଭୁବନ ।
ସୁଦ୍ୟୁମ୍ନ ଗର୍ଭରେ ଯେଉଁ ସନ୍ତାନ ଜନ୍ମିଲା
ଚନ୍ଦ୍ରବଂଶ ନାମେ ତାର ଖ୍ୟାତି ପ୍ରକାଶିଲା ।
ଏମନ୍ତ ପବିତ୍ର ବଂଶେ କୃଷ୍ଣ ଶିଶୁପତି
ବାସୁଦେବ ନାମେ ଜାତ ସୁପବିତ୍ର ଅତି ।
ଉର୍ବଶୀର ପୁରୁରବା କରି ପରିଣୟ
ଉତ୍ପନ୍ନ କରିଲେ ତହିଁ ସାଧୁ ପୁତ୍ର ଚୟ ।
କନିଷ୍ଠ ପୁତ୍ରର ନାମ ଆୟୁ ଅଟେ ଜାଣ
ଅତ୍ୟନ୍ତ ଧାର୍ମିକ ସେହୁ ପବିତ୍ର ମହାନ ।
ଜ୍ୟେଷ୍ଠ ନନ୍ଦନ ତା ନାମ ନହୁଷ ଅଟଇ
ଛଅ ଗୋଟି ପୁତ୍ର ତାର ଜନମିଲେ ମହୀ ।
ଛଅଜଣ ଛଅଭାବେ ସାଧୁ ସୁଜ୍ଞଜନ
ସମସ୍ତଙ୍କ ପବିତ୍ର ଭାବ ଚରିତ କୀର୍ତ୍ତନ ।
ଯଯାତି ନାମେ ଯେ ତାଙ୍କ ଦ୍ୱିତୀୟ ତନୟ
ପ୍ରବଳ ପ୍ରତାପୀ ଅଟନ୍ତି ସେ ନରବର୍ଯ୍ୟ ।
ତାହାଙ୍କର ଦୁଇପତ୍ନୀ ଅତି ଶୁଦ୍ଧ ମତି
ଶର୍ମିଷ୍ଠା ଯେ ଦେବଯାନୀ ଦୁହେଁ ଗୁଣବତୀ ।
ଦେବଯାନୀ ଗର୍ଭେ ଦୁଇପୁତ୍ର ଜନମିଲେ
ଶର୍ମିଷ୍ଠାର ଗର୍ଭେ ତିନିକୁମର ହୋଇଲେ ।
ଏହିରୂପେ ଯଯାତିଙ୍କ ପାଞ୍ଚ ଯେ ନନ୍ଦନ
ଭକ୍ତିରେ ଉତ୍ତମ ସେହୁ ଜ୍ଞାନରେ ପ୍ରବୀଣ ।

ଦେବଯାନୀ ପୁତ୍ର ଯଦୁ, ତୁର୍ବସୁ ଏ ବେନ
ଶର୍ମିଷ୍ଠା ନନ୍ଦନ ଦ୍ରୁହ୍ୟ, ଅନୁ, ପୁରୁ ତିନ ।
ପ୍ରଧାନ ଯଦୁଙ୍କଠାରୁ ଯେ ବଂଶ ପ୍ରଚୁର
ତ୍ରିଭୁବନ ବ୍ୟାପ୍ତ ଯେହୁ ବିଖ୍ୟାତ ସଂସାର ।
ମହାବଂଶ ବୋଲି ଯଦୁବଂଶ ଖ୍ୟାତ ଜାଣ
ଯେଉଁ ବଂଶେ ଜନମିଲେ କୃଷ୍ଣ ଭଗବାନ ।
କ୍ରମେ କ୍ରମେ ଯଦୁବଂଶ ହୋଇଲା ବିସ୍ତାର
ସେ ବଂଶେ ଜନ୍ମିଲେ ସାଧୁ ନାମ ଯେ ଅକ୍ରୂର
ତାହାଙ୍କ ପୁତ୍ରର ନାମ ଅଟେ ଚିତ୍ରରଥ
ଚିତ୍ରରଥଙ୍କର ଜନମିଲେ ବହୁ ପୁତ୍ର ।
ପୃଥୁ ବିଦୂରଥ ସର୍ବ ଗୁଣର ଆକର
ପୃଥୁବଂଶେ ଜନ୍ମ ପୁତ୍ର ଦେବକ ଯେ ବୀର ।
ଦେବକ ସୁତା ଅଟନ୍ତି ଦେବକୀ ସୁନ୍ଦରୀ
ସେ ସତୀ ସାତ୍ତ୍ୱିକମୟୀ ସତ୍ତ୍ୱ ଗୁଣଧାରୀ ।
ଯେହି ସାଧ୍ୱୀ ଯେ ବହୁ ପୁଣ୍ୟ କରିଥିଲେ
ତାହାଙ୍କ ଆଖ୍ୟାନ ଭବେ ଗାଆନ୍ତି ସକଳେ ।
ବିଦୂରଥ ନାମେ ଯେବଣ ପୁତ୍ରବର
ଶୂର ନାମେ ତାର ପୁତ୍ର ସର୍ବ ଗୁଣାକର ।
ଭଜମାନ ନାମ ଅଟେ ଶୂରଙ୍କ ସନ୍ତାନ
ଶିନି ନାମେ ପୁତ୍ର ଯେ ଲଭିଲେ ଭଜମାନ ।
ଶିନିଙ୍କ ନନ୍ଦନ ଭୋଜ ନାମେ ଜନମିଲେ
ହୃଦିକ ନାମରେ ତାଙ୍କ ଏକ ପୁତ୍ର ହେଲେ ।
ତାହାଙ୍କ ଔରସେ ତିନି ପୁତ୍ର ହେଲେ ଜାତ
ଦେବମୀଢ଼, ଶତଧନୁ କୃତବର୍ମା ମାତ୍ର ।
ଦେବମୀଢ଼ଙ୍କ ନନ୍ଦନ ଅଟଇ ଯେ ଶୂର
ମାରିଷା ତାହାଙ୍କ ପତ୍ନୀ ଅତି ଚମତ୍କାର ।
ଦଶଟି ସନ୍ତାନ ହେଲେ ମାରିଷା ଗର୍ଭରେ
ସର୍ବେ ଅତି ଗୁଣବାନ ଜନ୍ମିଲେ ଧରାରେ ।
ତାଙ୍କ ମଧ୍ୟେ ବସୁଦେବ ସବୁଠୁ ପ୍ରଧାନ
ରୂପେ ଗୁଣେ ଅତି ଶ୍ରେୟ ଭକ୍ତ ପରାୟଣ ।
ସେହି ବସୁଦେବ ବୀର ଅତି ସଦାଶୟ
ତାଙ୍କ ସଙ୍ଗେ ଦେବକୀର ହେଲା ପରିଣୟ ।
ଉଭୟେ ଭାବିଣ ଦିବାନିଶି ଅନୁକ୍ଷଣ
ଲଭିଲେ ଅପୂର୍ବ ପୁତ୍ର ଭୁବନ ମୋହନ ।
ଜ୍ଞାନରେ ପ୍ରବୀଣ ପୁତ୍ର ସର୍ବ ସୁଲକ୍ଷଣ
କୃଷ୍ଣନାମ ମାତ୍ରେ ପାପ ହୁଏ ବିମୋଚନ ।
ନାରାୟଣ ସେହି ହୋହେ ପାନ୍ତ ନାରାୟଣ
ତ୍ରିଭୁବନ ନିସ୍ତାରିଲେ ସେ ଯଦୁ ନନ୍ଦନ ।
ଯାହାଙ୍କୁ ଚିନ୍ତନ୍ତି ସଦା ସିଦ୍ଧ ଯକ୍ଷଗଣ
ଏକାନ୍ତ ଚିତ୍ତେ ଭାବନ୍ତି ଯାଙ୍କୁ ଦେବଗଣ ।
ଧର୍ମ ଅର୍ଥ କାମ ମୋକ୍ଷ ଲଭିବା ଆଶାରେ
ଏକାନ୍ତ ମନେ ଯାହାଙ୍କୁ ଧ୍ୟାଉଥାନ୍ତି ପୁରେ ।
ଗନ୍ଧର୍ବ କିନ୍ନର ପଶୁ ପକ୍ଷୀ ଭୁଜଙ୍ଗମ
ଗୁହ୍ୟକ ଅପ୍ସରା ଆଦି ଦେବ ଋଷିଗଣ ।
ସର୍ବଦା ଚିନ୍ତନ୍ତି ଯାଙ୍କୁ ହୃଦୟ ପଦ୍ମରେ
ଯାହାଙ୍କ ମହିମା କେହି ବରନ ନ ପାରେ ।
ଆଦି ଅନ୍ତହୀନ ଯେହୁ ସର୍ବ ଜଗନ୍ମୟ
ଯାହାଙ୍କ ଇପ୍ସା କେବେ ନ ହୁଏ ନିର୍ଣ୍ଣୟ ।
ଏହି ବଂଶେ ଅବତୀର୍ଣ୍ଣ ହୋଇଥିଲେ ସେହି
ହେ ମୁନି ଶୁଣିଲେ ଯାହା ପାତକ ହରଇ ।
ପରମ ବିଶୁଦ୍ଧ ଯଦୁବଂଶ ପୁରାତନ
ଜଗତେ ଘୋଷଣା ଅଛି ଏମନ୍ତ ବଚନ ।
ଯଦୁବଂଶ କଥା କର୍ଣ୍ଣେ ଶୁଣି ନରଗଣ
ଅଖିଳ ପାତକରୁ ଯେ ହେବେ ବିମୋଚନ ।
ଏହି ବଂଶରେ ଉଦ୍ଭବ ଦେବ ଦେବ ହରି
ନିରାକାର ପରଂବ୍ରହ୍ମ ଭବ ପାରକାରୀ ।
ଯଦୁ ନୃପବରଙ୍କର ଚାରି ପୁତ୍ର ହେଲେ
ସେମାନଙ୍କ ନାମ ଏବେ କହୁଅଛି ଭଲେ ।
ସର୍ବଶ୍ରେଷ୍ଠ ସହସ୍ରଜିତ ଜାଣ ବିଶେଷରେ
କ୍ରୋଷ୍ଟୁ ନଳ, ରଘୁ କ୍ରମେ ଜନ୍ମ ତଦନ୍ତରେ ।
ଏହି ଚାରିଜଣ ମହାବ୍ରତ ଯେ ଅଟନ୍ତି
ସହସ୍ରଜିତଠାରୁ ଶତଜିତଙ୍କ ଉତ୍ପତ୍ତି ।
ତିନିପୁତ୍ର ଶତଜିତ ଉତ୍ପାଦନ କରେ
ହୈହୟ ରେଣୁ ଆବର ଶ୍ରୀହୟ ନାମରେ ।
ଧର୍ମ ନେତ୍ର ନାମ ଅଟେ ହୈହୟ ନନ୍ଦନ
ତାହାଙ୍କର ସୁତ କୁନ୍ତେ ବିଦିତ ଭୁବନ ।
ସହାଞ୍ଜି ତାହାଙ୍କ ପୁତ୍ର ଜନମିଲେ ପରେ
ସହାଞ୍ଜିକଠାରୁ ମହିସ୍ମାନ ଜନ୍ମ ଧରେ ।
ତାହାଙ୍କ ପୁତ୍ର ଭଦ୍ର ଶ୍ରେଣୀୟ ଯେ ଅଟନ୍ତି
ଦୁର୍ଦ୍ଦମ ଭଦ୍ରଙ୍କଠାରୁ ହେଲେ ଉତପତ୍ତି ।
ଧନଙ୍କ ସୁମତି ଅଟେ ତାହାଙ୍କ ତନୟ
ତାଙ୍କଠାରୁ ଚାରିପୁତ୍ର ହେଲେ କ୍ରମାନ୍ୱୟ ।

କୃତବୀର୍ଯ୍ୟ କୃତଅଗ୍ନି କୃତକର୍ମା ପରେ
କୃତୌଜା ଏପରି ଚାରି ଜନ୍ମିଲେ କୁମରେ ।
କୃତଙ୍କ ନନ୍ଦନ ନାମ ଅଟେ ଅରଜୁନ
ସହସ୍ର ବାହୁ ଥିଲା ଯେ ତାହାଙ୍କର ଜାଣ ।
ସପ୍ତଦ୍ୱୀପେ ଅଧିପତି ଅର୍ଜୁନ ହୋଇଲେ
ଅତି ଧର୍ମ ପରାୟଣ ଖ୍ୟାତ ମହୀତଳେ ।
ଦତ୍ତାତ୍ରେୟ ନାମେ ଥିଲେ ଏକ ତପୋଧନ
ଅତ୍ରି କୁଳେ ସେହୁ ଲଭିଥିଲେ ଯେ ଜନମ ।
ଅର୍ଜୁନ ରାଜନ ତାଙ୍କୁ ଆରାଧନା କରି
ମାଗିଲେ ସେ ଯେଉଁ ବର ଶୁଣ ଶ୍ରୁତି ଡେରି
ହୋଇବ ସହସ୍ର ବାହୁ ମୋହର ଶରୀରେ
ଏହି ବର ଦିଅ ପ୍ରଭୁ କୃପା କରି ମୋରେ ।
ଧର୍ମ କାର୍ଯ୍ୟରେ ସର୍ବଦା ରହିବ ମୋ ମତି
ପ୍ରଜାମାନଙ୍କୁ ପାଳିବ ନିୟମରେ ନିତି ।
ଶତ୍ରୁଠାରେ କଦାପି ମୋର ନ ରହିବ ଭୟ
ହେ ମହାତ୍ମା ଏହିବର ଦୟାକରି ଦିଅ ।
ଜଣାଉଛି ଆଉ ଏକ କଥା ଯେବାକର
ଅନ୍ୟଥା ନୋହିବ ଯେତେହେଁ ନିବେଦନ ମୋର
ଜଣା ଶୁଣା ବୀର ଯେହୁ ଅଟେ ଏ ସଂସାରେ
ସେ ଜନ ଯେପରି ବଧି ନପାରଇ ମୋରେ ।
ଦତ୍ତାତ୍ରେୟ ଏହିକଥା କଲେ ଶ୍ରବଣ
ତଥାସ୍ତୁ ବୋଲିଣ କହିହେଲେ ଅନ୍ତର୍ଦ୍ଧାନ ।
ସେହିଦିନୁ ଧର୍ମପରେ ରହି ସେ ନୃପତି
ଆନନ୍ଦରେ ପୁତ୍ରପରି ପ୍ରଜାଙ୍କୁ ପାଳନ୍ତି ।
ଅଯୁତ ପ୍ରମାଣେ ଯଜ୍ଞ କଲେ ଅନୁଷ୍ଠାନ
ତେଣୁ ଏକ ଗାଥା ଅଛି ଶୁଣ ଦେଇ ମନ ।
ତପେ ଦମେ ଯଜ୍ଞେ ଆଉ ସବିନୟ ଦାନେ
କେହି ନାହିଁ ତ୍ରିଜଗତେ ଅର୍ଜୁନ ସମାନେ ।
ତସ୍କର ନଥିଲେ ଜଣେ ଅର୍ଜୁନ ରାଜ୍ୟରେ
ତାହାଙ୍କ ମହାତ୍ମ୍ୟ ଖ୍ୟାତ ଅଟେ ତ୍ରିପୁରେ ।
କମଳା ଅଚଳା ହୋଇ ଗୃହରେ ତାଙ୍କର
ସବୁ ସମୟରେ ଥାନ୍ତି ଆନନ୍ଦ ମନର ।
ବଳବୀର୍ଯ୍ୟ ତାଙ୍କପରି ନଥିଲେ କେ ଜଣେ
ମହା ପରାକ୍ରମଶାଳୀ ସେହୁ ତ୍ରିଭୁବନେ ।
ସେହୁ ଭୂମଣ୍ଡଳେ ରହି ପରମ ସୁଖରେ
ପଞ୍ଚାଶୀ ହଜାର ବର୍ଷ ରାଜତ୍ୱ କରିଲେ ।
ତାହାଙ୍କ ନଗରୀ ନାମ ଅଟେ ମାହିଷ୍ମତୀ
ଯେମନ୍ତ ସୁନ୍ଦର ପୁରୀ ନାହିଁ ଏ ଧରଣୀ ।
ଏକଦିନେ ଲଙ୍କପତି ରାକ୍ଷସ ରାବଣ
ଦିଗ୍‌ବିଜୟ ହେତୁ କରି ପୃଥିବୀ ଭ୍ରମଣ ।
ଦେବ ଦାନବ ଗନ୍ଧର୍ବେ କରି ପରାଜୟ
ବଡ଼ଇ ଦୁରନ୍ତ ଅଟେ ସେହି ଦୁରାଶୟ ।
ପ୍ରବେଶିଲା ଆସି କ୍ରମେ ଅର୍ଜୁନ ପାଶରେ
ମଦମତ୍ତ ଦୁରାଚାର ଗର୍ବ ଅହଙ୍କାରେ ।
ଯେକାଳେ ଅର୍ଜୁନ ପାଶେ କରଇ ଗମନ
କ୍ରୀଡା କରୁଥିଲେ ନର୍ମଦାରେ ଯେ ଅର୍ଜୁନ ।
କୌତୁକେ ଆପଣା ବାହୁ କରିଣ ବିସ୍ତାର
ନଦୀସ୍ରୋତ ଅବରୋଧ କଲେ ନରେଶ୍ୱର ।
ତେଣୁ କ୍ରମେ ବଢ଼ି ଉଠେ ସେହି ନଦୀଜଳ
ନହିଁରେ କ୍ରୀଡ଼ା କରନ୍ତି ନୃପତି ଚଞ୍ଚଳ ।
ସେହିକାଳେ ଦୁରାଚାର ରାକ୍ଷସ ରାବଣ
ଅହଙ୍କାରେ ମତ୍ତ ହୋଇ କରିଲା ଗମନ ।
ଅର୍ଜୁନ ତାହାଙ୍କୁ ଦେଖି ଅତି କ୍ରୋଧଭରେ
ରଜ୍ଜୁରେ ବାନ୍ଧି ରଖିଲେ ନେଇ ନିଜପୁରେ ।
ପଞ୍ଚାଶୀ ହଜାର ବର୍ଷ ଅର୍ଜୁନ ରାଜନ
ବିଖ୍ୟାତ ଧରଣୀ କରିଥିଲେ ଯେ ପାଳନ ।
ତା ଉତ୍ତାରୁ ଜନମିଣ ପ୍ରଭୁ ନାରାୟଣ
ତାହାର ସହସ୍ର ବାହୁ କରିଲେ କର୍ତ୍ତନ ।
ତେଣୁ ଅମର ଭୁବନେ ଗଲେ ଏକ ବୀର
ତାହାପରେ ଥିଲେ ତାଙ୍କ ଏକଶ କୁମର ।
ପାଞ୍ଚ କୁମର ତା ମଧ୍ୟେ ଅଟନ୍ତି ପ୍ରଧାନ
ସେମାନଙ୍କ ନାମମାନ ଶୁଣ ତପୋଧନ ।
ଶୂରସେନ ଶୂର ଆଉ ନାମ ଯା ବୃଷଣ
ଜୟଧ୍ୱଜ ମଧୁଧ୍ୱଜ ଏହି ପାଞ୍ଚଜଣ ।
ପ୍ରଧାନ ଅଟନ୍ତି ଶାଏ ପୁତ୍ରଙ୍କ ମଧ୍ୟରେ
ଏହାଙ୍କ ନାମ ବିଖ୍ୟାତ ମହୀ ମଣ୍ଡଳରେ ।
ଜୟଧ୍ୱଜଠାରୁ ଜନ୍ମ ତାଳଜଙ୍ଘ ନାମ
ଏଥୁଅନନ୍ତରେ ଶୁଣ ହେ ମୁନି ଉତ୍ତମ ।
ତାଳଜଙ୍ଘଠାରୁ ହେଲେ ଶତେକ ନନ୍ଦନ
ତାଳଜଙ୍ଘା ନାମେ ଖ୍ୟାତ ସେହି ସବୁ ଜନ ।
ବୀତିହୋତ୍ର ନାମେ ଖ୍ୟାତ ଜ୍ୟେଷ୍ଠ ଯେ କୁମର
ଦ୍ୱିତୀୟ ଭରତ ନାମେ ଖ୍ୟାତ ଚରାଚର ।

ଭରତଠାରୁ ହୋଇଲା ବୃଷର ଜନମ
ମଧୁ ବୋଲି ତାର ନାମ ଯେ ବୃଷ ନନ୍ଦନ
ମଧଠାରୁ ବୃଷ୍ଣି ଆଦି ଶତେକ ତନୟ
ବୃଷ୍ଣି ରୁ ଯେ ବୃଷ୍ଣି ଗୋତ୍ର ହୋଇଛୁ ନିର୍ଣ୍ଣୟ
ମଧୁଠାରୁ ମଧୁବଂଶ ହୋଇଛି ପ୍ରଚୁର
ଏହୁପର ଅଟେ ଯଦୁବଂଶ ସମାଚାର ।
ଏହି ଯଦୁବଂଶ ଖ୍ୟାତ ଯାଦବ ଆଖ୍ୟାନେ
ନିଗୁଢ଼ କଥା କହିଲି ତୁମ୍ଭ ସନ୍ନିଧାନେ ।
ଏ ପ୍ରସଙ୍ଗ ମନଦେଇ କଲେ ସୁଶ୍ରବଣ
ଦେହରେ ପାତକ ନ ରହଇ କଦାଚନ ।
ଏକ ମନେ ଶୁଣିବ ଯେବଣ ବଜ୍ଞନର
ନିଶ୍ଚେ ମନୋରଥ ପୂର୍ଣ୍ଣ ହୋଇବ ତାହାର
ଜଗତ ମଧ୍ୟରେ ବୋଲାଇବ ସେ ସୁଜନ
ତାହାର ଗୃହରେ ପୂର୍ଣ୍ଣ ହେବ ଧନଧାନ୍ୟ ।
ଯଦୁବଂଶ କାହାଣୀ ଅମୃତର ଧାର
ସକଳ ପୁରାଣେ ଲେଖିଛନ୍ତି ମୁନିବର ।
ସେହି ମହାମୁନି ବ୍ୟାସଦେବଙ୍କ କୃପାରେ
ବଖାଣିଲି ଏ ଚରିତ ମୁହିଁ ଯେ ଏଠାରେ ।
ଏମନ୍ତେ କହିଣ ସୂତ ପୁରାଣ ବକତା
ପ୍ରକାଶ କଲେ ଆନନ୍ଦେ ଯଦୁବଂଶ ଗାଥା ।
ପ୍ରଭୁ ଭଗବାନ ଯେଉଁ ବଂଶରେ ଉତ୍ପନ୍ନ
ସେ ବଂଶ ଚରିତ କେବା କରିବ ବର୍ଣ୍ଣନ ।
ଜଗତ ଜନନୀଙ୍କର ପାଦ ପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଗୀତରେ କହଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଚନ୍ଦ୍ରବଂଶ
ଯଦୁବଂଶ ପ୍ରସଙ୍ଗେ ନାମ
ସପ୍ତବିଂଶୋଽଧ୍ୟାୟଃ ।

—:•:—

## ଅଷ୍ଟାବିଂଶ ଅଧ୍ୟାୟ

## ଯଦୁବଂଶେ କ୍ରୋଷ୍ଟୁ ବଂଶ ବର୍ଣ୍ଣନ

ଶୌନକ ଉବାଚ

ଏଥୁ ଅନନ୍ତରେ ଯେ ଶୌନକ ତପୋଧନ
କହିଲେ ସୂତ ମୁନିଙ୍କୁ କରି ସମ୍ବୋଧନ ।
ଆହେ ପୌରାଣିକ ତୁମ୍ଭେ ସର୍ବଶାସ୍ତ୍ର ବେତ୍ତା
ବଖାଣିଲ ଯାହା କରି ଯଦୁବଂଶ କଥା ।
ତାହାସବୁ ଆମ୍ଭେମାନେ କରି ସୁଶ୍ରବଣ
କୃତାର୍ଥ ହୋଇଲୁ ଆଜ ଜାଣ ତପୋଧନ ।
ସେହି ଯଦୁବଂଶେ ଆଉ ଜନ୍ମ ଯେଉଁମାନେ
ତାହାଙ୍କ ବୃତ୍ତାନ୍ତ କହ ଆମ୍ଭ ସନ୍ନିଧାନେ ।
ଏମନ୍ତ ବଚନ ଶୁଣି ସୂତ ମୁନିବର
ଥୋକାଏ କହି ବସିଲେ ଯଦୁବଂଶ ଗୀର ।

ସୂତ ଉବାଚ

ଶୁଣିବା ହେଉ ସକଳେ ଆହେ ମୁନିଗଣ
ସଂକ୍ଷେପରେ କହୁଅଛି ଯଦୁବଂଶୀ ଗୁଣ ।
କ୍ରୋଷ୍ଟା ନାମେ ଏକ ପୁତ୍ର ଜାତ ଯଦୁଙ୍କର
ବୃଜନୀବାନ ଅଟନ୍ତି ତାହାଙ୍କ କୁମର ।
ସ୍ୱାହି ନାମେ ସେହି କ୍ରୋଷ୍ଟାଙ୍କର ନାତି ଜାଣ
ବୃଜନୀବାନଙ୍କ ପୁତ୍ର ଗୁଣ ବିଚକ୍ଷଣ
ସ୍ୱାହି ପୁତ୍ର ରୁଷଦଗୁ ବିଖ୍ୟାତ ଭୁବନ ।
ତଦନ୍ତେଣ ଚିତ୍ରରଥ ଲଭିଲି ଜନମ ।
ସେହି ଚିତ୍ରରଥ ଅଟେ ଯଦୁକୁଳ ଇନ୍ଦୁ
ତାହାର ପୁତ୍ର ନାମ ଯେ ବୀର ଶଶବିନ୍ଦୁ ।
ଶଶବିନ୍ଦୁ ନୃପ ନାମ ଭୁବନେ ବିଖ୍ୟାତ
ପାଇଥିଲି ସେହୁ ଚତୁର୍ଦ୍ଦଶ ମହାରତ୍ନ ।

ଶୌନକ ଉବାଚ

ଶୌନକ ବୋଇଲେ ଶୁଣ ଆହେ ମହାମତି
ଚତୁର୍ଦ୍ଦଶ ମହାରତ୍ନ କାହାକୁ କହନ୍ତି ।
ଆମ୍ଭ ସନ୍ନିଧିରେ ତାହା କରନ୍ତୁ ପ୍ରକାଶ
ଶୁଣିବା ନିମନ୍ତେ ବଡ଼ ବଳଅଛି ଆଶ ।

ସୂତ ଉବାଚ

ପୌରାଣିକ ସୁତମୁନି କହନ୍ତି ସଧୀରେ
ଚତୁର୍ଦ୍ଦଶ ମହାରତ୍ନ ନାମ ଶୁଣ ବାରେ ।
ଚକ୍ରରତ୍ନ ମଣିରତ୍ନ ରଥରତ୍ନ ଜାଣ
ଖଡ଼୍ଗରତ୍ନ ସହିତରେ ଗୃହରତ୍ନପୁଣ
ନିଧିରତ୍ନ ଚର୍ମରତ୍ନ କେତୁରତ୍ନ ମିଶି
ସାତଗୋଟି ରତ୍ନ ଏହି ସଂସାରେ ରହିଛି ।
ଭାର୍ଯ୍ୟାରତ୍ନ ଆବର ଯେ ପୁରୋହିତ ରତ୍ନ
ସେନାନୀ ରତନ ପୁଣି ରତ୍ନାକର ରତ୍ନ ।

ଅଶ୍ୱରତ୍ନ ଗଜରତ୍ନ ପଦାତି ରତନ
ଜୀବନ ବଶିଷ୍ଟ ଏହି ସାତରତ୍ନ ଧେନ ।
ଏହିପରି ଚତୁର୍ଦ୍ଦଶ ରତ୍ନ ଭବେ ଖ୍ୟାତ
ହୋଇଥିଲେ ଶଶବନ୍ଦୁ ନରପତି ପ୍ରାପ୍ତ ।
ବଳ ବୀର୍ଯ୍ୟବାନ ସେହି ଶଶବନ୍ଦୁ ରାଜା
ରହିଥିଲେ ଏକଲକ୍ଷ ତାହାଙ୍କ ଭାରିଯା ।
ସେହୁ ଦଶଲକ୍ଷ ପୁତ୍ରକରେ ଉତ୍ପାଦନ
ତାହାଙ୍କ ମଧ୍ୟରେ ସାର ଛଅଟି ସନ୍ତାନ ।
ସେମାନଙ୍କ ନାମମାନ କହୁଅଛୁ ମୁହିଁ
ସକଳ ତାପସମାନେ ଶୁଣ ମନଦେଇ ।
ପୃଥୁଯଶା ପୃଥୁକର୍ମା ପୃଥୁଜୟ ନାମ
ପୃଥୁଦାନ ପୃଥୁକୀର୍ତ୍ତି ପୃଥୁଶ୍ରବା ଧାମ ।
ପୃଥୁଶ୍ରବା ପୁତ୍ର ନାମ ତମ ମହାବୀର
ଉଶନା ନାମରେ ଖ୍ୟାତ ତାହାର କୁମର ।
ସହସ୍ରେକ ଅଶ୍ୱମେଧ ଯଜ୍ଞ କଲା ସେହି
ତାହାର ପୁତ୍ର ଶିତେମ୍ବୁ ବଖ୍ୟାତ ଅଟଇ ।
ଶ୍ରୀରୁକ୍ମ କବଚ ଅଟେ ଶିତେମ୍ବୁ କୁମର
ତାର ସୁତ ପୁରାବୃତ ଜାଣ ମୁନବର ।
ସେ ପୁରାବୃତ୍ତର ହେଲେ ପାଞ୍ଚଟି ନନ୍ଦନ
ସେମାନଙ୍କ ନାମ ମାନ କହୁଅଛୁ ଶୁଣ ।
ଶ୍ରୀ ରୁକ୍ମେଷୁ ପୃଥୁରୁକ୍ମ ଜ୍ୟାମୋଘ ପାଳତ
ହରିତ ସହିତେ ଏହିପରି ପାଞ୍ଚପୁତ୍ର ।
ଏମନ୍ତ ଗାଥା ସଂସାର ମଧ୍ୟରେ ରହିଛୁ
ତୁମ୍ଭ ସନ୍ନିଧିରେ ମୁହିଁ ତାହା ବଖାଣୁଛୁ ।
ସଂସାରେ ଅଛନ୍ତି ଯେତେ ନାରୀଭକ୍ତ ନରେ
ଅଥବା ଜନମ ହେବେ ମହୀରେ ସେ ପରେ
ଜ୍ୟାମୋଘ ସୁମଣି ଅଟେ ସର୍ବପରେ ସାର
ଶୈବ୍ୟା ଗର୍ଭେ ଯେ ତାହାରନହେଲ କୁମର
ସଦା ଭୀତମନ ରାଜା ଶୈବ୍ୟାର ଭୟରେ
ତେଣୁ ଅନ୍ୟରାଣୀ ବିଭା ନହେଲ ସେ ପରେ ।
ଭୀଷଣ ସମରେ ଏକ କାଳେ ସେ ନୃପତି
ନପାତିତ କଲା ବହୁ ଅଶ୍ୱ ଗଜ ରଥୀ ।
ବହୁତ ବପକ୍ଷ ଗଣେ କଲା ପରାଜୟ
ତା ଦେଖି ଅରାତି ଗଲେ ପାଇଲେକ ଭୟ ।
ପୁତ୍ର ଭାର୍ଯ୍ୟା ବନ୍ଧୁଗଣ ଯେତେ ଯେ ଯାହାର
ପୁରୀ ସୈନ୍ୟ ଆଦି ସବୁ କରିଣ ପରିହାର ।

ଅବଲମ୍ୱେ ନାନାଦିଗେ କଲେ ପଳାୟନ
ଏଥୁ ଅନନ୍ତରେ ଶୁଣ ଆହେ ତପୋଧନ ।
ଅତି ରୂପବତୀ ଏକ ରାଜାର କୁମାରୀ
ଭୀତା ହୋଇ କାନ୍ଦୁଥିଲା ମନେ ଖେଦକରି ।
ସେହୁ କହୁଥାଏ ତାତ ରଖ ରଖ ଏବେ
ଜ୍ୟାମୋଘ ରାଜନ ତାକୁ ଦେଖିଣ ଏଭାବେ ।
ଦେଖିବା ମାତ୍ରକେ ରାଜା ହୃଦେ ଦୟାହେଲା
ମୁହିଁ ଅପୁତ୍ରିକ ବୋଲି ମନରେ ଭାବିଲା ।
ଏବେ ପୁତ୍ର ଦେବାପାଇଁ ବଧାତା ବଶ୍ୱର
ଏନାରୀ ରତ୍ନକୁ ପାଶେ ପଠାଇଛୁ ମୋର ।
ରମଣୀ ଭାବରେ ୟାକୁ କରବ ଗ୍ରହଣ
ବସାଇ ରଥେ ସ୍ୱରାଜ୍ୟ ଯବ ଏହିକ୍ଷଣ ।
ରାଣୀର ଆଦେଶ ମାନ ବବାହ ହୋଇବ
ରହିଣ ମହା ସୁଖରେ କାଳ କଟାଇବ ।
ଏତେ ବଚାରି କନ୍ୟାକୁ ରଥେ ବସାଇଣ
ଆପଣା ରାଜ୍ୟକୁ ନେଇ ଗଲା ନରରାଣ ।
ବହନ ପ୍ରବେଶ ହେଲା ନଗର ମଧ୍ୟରେ
ଆନନ୍ଦ ତାହାର କେହୁ କହିତ ନପାରେ ।
ସେ କାଳରେ ଶୈବ୍ୟାରାଣୀ ମହାଆନନ୍ଦରେ
ବନ୍ଧୁ ବାନ୍ଧବ ଭୃତ୍ୟଙ୍କୁ ଘେନି ସଙ୍ଗତରେ ।
ବନ୍ଦାପନା କରିବାକୁ ସିଂହଦ୍ୱାରେ ଥିଲା
ରାଜାର ବାମରେ ଏକ ରମଣୀ ଦେଖିଲା ।
ଅନ୍ତର ଭିତର ତାର ହୋଇଲା ଦହନ
ମନେ ମନେ ହିଂସା କରି ରମଣୀ ରତନ ।
ପୂର୍ବର ସରାଗ ତାର ଗଲା ହେ ଉଭାଇ
ଅହଙ୍କାର ହେଲା ହୃଦବନ ଦେଲା ଦହି ।
ତାର ଅଧର କମ୍ପିତ ହେଲା ଈର୍ଷାଭରେ
ରାଜାକୁ କହଇ ଗର୍ବେ କିଏ ଏ ରଥରେ ।
ଭୟରେ ରାଜାର ହେଲା ବଚଳିତ ମନ
ଉତ୍ତର ନଦେଇ ରହେ ନୁଆଇଁ ବଦନ ।
କ୍ଷଣେକ ପରେ ସେ ଧୀରେ କହଇ ଉତ୍ତର
ରଥର ଉପରେ ପୁତ୍ରବଧୂ ଏ ମୋହର ।
ରାଣୀ ବୋଲେ ପୁତ୍ର ଯେ ପ୍ରସବି ନାହିଁ ମୁହିଁ
ତୁମ୍ଭେ ମଧ୍ୟ ଅନ୍ୟ ନାରୀ ସ୍ୱାମୀ ହେଲନାହିଁ ।
ଏହାକୁ ଯେ ପୁତ୍ରବଧୂ କହିଲ ରାଜନ
କେଉଁ ସମ୍ବନ୍ଧେ ଏ କନ୍ୟା ପୁତ୍ରବଧୂ ପୁଣ ।

ଏତେ ବୋଲ ଶୈବ୍ୟା ରାଣୀ ନୃପତିରେ ପ୍ରତି
ବିଶେଷରେ ପ୍ରକାଶିଲ କୋପେ ଈର୍ଷା ମତି ।
ତେଣୁ ସେହି ନୃପ ର ବୁଦ୍ଧି ହେଲା କ୍ଷୟ
ମୁଖରୁ ନ ଆସେ ବାଣୀ ଧାଇଲ ଅତି ଭୟ ।
ସେ ଉତ୍ତରୁ ଧୀରେ ଧୀରେ ସ୍ତବଣ ମନରେ
କହିଲ ସେ ନରନାଥ ରାଣୀର ଆଗରେ ।
ତୁମ୍ଭ ଗର୍ଭରେ ହୋଇବ ଯେବଣ ନନ୍ଦନ
ତା ପାଇଁ ମୁଁ ଆଣିଅଛି ଏ କନ୍ୟା ରତନ ।
କୋପମତି ରାଣୀ ଶୁଣି ରାଣୀର ବଚନ
ସହାସ୍ୟ ବଦନେ କହେ ଆହେ ନରପତି ।
ଭଲକଥା ତାହାହିଁ ହୋଇବ ମହୋଦୟ
ନଗରେ ପଶିଲ ନୃପ ମାତ ରହେ ଭୟ ।
ଶୈବ୍ୟା ସଙ୍ଗେ ମନସୁଖେ କରଇ ବିହାର
ସମୟେ ରାଣୀର ହେଲା ଗର୍ଭର ସଞ୍ଚାର ।
ଯଥାକାଳେ ପୁତ୍ର ଏକ ପ୍ରସବିଲ ରାଣୀ
ତାହାର ନାମ ବିଦର୍ଭ ଦେଲ ନୃପମଣି ।
ଯେଉଁ କନ୍ୟା ଆଣିଥିଲ ଜ୍ୟାମୋଘ ରାଜନ
ତାକୁ ପୁତ୍ରବଧୂ କଲ ହୋଇ ତୋଷମନ ।
ବିଦର୍ଭ ଔରସେ ସେହି କନ୍ୟାର ଜଠରେ
କ୍ରଥ ଆବର କୈଶିକ ଜନମିଲେ ପରେ ।
ସେହି ନାରୀ ଆଉ ଏକ ପୁତ୍ର ପ୍ରସବିଲ
ରୋମପାଦ ନାମେ ସେହୁ ବିଖ୍ୟାତ ହୋଇଲ ।
ବଭ୍ରୁ ନାମେ ତାର ପୁତ୍ର ପୌତ୍ର ନାମ ଧୃତି
ଛେଦ ନାମେ କୈଶିକର ଜନ୍ମିଲ ସନ୍ତତି ।
ଏବଂଶେ ଚୈଦ୍ୟାଦି ରାଜାମାନେ ଜନମିଲେ
କ୍ରଥଠାରୁ କୁନ୍ତୀ ପରେ ଜନମ ଲଭିଲେ ।
କୁନ୍ତୀର ନନ୍ଦନ ସେହୁ ବୃଷ୍ଣି ତାର ନାମ
ନିବୃତ୍ତି ବୋଲି ବୃଷ୍ଣିର ହୋଇଲ ନନ୍ଦନ ।
ନିବୃତ୍ତିର ଜନମିଲ ଯେବଣ ସନ୍ତତି
ତାହାର ନାମ ବିଖ୍ୟାତ ଦଶାର୍ହ ଭୂପତି ।
ଦଶାର୍ହର ବ୍ୟୋମା ନାମେ ଜନ୍ମିଲ ନନ୍ଦନ
ବ୍ୟୋମାର ସୁତ ଜୀମୂତ ବିଦିତ ଭୁବନ ।
ଜୀମୂତର ପୁତ୍ର ନାମ ଅଟେ ବିକୃତି
ତାର ପୁତ୍ର ଭୀମରଥ ଧରଣୀରେ ଖ୍ୟାତି ।
ଭୀମରଥର ନନ୍ଦନ ନାମ ନବରଥ
ନବରଥର କୁମର ଅଟେ ଦଶରଥ ।
ଦଶରଥର ତନୟ ନାମ ଯେ ଶକୁନି
ଶକୁନିର ପୁତ୍ର ଯେ କରମ୍ଭି ନୃପମଣି ।
କରମ୍ଭିର ସୁତ ନାମ ଜାଣ ଦେବରାତ
ତାହାର ନନ୍ଦନ ଯେହୁ ନାମ ଦେବକ୍ଷତ୍ର ।
ଦେବକ୍ଷତ୍ରର କୁମର ମଧୁ ନାମ ଯାର
ଶ୍ରୀ ଅନବରଥ ନାମେ ତନୟ ତାହାର ।
ଅନବରଥର ସୁତ ନାମ କୁରୁବତ୍ସ
ତାର ପୁତ୍ର ନାମ ଅନୁରଥ ବୁଝ ସ୍ୱଚ୍ଛ ।
ପୁରୁହୋତ୍ର ନାମେ ଅନୁରଥର ନନ୍ଦନ
ଅଂଶନାମେ ତାର ପୁତ୍ର ବିଖ୍ୟାତ ଭୁବନ ।
ଅଂଶର ସୁତ ସତ୍ୱତ ନାମେ ମହାମତି
ସତ୍ୱତ ବଂଶର ଅଟେ ଏହାଠାରୁ ଖ୍ୟାତି ।
ସତ୍ୱତ ନୃପର ହେଲେ ଅନେକ ନନ୍ଦନ
ଭଜନ ଭଜମାନ ଯେ ବିଦ୍ୟାନ୍ଧକ ପୁଣ ।
ଦେବାବୃଦ୍ଧ ମହାଭୋଜ ନାମେ ନରଗଣ
ବୃଷ୍ଣି ଏହି ଛଅପୁତ୍ର କରେ ଉତ୍ପାଦନ ।
ଭଜମାନ କଥା ଏବେ କରହେ ଶ୍ରବଣ
ବିବାହ କଲ ସେ ଦୁଇନାରୀ ଭଜମାନ ।
ଏକ ନାରୀଠାରୁ ହେଲେ ତିନୋଟି ସନ୍ତାନ
ଆନ ନାରୀ ଗର୍ଭୁ ସେହିଭଳି ତିନି ନନ୍ଦନ ।
ପ୍ରଥମା ଉଦରୁ ନିମି ବୃଷ୍ଣି ଓ କୃକନ
ଅନ୍ୟର ଜଠରେ ଶତାଜିତାଦି ଉତ୍ପନ୍ନ ।
ଯେଉଁ ପୁତ୍ର ଉତ୍ପାଦନ ଦେବା ବୃଦ୍ଧ କଲ
ତାର ନାମ ବଭ୍ରୁ ବୋଲି ପ୍ରଚ୍ଛର ହୋଇଲ
ଦେବା ଧୃତ ନାମେ ଆଉ ବଭ୍ରୁର ନାମରେ
ଏକଥା ପ୍ରସିଦ୍ଧ ଅଛି ଶୁଣ ସୁଚିତ୍ତରେ ।
ଦେବାବୃଦ୍ଧ ଆଉ ବଭ୍ରୁ ଦେବଙ୍କ ସମାନ
ଏହି ଉଭୟ ଅଟନ୍ତି ସବୁଠୁଁ ପ୍ରଧାନ ।
କିବା ଦୂରେ କିବା ପାଶେ ଯେ କୌଣସି ଜନ
ଏମାନଙ୍କର ପ୍ରଶଂସା କରୁଥାନ୍ତି ଗାନ ।
ଏଥୁ ଅନନ୍ତରେ ପୁଣ ଆହେ ମହାମତି
ପ୍ରତାପୀ ଭୋଜ ନୃପତି ଥିଲେ ଧର୍ମୀ ଅତି ।
ତାହାର ବଂଶରେ ଭୋଜ ମାର୍ତ୍ତିକ ଆରତ
ଜନ୍ମିଲେ ଏ ତିନଜଣ ମହା ଭାଗ୍ୟବନ୍ତ ।
ବୃଷ୍ଣିଠାରୁ ଜନମିଲେ ଯୋଡ଼ିଏ ସନ୍ତାନ
ସୁମିତ୍ର-ସ୍ୱଙ୍ଗାମିତ୍ର ଯେ ତାଙ୍କ ନାମ ମାନ ।

ସ୍ୱଙ୍ଗାମିତ୍ରର ଜନ୍ମିଲେ ଦୁଇଟି କୁମର
ଅନୁମିତ୍ର ଶିନି ନାମ ବିଖ୍ୟାତ ସଂସାର ।
ବିଘ୍ନର ଉତ୍ପନ୍ନ ହେଲା ଅନୁମିତ୍ରଠାର
ତାହାର ବେନି କୁମର ହେଲା ତା ଉତ୍ତାରୁ ।
ସତ୍ରାଜିତ ପ୍ରହସନ ନାମ ତାହାଙ୍କର
ସୂର୍ଯ୍ୟ ଭଗବାନ ପାଏ ଜାଣ ସେ ଆବର ।
ଏକଦିନେ ଶତ୍ରାଜିତ ସମୁଦ୍ରର କୂଳେ
ଏକାନ୍ତରେ ଉପସ୍ଥିତ ହୋଇଲେ ଶୟନେ ।
ଭାସ୍କର ଦେବଙ୍କ ସ୍ତବ ଗୀତ ପାଠକଲା
ତାହା ଶୁଣି ସୂର୍ଯ୍ୟଙ୍କର ମନ ତୋଷହେଲା ।
ଭାସ୍କର ଛଦ୍ମ ବେଶକୁ କରିଣ ଧାରଣ
ତାହାର ସନ୍ନିଧେ ଆସି ମିଳିଲେ ବହନ ।
ସେ ମୂର୍ତ୍ତିଙ୍କୁ ସତ୍ରାଜିତ ଦେଖନ୍ତେ ନୟନେ
ସମ୍ବୋଧନ କରି କହେ ବିନୟ ବଚନେ ।
ଆହେ ସୂର୍ଯ୍ୟଦେବ ଶୁଣ ମୋର ନିବେଦନ
ପ୍ରତ୍ୟହ ପ୍ରଭାତୁ କରେ ତୁମ୍ଭର ଦର୍ଶନ ।
ବହ୍ନି ପିଣ୍ଡମୟ ରୂପ ଦେଖେ ମୁଁ ନୟନେ
ଆଜମଧ୍ୟ ସେହି ରୂପ ଦେଖୁଛି ଏ ସ୍ଥାନେ ।
ତୁମ୍ଭର ପ୍ରସାଦ ଚିହ୍ନି ନ ହୁଏ ଲକ୍ଷିତ
ଯା ହୁଏ ବିହିତ ତାହା କର ବିବେଚିତ ।
ସତ୍ରାଜିତ ମୁଖୁଁ ଏହା କରନ୍ତେ ଶ୍ରବଣ
କଣ୍ଠୁ ସ୍ୟମନ୍ତକମଣି କରି ଉନ୍ମୋଚନ ।
ଏକ ପାଶେ ଦିବାକର କଲେ ତା ସ୍ଥାପନ
ତାହାପରେ ଦିବ୍ୟରୂପ ହେଲା ଦରଶନ ।
ଦେଖିଣ ଆନନ୍ଦ ହୋଇ ସତ୍ରାଜିତ ବୀର
ଭକ୍ତିଭାବେ ସ୍ତବ ଆରମ୍ଭିଲେ ସେ ସେଠାର
ବୋଇଲା ଜୟ ଭାସ୍କର ଜୟ ଦିନମଣି
ଅତି ଚମତ୍କାର ଅଟେ ତବ ଶୋଭା ଠାଣି ।
ଜୟ ଜୟ ହେ ଭାସ୍କର କଶ୍ୟପ ନନ୍ଦନ
ତବ ପାଦପଦ୍ମେ ଧ୍ୟାନ କରଇ ବନ୍ଦନ ।
ଜୟ ଜୟ ପଦ୍ମକର ରବି ନାରାୟଣ
ଅଭୟ ପାଦ ପଙ୍କଜେ ପଶିଲି ଶରଣ ।
ଜୟ ଜୟ ଛାୟାକାନ୍ତ ମହା ଶୋଭାବଳୀ
ଧୌତ କର ଏ ଦାସର ସର୍ବ ପାପ କାଳୀ ।
ଜୟ ଜୟ ସଜ୍ଞାପତି ଗଗନ ବିହାରୀ
କୋଟି କୋଟି ଦଣ୍ଡବତ ପୟରେ ତୁମ୍ଭର ।
କାତର ବନ୍ଧବ ପ୍ରଭୁ ମାଡ଼ୁଅଛି ଭୟ
ମାଡ଼ନାହିଁ ଦିନେ ମାତ୍ର ମୁହିଁ ବିଦ୍ୟାଳୟ ।
ତୁମ୍ଭେ ଅଟ ଏ ଜଗତ ଜନ ତ୍ରାଣକର୍ତ୍ତା
ପ୍ରତ୍ୟେକ ଜନର ପଥ ପ୍ରଦର୍ଶକ ଦାତା ।
ଯଦ୍ୟପି ନ ଥାନ୍ତ ତୁମ୍ଭେ ଏହି ଆକାଶରେ
ଅନ୍ଧକାର ଘୋଟିଥାନ୍ତା ସାରା ଜଗତରେ ।
କେଉଁ ଜନମରେ କିବା ପୁଣ୍ୟ କରିଥିଲି
ନର ଦେହେଁ ନାରାୟଣ ଦରଶନ କଲି ।
ଧନ୍ୟ ମୁହିଁ ଧନ୍ୟ ଅଟେ ପିତା ମାତା ମୋର
ଆଜ ପ୍ରଭୁଙ୍କ ଦର୍ଶନେ ହୋଇଲି ଉଦ୍ଧାର ।
ଏହିପରି ସୂର୍ଯ୍ୟଦେବ କରନ୍ତେଣ ସ୍ତବ
ସନ୍ତୋଷ ହୋଇଲେ ପ୍ରଭୁ ସଜ୍ଞାଙ୍କରଧବ ।
ସତ୍ରାଜିତକୁ ଅନାଇ ବୋଇଲେ ମଧୁରେ
ପ୍ରସନ୍ନ ହୋଇଲି ଆଜ ମୁହିଁ ତବପରେ ।
ଯାହା ତବ ଇଚ୍ଛା ହେଉଅଛି ଭକ୍ତବର
ଇଚ୍ଛା ଅନୁସାରେ ତୁମ୍ଭେ ମାଗିଘେନ ବର ।
ଶୁଣି ସତ୍ରାଜିତ ମନେ ଆନନ୍ଦିତ ହୋଇ
ସୂର୍ଯ୍ୟ ଦେବଙ୍କର ପାଦେ ପଡ଼ିଣ ବୋଲଇ
ହେ ଭାସ୍କର ଦେବଯେବେ ଦେବେମୋତେବର
ତୁମ୍ଭ କଣ୍ଠସ୍ଥିତ ଏହି ମଣି ଦାନ କର ।
ତାହାଙ୍କ ମୁଖରୁ ଏହା କରନ୍ତେ ଶ୍ରବଣ
ପରମ ସନ୍ତୋଷ ହୋଇ ସୂର୍ଯ୍ୟ ନାରାୟଣ ।
ସନ୍ତୋଷରେ ମଣି ଗୋଟି ଅର୍ପଣ କରିଲେ
ରଥ ଆରୋହଣ ଆନନ୍ଦରେ ଚଳିଗଲେ ।
ସତ୍ରାଜିତ ସେହି ମଣି କଣ୍ଠରେ ଲମ୍ବାଇ
ଦ୍ୱିତୀୟ ସୂର୍ଯ୍ୟଙ୍କ ପରି ବ୍ରହ୍ମାଣ୍ଡେ ଭ୍ରମଇ ।
ଆନନ୍ଦ ମନେ ଗଲା ସେ ଦ୍ୱାରକା ନଗରେ
ତାହାକୁ ଦେଖି ଚକିତ ହେଲେ ସର୍ବ ନରେ ।
ଏହି ଯେ ଅଟଇ ସ୍ୟମନ୍ତକ ଉପାଖ୍ୟାନ
ଯଦୁବଂଶ ପ୍ରସଙ୍ଗରେ କଲଇଁ ବର୍ଣ୍ଣନ ।
ଏଥୁଅନ୍ତେ କହିବଇଁ ଆନ ସମାଚାର
ଶିନି ରାଜବଂଶ କଥା ଅତି ଚମତ୍କାର ।
ଅନ୍ଧକ ବଂଶ ଚରିତ କରିବି ବଖାଣ
ତଦନ୍ତେଣ ଶ୍ରୁତଶ୍ରବା ବଂଶ ବିବରଣ ।
ଯଦୁବଂଶେ ଶ୍ରୀକୃଷ୍ଣଙ୍କ ଜନ୍ମ କର୍ମ କଥା
ଯଦୁବଂଶୀୟଙ୍କ ସଂଖ୍ୟା ନିରୂପଣ ଯଥା ।

ଭୁବସୁ ବଂଶର କଥା କରିବ ବଖାଣ
ସେ ଉତ୍ତାରୁ ଦ୍ରୁହ୍ୟ ବଂଶ ଯେମନ୍ତ ଘଟଣ ।
ଅନୁବଂଶର ପ୍ରସଙ୍ଗ ଅଟଇ ଯେପରି
ପ୍ରକାଶ କରିବ ତାହା ଆହେ ତପସ୍ଵୀ ।
ଜନ୍ମେଜୟ ବଂଶ ଭରତାଦିଙ୍କ ଉଦ୍ଭବ
ଜହ୍ନୁ ଆବର ପାଣ୍ଡୁଙ୍କ ବଂଶର ପ୍ରସ୍ତାବ ।
ପରୀକ୍ଷିତ ବଂଶ ଆଦି ସକଳ ବିଷୟ
ପ୍ରକାଶ କରିବ ଯଥା ଶାସ୍ତ୍ରରେ ନିର୍ଣ୍ଣୟ ।
କ୍ରମେ କ୍ରମେ ସବୁ କଥା କରିବ ବ୍ୟକତ
ବ୍ୟାସଦେବ ଯାହା ବର୍ଣ୍ଣିଛନ୍ତି ଯଥୋଚିତ ।
ଏଥି ପୂର୍ବେ କହିଅଛି ସୂର୍ଯ୍ୟବଂଶ କଥା
ତାହା ପୂର୍ବରୁ କହିଛି ଯଦୁବଂଶ କଥା ।
ଚନ୍ଦ୍ରବଂଶ ବିବରଣ ଶୁଣିଛନ୍ତି ସର୍ବେ
ସୂର୍ଯ୍ୟ ଆଉ ଚନ୍ଦ୍ରବଂଶ ଏକିବ ଯେ ଭବେ ।
ସମସ୍ତ ବିଷୟ ହୋଇଅଛି ଅବଗତ
ଏବେ ଶିନି ଅନ୍ଧକଙ୍କ ଅପୂର୍ବ ବୃତ୍ତାନ୍ତ ।
ତୁମ୍ଭମାନଙ୍କ ଆଗରେ କରିବ ପ୍ରକାଶ
ଯାହାକ ଶ୍ରବଣେ ହୁଏ କଳୁଷ ବିନାଶ ।
ଏମନ୍ତେ ଯେ ସୂତମୁନି ପୁରାଣ ବକତା
ମୁନି ମେଳେ ବଖାଣିଲେ ସୁପବିତ୍ର କଥା ।
ତେଣେ ଶୌନକ ଆବର ତାପସ ନିକର
ବସିଣ ଅଛନ୍ତି ସର୍ବେ ତଦ୍ଗତେ ହୋଇ ସ୍ଥିର ।
ଅଠାଶୀ ସହସ୍ର ଋଷି ଥିଲେ ସେ ବନରେ
ପୁରାଣ ଶୁଣନ୍ତି ସର୍ବେ ମନ ଆନନ୍ଦରେ ।
ସେହି ସାଧୁଜନଙ୍କର ଅଭୟ ପୟର
ରେଣୁ ମଣ୍ଡି ହେଉ ଶିରେ କହେ କ୍ଷେତ୍ର ସ୍ଥିର

ଇ ୨ ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ ସୂତ
ଶୌନକ ସମ୍ବାଦେ ଯଦୁବଂଶ ଚରିତ
ବର୍ଣ୍ଣନଂ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।

—:o:—

## ଊନତ୍ରିଂଶ ଅଧ୍ୟାୟ
## ଶିନି, ଅନ୍ଧକ ଓ ଶ୍ରୁତଶ୍ରବା ବଂଶ କଥନ

ଶୌନକ ଉବାଚ

ଶୌନକ ପୁଚ୍ଛନ୍ତି ସୂତ ମୁନିଙ୍କୁ ଅନାଇଁ
କହିବା ହେଉ ହେ ପୌରାଣିକ ଋଷିସାଇଁ ।
ଯଦୁବଂଶେ ଅନୁମିତ୍ର ଆଦିଙ୍କ ଚରିତ
ଯେତେକ ଯାଦବ ଜାତ ତାହାଙ୍କ ବୃତ୍ତାନ୍ତ ।
ଏକ ଏକ କରି ସେହି ବୀରଙ୍କର ନାମ
ପ୍ରକାଶ କରି ସଂପ୍ରତି ପାଠକ ଲଲାମ ।
ଶୌନକ ମୁନିଙ୍କ ମୁଖୁଁ ଏ ବଚନ ଶୁଣି
କହି ଆରମ୍ଭିଲେ ସୂତ ମହର୍ଷି ପୁଣି ।

ସୂତ ଉବାଚ

ଏକ ମନେ ଶୁଣ ଆହେ ସିଦ୍ଧ ତପୋଧନ
ଯାଦବମାନଙ୍କ କଥା କରୁଛି ବର୍ଣ୍ଣନ ।
ଅନୁମିତ୍ର ଅନୁଜ ଯେ ଶିନି ନାମ ତାର
ସତ୍ୟକ ଅଟଇ ସେହି ଶିନିର କୁମର ।
ସେହି ସତ୍ୟକର ହେଲା ଯେବଣ ନନ୍ଦନ
ତାହାର ନାମ ବିଖ୍ୟାତ ବୀର ଯୁଯୁଧାନ ।
ସତ୍ୟକର ପୁତ୍ର ହେତୁ ସାତ୍ୟକ ବୋଲଣ
ଖ୍ୟାତ ହୋଇଅଛି ଜାଣ ଏହି ତ୍ରିଭୁବନ ।
ଅସଙ୍ଗ ନାମରେ ଅଟେ ସାତ୍ୟକର ସୁତ
ମହା ବଳବନ୍ତ ସେହୁ ସର୍ବ ଗୁଣବନ୍ତ ।
ତାହାଙ୍କର ପୁତ୍ର ନାମ ଭୂଣି ବୀରବର
ଯୁଗନ୍ଧର ବୋଲି ପୁତ୍ର ତାହାର କୁମର ।
ଏ ପୁତ୍ର ପୌତ୍ର ସକଳେ ଶିନିର ଅଟନ୍ତି
ଧରଣୀ ମଣ୍ଡଳେ ବଢ଼େ ସେହି ବଂଶ କୀର୍ତ୍ତି ।
ଅନୁମିତ୍ର ବଂଶେ ପୃଷ୍ଣି ଉତ୍ପନ୍ନ ହୋଇଲା
ଶ୍ଵଫଳକ ନାମେ ପୁତ୍ର ତାଠାରୁ ଜନ୍ମିଲା ।
ଅତି ଅକଥନ ଭବେ ପ୍ରଭାବ ଏହାର
ଶ୍ଵଫଳକର କନିଷ୍ଠ ସଭିଙ୍କ ମଧ୍ୟର ।
ଗାନ୍ଧିନୀ ଗରଭେ ଶ୍ଵଫଳକ ଔରସରେ
ଜନ୍ମିଲା ଅପୂର୍ବ ସୁତ ଜାଣ ଏ ମହୀରେ ।
ଆଉ ଯେ ଉପଦମଗୁ ମୃଦୟ ବିସ୍ତାର
ଶ୍ରୀମେଜୟ ଗିରିକ୍ଷେତ୍ର ସର୍ବ ଗୁଣଧାରୀ ।
ଉପକ୍ଷେତ୍ର ଶତ୍ରୁଘ୍ନ ବିନର୍ଦ୍ଦନ ବୀର
ଧର୍ମଭୃକ୍ ଦୃଷ୍ଟଶର୍ମା ଧାର୍ମିକ ଆବର ।
ଗନ୍ଧମୋଜ ଶ୍ରୀଅବାହ ଆଉ ପ୍ରତିବାହ
ଶ୍ଵଫଳକ ପୁତ୍ର ଏହି ତଉଦ ନିଶ୍ଚୟ ।
ଶ୍ଵଫଫଳର ତାରୀ ନାମେ ତନୟା ଜନ୍ମିଲା
ଅତି ରୂପବତୀ ଗୁଣବତୀ ସେ ଅବଳା ।

ଅନ୍ଧୁର ଅଟଇ ଭବେ ଧର୍ମ ପରାୟଣ
ଜନ୍ମିଲେ ତାହା ଔରଷେ ଦୁଇଟି ନନ୍ଦନ ।
ଜ୍ୟେଷ୍ଠ ପୁତ୍ର ନାମ ଯେ ବହିତ ଦେବବାନ
ଉପଦେବ ନାମ ଯେହୁ କନିଷ୍ଠ ନନ୍ଦନ ।
ପିତାପର ସେହି ଦୋନ ଭାଇ ହରିଭକ୍ତ
ସଦା ସେ ଶ୍ରୀକୃଷ୍ଣଙ୍କର ନାମେ ଅନୁରକ୍ତ ।
ଚିତ୍ରକର ବହୁପୁତ୍ର ହେଲେ ଉତ୍ପାଦନ
ସକଳେ ଅତି ସୁନ୍ଦର ଆଉ ଗୁଣବାନ ।
ପୃଥୁ ବିପୃଥୁ ଆଦି ଯେ ନାମ ତାହାଙ୍କର
ଯାଦବ ବୋଲିଣ ଭବେ କରନ୍ତି ପ୍ରଚାର ।
ଶୂରସୁତ ଅନ୍ଧକାର ହୋଇଲେ ଉତ୍ପନ
ସେମାନେ ସର୍ବ ଗୁଣରେ ଅଟନ୍ତି ନିପୁଣ ।
କୁକ୍‌କୁର ଭଜମାନ ଯେ ଶ୍ରୀ ଶୁଚି କମ୍ବଳ
ବର୍ହିଷକୁ ମିଶାଇଣ ଏ ଚାରି ଦୁଲାଳ ।
ଏକକୁ ଆରକେ ଅଟେ ମହା ବଳବନ୍ତ
ସର୍ବଗୁଣେ ବିଚକ୍ଷଣ ସେହି ଚାରି ସୁତ ।
କୁକ୍‌କୁରର ପୁତ୍ର ନାମ ବୃଷ୍ଣି ଯେ ବିଖ୍ୟାତ
ଶ୍ରୀକପୋତ ନାମକାର ସେ ବୃଷ୍ଣିର ସୁତ ।
ରୋମାର ପୁତ୍ର କପୋତ ନାମଟି ବିଲୋମା
ଯଦୁବଂଶରେ ତାହାର ବଢ଼ଇ ଗାରିମା ।
ବିଲୋମା ଔରଷେ ଭବ ଉତ୍ପନ୍ନ ହୋଇଲା
ମହାବଳବନ୍ତ ଜଗତରେ ବୋଲାଇଲା ।
ଦୁନ୍ଦୁଭି ଉଦର ଦସ୍ର ବିଲୋମା ତନୟ
ଅଭିଜିତ ନାମେ ଯେ କୁମର ରମଣୀୟ ।
ସେ ଅଭିଜିତର ପୁତ୍ର ପୁନର୍ବସୁ ନାମ
ସକଳ ଗୁଣରେ ସେହୁ ଅଟେ ବିଚକ୍ଷଣ ।
ଆହୁକ ନାମରେ ତାର ପୁତ୍ର ହେଲା ଜାତ
ହୋଇଲା ଆହୁକୀ ନାମେ ଦୁହିତା ସମ୍ଭୂତ ।
ଦେବକ ଉଗ୍ରସେନ ଏ ଦୁଇ ଭାଇ ଜାଣ
ଆହୁକର ସୁତ ବୋଲି ବିଖ୍ୟାତ ଭୁବନ ।
ଦେବକର ଜନମିଲେ ଚାରି ଗୋଟି ସୁତ
ସେହି ଚାରି ସୁତ ଭବେ ମହାବଳବନ୍ତ ।
ଦେବମାନ ଉଦେବ ସୁଦେବ ଏହି ତିନ
ସବୁହୁଁ କନିଷ୍ଠ ଯେହୁ ସେହୁ ମହାଜ୍ଞାନୀ ।
ତାହାର ନାମ ଯେ ଦେବ ରକ୍ଷିତ ଅଟଇ
ସର୍ବଗୁଣେ ଗୁଣବନ୍ତ ଖ୍ୟାତ ଅଟେ ମହୀ ।

ଦେବକ କର ସାତଗୋଟି ଦୁହିତା ଜନ୍ମିଲେ
ରୂପବତୀ ଗୁଣବତୀ ଭଗିନୀ ସକଳେ ।
ବୃକଦେବା ଉପଦେବା ଶ୍ରୀଦେବରକ୍ଷିତା
ଶ୍ରୀ ଦେବା ଶ୍ରୀକାନ୍ତଦେବା ସର୍ବଗୁଣେ ଯୁକ୍ତା
ସହଦେବା ବୋଲି ସୁତା ସୁନ୍ଦରୀ ପ୍ରଧାନ.
ଦେବକୀ ଦେବୀ ଅଟନ୍ତି ସବୁଠାରୁ ସାନ ।
ଏଥି ପୂର୍ବେ ସଂକ୍ଷେପରେ କହିଥିଲି ମୁହିଁ
ବିସ୍ତାର ଭାବରେ ଏବେ କହୁଛି ବୁଝାଇ ।
ଦେବକଙ୍କର ସାତକନ୍ୟା ଏହିପରି ଜାଣ
କାହାକୁ କେହି ନୁହନ୍ତି ଶୋଭାରେ ନିଉନ ।
ଯଥା ସମୟରେ ଏହି ସାତ ଭଉଣୀଙ୍କୁ
ବସୁଦେବ ବିଭାହେଲେ ଯେ ଜଣ ଜଣଙ୍କୁ ।
ସଭିଙ୍କ ମଧ୍ୟେ ଦେବକୀ ମହା ପୁଣ୍ୟବତୀ
ବ୍ରହ୍ମାଣ୍ଡ ମଧ୍ୟରେ ଖ୍ୟାତ ଦେବକ ଦୁହିତୀ ।
ପରଂବ୍ରହ୍ମ ନାରାୟଣ ଶ୍ରୀମଧୁସୂଦନ
ତାଙ୍କପରେ ଦେବକୀର ଭକ୍ତି ଅକଥନ ।
ଦେବକର ପୁତ୍ର କନ୍ୟା ମାନେ ଏହିପରି
ମଣ୍ଡିଲେ ଯଥାସମୟେ ମଥୁରା ନଗରୀ ।
ଧନ୍ୟ ସେ ଦେବକ ବୀର ଧନ୍ୟ ତାଙ୍କ ଯଶ
ଏକମୁଖେ କେବା ତାହା କରିବ ପ୍ରକାଶ ।
ଦେବକର କୀର୍ତ୍ତିମାଳା କେ ବର୍ଣ୍ଣିପାରିବ
ନାତି ଭାବରେ ଯାହାର ଜନ୍ମ ଶ୍ରୀ କେଶବ ।
ଦେବକୀ ସହିତେ ଦେବକର ସାତ କନ୍ୟା
ଶୁଭେ ବିଭା ହେଲେ ବସୁଦେବ ମହାମନା ।
ଭୋଜ ବଂଶେ ଯଦୁବଂଶେ ସମ୍ବନ୍ଧ ଏସନ
ସକଳ ଦ୍ୱାରାବତୀରେ କଲେ ବାସସ୍ଥାନ ।
ମୂଳ ସ୍ଥାନ ତାହାଙ୍କର ମଥୁରା ନଗରୀ
କୃଷ୍ଣଙ୍କ ଇଚ୍ଛାରେ ଗଲେ ଦ୍ୱାରାବତୀ ପୁରୀ ।
ଏବେ ଉଗ୍ରସେନ ବଂଶ କଥା ଯାହା ଶୁଣ
ଦେବକର ଭ୍ରାତ ଯେହୁ ଧର୍ମ ପରାୟଣ ।
ଅନେକ ଜନ୍ମିଲେ ଉଗ୍ରସେନର ନନ୍ଦନ
ଜ୍ୟେଷ୍ଠ ପୁତ୍ର କଂସ ନାମେ ବିଖ୍ୟାତ ଭୁବନ
ଆଉ ସାତ ପୁତ୍ର ଯେହୁ ସେ ଉଗ୍ରସେନର
ସେମାନଙ୍କ ନାମ ଯାହା ଶୁଣ ମୁନିବର ।
ନ୍ୟଗ୍ରୋଧ ସୁନାମ କଙ୍କଶଙ୍କୁ ଏହି ତିନ
ସ୍ୱଲମି ରାଷ୍ଟ୍ରପାଳ ଯେ ଅଟନ୍ତି ଏ ବେନି ।

ମନ୍ଦପୁଷ୍ଟି ପୁଷ୍ଟିମାନ ଏମନ୍ତେ ଏ ସାତ
କଂସଙ୍କୁ ମିଶାଇ ଆଠ ଉଗ୍ରସେନ ସୁତ ।
ଏହି ଆଠ ପୁତ୍ର ସମସ୍ତଙ୍କ ଠାରୁ ଶ୍ରେଷ୍ଠ
ଆଉ ଯେ ଅଛନ୍ତି କେତେ କୁମର କନିଷ୍ଠ ।
ଉଗ୍ରସେନର ଯେ କନ୍ୟାମାନଙ୍କର ନାମ
କହୁଅଛୁ ଏକ ମନେ ଶୁଣ ତପୋଧନ ।
କଂସା କଂସବତୀ ଯେ ସୁତନୁ ରାଷ୍ଟ୍ରପାଳୀ
କଙ୍କା ଏହି ପଞ୍ଚକନ୍ୟା ରୂପରେ ବଜୂଳୀ ।
ଭଜମାନର ତନୟ ଅଟଇ ବିଦୁରଥ
ତାର ପୁତ୍ର ଶୂର ନାମେ ଧରାରେ ବିଦିତ ।
ଶର ପୁତ୍ର ଶର୍ମୀ ନାମ ଅଟଇ ତାହାର
ପ୍ରତକ୍ଷତ୍ର ନାମେ ଜାତ ଶର୍ମୀର କୁମାର ।
ପ୍ରତକ୍ଷତ୍ର ମହାବୀର ଭଜମାନ ବଂଶୀ
ସ୍ୱୟମ୍ଭୋଜ ନାମେ ତାର ପୁତ୍ର ପୂର୍ଣ୍ଣ ଶଶୀ ।
ସ୍ୱୟମ୍ଭୋଜର ତନୟ ନାମ ତା ହୃଦିକ
ହୃଦିକର ପୁତ୍ର କୃତବର୍ମା ନାମ ଠିକ ।
ଶତଧନ୍ୱା ବୋଲି ସେହି ହୃଦିକ ନନ୍ଦନ
ଶ୍ରୀଦେବ ମେଢ଼ୁଷ ନାମେ ଆନପୁତ୍ର ଜାଣ ।
ଜ୍ୟେଷ୍ଠ କୃତବର୍ମା ଶତଧନ୍ୱା ଯେ ମଧ୍ୟମ
ତାହାଙ୍କ ତଳରେ ଦେବମେଢ଼ୁଷ ଯେ ଜନ୍ମ
ଏହିପରି ତିନପୁତ୍ର ହୃଦିକ ଲଭଇ
ଦେବମେଢ଼ୁଷର ପୁତ୍ର ସୁର ଯେ ଅଟଇ ।
ଶୂରସେନ ଭାରିଯା ନାମ ତା ମାରିଷା
ପରମା ସୁନ୍ଦରୀ ସେହି ଗୁଣବତୀ ଯୋଷା ।
ଶୂରସେନର ଔରସରେ ମାରିଷା ଉଦରେ
ବସୁଦେବ ଆଦି ଜନ୍ମ ଦଶ ସହୋଦରେ ।
ବସୁଦେବ ଯେତେବେଳେ ଜନମ ଲଭିଲେ
ଦିବ୍ୟ ଦୃଷ୍ଟି ଦେବଗଣ ତାହାଠାରେ ଦେଲେ
ସେହି ବସୁଦେବ ପୁରେ ପ୍ରଭୁ ଭଗବାନ
ସର୍ବଶୁଭବେଳେ ଜାଣ ଅଂଶେ ଅବତୀର୍ଣ୍ଣ ।
ଜନ୍ମକାଳେ ଆନନ୍ଦରେ ସର୍ବ ଦେବଗଣ
ଆନକ ଦୁନ୍ଦୁଭି ବାଦ୍ୟ କଲେ ସେ ବାଦନ ।
ତେଣୁ ଆନକ ଦୁନ୍ଦୁଭି ନାମ ହେଲା ତାର
ଦେଖିବାକୁ ସେ କୁମର ଅପୂର୍ବ ସୁନ୍ଦର ।
ଦେବଭାଗ ଦେବଶ୍ରବାଃଆଦି ନଅଜଣ
ଏ ସର୍ବେ ବସୁଦେବର ନିଜ ଭ୍ରାତୃଗଣ ।

ପୃଥା ଶ୍ରୁତଦେବୀ ଶ୍ରୁତକୀର୍ତ୍ତି ଶ୍ରୁତକଥା
ଶ୍ରୀରାଜାଧିଦେବୀ ପଞ୍ଚକନ୍ୟା ଜନ୍ମ ତଥା ।
ଏହି ପଞ୍ଚକନ୍ୟା ବସୁଦେବର ଭଗିନୀ
ପରମାସୁନ୍ଦରୀ ସର୍ବେ ଭୁବନ ମୋହିନୀ ।
କୁନ୍ତି ଭୋଜ ନାମେ ସଖା ଶୂରର ଯେ ଥିଲା
ସେହି ନୃପତିର ପୁତ୍ରଟିଏ ନ ଜନ୍ମିଲା ।
ପୁତ୍ର କନ୍ୟା ବିହୀନ ସେ କୁନ୍ତିଭୋଜରାୟ
ତେଣୁ ତା ମନରେ ଦୁଃଖ ଥାଏ ଅତିଶୟ ।
ଅପୁତ୍ରିକ କୁନ୍ତିଭୋଜ ନୃପତିକି ଶୂର
କନ୍ୟାଟିଏ ଦାନ କଲା ସୁତା ରୂପ ତାର ।
ସେହି କନ୍ୟାଟିର ନାମ ପୃଥା ବୋଲି ଖ୍ୟାତ
କନ୍ୟା ପାଇ କୁନ୍ତିଭୋଜ ମନ ପ୍ରଫୁଲ୍ଲିତ ।
ପାଣ୍ଡୁ ସେହି ପୃଥାକୁ ଯେ ବିବାହ ହୋଇଲେ
କୁନ୍ତୀଦେବୀ ବୋଲି ନାମ ପିତା ଦେଇଥିଲେ
ପୃଥା ନାମେ ପ୍ରଥମରେ ବିଖ୍ୟାତ ଯେ ସତୀ
କୁନ୍ତୀଭୋଜ ପାଳିବାରୁ ନାମ ହେଲା କୁନ୍ତୀ ।
ପାଞ୍ଚପାଣ୍ଡବଙ୍କ ମାତା ଅଟନ୍ତି ଯେ କୁନ୍ତୀ
ଇଚ୍ଛା ଅନୁସାରେ ଯେହୁ ବରିଲେକ ପତି ।
ତିନ ପତିଙ୍କର ନିଜ ବାଞ୍ଛା ପୂର୍ଣ୍ଣ କଲେ
ସେ ତିନ ଦେବଙ୍କ ନାମ ଶୁଣ ଏବେ ଭଲେ
ଆଦ୍ୟରେ ଧର୍ମ ଦେବତା ପରେ ସୁନାଶୀର
ତା ପରେ ପବନ ମିଶି ତିନ ଏ ପ୍ରକାର ।
ଧର୍ମ ଦେବଙ୍କ ଔରସେ କୁନ୍ତୀଙ୍କ ଉଦରେ
ଯୁଧିଷ୍ଠିର ଜନ୍ମଲାଭ କରିଲେ ମହୀରେ ।
ତାପରେ ପବନ ସଙ୍ଗେ କରିଣ ଶୃଙ୍ଗାର
ଜନ୍ମକଲେ ମହାବଳବନ୍ତ ଭୀମ ବୀର ।
ଶେଷରେ ଇନ୍ଦ୍ରଙ୍କ ଔରସରେ ଯେ ଅର୍ଜ୍ଜୁନ
ଏହି ମର୍ତ୍ତ୍ୟ ମଣ୍ଡଳରେ ହୋଇଲେ ଉତ୍ପନ୍ନ ।
ଏହା ପୂର୍ବରୁ ତାଙ୍କର ଏକ ପୁତ୍ରବର
ଅନୂଢ଼ାବସ୍ଥାରେ ହେଲା ଯେ ପିତୃ ଆଳର ।
ସୂର୍ଯ୍ୟ ଦେବତାଙ୍କୁ ସଦା ସେବୁଥିଲେ ସତୀ
ତାଙ୍କ ସଙ୍ଗେ ପ୍ରୀତି ଲାଗି ବଳାଇଲେ ମତି ।
ତାଙ୍କର ଔରସେ କର୍ଣ୍ଣଗହ୍ୱରରେ ଜାଣ
ହୋଇଲା କର୍ଣ୍ଣ ନାମରେ ପୁତ୍ର ଉତପନ ।
ଏହିପରି ଜନ୍ମହେଲା କର୍ଣ୍ଣ ମହାବୀର
ତିନ ପୁରେ ଦାନ ପଣେ ସେହୁ ସର୍ବୋପର ।

ଏକ ସପତ୍ନୀ ତହିଁ ଥିଲ ନୃପଙ୍କର
ତାହା ନାମ ମାଦ୍ରୀ ଜନ୍ମ କଲା ଦ୍ୱି କୁମାର ।
ଅଶ୍ୱିନୀ କୁମାର ଆଉ ପାଣ୍ଡୁଙ୍କ ବୀର୍ଯ୍ୟରେ
ଯେଉଁ ଦୁଇ ପୁତ୍ର ଜନ୍ମ ହୋଇଲେ ମହୀରେ ।
ନକୁଳ ଆବର ସହଦେବ ତାଙ୍କ ନାମ
ବୀରମାନଙ୍କ ମଧ୍ୟରେ ଅଟନ୍ତି ଉତ୍ତମ ।
ଏହି ପ୍ରକାର ପଞ୍ଚ ପାଣ୍ଡବଙ୍କ ଜନ୍ମ
କହିଲି କମ୍ବୁ ଅଗ୍ରଜ ହେ ଋଷି ଉତ୍ତମ ।
ଯଦୁବଂଶ ପ୍ରସଙ୍ଗରେ ଆନ ବଂଶମାନ
ବର୍ତ୍ତମାନ ଠିକେ ଠିକେ କରୁଛି ବଖାଣ ।
ଏବେ ସାବଧାନେ ଶୁଣ ମନକର୍ଣ୍ଣ ଦେଇ
ବସୁଦେବଙ୍କ ଭଗିନୀ ଶ୍ରୁତଦେବା ସେହି ।
କାରୁଷ ଦେଶର ନୃପ ବୃଦ୍ଧଶର୍ମା ନାମ
ଶ୍ରୁତଦେବାକୁ ବରିଲେ ସେ ନର ଉତ୍ତମ ।
ହ୍ରୀନ୍ଦ୍ରଙ୍କର ଗର୍ଭେ ଜନମିଲା ପୁତ୍ର ଏକ
ତାହାଙ୍କର ନାମ ଶୁଣ ଅଟେ ଦନ୍ତବକ୍ର ।
ମହା ଅସୁର ପ୍ରକୃତି ଅଟଇ ଯେ ସେହି
ପ୍ରବଳ ପ୍ରତାପି ତାହା ସମ ଆନ ନାହିଁ ।
କେକୟ ନାମେ ରାଜନ ମହା ବଳବାନ
ଶ୍ରୁତ କୀର୍ତ୍ତିକୁ ବିବାହ କଲା ସେହୁ ଜାଣ ।
ସେ ଶ୍ରୁତକୀର୍ତ୍ତି ଯେ ବସୁଦେବର ଭଗିନୀ
ଯଥାକାଳେ ପାଞ୍ଚ ସୁତ ଜନ୍ମିଲା ସେ ପୁଣି ।
ସନ୍ତର୍ଦ୍ଦନ ଆଦି ପଞ୍ଚ କେକୟ ନାମରେ
ସେ ପୁତ୍ରେ ବିଖ୍ୟାତ ହେଲେ ଏ ଧରା ଧାମରେ
ଆରେକ ଭଗିନୀ ଯେହୁଁ ବସୁଦେବଙ୍କର
ଏବେ କହୁଅଛି ଶୁଣ ତାଙ୍କ ସମାଚାର ।
ରାଜାଧି ଦେବୀ ବୋଲିଣ ନାମଟି ତାଙ୍କର
ଅବନ୍ତୀ ନୃପତିବର ଧଇଲା ତା କର ।
ସେହି ଯେ ରାଜାଧି ଦେବୀ ଗର୍ଭରେ ସମ୍ଭୂତ
ଅବନ୍ତୀ ନୃପତି ଔରସରେ ବେନି ପୁତ୍ର ।
ସେ କୁମାର ଦୁହିଙ୍କର ନାମ ଏବେ ଶୁଣ
ବିନ୍ଦ ଅନୁବିନ୍ଦ ବୋଲି ବିଦିତ ଭୁବନ ।
ବସୁଦେବଙ୍କର ଅନ୍ୟ ଭଗ୍ନୀ ଯେ ଅଟଇ
ଶ୍ରୁତଶ୍ରବା ତାର ନାମ ଶୁଣ ମନଦେଇ ।
ଦମଘୋଷ ନାମେ ଚେଦି ରାଜା ବଳବାନ
ଶ୍ରୁତଶ୍ରବାକୁ ସେ ବିଭା ହୋଇଲା ବହନ ।
ତାହାଙ୍କ ବୀର୍ଯ୍ୟରେ ଶ୍ରୁତଶ୍ରବାଙ୍କ ଉଦରେ
ଶିଶୁପାଳ ଜନ୍ମ ଲଭ କଲା ଏ ମହୀରେ ।
ପୂର୍ବଜନ୍ମେ ଶିଶୁପାଳ ଥିଲା ଦୁରାଚାର
ହିରଣ୍ୟ କଶିପୁ ନାମ ଥିଲା ଯେ ତାହାର ।
ସବୁ ଦାନବଙ୍କ ଆଦି ପୁରୁଷ ସେ ଥିଲା
ଅପାର ଅନ୍ୟାୟ କର୍ମମାନ ଆଚରିଲା ।
ସ୍ୱୟଂ ବିଷ୍ଣୁ ନରସିଂହ ଅବତାର ହୋଇ
ତାହାଙ୍କୁ ନିଧନ କଲେ କ୍ରୋଧଭରେ ତହିଁ ।
ସେ ହିରଣ୍ୟ କଶିପୁ ଦୈତ୍ୟ ପୁନର୍ବାର
ରାବଣ ରୂପେ ଜନ୍ମିଲା ତ୍ରେତୟା ଯୁଗର ।
ତାହାପର ବଳବାନ ଜଣେ କେ ନ ଥିଲେ
ଅମର ସମ୍ପଦ ସେହୁ ନେଲା ବାହୁବଳେ ।
ବାର ବାର ହରି ତାଙ୍କୁ କରନ୍ତେ ବିନାଶ
ରାବଣ ରୂପରେ ସେହୁ ହୋଇଲା ପ୍ରକାଶ ।
ସେହି ଦୁଷ୍ଟ ପ୍ରଭୁଙ୍କର କରେ ହେଲା ହତ
ପୁନଶ୍ଚ ଜନ୍ମିଲା ହୋଇ ଦମଘୋଷ ସୁତ ।
ଶିଶୁପାଳ ନାମ ତାର ବିଖ୍ୟାତ ହୋଇଲା
ସେ ପାମର କୃଷ୍ଣ ଠାରେ ଦ୍ରୋହ ଅରଜିଲା ।
ଭୂଭାର ହରଣ ଲାଗି ପ୍ରଭୁ ଭଗବାନ
ଧରଣୀରେ କୃଷ୍ଣ ରୂପେ ହେଲେ ଅବତୀର୍ଣ୍ଣ ।
ତେଣୁ କୃଷ୍ଣ ପ୍ରତି ତାର ଦ୍ୱେଷ ଜନମିଲା
ଅବଲମ୍ବେ ତାକୁ ବିନାଶିଲେ ପଦ୍ମତୋଳା ।
ପରଂବ୍ରହ୍ମ କୃଷ୍ଣେ ଥିଲା ମାନସ ତାହାର
ତେଣୁ ଦ୍ୱେଷଭାବେ ମଜ୍ଜି ଥିଲା ନିରନ୍ତର ।
ସେହି ହେତୁ କୃଷ୍ଣ ଅଙ୍ଗେ ହୋଇଲା ସେ ଲୀନ
ମୋକ୍ଷ ପଦକୁ ଲଭିଲା ପାମର ଦୁର୍ଜ୍ଜନ
ଅନୁକୂଳ ହୋନ୍ତି ଯେବେ ପ୍ରଭୁ ଜନାର୍ଦ୍ଦନ ।
ମୁହୂର୍ତ୍ତକେ ମନୋରଥ କରନ୍ତି ପ୍ରଦାନ ।
ପ୍ରତିକୂଳ ହୋଇ ଯାକୁ କରନ୍ତି ବିନାଶ
ଦେବଲୋକେ ଦିଅନ୍ତି ତାକୁ ଅନୁପମ ବାସ ।
ଅନୁକୂଳ ପ୍ରତିକୂଳ ଉଭୟ ଭାବରେ
ଦୁଷ୍ଟ ପ୍ରାଣୀଙ୍କି ନାଶନ୍ତି ନିଜ ସ୍ୱଭାବରେ ।
ସୂତ ମହର୍ଷି ବଦନ୍ତି ଆହେ ତପୋଧନ
ଶ୍ରୀହରିଙ୍କ ପାଦପଦ୍ମେ ସଦା ଦିଅ ମନ ।
ମୁକ୍ତି ଲଭ ହେବ ଏଥି ନାହିଁଟି ସଂଶୟ
ଜାଣ ଏ ସଂସାର ଅଟେ ହଳାହଳ ମୟ ।

ଏକା ଶ୍ରୀହରି କେବଳ ଏ ସଂସାରେ ସାର
ପଞ୍ଚମୁଖେ ଶିବ ଗୁଣ ଗାନ୍ତି ଯାହାଙ୍କର ।
ଅନନ୍ତ ଅନନ୍ତ କାଳ ସେବେ ଯା ପଦ୍ମରେ
ଏମନ୍ତ ହରିଙ୍କ ଗୁଣ କେବା ବର୍ଣ୍ଣି ପାରେ ।
ସୃଷ୍ଟି ସ୍ଥିତି ପ୍ରଳୟର କର୍ତ୍ତା ଯେଉଁ ହରି
ତାହାଙ୍କ ମହିମା କିଏ ବର୍ଣ୍ଣିବ କିପରି ।
ଅପାର ମହିମା ତାଙ୍କ ସୀମା କେ ପାଇବ
ଗୁଣାତୀତ ନିରାକାର ମୁକୁନ୍ଦ ମାଧବ !
ଲୀଳାରଙ୍ଗେ କେତେ ଖେଳେ ଖେଳନ୍ତି ଆପଣେ
ମାରନ୍ତି ତାରନ୍ତି ସେହି ନିଜ ଦୟା ଗୁଣେ ।
ଏମନ୍ତେ ସୂତ ମହର୍ଷି ପୁରାଣ ବକତା
ପ୍ରକାଶ କଲେ ସେ ଋଷି ମେଳେ ଏହି କଥା ।
ପରଂବ୍ରହ୍ମ ଶ୍ରୀଗୁରୁଙ୍କ ନାମ ହୃଦେ ଧ୍ୟାୟି
ଦୀନ କ୍ଷେତ୍ରମୋହନ ଏ ଗ୍ରନ୍ଥ ବିରଚଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଯଦୁବଂଶ ଚରିତ
ବର୍ଣ୍ଣନ ନାମ ଊନବିଂଶୋଽଧ୍ୟାୟଃ ।

—:—

## ବିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣଙ୍କ ଜନ୍ମ ସମ୍ବନ୍ଧେ
## ଯଦୁ ବଂଶୀୟ ସଂଖ୍ୟା ନିରୂପଣ

### ଶୌନକ ଉବାଚ

ଶୌନକ ପୁଚ୍ଛିଲେ ଆହେ ସୂତ ତପୋଧନ
ଆମ୍ଭ ଅଗ୍ରତରେ ଯାହା କରିଲ ବଖାଣ ।
ଶ୍ରବଣ କରି ସକଳ ମୁନିମାନେ ଆମ୍ଭେ
ଚକିତ ମଣୁଛୁଁ ମନେ ବିଶେଷରେ ଏବେ ।
କୁହନ୍ତୁ ହେ ସୂତ ମୁନି ସଂଶୟ ଫିଟାଇ
ଯାହା ପଚାରୁଛୁଁ ଆମ୍ଭେ ଶୁଣିବାର ପାଇଁ ।
ସଙ୍ଖେପି ପ୍ରକାଶ କରି ସିଦ୍ଧ ତପୋଧନ
ଯେମନ୍ତେ ଆମ୍ଭ ସନ୍ଦେହ ହୋଇବ ମୋଚନ ।
ସତ୍ୟ ଆଉ ତ୍ରେତାଯୁଗେ ଯେ ଦୁଇ ଦୁର୍ଜ୍ଜନ
ହିରଣ୍ୟ କଶିପୁ ଆଉ ଲଙ୍କାର ରାବଣ ।
ଏ ଦୁଇ ଦୁଷ୍ଟଙ୍କୁ ହରି ନିଜେ ବିନାଶିଲେ
ପୁନରପି ପରଜନ୍ମେ କେତେ ଯେ ଭୋଗିଲେ
ବିଷ୍ଣୁଙ୍କ ହାତେ ମରି ସେ ଦୁଷ୍ଟ ଦୁଇଜଣ
କି କାରଣେ ବିଷ୍ଣୁ ଦେହେ ନ ହୋଇଲେ ଲୀନ
ଶିଶୁପାଳ କେଉଁ ହେଲ ବିଷ୍ଣୁ ଅଙ୍ଗେ ଲୟ
ଏଥିର କାରଣ ଭଲେ ଆମ୍ଭ ଆଗେ କହ ।
ଏଥି ଯେ କୌତୁକ ଜନ୍ମେ ମନରେ ଆମ୍ଭର
କୃପାଶତ୍ତେ ଏ ବିଷୟ କହ ଧୀଙ୍କାର ।
ପୌରାଣିକ ସୂତ ମୁନି ଏମନ୍ତ ଶୁଣିଣ
କହି ଆରମ୍ଭିଲେ କରି ଶ୍ରୀହରି ସ୍ମରଣ ।

### ସୂତ ଉବାଚ

ଶୁଣ ଆହେ ଶଉନକ ଆଦି ମୁନିଗଣ
କହୁଛି ମୁଁ ତୁମ୍ଭ ଆଗେ ବିଶେଷ ଘଟଣ ।
ସୃଜନ ପାଳନ ସଂହାରଣ ତିନି ଲୀଳା
ସେହି ପରଂବ୍ରହ୍ମ କରୁଥାନ୍ତି ଏହି ଖେଳା ।
ସେହି ପ୍ରଭୁଙ୍କର ଲୀଳା ଅପୂର୍ବ କଥନ
କାହାକୁ କି ନ କରନ୍ତି ଜଗତ ଜୀବନ ।
ହିରଣ୍ୟ କଶିପୁ ବଧ କରିବା ନିମନ୍ତେ
ନରସିଂହ ସ୍ୱରୂପ ଧରିଲେ ଅକସ୍ମାତେ ।
ହିରଣ୍ୟ କଶିପୁ ଦୈତ୍ୟ ଆପଣାର ମନେ
ଶ୍ରୀବିଷ୍ଣୁଙ୍କୁ ହେୟଜ୍ଞାନ କରେ ସବୁ ଦିନେ ।
ନୃସିଂହ ରୂପକୁ ସେହି କରି ଦରଶନ
ମନ ମଧ୍ୟରେ ଆଶ୍ଚର୍ଯ୍ୟ ହୋଇଲା ଦୁର୍ଜ୍ଜନ ।
ରଜୋଗୁଣେ ତାର ମନ ଉଛନ୍ନ ହୋଇଲା
ପୁଣି ସେ ନୃସିଂହ ମୂର୍ତ୍ତି ଭାବିଣ ଲାଗିଲା ।
ସେ ସମୟେ ନାଶ କଲେ ତାକୁ ଯଦୁପତି
ଏଇଥି ନିମନ୍ତେ ଆନ ଜନ୍ମେ ସେ ଦୁର୍ମତି ।
ବିଂଶ ବାହୁ ହୋଇ କଲା ଜନମ ଗ୍ରହଣ
ହୋଇଲା ସେ ତ୍ରିଭୁବନ ଅଧିପତି ଜାଣ ।
ମରଣ କାଳରେ ବ୍ରହ୍ମେ ନ କରି ସେ ଲୟ
ଶତ୍ରୁ ଭାବରେ ଦେଖିଲା ତାଙ୍କୁ ଦୁରାଶୟ ।
ତେଣୁ ଶ୍ରୀହରିଙ୍କ ପାଦେ ଲୀନ ନ ହୋଇଲା
ତାର ବାର ମର୍ତ୍ତ୍ୟମଣ୍ଡଳରେ ଜନ୍ମ ହେଲା ।
ହିରଣ୍ୟ କଶିପୁ ଦୈତ୍ୟ ବଡ଼ ଦୁରାଚ୍ଛର
ଯେ କାଳେ ରାବଣ ରୂପେ ଜନ୍ମ ହେଲା ତାର ।

ଚଉଦ ଭୁବନ ସେହୁ ବଳରେ ଜିଣିଲା
ନାଗ ନର ଦେବତାଙ୍କୁ ପାଦେ ଖଟାଇଲା ।
ରଖିଲା ସେ ସମସ୍ତଙ୍କୁ ଆପଣା ଆୟତେ
ଇନ୍ଦ୍ର ବ୍ରହ୍ମା ଆଦି ଦେବେ ତାର କରଗତେ
ଛପନ ଗଣ୍ଡା ଯୁଗକୁ ବର ଆଣିଥିଲା
ପରଂବ୍ରହ୍ମଙ୍କ ଘରଣୀ ଯେଣୁ ଚୋରାଇଲା ।
ସୀତା ହରଣ ରାବଣ ମରଣ ଏ ବାଣୀ
ଘର କାନ୍ଥ ବାଡେ ତାର ଲେଖାଥିଲା ପୁଣି ।
ଜାଣି ଶୁଣି ଏହା ବିଷ୍ଣୁ ପତ୍ନୀଙ୍କୁ ହରିଲା
ଆପଣା ମରଣ ପଥ ପରିଷ୍କାର କଲା ।
ରାମ ପରଂବ୍ରହ୍ମ ବୋଲି ନ କଲା ବିଶ୍ୱାସ
ନିଜେ ଆଣି ଘଟାଇଲା ନିଜ ସର୍ବନାଶ ।
ରାମଙ୍କୁ ମାନବ ଭାବି କଲା ବେଖାତିର
ଦୁର୍ବୁଦ୍ଧି ବିଶିଲା ଯେଣୁ ନ ଭାବିଲା ସ୍ଥିର ।
ରାମଙ୍କ ହସ୍ତେ ଯେବେଳେ ମୃତ୍ୟୁ ହେଲା ତାର
ସେ କାଳେ ସୁବୁଦ୍ଧି ଉଦେ ହୋଇଲା ଦୁଷ୍ଟର
ରାମହସ୍ତେ ମୃତ୍ୟୁ ହେତୁ ମହା ପୁଣ୍ୟବଳେ
ଜନ୍ମିଥିଲା ଶ୍ଳାବଣୀୟ ଚେଦିରାଜ କୁଳେ ।
ଶିଶୁପାଳ ନାମରେ ସେ ବିଖ୍ୟାତ ହୋଇଲା
ସେହିହେତୁ ପରଂବ୍ରହ୍ମ ଦ୍ରୋହ ଅରଜିଲା ।
ଏହି ଜନ୍ମେ ତାର ବିଷ୍ଣୁ ନାମ ଉଚ୍ଚାରଣେ
ନାନା ସଙ୍ଘଟନ ଘଟେ ଅନେକ କାରଣେ ।
କୃଷ୍ଣ ପ୍ରତି ହିଂସା ଭାବ ସର୍ବଦା ତାହାର
ପୂର୍ବ ଦୁଇ ଜନ୍ମେ ଯାହା ଅଛି ଅନିବାର ।
ସେହି ଶିଶୁପାଳ କୃଷ୍ଣେ ଦ୍ରୋହ ଅରଜିଲା
ଦିବାନିଶୀ ସେହୁ କୃଷ୍ଣେ ଅପବାଦ ଦେଲା ।
ପ୍ରଗାଢ଼ ଭାବରେ ହିଂସା ହେଲା ତାର ମନେ
ଗମନେ ଭୋଜନେ ଆଉ ଶୟନେ ସ୍ୱପନେ ।
ସକଳ କାର୍ଯ୍ୟରେ ଦ୍ରୋହ କଲା ବିଷ୍ଣୁଠାରେ
ବିଷ୍ଣୁ ବିଦ୍ୱେଷ ଆଣିଛୁ ସର୍ବଦା ମନରେ ।
କୃଷ୍ଣ ମୂରତିକୁ ସଦା ନିନ୍ଦା କରୁଥାଇ
ସାମାନ୍ୟ ମନୁଷ୍ୟ ବୋଲି ଚିତ୍ତରେ ଭାବଇ ।
ନ କରେ ବିଶ୍ୱାସ ସେହୁ ଜଗତର ନାଥ
ମାତ୍ର ଭାବେ କୃଷ୍ଣ ଯଦୁକୁଳ ନରନାଥ ।
ଏମନ୍ତେ ଭାବନା ତାର ଥାଏ ମନେ ମନେ
ଦ୍ୱେଷ ଭାବେ କୃଷ୍ଣ କୃଷ୍ଣ ଉଚ୍ଚାରେ ବଦନେ
ଦୟାରବତାର ସେହି କମଳ ଲୋଚନ
ପୀତାମ୍ବରଧାରୀ ବିଷ୍ଣୁ କେୟୁର ଭୂଷଣ ।
ଚତୁର୍ଭୁଜ ଶଙ୍ଖ ଚକ୍ର ଗଦା ପଦ୍ମଧର
ତାର ହୃଦେ ବିଷ୍ଣୁ ମୂର୍ତ୍ତି ଯୋଗେ ନିରନ୍ତର
ଯେତେବେଳେ ଶିଶୁପାଳ ମହା କ୍ରୋଧଭରେ
ବାରମ୍ବାର କୃଷ୍ଣନାମ ଉଚ୍ଚାରଣ କରେ ।
କୃଷ୍ଣମୂର୍ତ୍ତି ଯେଉଁକାଳେ ହୃଦୟେ ତାହାର
ସେହିକାଳେ ଦୟାନିଧି କ୍ଷମାର ସାଗର ।
ତାକୁ ମରିବାକୁ ଚକ୍ର କରନ୍ତି କ୍ଷେପଣ
ସେକାଳରେ ଶିଶୁପାଳ କଲା ଦରଶନ ।
ଚକ୍ରର କିରଣେ ଉଜ୍ଜଳିଲା ତା ଶରୀର
କ୍ରୋଧ ହିଂସା ବିବର୍ଜିତ ବ୍ରହ୍ମ ପରାତ୍ପର ।
ପରଂବ୍ରହ୍ମଙ୍କୁ ଯେ କାଳେ କରି ଦରଶନ
ଚକ୍ରରେ ସେ ଶିଶୁପାଳ ତେଜିଲା ଜୀବନ ।
ବିଷ୍ଣୁଙ୍କ ଚକ୍ରରେ ଯେବେ ହୁଏ ପାପ କ୍ଷୟ
ତକ୍ଷଣେ ଛେଦନ୍ତି ତାକୁ ପ୍ରଭୁ ଦୟାମୟ ।
ସେହି ହେତୁ ଶିଶୁପାଳ ଚେଦି ରାଜେଶ୍ୱର
ଲୀନହେଲା ହରିପାଦେ ଆହେ ମୁନିବର ।
ତବ ପାଶେ ମୁହିଁ ଏହା ସକଳ କହିଲି
ହିଂସାରେ କେ ରଟେ ଯଦି ହରି ବନମାଳୀ
କି ଅବା ହିଂସା ଭାବରେ କରଇ ସ୍ମରଣ
ତହିଁରେ ମଧ୍ୟ ମୁକତି ଲଭେ ସେହି ଜନ ।
ହରି ଭକ୍ତ ହୃଦେ ରଖି ନାମ ସଂକୀର୍ତ୍ତନେ
ଅଥବା ସର୍ବଦା ଯେବା ସୁମରଇ ମନେ ।
ଚଞ୍ଚଳ ସେ ମୁକ୍ତି ଲଭେ ନାହିଁଟି ସଂଶୟ
କୃଷ୍ଣଙ୍କୁ ସ୍ମରିଲେ ହେବେ ମୁକତ ନିଶ୍ଚୟ ।
ଆନନ୍ଦ ଦୁନ୍ଦୁଭି ବସୁଦେବ ଯେ ସୁମନ୍ତ
ତାହାର ଅନେକ ପତ୍ନୀ ଥିଲେ ଗୁଣବନ୍ତ ।
ପୁରୁବଂଶେ ଜାତ ସତୀ ରୋହିଣୀ ସୁନ୍ଦରୀ
ଦେବକୀ ମଦିରା ଭଦ୍ରା ସର୍ବେ କୃଶୋଦରୀ ।
ବସୁଦେବର ଔରସେ ରୋହିଣୀ ଉଦରେ
ଚାରି ପୁତ୍ର ଜନମିଲେ ଯଥା ସମୟରେ ।
ସେମାନଙ୍କ ନାମ ଏବେ କର ହୃଦବୋଧ
ଶାରଣ ଶଠ ମୃଷଳୀ ଆବର ଦୁର୍ମ୍ମଦ ।
ହଳଧାରୀ ବଳରାମ ଦେବ ସଙ୍କର୍ଷଣ
ରେବତୀ ଦେବୀତ କଲେ ସେ ପାଣି ଗ୍ରହଣ ।

ତା ଗର୍ଭରେ ଦୁଇ ପୁତ୍ର ଜାତ କଲେ ହଳୀ
ସେହି ବେନି ସୋଦର ଅଟନ୍ତି ମହାବଳୀ ।
ଜ୍ୟେଷ୍ଠ ପୁତ୍ର ନାମଟି ଯେ ଉନ୍ମୁଖ ବୀର
ନିଶଠ ନାମ ବିଖ୍ୟାତ କନିଷ୍ଠ ପୁତ୍ରର ।
ଶାରଣର ଜନମିଲେ ବହୁତ ନନ୍ଦନ
ସେମାନଙ୍କ ନାମ ଥୋକେ କହୁଅଛି ଶୁଣ ।
ମାର୍ଷ୍ଟି ମାର୍ଷ୍ଟିମାନ ଶିଶି ଶିଶୁ ସତ୍ୟ ଧୃତି
ଏହିମାନେ ତାଙ୍କ ମଧ୍ୟେ ଶ୍ରେଷ୍ଠ ଯେ ବୋଲନ୍ତି
ଭଦ୍ରବାହୁ ଭଦ୍ରାଶ୍ୱ ଦୁର୍ଦ୍ଦମ ଆଉ ଭୂତ
ରୋହିଣ ଗର୍ଭେ ଏମାନେ ହୋଇଲେ ସମ୍ଭୂତ
ଉପାନନ୍ଦ ନନ୍ଦ ଆଉ କୃତକ ପ୍ରଭୃତି
ମଦିରା ଦେବୀର ଗର୍ଭେ ହେଲେ ଉତପତ୍ତି ।
ଭଦ୍ରାର ନନ୍ଦନ ଗଦ ଉପନିଧି ଜାଣ
କୌଶିକ ଏକଇ ପୁତ୍ର ବୈଶାଳୀର ପୁଣ ।
ବସୁଦେବର ଔରସେ କୌଶିକ ଜନ୍ମିଲ
ଦେବକୀଙ୍କ ଗର୍ଭେ ଛଅଗୋଟି ପୁତ୍ର ହେଲ
ଶୁଣ ତୁମ୍ଭେ ସେହି ଛଅପୁତ୍ରଙ୍କର ନାମ
ଏକେ ଏକେ କରୁଛି ମୁଁ କ୍ରମରେ ବଖାଣ ।
ଭଦ୍ରସେନ ସୁଷେଣ ଯଦ୍ୟପି କୀର୍ତ୍ତିମାନ
ଭଦ୍ରଦେହ ଋଜୁଦାସ ଏ ଛଅ ସନ୍ତାନ ।
ଏ ଷଡ଼ ପୁତ୍ରଙ୍କୁ ନିଜେ କଂସ ଦୁରାଚାର
କ୍ରମେ କ୍ରମେ ରୋଷଭରେ କଲା ଯେ ସଂହାର
ଅର୍ଦ୍ଧ ଯାମ ରଜନୀ ହୁଅନ୍ତେ ଏକଦିନ
ଯୋଗ ନିଦ୍ରାଙ୍କୁ ପଠାଇ ଦେଲେ ଭଗବାନ
ଦେବକୀର ସପ୍ତମ ଗର୍ଭକୁ ଆକର୍ଷଣେ
ରୋହିଣୀ ଗର୍ଭରେ ସ୍ଥାପି ଚଳିଲେ ସ୍ୱସ୍ଥାନେ ।
ତେଣୁ ବଳଭଦ୍ର କଲେ ଜନମ ଗ୍ରହଣ
ଆକର୍ଷଣ ହେତୁ ନାମ ହେଲା ସଙ୍କର୍ଷଣ ।
ଏହି ଜଗତରେ ବୀଜ ରୂପ ଯେ ସାକ୍ଷାତେ
ପଶୁ ପକ୍ଷୀ ଦେବ ଦୈତ୍ୟ ଆଦି ପ୍ରାଣୀ ଯେତେ
ଜ୍ଞାନର ଅଜ୍ଞାତ ଯେହୁ ଯମ ଅଗୋଚର
ଅନନ୍ତ ଅନାଦି ସେ ଅଟନ୍ତି ପରାତ୍ପର ।
ସେହି ଭଗବାନ ଆଦି ଦେବ ସନ୍ନିଧାନେ
ପବନ ଅନଳ ଆଦି ଯେତେ ଦେବଗଣେ ।
ଉପସ୍ଥିତ ହୋଇ ସର୍ବେ କରିଣ ପ୍ରଣତି
ତାଙ୍କୁ ସୁପ୍ରସନ୍ନ କରି କହିଲେ ଭାରତୀ ।

ପୃଥ୍ୱୀଭାର ହରଣେ ହୁଅ ଅବତାର
ଅସହ୍ୟ ସହି ନୁହଇ ଦୁର୍ବୃତ୍ତର ଭାର ।
ଦେବତାଙ୍କର ପ୍ରାର୍ଥନା ପୂରଣ କାରଣେ
ବ୍ରହ୍ମାଣ୍ଡର ନାଥ ପ୍ରଭୁ ସ୍ୱୀକୃତ ଆପଣେ ।
ଦେବକୀ ଦେବୀର ଗର୍ଭେ ଲଭିଲେ ଜନମ
ଦୟାମୟ ଦୁଃଖହାରୀ ପୁରୁଷ ଉତ୍ତମ ।
ତାହାଙ୍କ କୃପାରେ ଯୋଗନିଦ୍ରାର ଯେ ଗୁଣ
ସନମାନ ବୃଦ୍ଧି ହେଲା ଆହେ ମୁନିଗଣ ।
ମହାମାୟା ଅମ୍ବିକା ସେ ଶିବଙ୍କ ଘରଣୀ
ଜନମ ଲଭିଲେ ସର୍ବ ଶୁଭ ବେଳା ଜାଣି ।
ଯଶୋଦା ଯେ ଗୋପ ପତ୍ନୀ ନନ୍ଦ ଗୋପ ପତି
ତାହାଙ୍କ ଭୁବନେ ଯୋଗନିଦ୍ରା ଉତପତ୍ତି ।
ଯଶୋଦା ଗର୍ଭରେ ନିଦ୍ରାକଲେ ଅବସ୍ଥାନ
ଏହା ନ ଜାଣନ୍ତି କେହି ଗୋକୁଳର ଜନ ।
ବିଷ୍ଣୁ ଯେତେ ବେଳେ କଲେ ଜନମ ଗ୍ରହଣ
ଅନୁକୂଳ ରହିଥିଲେ ସର୍ବ ଗ୍ରହଗଣ ।
ହିଂସା ଭୟ ଜଗତରେ କିଛି ନ ରହିଲା
ପାପ ତାପ ରୋଗ ଶୋକ ସବୁ ପଳାଇଲା ।
ପ୍ରଭୁ ସେଠାବରେ କରି ଜନମ ଗ୍ରହଣ
ସମସ୍ତଙ୍କୁ ସତ୍ୟପଥେ କରିଲେ ଚାଳନ ।
ପରଂବ୍ରହ୍ମ ମରତରେ ଅବତୀର୍ଣ୍ଣ ହେଲେ
ଷୋଳ ସହସ୍ର ଏକନାରୀ ବିବାହ କରିଲେ ।
ତାଙ୍କ ମଧ୍ୟେ ପାଟରାଣୀ ରୁକ୍ମିଣୀ ସୁନ୍ଦରୀ
ଜମ୍ବୁବତୀ ସତ୍ୟଭାମା ଶୁଶୀଳାଦି କରି ।
ମିତ୍ରବିନ୍ଦା ସୁନନ୍ଦା ଯେ ପୁଣି ନାଗ୍ନଜିତୀ
ଲକ୍ଷ୍ମଣା ସହିତେ ଅଷ୍ଟପାଟ ବଂଶୀ ସତୀ ।
ରାଜ ଦୁଲାଳୀ ଏମାନେ ସମସ୍ତେ ଅଟନ୍ତି
ରାଜସିକ କନ୍ୟାହେତୁ ସାତ୍ତ୍ୱିକା ନୁହନ୍ତି ।
ସବୁ ରାଣୀଙ୍କ ମଧ୍ୟରେ ଏହି ଆଠରାଣୀ
ଶ୍ରେଷ୍ଠାବୋଲି ବ୍ୟାସମୁନି ଅଛନ୍ତି ବଖାଣି ।
ଏହି ଆଠ କୃଶୋଦରୀ ପରମା ସୁନ୍ଦରୀ
କୃଷ୍ଣଚନ୍ଦ୍ରଙ୍କର ସର୍ବେ ପ୍ରିୟା ମନୋହାରୀ ।
ପ୍ରତ୍ୟେକ ରମଣୀ ଗର୍ଭେ ପ୍ରଭୁ ବାସୁଦେବ
ଅପାର ସନ୍ତାନ କରାଇଲେ ଯେ ଉଦ୍ଭବ ।
ତାହାଙ୍କର ଏକଲକ୍ଷ ଯେ ଅଶି ହଜାର
ସନ୍ତାନ ଜନ୍ମିଲେ ତାଙ୍କମଧ୍ୟେ ଶ୍ରେଷ୍ଠତର ।

ଶୁଣ କହୁଅଛୁ ସେମାନଙ୍କ ନାମମାନ
ଚାରୁଦେଷ୍ଣ ନାମେ ପୁତ୍ର ମହା ଗୁଣବାନ ।
ପ୍ରଦ୍ୟୁମ୍ନ ଆବର ଶାମ୍ବପୁତ୍ର ଆଦିଗଣେ
ମହା ପରାକ୍ରମ ଶାଳୀ ଅଟନ୍ତି ଯେ ଗୁଣେ ।
ରୁକ୍ମୀ ରାଜାର କନ୍ୟା ନାମ କକୁଦ୍ବତୀ
ପ୍ରଦ୍ୟୁମ୍ନର ମନୋହାରୀ ହୋଇଲା ସେ ସତୀ ।
ତାହାର ଉଦରୁ ଅନିରୁଦ୍ଧ ଜନମିଲା
ପୁଣି ରୁକ୍ମ ନାତୁଣୀଙ୍କୁ ଅନିରୁଦ୍ଧ ନେଲା ।
ବଜ୍ରନାଭ ଜନମିଲା ଉଦରୁ ତାହାର
ଏହାପରେ ଆନଗାଥା ଶୁଣ ଋଷିବର ।
ପ୍ରତିବାହୁ ହୋଇଲା ସେ ବଜ୍ରର ସନ୍ତାନ
ସୁବାହୁ ଅଟେ ତା ପୁତ୍ର ଶୁଣ ଦେଇ ମନ ।
ଏମନ୍ତ ଶତ ସହସ୍ର ସୁତ ଯଦୁକୁଳେ
ବୀର୍ଯ୍ୟବନ୍ତ ଜ୍ଞାନବନ୍ତ ହୋଇଲେ ସକଳେ ।
ତାହାଙ୍କର ନାମ କେବା କେହୁ ସଂଖ୍ୟାକରେ
ବରଣୀ ନୋହିବ ଯାହା ଲେଖନ୍ତି ମୁନିରେ ।
ଯେଉଁ ଶ୍ଳୋକମାନ ଏହା ମଧ୍ୟେ ଅଛୁ ରହି
ତାହା ଶୁଣି ତବମନ ଯିବ ତୋଷ ହୋଇ ।
ଅସ୍ତ୍ରଶିକ୍ଷା ଦେବାପାଇଁ ଯାଦବ କୁମରେ
ଗୃହାଚାର୍ଯ୍ୟମାନେ ହେଲେ ନିଯୁକ୍ତ ଯେ ପୁରେ
ସେମାନଙ୍କ ସଂଖ୍ୟାମାନ ଶୁଣ ହେ ଶୌନକ
ତିନକୋଟି ଅଶୀଲକ୍ଷ ହିସାବରେ ଲେଖ ।
ଯେତେକ କୁମର ଯଦୁବଂଶରେ ଜନ୍ମିଲେ
ସଂଖ୍ୟା କରିବା ସହଜ ନୁହେ କାଳେ କାଳେ
ଆନୁମାନିକ ଯେ ଏକ ପଦ୍ମ ଦଶଗୋଟି
ଏହିବଂଶେ ଜନ୍ମ ଲଭିଥିଲେ ଏ ଧରଣୀ ।
ଦେବ ଦାନବ ଯୁଦ୍ଧରେ ସକଳ ଦଇତ
ଯଦୁବଂଶରେ ଆସିଣ ହେଲେ ଉତପତ ।
ବୋଲାଇଲେ ଯଦୁବଂଶୀ ବୋଲି ଭବେ ସେହି
କୃଷ୍ଣପୁତ୍ର ବୋଲି ତାଙ୍କ ଗର୍ବ କହି ନୋହି ।
ଦିନକୁ ଦିନ ସେମାନେ ନାନା ଅଖାତର
କରିଲେ ନ ମାନିବାରେ ଦେଖାଇ ଗୃତର ।
ଏମନ୍ତ ରୀତି ତାଙ୍କର ଦେଖି ଯଦୁପତି
ବିନାଶ କରିବା ପାଇଁ ବିଚାରିଣ ମତି ।
ଯଦୁବଂଶ ନାଶିବାକୁ ବ୍ରହ୍ମଶାପ ଛଳେ
ଅବତୀର୍ଣ୍ଣ ହେଲେ ହରି ଏ ମର୍ତ୍ତ୍ୟମଣ୍ଡଳେ ।
ଯୁଗେ ଯୁଗେ ନାରାୟଣ ଏହି ପରକାର
ଧରାଭାର ଉଶ୍ୱାସନେ ହୋନ୍ତି ଅବତାର ।
ଏକାଧିକ ଶତଅଂଶ ଏହି ଯଦୁକୁଳେ
ବିଭକ୍ତ ହୋଇଲେ ଜାଣ ଏ ଧରଣୀ ତଳେ
ବିଷ୍ଣୁଙ୍କୁ ସମ୍ମାନ କଲେ ଯଦୁବଂଶ ବୀର
ସେହିପ୍ରଭୁ ଶ୍ରେଷ୍ଠ ହେଲେ ତାହାଙ୍କ ମଧ୍ୟର ।
ତାହାଙ୍କ ବଂଶରେ ଯେତେ ଯାଦବ ଥାଆନ୍ତି
ଏକାନ୍ତ ଭାବରେ କୃଷ୍ଣେ ଭକତି କରନ୍ତି ।
ଯଦୁବୀର ମାନଙ୍କର ବଂଶ ବିବରଣ
ଯେ ଜନ ଏକାନ୍ତ ମନେ କରନ୍ତି ଶ୍ରବଣ ।
ମୁକତ ଲଭନ୍ତି ମହା ମହା ପାପୁଁ ସେହି
ମରଣ ଅନ୍ତେ ସ୍ୱରଗେ ବସନ୍ତି ସେ ଯାଇ ।
ବିଷ୍ଣୁଙ୍କର ବଂଶ କଥା ଶୁଣେ ଯେଉଁ ଜନ
ହାନି ନ ହୁଅଇ ତାର ବଂଶ କଦାଚନ ।
ମହା ବଳବନ୍ତ ହୋନ୍ତି ପୁତ୍ର ନାତି ତାର
ବଞ୍ଚିଥାଏ ଯାଏ ସୁଖ ଲଭେ ସେ ଅପାର ।
ଯାଦବ ମାନଙ୍କ ନାମ ଯେ ଗାଏ ବଦନେ
କେବେହେଁ ଅଶାନ୍ତି ନ ପଶଇ ତାର ମନେ
ପରମ ଦୟାଳୁ ହରି ଯଦୁକୁଳ ଚନ୍ଦ୍ର
ଦୟାବନ୍ତି ବିନାଶନ୍ତି ତାହାର ବିପଦ ।
ଏମନ୍ତେ ସେ ସୁତମୁନି ପୁରାଣ ବକତା
ମୁନିମେଳେ ବଖାଣିଲେ ଯଦୁବଂଶ କଥା ।
ଶ୍ରବଣକରି ସକଳ ତାପସ ମଣ୍ଡଳୀ
କୃଷ୍ଣଗୁଣ ସୁମରିଲେ ପ୍ରେମ ଅଶ୍ରୁ ଢାଳି ।
ପରମ ପବିତ୍ରମୟ ଏ ବ୍ରହ୍ମ ପୁରାଣ
ନର ନାରୀମାନେ ଶୁଣି ଲଭ ପରିତ୍ରାଣ ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଭାଷା ପ୍ରବନ୍ଧେ ସ୍ୱା କ୍ଷେତ୍ରମୋହନ ଲେଖଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ
ଯଦୁବଂଶୀୟ ସଂଖ୍ୟାନିରୂପଣେ
ନାମ ବିଂଶୋଽଧ୍ୟାୟଃ ।



## ଏକତ୍ରିଂଶ ଅଧ୍ୟାୟ
## ଯଦୁଭ୍ରାତା ତୁର୍ବସୁ ବଂଶ ବିବରଣ
### ସୂତ ଉବାଚ

ଏଥୁଅନନ୍ତରେ ସୂତ କହନ୍ତି ହରଷେ
ଶୌନକ ଆଦି ସକଳ ମୁନିଙ୍କର ପାଶେ ।
ଶୁଣ ହେ ନୈମିଷ ବନବାସୀ ସାଧୁଗଣ
ଯଦୁଭ୍ରାତା ତୁର୍ବସୁଙ୍କ ବଂଶ ବିବରଣ ।
ତୁମ୍ଭ ଆଗେ ପ୍ରକାଶିବି ଯଥାର୍ଥରେ ମୁହିଁ
ଏକମନେ ସର୍ବେ ଶୁଣ ଧୀରସ୍ଥିର ହୋଇ
ଯଯାତି ନୃପତିଙ୍କର ଅନ୍ୟ ଯେ ସନ୍ତତି
ତୁର୍ବସୁ ବୋଲିଣ ଖ୍ୟାତ ଏହି ବସୁମତୀ ।
ବହ୍ନି ନାମରେ ତୁର୍ବସୁ ନନ୍ଦନ ହୋଇଲା
ମହାବିଷ୍ଣୁ ପରାୟଣ ସେ ଜନ ମେ ହେଲା ।
ଗୋଭାନୁ ନାମରେ ସେହି ବହ୍ନିର ତନୟ
ସର୍ବ ସୁଲକ୍ଷଣବନ୍ତ ଧୀର ଅତିଶୟ ।
ଗୋଭାନୁର ପୁତ୍ର ନାମ ତ୍ରୈଶାନୁ ଅଟଇ
ତାହାର କୁମର ନାମ କରନ୍ଧମ ହୋଇ ।
ମରୁତ ନାମେ ଯେ ସେହି ତ୍ରୈଶାନୁ କୁମର
ଅପତ୍ୟ ନ ଥିଲେ କେହି ରାଜା ମରୁତର ।
ସେ ମରୁତ ଶୋଷ୍ୟପୁତ୍ର କଲେକ ଗ୍ରହଣ
ପୁରୁବଂଶରେ ଜନମ ସେ ପୋଷ୍ୟ ନନ୍ଦନ ।
ଏହିରୂପେ ଯଯାତିଙ୍କ ଅଭିଶାପ ବଶେ
ତୁର୍ବସୁର ବଂଶ ମିଶି ଅଛି ପୁରୁବଂଶେ ।
ତୁର୍ବସୁ ବଂଶ ଚରିତ ସଞ୍ଚପି କହିଲି
ଶୁଣି ଏବେ ଦ୍ରୁହ୍ୟୁବଂଶ ଅଟଇ ଯେଭଳି ।
ଯଯାତିଙ୍କ ଅନ୍ୟପୁତ୍ର ଦ୍ରୁହ୍ୟୁ ନାମ ଯାର
ବଭ୍ରୁ ନାମରେ ନନ୍ଦନ ହୋଇଲା ତାହାର ।
ବଭ୍ରୁଠାରୁ ସେତୁ ନାମେ ଜନ୍ମିଲା କୁମର
ସେତୁର ପୁତ୍ର ଆନନ୍ଦ ନାମ ଅଧେ ଯାର ।
ଆନନ୍ଦର ସୁତ ନାମ ଗାନ୍ଧାର ବିଦିତ
ଘର୍ମ୍ମ ନାମଧାରୀ ସେହୁ ଗାନ୍ଧାରର ସୁତ ।
ଘର୍ମ୍ମର ନନ୍ଦନ ଯେଉଁ ଅଘୃତ ତା ନାମ
ସେହି ଅଘୃତ ପୁତ୍ର ନାମ ଯେ ଦୁର୍ଗମ ।
ଦୁର୍ଗମଠାରୁ ପ୍ରଚେତା ନାମେ ଜନ୍ମେ ସୁତ
ପ୍ରଚେତାର ଜନମିଲେ ଶଏଗୋଟି ପୁତ୍ର ।
ଅଧର୍ମରେ ରତ ହୋଇ ସେହି ଶତ ଭାଇ
ଉଦୀଚ୍ୟ ମ୍ଳେଚ୍ଛଙ୍କ ନୃପ ହେଲେ ସର୍ବେ ଯାଇ
ଏକ ଆଧିପତ୍ୟ ସେହୁ କରନ୍ତି ସ୍ଥାପନ
ମ୍ଳେଚ୍ଛ ରାଜକ ବହିଲେ ପ୍ରଚେତା ନନ୍ଦନ ।
ଏମନ୍ତେଣ ଦ୍ରୁହ୍ୟୁ ବଂଶ ବିଦିତ ସଂସାରେ
ତବ ସମୀପେ କହିଲି ମାନ ସଂକ୍ଷେପରେ ।
ଏଥିପୂର୍ବେ କରନ୍ଧମ ମରୁତ ଚରିତ
କହିଛି ମୁଁ ତୁମ୍ଭଆଗେ ଜାଣ ତପୋବନ୍ତ ।
ଏମାନେ ଯଦୁବଂଶରୁ ନୁହନ୍ତି ଅନ୍ତର
ଉପ ଯଦୁବଂଶ ବୋଲି ବିଦିତ ମାତର ।
ଅନୁ ନାମେ ଏକପୁତ୍ର ଅଟେ ଯଯାତିର
କହିବଇଁ ତାହା ବଂଶାବଳୀ ଶୁଣ ଧୀର ।
ଅଧିରଥ ନାମେ ପୁତ୍ର ଯେ ଦାନ କର୍ଣ୍ଣର
ସଞ୍ଚପି କହିବି ସେହି ପ୍ରସଙ୍ଗ ଏଠାର ।
ଦ୍ରୁହ୍ୟୁବଂଶ କଥାମାନ ଏଠି ହେଲା ଶେଷ
କିବା ପ୍ରୟୋଜନ ଅଛି ବର୍ଣ୍ଣିନେ ବିଶେଷ ।
ଏହିପରି ଭାବେ ସୂତ ପୌରାଣିକ ଧୀର
ଯଯାତିଙ୍କ ବଂଶ କଥା କରନ୍ତି ପ୍ରଚୁର ।
ଏ ଚରିତ ଯେଉଁମାନେ ପଢ଼ନ୍ତି ଶୁଣନ୍ତି
ପାପ ତାପରୁ ସେ ପ୍ରାଣୀ କଷ୍ଟେ ମୁକୁଳନ୍ତି ।
ଅକାଳ ମରଣ ତାଙ୍କ ବଂଶେ ନ ହୋଇ
ସକଳ ଦୁଃଖ ଦୁର୍ଦ୍ଦଶା ଦୂର ହୋଇ ଯାଇ ।
ସେ ସବୁଜନ ରୁହନ୍ତି ପରମ ସୁଖରେ
ବଂଶର ବିଚ୍ଛେଦ ନ ହୁଅଇ ଯେ ତାଙ୍କରେ ।
ଏହି ବ୍ରହ୍ମ ପୁରାଣର ଅପୂର୍ବ କଥନ
ଭାଷାପ୍ରବନ୍ଧେ ଭଣିଲା କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ତୁର୍ବସୁ
ବଂଶାଦ୍ୟ କଥନେ ନାମ
ଏକତ୍ରିଂଶୋଽଧ୍ୟାୟଃ ।



[redacted]



## ଦ୍ୱାବିଂଶ ଅଧ୍ୟାୟ
## ଅନୁବଂଶ, କର୍ଣ୍ଣବଂଶ୍ୟ ଓ ଭରତ
## ଆଦିଙ୍କ ଉତ୍ପନ୍ନ ବିବରଣ

ଶୌନକ ଉବାଚ

ଶୌନକ ପୁଚ୍ଛନ୍ତି ସୁତ ମୁନିଙ୍କୁ ଅନାଇ
କହ ଆହେ ପୌରାଣିକ ଏବେ ଦୟାବହି ।
ଯଯାତି ନନ୍ଦନ ଅନୁ ବିଦିତ ସଂସାରେ
ସେ ଅନୁ ବଂଶର ଗାଥା ବଖାଣ ଏଠାରେ
ଶ୍ରବଣ କରିବା ତାହା ବଂଶାବଳୀମାନ
ଶୁଣିବା ପାଇଁକି ଶ୍ରଦ୍ଧା ବଳଅଛି ମନ ।
ଏମନ୍ତ ଶ୍ରବଣ କରି ପୌରାଣିକ ସୁତ
କହି ଆରମ୍ଭିଲେ ବିଷ୍ଣୁ ସୁମରି ତୁରିତ ।

ସୁତ ଉବାଚ

ଶୁଣ ସର୍ବ ମୁନିଗଣେ ମନକର୍ଣ୍ଣ ଦେଇ
ଅନୁବଂଶ ବିବରଣ କହିବା ବୁଝାଇ ।
ଯଯାତି ରାଜାଙ୍କ ଅନୁ ନାମେ ଯେଉଁ ସୁତ
ତାହାଙ୍କର ବଂଶାବଳୀ ବଢ଼ାଇ ବିଦିତ ।
ତିନୋଟି କୁମର ଅନୁଙ୍କର ହେଲେ ଜାତ
ସେମାନଙ୍କର କାହାଣୀ ଅଟେ ଚମତ୍କୃତ ।
ସଭାନର ଚକ୍ଷୁପରି ଅକ୍ଷମ ସହିତେ
ଏହି ତିନିଗୋଟି ପୁତ୍ର ବିଖ୍ୟାତ ଜଗତେ ।
ସଭାନର ନନ୍ଦନ କାଳାନର ନାମ
କାଳାନର ପୁତ୍ର ନାମ ସୃଞ୍ଜୟ ରାଜନ ।
ସୃଞ୍ଜୟ ଠାରୁ ଜନମ ନାମ ପୁରଞ୍ଜୟ
ପୁରଞ୍ଜୟର ତନୟ ଜନ୍ମେ ଜନ୍ମେଜୟ ।
ଜନମେଜୟର ସୁତ ଅଟେ ମହାଶାଳ
ସେହି ମହାଶାଳଙ୍କର ପୁତ୍ର ମହାବଳ ।
ମହା ମନାର ଯେ ବେନି ଗୋଟି ହେଲେସୁତ
ଶୁଣ ମନକର୍ଣ୍ଣଦେଇ ତାହାଙ୍କ ଚରିତ ।
ଜ୍ୟେଷ୍ଠପୁତ୍ର ନାମଗୋଟି ଉଶୀନର ଖ୍ୟାତ
ପାଞ୍ଚଗୋଟି ପୁତ୍ର ପୁଣି ହେଲେ ଉଶୀନର
ଶିବସ୍ତୃପ ବଳକୃମି ଅବାଦ ସତ୍ତର ।
ଶିବର ଚାରି କୁମର ଲଭିଲେ ଜନମ
ଶୁଣ ଆହେ ତପୋଧନ ତାହାଙ୍କର ନାମ ।
ବୃଷ ଦର୍ଭ କେକୟ ମଦ୍ରକ ଏହି ଚାରି
ଶିବ ରାଜନ ଲଭିଲ ଜାଣ ତପସ୍ୱୀ ।
ତିତିକ୍ଷୁର ଉଷଦ୍ରଥ ନାମେଣ ତନୟ
ଉଷଦ୍ରଥଠାରୁ ହେନା ହେଲ ସୂନଶ୍ଚୟ ।
ତାହାର ବୀର୍ଯ୍ୟେ ଜନମ ଯେବଣ କୁମର
ସୁତପା ବୋଲି ତା ନାମ ଖ୍ୟାତ ଚରାଚର ।
ତାହାର ନନ୍ଦନ ନାମ ଅଟେ ଜାଣ ବଳୀ
ସର୍ବଗୁଣେ ପରିପୂର୍ଣ୍ଣ ସେହି ମହା ବଳୀ ।
ଦୀର୍ଘ ତମା ବଳି କ୍ଷେତ୍ରେ ପାଞ୍ଚଟି ନନ୍ଦନ
କ୍ରମେ ଉତ୍ପାଦନ କଲେ ଜାଣ ତପୋଧନ ।
ଅଙ୍ଗ ବଙ୍ଗ କଳିଙ୍ଗ ଯେ ସୁହ୍ମ ବ୍ରହ୍ମ ନାମେ
ଏହି ପାଞ୍ଚନାମ ଖ୍ୟାତ ଅଟେ ଧରାଧାମେ ।
ପାଞ୍ଚଗୋଟି ଦେଶ ଏମାନଙ୍କ ଅଧିକୃତ
ତାହାଙ୍କର ନିଜ ୨ ନାମରେ ବିଖ୍ୟାତ ।
ଅଙ୍ଗର ତନୟ ଜନ୍ମେ ନାମ ଅମାନନ
ତାର ପୁତ୍ର ଦିବିରଥ ଉତ୍କଳ ରାଜନ ।
ଦିବିରଥର ନନ୍ଦନ ନାମ ଧର୍ମରଥ
ତାହାର ନନ୍ଦନ ନାମ ଲୋମପାଦ ନରନାଥ ।
କାଳେ ଅପୁତ୍ରିକ ଥିଲେ ସେହି ନରବର
ଦଶରଥ କନ୍ୟା ବିଭା ହୋଇଲେ ସତ୍ୱର ।
ସେ ଦଶରଥ ଦୁହିତା ଶାନ୍ତା ନାମ ତାର
ଲୋମପାଦର ଔରସେ ଜନ୍ମିଲ କୁମର ।
ସେ ପୁତ୍ରର ନାମ ଅଟେ ପୃଥୁଲାଙ୍ଗ ଜାଣ
ପୃଥୁଲାଙ୍ଗ ସୁତ ଚମ୍ପ ନାମେ ନୃପଗଣ ।
ଚମ୍ପଠାରୁ ଚମ୍ପାବତୀ ହୋଇଛି ନଗରୀ
କାହିଁ ଦେଖାନାହିଁଟି ଏମନ୍ତ ରମ୍ୟ ପୁରୀ ।
ଚମ୍ପବୀର୍ଯ୍ୟେ ହର୍ଯ୍ୟଙ୍ଗର ହୋଇଲା ଉତ୍ପନ୍ନ
ହର୍ଯ୍ୟଙ୍ଗର ପୁତ୍ର ଦଶରଥ ମହାମନ ।
ଭଦ୍ରରଥ ଠାରୁ ବୃହତ୍କର୍ମ ଜନ୍ମଧରେ
ତାର ପୁତ୍ର ବୃହଦ୍‌ଭାନୁ ବିଦିତ ସଂସାରେ ।
ବୃହଦ୍‌ଭାନୁ ଠାରୁ ବୃହନ୍ମନାର ଜନମ
ତାହାର ତନୟ ସେହି ଜୟଦ୍ରଥ ନାମ ।
ଜୟଦ୍ରଥଠାରୁ ବ୍ରହ୍ମନକ୍ଷତ୍ରର ଉଦ୍ଭବ
ତାହା ବୀର୍ଯ୍ୟେ ତାଳଜଙ୍ଘ ହୋଇଲ ସମ୍ଭବ ।
ତାଳଜଙ୍ଘ ପତ୍ନୀ ଅଟେ ସମ୍ଭୂତି ଆଖ୍ୟାନ ।
ସମ୍ଭୂତିର ଗର୍ଭେ ଜନ୍ମେ ବିଜୟ ଧୀମାନ ।
ବିଜୟ ଔରସେ ଧୃତି ଜନମିଲ ପରେ
ଧୃତି ସୁତ ଧୃତବ୍ରତ ବୋଲି ନାମ ଧରେ ।

ଧୃତ ବ୍ରତର ନନ୍ଦନ ନାମ ସତ୍ୟକର୍ମା
ତାହାର ତନୟ ସେହୁ ଅଧିରଥ ନାମା ।
ଅଧିରଥ ନୃପ ପାଇ ଭାଗୀରଥୀ ତୀରେ
ପୁତ୍ର ରୂପରେ ଲଭିଲା ଦାତା କର୍ଣ୍ଣ ବୀରେ ।
ମଞ୍ଜୁଷା ମଧ୍ୟେ ନିର୍ଣ୍ଣନ କରିଣ ସ୍ଥାପନ
ପୃଥା ସଖି କରିଥିଲେ ଜଳେ ବିସର୍ଜନ ।
କର୍ଣ୍ଣ ପୁତ୍ର ବୃଷସେନ ବିଦିତ ଧରାରେ
ଅନୁବଂଶ କଥା ଜାଣ ଏମନ୍ତ ପ୍ରକାରେ ।
ଅଙ୍ଗବଂଶାବଳୀ କଥା ହେଲ ତ ଶ୍ରବଣ
ଏବେ ଶୁଣ ପୁରୁବଂଶର ମୋ ବିବରଣ ।
ଯଯାତିଙ୍କ ଅନ୍ୟ ପୁତ୍ର ପୁରୁ ନାମ ଯାର
ଜନମେଜୟ ନାମେ ପୁତ୍ର ଜନ୍ମିଲା ତାହାର ।
ମହା ଧନୁର୍ଦ୍ଧର ଅଟେ ସେହି ନରପତି
ପ୍ରଚିନ୍ୱାନ ନାମରେ ମୋ ତାହାଙ୍କ ସନ୍ତତି ।
ତାହାଙ୍କ ଠାରୁ ଅନେକ ଉତ୍ପତ୍ତି ହୋଇଲା
ପ୍ରବୀର ବୋଲି ତା ନାମ ବୈଦରେ ବଜିଲା ।
ତାହାର ତନୟ ନାମ ମନସ୍ୟ ବୋଲିଣ
ସକଳ ଗୁଣରେ ସେହୁ ମହା ବିଚକ୍ଷଣ ।
ମନସ୍ୟର ପୁତ୍ର ସେହୁ ନାମ ଅଭୟଦ
ଅଭୟଦର ନନ୍ଦନ ସୁଦ୍ୟୁମ୍ନ ପ୍ରସିଦ୍ଧ ।
ସୁଦ୍ୟୁମ୍ନ ଠାରୁ ପୁତ୍ରେକ ହୋଇଲା ଜନମ
ବହୁଗବ ବୋଲିଣ ଯେ ଖ୍ୟାତ ତାର ନାମ
ବହୁଗବର କୁମର ନାମ ତା ସଂଯାତି
ସଂଯାତିର ପୁତ୍ର ନାମ ଅଟେ ଅହଂଯାତି ।
ଅହଂଯାତର ତନୟ ନାମ ତା ରୌଦ୍ରାଶ୍ୱ
ରୌଦ୍ରାଶ୍ୱର କୁମର ଯେ ଜନମିଲେ ଦଶ ।
ପ୍ରଧାନ ଦୁଇଟି ପୁତ୍ର ତାହାଙ୍କ ମଧ୍ୟରେ
ଏକ ପୁତ୍ର ନାମଟି ଋଚେୟୁ ଯେବେ ଧୀରେ ।
ଋଚେୟୁ ବୋଲି ବିଦିତ ଅନ୍ୟ ଯେ କୁମର
ତାର ନାମେ ପୁତ୍ର ଏକ ଜନ୍ମେ ଋଚେୟୁର ।
ସେହୁ ତାର ଔରସରେ ଶୁଭପୁତ୍ର ଜାତ
ତଂସୁ ନାମେ ଜ୍ୟେଷ୍ଠ ପୁତ୍ର ଅତି ଗୁଣବନ୍ତ ।
ଦ୍ୱିତୀୟ ପୁତ୍ରର ନାମ ଶ୍ରୀ ଅପ୍ରତିରଥ
ଧ୍ରୁବ ନାମରେ ବିଖ୍ୟାତ ସେ ତୃତୀୟ ପୁତ୍ର ।
ଶେଷରେ ଜନ୍ମ ଲଭିଲା ଯେବଣ କୁମାର
ସଂସାର ମଧ୍ୟେ ବିଦିତ ଚର ନାମ ତାର ।

ଏମନ୍ତେ ତାର ନନ୍ଦନ ଚାରି ଗୋଟି ଭବେ
ମହା ବଳବନ୍ତ ପୁଣି ଗୁଣବନ୍ତ ସର୍ବେ ।
ଅପ୍ରତିରଥର କଣ୍ୱ ନାମେଣ ସନ୍ତତି
କାଣ୍ୱଠାରୁ ପୁତ୍ର ଜନ୍ମେ ନାମ ମେଧାତିଥି ।
କାଣ୍ୱାୟନ ନାମେ ଯେତେ ସଂସାରେ ବ୍ରାହ୍ମଣେ
ମେଧାତିଥି ଠାରୁ ସେହିମାନଙ୍କ ଜନମ ।
ମହାତ୍ମା ତଂସୁଙ୍କ ପୁତ୍ର ଇଳୀ ବୋଲି ଖ୍ୟାତ
ସେହି ଇଳୀର ହୋଇଲେ ଚାରିଗୋଟି ସୁତ ।
ଦୁଷ୍ମନ୍ତ ଆଦିକରି ଯେ ସେ ଚାରି ନନ୍ଦନେ
ଦୁଷ୍ମନ୍ତ ସୁତ ଭରତ ବିଖ୍ୟାତ ଭୁବନେ ।
ଅଖିଳ ଜଗତର ସେ ହେଲା ଅଧୀଶ୍ୱର
ଯା ନାମେ ଭାରତବର୍ଷ ଜାଣ ମୁନିବର ।
ନୁହଁଇ ସାମାନ୍ୟ ଯେ ଭରତ ନରପତି
ଶେଷରେ ଜଡ଼ ଭରତ ନାମେ ହେଲେ ଖ୍ୟାତି
ମହାରାଜ ଚକ୍ରବର୍ତ୍ତୀ ସେହି ମହାଶୟ
ଶକୁନ୍ତଳାଙ୍କ ଗର୍ଭରୁ ତାଙ୍କର ଉଦୟ ।
କଥାଖ୍ୟାନ ପ୍ରସଙ୍ଗରେ ଭରତ ଚରିତ
ହେ ଶୌନକ ତୁମ୍ଭ ଆଗେ କରିଲି ବ୍ୟକତ ।
ଭରତ ଜନନୀ ନାମ ଅଟେ ଶକୁନ୍ତଳା
ଦୁଷ୍ମନ୍ତଙ୍କ ସଭା ସ୍ଥଳେ ଯେଉଁକାଳେ ଗଲା ।
ତାକୁ ଅନାଦର କରିଥିଲେ ସେ ଦୁଷ୍ମନ୍ତ
ସେହିକାଳେ ଦୈବ ବାଣୀ ହେଲା ଅକସ୍ମାତ
ଶୂନ୍ୟରୁ ଶୁଭିଲା ତହିଁ ଏହିପରି ବାଣୀ
ପତ୍ନୀକି ତ୍ୟାଗ ନ କର ଶଙ୍କ ନୃପମଣି ।
ଯଥାର୍ଥ କଥା ହେ ରାଜା କହୁଛୁଁ ତୁମ୍ଭରେ
ଜନନୀ ଭସ୍ତ୍ରା ସ୍ୱରୂପ ବିଦିତ ଧରାରେ ।
ଅଧିକାଂଶ ପୁତ୍ରେ ହୁଏ କେବଳ ପିତାର
ଅଧିକ କହିବୁଁ କିବା ଆହେ ଗୁଣାଧାର ।
ପିତୃ ଅଂଶେ ହେ ନୃପତି ପୁତ୍ରର ଜନମ
ତେଣୁ ପିତାଠାରୁ ଭିନ୍ନ ନୁହେଁ କଦାଚନ ।
ଏଣୁ ତୁମ୍ଭେ ନିଜ ପୁତ୍ରେ ନିଅ ହେ ଝଟତି
ଅବଜ୍ଞା ନ କର ନୃପ ଶକୁନ୍ତଳା ପ୍ରତି ।
ଔରସଜ ପୁତ୍ର ହାତେ ଯେହୁ ଜଳ ପାଏ
ସେହି ପିତା ଅନ୍ତିମରେ ସ୍ୱର୍ଗେ ଚଳିଯାଏ ।
ତୁମ୍ଭର ଔରସେ ଜାତ ଅଟଇ ଏ ସୁତ
ଏଥିରେ ତିଳେ ସନ୍ଦେହ ନାହିଁ ନରନାଥ ।

ଏହିରୂପେ ଦୈବବାଣୀ କରନ୍ତେ ଶ୍ରବଣ
ପୁତ୍ର ପତ୍ନୀଙ୍କୁ ରାଜନ କରିଲେ ଗ୍ରହଣ ।
ଭରତଙ୍କ ବହୁ ପତ୍ନୀ ଥିଲେ ବୁଦ୍ଧିମତୀ
ଜନ୍ମିଲେ ତାହାଙ୍କ ଗର୍ଭେ ନଅଟି ସନ୍ତତି ।
ଏହିପରେ ପୁତ୍ରଗଣ ଲଭିଲେ ଜନମ
ଭରତ ରମଣୀ ଗଣେ କହିଲେ ଏସନ ।
ମୋହର ଔରସେ ତୁମ୍ଭମାନଙ୍କ ଉଦରେ
ମୋର ଅନୁରୂପ ଜନ୍ମ ନୋହିଲେ କୁମରେ ।
ଏହା କହି ନରପତି ହୋଇଲେ ମଉନ
ରାଣୀମାନଙ୍କର ହୃଦେ ପଡ଼ିଲା ଭାବନ ।
ମହାରାଜ ପଛେ ତ୍ୟାଗ କରନ୍ତୁ ଆମ୍ଭଙ୍କୁ
ଏତେଭାବି ବିନାଶିଲେ ତନୟମାନଙ୍କୁ ।
ସେ କାଳେ ପୁତ୍ର କାମନ୍ତେ ଭରତ ରାଜନ
ଦୀର୍ଘତମା ଋଷିଙ୍କ ସେ ଆଣାଇ ବହନ ।
ମରୁତ୍ସ୍ତୋମ ନାମେ ଯଜ୍ଞ କଲେ ଅନୁଷ୍ଠାନ
ଏଥୁଅନ୍ତେ ଯା ଘଟିଲା ଶୁଣ ଦେଇ ମନ ।
ବୃହସ୍ପତି ସୁତ ଦୀର୍ଘତମା ମହାସନ୍ତି
ଯେତେବେଳେ ଯଜ୍ଞକ୍ରିୟା ସାଧନ କରନ୍ତି ।
ପିତାଙ୍କ ପାର୍ଶ୍ୱେ ନୃପତିଙ୍କୁ ବସାଇ ଯତନେ
କରନ୍ତି ସକଳ କର୍ମ ବିହିତ ବିଧାନେ ।
ଯେଉଁ କାଳେ ଯଜ୍ଞକ୍ରିୟା ହେଲା ସମାପନ
ବୃହସ୍ପତି ଗୁରୁ ହାବ ଜାଣ ସେହିକ୍ଷଣ ।
ପ୍ରସାଦ ଚିହ୍ନ ନୃପହୋଇଲେ ବିଦିତ
ଲଭିଲେ ଯେ ଭରଦ୍ୱାଜ ନାମେ ଏକ ସୁତ ।
ଏମନ୍ତ ପ୍ରସିଦ୍ଧି ଅଛି ସଂସାର ମଧ୍ୟରେ
ଭରଦ୍ୱାଜ ମାତା ବୃହସ୍ପତିଙ୍କ ଗୋଚରେ ।
ଭରଦ୍ୱାଜ ନାମେ ପୁତ୍ରେ କରି ସମ୍ବୋଧନ
ମନସୁଖେ ଯଥାସ୍ଥାନେ ଚଳିଲେ ବହନ ।
ତେଣୁ ଭରଦ୍ୱାଜ ନାମ ହେଲା ତାହାଙ୍କର
ଆଉର ଏକଇ କଥା ଶୁଣ ମୁନିବର ।
ଭରତଙ୍କ ପୁତ୍ର ଜାତ ବିତଥ ନାମରେ
ମରୁତ ପ୍ରସାଦେ ଜନ୍ମେ ଭରଦ୍ୱାଜ ପରେ ।
ଏ ହେତୁ ବିତଥ ନାମ କଲେ ସେ ଧାରଣ
ବିତଥ ସୁତ ଭୂମନ୍ୟୁ ବିଦିତ ଭୁବନ ।
ବୃହତ୍‌କ୍ଷେତ୍ର ନାମେ ଜନ୍ମେ ଭୂମନ୍ୟୁ ତନୟ
ଆଉ ଯେ ତାହାଙ୍କ ପୁତ୍ର ଶୁଣ ପରିଚୟ ।

ମହାବୀର୍ଯ୍ୟ ନର ଗର୍ଗ ଆଦି କରି ନାମେ
ସେ ସବୁ ତନୟ ଖ୍ୟାତ ଏହି ଧରା ଧାମେ ।
ନରର ଯେ ପୁତ୍ର ହୋଇଲା ତା ନାମ ସଂକୃତି
ସଂକୃତିଙ୍କର ଜନ୍ମିଲେ ଦୁଇଟି ସନ୍ତତି ।
ଗୁରୁଧି ଅଟଇ ତାହାଙ୍କର ଆଦ୍ୟ ସୁତ
ବିଦ୍ୟା ବୁଦ୍ଧିରେ ସେ ପୁତ୍ର ଅଟଇ ପଣ୍ଡିତ ।
ଗର୍ଗ ନାମ ଧାରୀ ଯେଉଁ ବିପ୍ର ବିଜ୍ଞଜନ
ତାଙ୍କଠାରୁ ଶିନିନାମେ ଜନ୍ମିଲା ନନ୍ଦନ ।
ଶୈନ୍ୟ ଗର୍ଗ ନାମେ ଭବେ ଯେତେକ ବ୍ରାହ୍ମଣ
ଶିନିଠାରୁ ଏ ସକଳେ ହେଲେ ଉତପନ ।
ମହାବୀର୍ଯ୍ୟ ଲଭିଲେ ଯେ ଗୋଟିଏ ତନୟ
ତାହାଙ୍କର ନାମ ଖ୍ୟାତ ଅଟେ ଉରୁକ୍ଷୟ ।
ଉରୁକ୍ଷୟ ଠାରୁ ତ୍ରୟ୍ୟାରୁଣିଙ୍କ ଜନମ
ଆହୁରି ଉତ୍ପନ୍ନ ହେଲେ ଯୋଡ଼ିଏ ସନ୍ତାନ ।
ପୁଷ୍କରିଣୀ ଶ୍ରୀ କପିଳ ସେ ଦୁହିଁଙ୍କ ନାମ
ବ୍ରାହ୍ମଣତ୍ୱ ପାନ୍ତି ପରେ ଏ ତିନି ଧୀମାନ ।
ବୃହତ୍‌କ୍ଷେତ୍ର ପୁତ୍ରଠାରୁ ସୁହୋତ୍ର ନାମେଣ
ଜନ୍ମିଲେ ଯେବଣ ପୁତ୍ର ଅତ୍ୟନ୍ତ ସୁଜନ ।
ସୁହୋତ୍ରଙ୍କ ଠାରୁ ହେଲା ହାସ୍ତିନ ନଗର
ତିନି ପୁତ୍ର ଜନମିଲେ ଏ ସୁହୋତ୍ରଙ୍କର ।
ଯେହି ତିନି ପୁତ୍ରଙ୍କର ନାମ ଶୁଣ ମୁନି
ଅଜମୀଢ଼ ଦ୍ୱିମୀଢ଼ ଯେ ପୁରୁମୀଢ଼ ପୁଣି ।
ସୁହୋତ୍ରଙ୍କର ଖ୍ୟାତ ଏ ତିନି କୁମର
ସର୍ବ ଶାସ୍ତ୍ରବିଶାରଦ ସେ ଜ୍ଞାନ ପ୍ରବର ।
ଅଜମୀଢ଼ଙ୍କର କଣ୍ୱ ନାମେ ଏକ ସୁତ
କଣ୍ୱଠାରୁ ମେଧାତିଥି ହୋଇଲେ ସମ୍ଭୂତ ।
ମେଧାତିଥି ଠାରୁ କାଣ୍ୱାୟନ ବିପ୍ରଗଣ
ଜଗତ ମଧ୍ୟରେ କଲେ ଜନମ ଗ୍ରହଣ ।
ଅଜମୀଢ଼ ଆଉ ଏକ ଲଭିଲେ କୁମର
ସଂସାରେ ବିଦିତ ବୃହଦିଷୁ ନାମ ତାର ।
ବୃହଦ୍ଧନୁ ବୋଲି ବୃହଦିଷୁଙ୍କ ନନ୍ଦନ
ତାହାଙ୍କର ପୁତ୍ର ଯେହୁ ବୃହତ୍କର୍ମା ନାମ ।
ବୃହତ୍କର୍ମା ଠାରୁ ଜୟଦ୍ରଥର ଜନମ
ଜୟଦ୍ରଥର ନନ୍ଦନ ସେନାଜିତ ନାମ ।
ସେନାଜିତରେ ଜନ୍ମିଲେ ପାଞ୍ଚ ଗୋଟି ସୁତ
ସେମାନଙ୍କ ନାମ ଏବେ ଶୁଣ ତପୋବନ୍ତ ।

ବିଶ୍ୱଜିତ ରୁଚିରାଶ୍ୱ କାଶ୍ୟ ଦୃଢହନୁ
ବତ୍ସ ସହିତରେ ଜାଣ ଏହି ପାଞ୍ଚ ସୂନୁ ।
ରୁଚିରାଶ୍ୱ ଏକ ପୁତ୍ର କରେ ଉତ୍ପାଦନ
ପୃଥୁସେନ ବୋଲି ନାମ ବିଦିତ ଭୁବନ ।
ପାର ନାମେ ପୃଥୁସେନ ପୁତ୍ରଲାଭ କରେ
ପାରର ଯେବଣ ପୁତ୍ର ନୀପ ନାମ ଧରେ ।
ନୀପଠାରୁ ଏକଶତ ପୁତ୍ରଙ୍କ ଜନମ
ତାହାଙ୍କ ମଧ୍ୟେ ପ୍ରଧାନ ସମର ଯା ନାମ ।
ସେହି ଯେ ସମର କାମ୍ପିଲ୍ୟର ଅଧିପତି
କହିଲଇଁ ତୁମ୍ଭ ଆଗେ ଆହେ ମହୀପତି ।
ସମର ରାଜାଙ୍କ ତିନିପୁତ୍ର ହେଲେ ଜାତ
ପାର ସଂପାର ସଦଶ୍ୱ ବୋଲି ନାମ ଖ୍ୟାତ ।
ତାହାଠାରୁ ପୃଥୁନାମେ ପୁତ୍ରେକ ଜନ୍ମିଲା
ସୁକୃତି ନାମେ ପୁତ୍ର ଯେ ପୃଥୁ ଜାତକଲା ।
ସୁକୃତିର ଯେଉଁ ସୁତ ତା ନାମ ବିଭ୍ରାଜ
ଅଣୁହାର ନାମଧରେ ତାହାର ତନୁଜ ।
ଶୁକ କନ୍ୟା କୃତି ନାମେ ବିଦିତ ସଂସାରେ
ଅଣୁହାର ଯଥାକାଳେ ପତ୍ନୀ କଲା ତାରେ ।
ବ୍ରହ୍ମଦତ୍ତ ନାମେ ସୁତ ଅଣୁହାର ଲଭେ
ତାର ସୁତ ବିଶ୍ୱକସେନ ଜାଣନ୍ତି ସରବେ ।
ବିଶ୍ୱକ୍‌ସେନଠାରୁ ଯେଉଁ କୁମର ଜନମ
ଉଦକସେନ ବୋଲିଣ ଯେ ଖ୍ୟାତ ତାରନାମ
ଉଦକ୍‌ସେନର ସୁତ ନାମଟି ଭଲ୍ଲାଟ
ଅଜମୀଢ଼ ବଂଶ ଏହି ପ୍ରକାରେ ପ୍ରକଟ ।
ଏବେ ଶୁଣ ଦ୍ୱିମୀଢ଼ର ସୁତ ନାତି ଯେବା
ବଂଶ ଅନୁକ୍ରମେ ତୁମ୍ଭ ଆଗରେ କହିବା ।
ଦ୍ୱିମୀଢ଼ର ଏକ ପୁତ୍ର ଲଭିଲା ଜନମ
ସକଳେ ଜାଣନ୍ତି ଯବୀନର ତାର ନାମ ।
ଯବୀନର ଠାରୁ ସୁତ ଜନ୍ମେ ଧୃତିମାନ
ସତ୍ୟଧୃତି ନାମେଣ ଯେ ତାହାର ନନ୍ଦନ ।
ସତ୍ୟଧୃତି ବୀର୍ଯ୍ୟେ ଦୃଢ଼ନେମି ଜନମିଲା
ଦୃଢ଼ନେମିର ସୁପାର୍ଶ୍ୱ ନାମେ ପୁତ୍ର ହେଲା ।
ସୁପାର୍ଶ୍ୱ ନନ୍ଦନ ଯେହୁ ନାମ ତା ସୁମତି
ସନ୍ନତିମାନ ନାମରେ ସୁମତି ସନ୍ତତି ।
ସନ୍ନତିମାନର ପୁତ୍ର ନାମ ତାର କୃତ
କୃତର ତନୟ ଯେହୁ ତା ନାମ କୃତାନ୍ତ ।

ହିରଣ୍ୟନାଭ ନିକଟେ କରିଣ ଗମନ
ଯେହି କୃତ କରିଥିଲା ଯୋଗ ଅଧିୟନ ।
ଚତୁର୍ବିଂଶ ପ୍ରାଚ୍ୟ ସାମଗାନ ସଂହିତାରେ
ପ୍ରସ୍ତୁତ କଲେ ସେ ଜାଣ ଅତି ଯତନରେ ।
କୃତଠାରୁ ଉଗ୍ରାୟୁଧ ଲଭିଲା ଜନମ
ଉଗ୍ରାୟୁଧଠାରୁ ନୀପବଂଶ ନିପାତନ ।
ଉଗ୍ରାୟୁଧ ଠାରୁ କ୍ଷେମ୍ୟ ନିଜ ଜନ୍ମ ଧରେ
କ୍ଷେମ୍ୟଠାରୁ ଯେ ସୁବୀର ଜନମିଲା ପରେ ।
ଯେବଣ ତନୟ ଭବେ ହେଲା ସୁବୀରର ।
ନୃପଞ୍ଜୟ ବୋଲି ନାମ ବିଖ୍ୟାତ ତାହାର
ସେ ନୃପଞ୍ଜୟର ଯେଉଁ ସନ୍ତାନ ହୋଇଲା
ବହୁରଥ ବୋଲିଣ ଯେ ତାର ନାମ ହେଲା ।
ନୀଳନୀ ନାମରେ ଥିଲା ଏକଇ ଯୁବତୀ
ସେହୁ ଲଭିଲା ଅଜମିଢ଼କୁ ସ୍ୱପତି ।
ତାଗର୍ଭୁ ନୀଳନାମରେ ହୋଇଲା କୁମର
ନୀଳର ତନୟ ଯେହୁ ଶାନ୍ତି ନାମ ତାର ।
ଶାନ୍ତିର ନନ୍ଦନ ନାମ ସୁଶାନ୍ତି ଅଟଇ
ପୁରୁଜାନୁ ନାମ ଧରେ ତାର ପୁତ୍ର ଯେହି ।
ପୁରୁଜାନୁଠାରୁ ଚକ୍ଷୁ ନାମେ ସୁତ ହେଲା
ଚକ୍ଷୁର ପୁତ୍ର ହର୍ଯଶ୍ୱ ନାମ ପ୍ରକାଶିଲା ।
ହର୍ଯ୍ୟଶ୍ୱ ଔରସେ ଜନ୍ମ ହୋଇଲା ମୁଦ୍‌ଗଲ
ପୁଣି ଆନ ଚାରି ପୁତ୍ର ହୋଇଲେ ତତ୍କାଳ ।
ବୃହଦିଷୁ ଯବୀନର କାମ୍ପିଲ୍ୟ ସୃଞ୍ଜୟ
ମୁଦ୍‌ଗଲକୁ ମିଶାଇଣ ଏ ପାଞ୍ଚ ତନୟ ।
ହର୍ଯ୍ୟଶ୍ୱ ଏପରି କରିଥିଲା ସମୟରେ
ପଞ୍ଚପୁତ୍ର ମୋର ଜନ୍ମିଅଛନ୍ତି ମହୀରେ ।
ବିଷୟ ରକ୍ଷଣେ ସର୍ବେ ନହେଲେ ସକ୍ଷମ
ଏହିପରି କହିଥିଲା ହର୍ଯ୍ୟଶ୍ୱ ରାଜନ ।
ଏହେତୁ ପାଞ୍ଚାଳନାମେ ସେ ପାଞ୍ଚକୁମରେ
ବିଖ୍ୟାତ ହୋଇଲେ ଏହି ପଞ୍ଚ ମଣ୍ଡଳରେ ।
ମୌଦଗଲ୍ୟ ନାମେ ଖ୍ୟାତ ମୁଦ୍‌ଗଲ ମାନେ
କ୍ଷତ୍ରଗେତ ବିପ୍ର ସେହି ଏ ମର୍ତ୍ତ୍ୟ ଭୁବନେ ।
ବ୍ରଧ୍ନାଶ୍ୱ ଅଟଇ ମୁଦ୍‌ଗଲର ସନ୍ତତି
ତାର ପୁତ୍ର ଦିବୋଦାସ ବୁଝ ହେ ସୁମତି ।
ଅହଲ୍ୟା ନାମରେ କନ୍ୟା ଜନ୍ମେ ବ୍ରଧ୍ନାଶ୍ୱର
ଶାରଦ୍ୱାନ ମହାମତି ପତି ଅହଲ୍ୟାର ।

ଶତାନନ୍ଦ ନାମେ ହେଲେ ତାହାଙ୍କ ନନ୍ଦନ
ସତ୍ୟ ଶାନ୍ତ ଧୀର ଆଉ ମହା ଗୁଣବାନ ।
ଧନୁ ବିଦ୍ୟାରେ ସେ ପୁତ୍ର ପାରଗ ଅଟଇ
ଉର୍ବଶୀକୁ ଏକଦିନେ ନେତ୍ରେ ଦେଖି ସେହି ।
କାମଜ୍ୱାଳାରେ ତା ଅଙ୍ଗୁ ଶୁକ୍ର ଯେ ସ୍ଖଳିଲା
ସେହି ଶୁକ୍ର ଶର ସ୍ତମ୍ଭେ ପତିତ ହୋଇଲା ।
ତହୁଁ ବେନଭାଗ ହୋଇ ସେ ରେତ ପଡ଼ନ୍ତେ
ଏକପୁତ୍ର ଦୁଇ କନ୍ୟା ଜନ୍ମିଲେକ ସେଥେଁ ।
ସେହିକାଳେ ମହାମନ୍ତ ଶାନ୍ତନୁ ନୃପତି
ମୃଗୟା ଲାଗି ବନକୁ ଗମିଲେ ତଡ଼ିତି ।
ସେହିପୁତ୍ର ଦୁହିତାକୁ ଦେଖିଲେ ନୟନେ
ଦୟା ପରବଶ ହୋଇ ଆଣିଲେ ସଦନେ ।
ସେ ପୁତ୍ର କନ୍ୟା ଦୁହିଁଙ୍କୁ ଆଣିଣ ରାଜନ
ନାମ ଦେଲେ କୃପ କୃପୀ ହୋଇ ତୋଷମନ
ଦ୍ରୋଣାଚାର୍ଯ୍ୟଙ୍କର କୃପୀ ଘରଣୀ ହୋଇଲେ
ଅଶ୍ୱତ୍ଥାମା ନାମେ ପୁତ୍ର ତାଙ୍କଠାରୁ ହେଲେ ।
ଦିବ ଦାସର ନନ୍ଦନ ମିତ୍ରୟୁ ଅଟଇ
ନୃପତି ଚ୍ୟବନ ତାଙ୍କଠାରୁ ଜାତ ହୋଇ ।
ଚ୍ୟବନ ପୁତ୍ର ସୁଦାମ ସେ ଯେ ମହାସତ୍ତ୍ୱ
ସୌଦାସ ନାମରେ ଖ୍ୟାତ ତାହାର ସନ୍ତତି ।
ସୌଦାସର ଆନ ନାମ ଅଟେ ସହଦେବ
ଭୃଗୁଆଗେ ବଖାଣିଲି ଗୋଟି ଗୋଟି ସର୍ବ ।
ସୋମକ ବୋଲିଣ ସହଦେବଙ୍କ କୁମର
ଏକଶତ ପୁତ୍ରଜାତ ହୋଇଲେ ତାହାର ।
ତାହାଙ୍କ ମଧ୍ୟରେ ଜ୍ୟେଷ୍ଠ ଯେବଣ ନନ୍ଦନ
ତାହାର ନାମ ଅଟଇ ଜନ୍ତୁ ତପୋଧନ ।
ସେହି ଅଟେ ମହାତେଜା ଏହି ଜଗତରେ
ରୂପବନ୍ତ ଗୁଣବନ୍ତ ଆଦି ସବୁଥିରେ ।
କନିଷ୍ଠ ନନ୍ଦନ ନାମ ପୃଷ୍ଟକ ଅଟଇ
ତାହାର କୁମର ଯେ ଦ୍ରୁପଦ ନରସାଇଁ ।
ଧୃଷ୍ଟଦ୍ୟୁମ୍ନ ଅଟଇ ଯେ ତାହାର କୁମର
ମହା ପରାକ୍ରମଶାଳୀ ଅତ୍ୟନ୍ତ ସୁନ୍ଦର ।
ଧୃଷ୍ଟକେତୁ ନାମେ ଧୃଷ୍ଟଦ୍ୟୁମ୍ନର ନନ୍ଦନ
ପଞ୍ଚାଳ ଦେଶର ଏହି ବିବରଣମାନ ।
ଅଜମୀଢ଼ର ଅପର ପୁତ୍ର ଋକ୍ଷ ନାମ
ଋକ୍ଷପୁତ୍ର ସମ୍ବରଣ ସର୍ବ ଗୁଣଧାମ ।

କୁରୁ ନାମରେ ହୋଇଲା ତାହାର କୁମର
ସ୍ଥାପିଲା କୁରୁକ୍ଷେତ୍ରକୁ ଜାଣ ସେହି ବୀର ।
ସେହି କୁରୁକ୍ଷେତ୍ର ଦେବତାଙ୍କ ପ୍ରସାଦରେ
ବୋଲାଇଲା ଧର୍ମ କ୍ଷେତ୍ର ଅବନୀ ମଧ୍ୟରେ ।
ଅନେକ ସୁତ କୁରୁର ହେଲେ ଗୁଣବନ୍ତ
ସୁଧନୁ ଆବର ଜହ୍ନୁ ବୀର ଖଡ଼ିଛି ତ ।
ସୁହୋତ୍ର ସୁଧନୁ ପୁତ୍ର ତା ପୁତ୍ର ଚ୍ୟବନ
ଚ୍ୟବନ ପୁତ୍ର କୃତକ ବିଖ୍ୟାତ ଭୁବନ ।
କୃତକର ଏକପୁତ୍ର ସର୍ବ ଗୁଣମୟ
ତା ନାମ ଉପରିଚର ବସୁ ମହାଶୟ ।
ସାତଗୋଟି ପୁତ୍ର ହେଲେ ଉପରିଚରର
ବୃହଦ୍ରଥ ପ୍ରତ୍ୟଗ୍ର କୁଶାମ୍ବ ଏ ପ୍ରକାର ।
ମତ୍ସ୍ୟ ମାବଲ ଆଦି ଯେ ତାହାଙ୍କର ନାମ
ବୃହଦ୍ରଥ ତନୟ କୁଶାଗ୍ର ଗୁଣଧାମ ।
ସେହି କୁଶାଗ୍ରର ହେଲା ଯେବଣ ନନ୍ଦନ
ଋଷଭ ବୋଲି ତା ନାମ ଖ୍ୟାତ ତ୍ରିଭୁବନ ।
ଋଷଭର ଜନମିଲା ଏକଇ ନନ୍ଦନ
ତାହାର ନାମ ଅଟଇ ବୀର ପୁଷ୍ପବାନ ।
ସେ ପୁଷ୍ପବାନର ଜନମିଲା ଏକ ସୁତ
ତା ନାମ ଭବେ ବିଖ୍ୟାତ ଜାଣ ସତ୍ୟଧୃତ ।
ସତ୍ୟଧୃତର କୁମର ନାମଟି ସୁଧନ୍ୱା
ସୁଧନ୍ୱାର ପୁତ୍ର ନାମ ଜନ୍ତୁ ମହାମନା ।
ନାନାଗୁଣରେ ଭୂଷିତ ସେହି ଜନ୍ତୁବୀର
କୁରୁବଂଶେ ଅଟଇ ସେ ଅତିଶୟ ଧୀର ।
ବୃହଦ୍ରଥ ନୃପତିର ଆରକ ଲେ ସୁତ
ତାର ନାମ ଜରାସନ୍ଧ ସଂସାରେ ବିଦିତ ।
ମହା ବୀର୍ଯ୍ୟବାନ ସେହି ଜରାସନ୍ଧ ବୀର
ଶୁଣ ମୁନ ଅତି ଅଦଭୁତ କଥା ତାର ।
ଯେଉଁକାଳେ ଜରାସନ୍ଧ ହୋଇଲା ଜନମ
ବେନ ଖଣ୍ଡ ସେ କୁମାର ବିଚିତ୍ର ଦଶ ନ ।
ଜରାନାମେ ରାକ୍ଷସୀ ସେ ଦୁଇ ଖଣ୍ଡ ନେଇ
ସନ୍ଧାଇବାରେ ପୁତ୍ରେକ ମିଳି ହେଲା ତହିଁ ।
ତେଣୁ ଜରାସନ୍ଧ ନାମ ହୋଇଲା ତାହାର
ସାମାନ୍ୟ ଜଣେ ନୁହଇ ସେହି ମହାବୀର ।
ସହଦେବ ନାମେ ତାର ପୁତ୍ରେକ ଜନ୍ମିଲା
ଅତି ଗୁଣବନ୍ତ ସେହୁ ନାମ ପ୍ରକାଶିଲା ।

ସହଦେବର ଯେବଣ ପୁତ୍ର ହେଲା ଜାତ
ସୋମାପି ବୋଲି ତା ନାମ ସଂସାରେ ବିଦିତ
ସୋମାପିଠାରୁ ଜନ୍ମିଲା ଏକଇ କୁମର
ସକଳେ ଜାଣନ୍ତି ଶ୍ରୁତଶ୍ରବା ନାମ ତାର ।
ସେହି ଶ୍ରୁତଶ୍ରବା ଅଟେ ମହାବଳବନ୍ତ
ବୃହଦ୍ରଥ ନୃପତିଙ୍କ ନାତି ବୋଲି ଖ୍ୟାତ ।
ଏହିପରି ଜରାସନ୍ଧ ବଂଶର କାହାଣୀ
ଠିକେ ଠିକେ ବୁଝାଇଲି ଜାଣ ଆହେ ମୁନି ।
ମଗଧ ରାଜ୍ୟେ ଏ ସର୍ବେ ହୋଇଲେ ରାଜନ
ବଳ ବୀର୍ଯ୍ୟରେ ଅଟନ୍ତି ମହା ତେଜସ୍ଥାନ ।
ଏହାଙ୍କ ପୂର୍ବ ପୁରୁଷ ଅଜମୀଢ଼ ରାୟ
ଯାର ଭ୍ରାତା କୁରୁମୀଢ଼ ଦ୍ୱିମିଢ଼ ନିଶ୍ଚୟ ।
ଅଟିହିଁ ବଚନ ଅଜମୀଢ଼ ବଂଶ ଗାଥା
ସଂକ୍ଷେପି ପ୍ରକାଶ କଲି ମୁହିଁ ସର୍ବ କଥା ।
ଏଥି ଉତ୍ତାରୁ କହିବି ପାଣ୍ଡୁବଂଶ ଗୀର
ସେହି ବଂଶ ଯେଉଁପରି ହୋଇଲା ବିସ୍ତାର ।
ଆବର କହିବି ଜହ୍ନୁବଂଶ ବିବରଣ
ଯାହା ଶୁଣିଲେ ଲଭିବ ପରମ କାରଣ ।
ସାଧୁଙ୍କ ଅମୃତ ଏସେ ପୁରାଣ ଆଖ୍ୟାନ
ଏ ସଂସାରେ କିବା ଅଛି ପୁରାଣ ସମାନ ।
ଭକତ ଭାବେ ଶୁଣିଲେ ପରଂବ୍ରହ୍ମ କଥା
ଦୂର ହୋଇଯାଏ ମନୁ ଭବ ଭୟ ବ୍ୟଥା ।
ଅନ୍ତଃକାଳେ ମୁକ୍ତି ମିଳେ ପୁରାଣ ଶ୍ରବଣେ
ବିଷ୍ଣୁପୁରେ ଠାବ ମିଳେ ପୁରାଣ ପଠନେ ।
ଏକାନ୍ତ ଚିତ୍ତରେ କେହି କଲେ ଅଧ୍ୟୟନ
ବିଷ୍ଣୁ ଅଙ୍ଗେ ଲୀନହୁଏ ସେହି ସାଧୁଜନ ।
ଇହକାଳେ ତାଙ୍କୁ କିଛି ଦୁର୍ଲ୍ଲଭ ନୁହଇ
ଅସାଧ୍ୟ ସାଧନ କରିପାରିଇ ଯେ ସେହି ।
ଏମନ୍ତେ ସୂତ ମହର୍ଷି ମୁନିଗଣ ମେଳେ
ବ୍ରହ୍ମ ପୁରାଣ କହନ୍ତି ମନ କୁତୁହଳେ ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଏ ଗୀତ ରଚଇ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତରଖଣ୍ଡେ ସୂତ
ଶୌନକ ସମ୍ବାଦେ ଅନୁବଂଶ ପ୍ରସଙ୍ଗେ
ଭରତାଦ୍ୟ ଉଦ୍ଭବ କଥନଂ ନାମ
ଦ୍ୱାତ୍ରିଂଶୋଽଧ୍ୟାୟଃ

—*—

## ତ୍ରୟସ୍ତ୍ରିଂଶ ଅଧ୍ୟାୟ
## ଜହ୍ନୁ ଓ ପାଣ୍ଡୁ ବଂଶ କଥନ

ସୂତ ଉବାଚ

କହନ୍ତି ଯେ ସୂତ ମୁନି ଶୁଣ ମନ ଦେଇ
ଜହ୍ନୁ ପାଣ୍ଡୁ ରାଜାଙ୍କର ବଂଶ କଥା ମୁହିଁ ।
ଅଟେ ଧର୍ମ ପରାୟଣ ରାଜା ପରୀକ୍ଷିତ
ବିଷ୍ଣୁଙ୍କ ଭକତ ଆଉ ସର୍ବଗୁଣେ ଯୁକ୍ତ ।
ଚାରି ପୁତ୍ର ତାହାଙ୍କର ହୋଇଲେ ଜନମ
ଶୁଣ କହୁଅଛି ମୁହିଁ ସେମାନଙ୍କ ନାମ ।
ଜନ୍ମେଜୟ ଶ୍ରୁତସେନ ଉଗ୍ରସେନ ବୀର
ଭୀମସେନ ସହିତରେ ଏ ଚାରି କୁମର ।
କୁରୁପୁତ୍ର ଜହ୍ନୁଙ୍କର ସୁରଥ ତନୟ
ସୁରଥଙ୍କ ସୁତ ବିଦୁରଥ ନରରାୟ ।
ହୋଇଲା ବିଦୂରଥର ଯେବଣ ନନ୍ଦନ
ସାର୍ବଭୌମ ବୋଲି ନାମ ବିଦିତ ଭୁବନ ।
ତାର ପୁତ୍ର ଜୟସେନ ନାନାଗୁଣେ ଗୁଣି
ତାହାର ସୁତ ଆରାଧି ଅୟୁତାୟୁ ବେନି ।
ଅକ୍ରୋଧନ ବୋଲି ଖ୍ୟାତ ତାହାର ନନ୍ଦନ
ତାର ପୁତ୍ର ଦେବାତିଥି ଶୁଣ ତପୋଧନ ।
ଋକ୍ଷ ନାମଧାରୀ ପୁଣ ତାହାର ଯେ ସୁତ
ଋକ୍ଷ ବୀର୍ଯ୍ୟେ ଭୀମସେନ ହୋଇଲା ସମ୍ଭୂତ ।
ଭୀମସେନର କୁମର ଦିଲ୍ଲିପ ରାଜନ
ଦିଲ୍ଲୀପଠାରୁ ପ୍ରତୀପ ହେଲା ଉତପନ ।
ପ୍ରତୀପ ବୀର୍ଯ୍ୟରେ ଜନମିଲେ ତିନିସୁତ
ପରମ ସୁନ୍ଦର ସେହୁ ସର୍ବ ଗୁଣ ଯୁକ୍ତ ।
ଦେବାପି ଶାନ୍ତନୁ ଆଦ ବାହ୍ଲିକ ନାମରେ
ଜନମିଲେ ଶୁଭଲଗ୍ନେ ତିନୋଟି କୁମରେ ।
ଦେବାପି ବାଲ୍ୟକାଳରୁ ବନେ କଲା ଗତି
ବିଶାଳ ରାଜ୍ୟେ ଶାନ୍ତନୁ ହେଲେ ଅଧିପତି ।
ଏହାଙ୍କ ବିଷୟେ ଜନେ ଗାନ୍ତି ଶ୍ଳୋକ ଗୀତ
ବୃଦ୍ଧଙ୍କୁ ଛୁଇଁଲେ ଏ ଶାନ୍ତନୁ ନରନାଥ ।
ତତ୍କ୍ଷଣେ ନବ ଯୌବନ ଧରନ୍ତି ସେ ବୃଦ୍ଧ
ତାଙ୍କଠାରୁ ଶାନ୍ତି ଲଭୁଥାନ୍ତି ନରବୃନ୍ଦ ।
ବିଖ୍ୟାତ ତାହାଙ୍କ ନାମ ଅଟଇ ସଂସାରେ
ସେ ଶାନ୍ତନୁ ନାନାଗୁଣେ ଗୁଣି ସର୍ବପରେ ।

ସେହି ଶାନ୍ତନୁଙ୍କ ରାଜ୍ୟେ ବାରବର୍ଷ ଯାଏ
ଜଳ ନ ବର୍ଷିଲେ ଇନ୍ଦ୍ର ଦେବଙ୍କର ରାୟେ ।
ଏମନ୍ତ ଯେ ଦେଖିଲେ ରାଜ୍ୟ ହୋଇଯାଏ ନାଶ
ବିନୟେ ପୁଚ୍ଛିଲେ ବ୍ରାହ୍ମଣଙ୍କୁ ନରେଶ ।
ମୋ ରାଜ୍ୟେ କାହିଁକି ଇନ୍ଦ୍ର ବରଷା ନ କରେ
କି ଅପରାଧ କରିଛି ମୁଁ ତାଙ୍କ ପାଦରେ ।
ବିପ୍ରେ ବୋଇଲେ ହେ ରାଜା ନ୍ୟାୟ ଅନୁସାର
ତବ ଜ୍ୟେଷ୍ଠ ଭ୍ରାତାଙ୍କର ରାଜ୍ୟେ ଅଧିକାର ।
ତୁମ୍ଭେ ଏ ପୃଥିବୀ ଭୋଗୁଅଛ ବର୍ତ୍ତମାନ
ଏଣୁ ଅନ୍ୟାୟ କରିଛ ତୁମ୍ଭେ ଯେ ରାଜନ ।
ଆବର ପୁଚ୍ଛିଲେ ରାଜା ସେହି ଦ୍ୱିଜଗଣେ
ମୋହର କର୍ତ୍ତବ୍ୟ କିସ କୁହ ତୁମ୍ଭେମାନେ ।
ବିପ୍ରେ ବୋଇଲେ ଯେବନୁଁ ହେଲେ ନୃପବର
ଦେବାପି ପତିତ ନ ହୁଅନ୍ତି ନରେଶ୍ୱର ।
ତାବତ ଏ ରାଜ୍ୟ ତାହାଙ୍କର ସୁନିଶ୍ଚୟ
ତାଙ୍କୁ ରାଜ୍ୟ ଦିଅ ଏବେ ତୁମ୍ଭେ ନରରାୟ ।
ବିପ୍ରଗଣେ ଏହିପରି କୁହନ୍ତେ ବୁଝାଇ
ତାହାଙ୍କ ମନ୍ତ୍ରୀ ଦୁର୍ଜ୍ଜନ କହିଲେକ ତହିଁ ।
ବେଦର ବିରୁଦ୍ଧବାଦୀ କେତେକ ମାନବେ
ଦେବାପିଙ୍କ ଲାଗି ବନେ ପଠାଇଲା ତେବେ ।
ବନେଯାଇ ସେମାନେ ଦେବାପି ସନ୍ନିଧାନେ
ବେଦର ବିରୁଦ୍ଧ ବାଦ ତୋଳିଲେ ବଚନେ
ଅତ୍ୟନ୍ତ ସରଳ ସେହି ଦେବାପିର ମନ
ବେଦର ବିରୁଦ୍ଧ ପଥେ କଲେକ ସ୍ଖଳନ ।
ବିପ୍ରଙ୍କର କଥାମତେ ଶାନ୍ତନୁ ନୃପତି
ଦ୍ୱିଜଗଣ ସଙ୍ଗେ ଘେନି ବନେ କଲେ ଗତି ।
ପରିବର୍ତ୍ତି ଲାଗି ଶୋକେ ଅନୁତାପ ମନ
ଜ୍ୟେଷ୍ଠ ଭ୍ରାତଙ୍କୁ ଯେ ରାଜ୍ୟ ଅର୍ପିବା କାରଣ
ଅନୁରୋଧ କଲେ ଯାଇ ତାହାଙ୍କ ପାଶରେ
ତୁମ୍ଭେ ଜ୍ୟେଷ୍ଠ ଭ୍ରାତ ବସଁ ଯାଇଣ ଗାଦିରେ
ବିପ୍ରଗଣେ ବେଦବାକ୍ୟ ଗାଇଣ ଲାଗିଲେ
ବେଦର ବିରୁଦ୍ଧବାକ୍ୟ ସେ ଦେବାପି ବୋଲେ
ଅନେକ ବେଦ ବିରୁଦ୍ଧ ବାକ୍ୟ ସେହୁ ଭଣେ
କହିଲେ ସମ୍ବୋଧି ଶାନ୍ତନୁଙ୍କୁ ବିପ୍ରଗଣେ ।
ଫେରି ଚଳ ହୋ ରାଜନ ଶୁଣ ମୋ ବଚନ
ଅତିବ ନିବନ୍ଧେ ଆଉ ନାହିଁ ପ୍ରୟୋଜନ ।

ଅନାବୃଷ୍ଟିର କାରଣ ସେହି ଦୋଷ ସବୁ
ଆଜଠାରୁ ହଟିଲା ହେ କୌରବ ପୁଙ୍ଗବ ।
ବେଦ ବାକ୍ୟ ଚିରକାଳ ପୂଜ୍ୟ ସମ୍ମାନିତ
ତହିଁ ଦୋଷ ଦେଇଣ ଏ ହୋଇଲେ ପତିତ ।
ଜ୍ୟେଷ୍ଠଭାଇ ପତିତ ହୁଅନ୍ତେ ନୃପବର
ପରିବର୍ତ୍ତି ଲାଗି ଦୋଷ ନଥାଏ ଆବର ।
ଏହିରୂପେ ଆଦେଶ କରନ୍ତେ ବିପ୍ରଗଣ
ଆପଣା ରାଜ୍ୟକୁ ନୃପ ଫେରିଲେ ତକ୍ଷଣ ।
ଦେବାପି ଯଦ୍ୟପି ବନେ ଥିଲେ ଜାଣ ଋଷି
ବେଦ ବାକ୍ୟର ବିରୁଦ୍ଧ କହିଲେକ ସେହି ।
ସେ ହେତୁ ରାଜ୍ୟରେ ଇନ୍ଦ୍ର କଲେ ବରଷଣ
ଶାନ୍ତନୁ ରାଜ୍ୟରେ ସୁଖି ହେଲେ ପ୍ରଜାଗଣ ।
ଏମନ୍ତେ କହିଲେ ଠିକେ ଶାନ୍ତନୁ ଚରିତ
ମନଦେଇ ମୁନିମାନେ ସବୁ ଶୁଣିଲତ ।
ଏବେ ହୋ ଶ୍ରବଣ କର ବାହ୍ଲିକ ପ୍ରସଙ୍ଗ
ତୁମ୍ଭ ଆଗରେ କହୁଛି ବଳାଇ ସରାଗ ।
ବାହ୍ଲିକଙ୍କ ଏକ ପୁତ୍ର ସୋମଦତ୍ତ ନାମ
ତାହାର ତିନି କୁମାର ଗୁଣେ ଅନୁପାମ ।
ଭୂରି ଭୂରିଶ୍ରବା ଶଲ୍ୟ ଏହି ତିନିଜଣ
ମହାବୀର୍ଯ୍ୟ ମହାବଳୀ ବିଖ୍ୟାତ ଭୁବନ ।
ଶାନ୍ତନୁଙ୍କ ଠାରୁ ସୁରନଦୀର ଉଦରେ
ମହାକୀର୍ତ୍ତି ମହାବଳ ଭୀଷ୍ମ ଜନ୍ମ ଧରେ ।
ସତ୍ୟବତୀ ଗର୍ଭେ ସେହି ଶାନ୍ତନୁ ନୃପତି
ଚିତ୍ରାଙ୍ଗଦ ଯେ ବିଚିତ୍ରବୀର୍ଯ୍ୟ ମହାମତି ।
ଏହି ଦୁଇ ପୁତ୍ରବରେ କଲେ ଉତ୍ପାଦନ
ବାଲ୍ୟକାଳେ ଚିତ୍ରାଙ୍ଗଦେ କରି ମହାରଣ ।
ଗନ୍ଧର୍ବ ନିଧନ କଲେ ମିତ୍ରସ୍ୟ ନନ୍ଦନ
ବିଚିତ୍ରବୀର୍ଯ୍ୟ ରାଜତ୍ୱ କଲେ ତେଣୁ ଜାଣ ।
କାଶୀରାଜ ତନୟା ଦୁଇଟି ଗୁଣବନ୍ତି
ଅମ୍ବିକା ଅମ୍ବାଳିକା ଯେ ନାମ ସେ ବହନ୍ତି ।
ବିଚିତ୍ରବୀର୍ଯ୍ୟ ତାହାଙ୍କୁ ବିବାହ ହୋଇଲେ
ରତି କାମାସକ୍ତ ମନେ ଭୋଗି ସେ ଲାଗିଲେ ।
ନିରନ୍ତର କାମିନୀଙ୍କ ସଙ୍ଗରେ ତାଙ୍କର
ରାଜଯକ୍ଷ୍ମା ନାମେ ରୋଗ ବ୍ୟାପିଲା ଶରୀର ।
ତେଣୁ ସେ ବିଚିତ୍ରବୀର୍ଯ୍ୟ ପଞ୍ଚତ୍ୱ ପାଇଲେ
ଏରୂପେ ସେ ବଂଶ ପୁତ୍ର ବିହୀନ ହୋଇଲେ ।

ସେ ଉତ୍ତାରୁ ଘଟଣା ଯା ହେଲା ତାହା ଶୁଣ
ଠିକେ ଠିକେ ତୁମ୍ଭ ଆଗେ କରୁଛି ବଖାଣ ।
ପରାଶରଙ୍କ ତନୟ କୃଷ୍ଣ-ଦ୍ୱୈପାୟନ
ସତ୍ୟବତୀର ବଚନ ନ କରି ଲଙ୍ଘନ ।
ମାତୃବାକ୍ୟେ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରେ ମୁନି
ଦୁଇ ପୁତ୍ର ଜାତକଲେ ଗୁଣୀଙ୍କ ଅଗ୍ରଣୀ ।
ଧୃତରାଷ୍ଟ୍ର ଆଉ ପାଣ୍ଡୁ ସେ ଦୁହିଙ୍କ ନାମ
ମହା ବଳବନ୍ତ ଦୁହେଁ ଖ୍ୟାତ ଧରାଧାମ ।
ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀ ପଠାଇଲେ ଦାସୀ
ତହିଁ ଜନ୍ମାଇଲେ ପୁତ୍ର ବ୍ୟାସ ମହାଋଷି ।
ବିଦୁର ସେ ପୁତ୍ର ନାମ ଅତି ଗୁଣବାନ
ପରମ ଧାମିକ ସଦା ବିଷ୍ଣୁପାଦେ ମନ ।
ଶତେକ ନନ୍ଦନ ହେଲେ ଧୃତରାଷ୍ଟ୍ରଙ୍କର
ସବୁପରେ ଶ୍ରେଷ୍ଠ ଦୁର୍ଯ୍ୟୋଧନ ନରେଶ୍ୱର ।
ବନେ ଯାଇ ମୃଗଶାପେ ପାଣ୍ଡୁ ନୃପବର
ପୁତ୍ର ଉତ୍ପାଦନ ଶକ୍ତି ହରାନ୍ତି ତତ୍ପର ।
ତାହାଙ୍କ ପ୍ରଥମ ପତ୍ନୀ କୁନ୍ତୀ ଗୁଣବତୀ
ଧର୍ମ ବୀର୍ଯ୍ୟେ ଯୁଧିଷ୍ଠିରେ ଜନ୍ମ କଲେ ସତୀ ।
ପବନଙ୍କ ଠାରୁ ଭୀମେ କଲେ ସେ ଜନମ
ଇନ୍ଦ୍ରଙ୍କ ବୀର୍ଯ୍ୟେ ଜନମ ହେଲେ ଅରଜୁନ ।
ପାଣ୍ଡୁଙ୍କ ଦ୍ୱିତୀୟ ପତ୍ନୀ ମାଦ୍ରୀର ଉଦରେ
ଅଶ୍ୱିଦୟ ଠାରୁ ଜାତ ସେ ଦୁଇ କୁମାରେ ।
ନକୁଳ ସହଦେବ ଯେ ସେ ଦୁହିଁଙ୍କ ନାମ
ପାଣ୍ଡୁଙ୍କ ଏ ପାଞ୍ଚପୁତ୍ର ଖ୍ୟାତ ଧରାଧାମ ।
ପଞ୍ଚପାଣ୍ଡୁ ପୁତ୍ରଙ୍କର ଦ୍ରୌପଦୀ ଉଦରେ
ଜନମିଲେ ପୁଣ୍ୟବନ୍ତ ଯେ ପାଞ୍ଚ କୁମରେ ।
ଯୁଧିଷ୍ଠିର ବୀର୍ଯ୍ୟେ ପ୍ରତିବିନ୍ଧ୍ୟର ଜନମ
ଭୀମସେନ ଠାରୁ ସେ ମସୁତ ପୁତ୍ର ନାମ ।
ଅର୍ଜୁନ ଔରସେ ପୁତ୍ର ନାମ ଶ୍ରୁତକୀର୍ତ୍ତି
ଶତାନୀକ ନାମେ ଜନ୍ମ ନକୁଳ ସନ୍ତତି ।
ସହଦେବ ଠାରୁ ଶ୍ରୁତକର୍ମାର ଜନମ
ଏମନ୍ତେଣ ପାଞ୍ଚପୁତ୍ର ପାଣ୍ଡବଙ୍କ ଜାଣ ।
ପଞ୍ଚ ପାଣ୍ଡବଙ୍କର ଯେ ଅନ୍ୟ ପୁତ୍ରେ ଯେହି
ତାହାଙ୍କ ନାମ କହୁଛି ଶୁଣ ମନଦେଇ ।
ଯୁଧିଷ୍ଠିର ଠାରୁ ଦେବୀ ଯୌଧେୟୀ ଜଠରେ
ଦେବକ ନାମେ ପୁତ୍ରେକ ଜନ୍ମଲଭ କରେ ।

ଭୀମଠାରୁ ହିଡ଼ିମ୍ବାର ଘଟୋତ୍କଚ ବୀର
କାଶୀ ଗର୍ଭେ ସର୍ବଗ ଭୀମର କୁମର ।
ବିଜୟାର ଗର୍ଭେ ସହଦେବର ଔରସେ
ସୁହୋତ୍ର ନାମରେ ପୁତ୍ର ଖ୍ୟାତ ସର୍ବଦେଶେ ।
କରେଣୁମତୀର ଗର୍ଭେ ନକୁଳ ବୀର୍ଯ୍ୟରେ
ନିରମିତ୍ର ନାମେ ସୁତ ଖ୍ୟାତ ଅବନୀରେ ।
ଅର୍ଜୁନଙ୍କ ବୀର୍ଯ୍ୟେ ନାଗକନ୍ୟା ଉଲୁପୀର
ଇରାବାନ ନାମେ ସୁତ ଜନ୍ମିଲା ମହୀର ।
ମଣିପୁର ପତି ପତ୍ନୀ ଚିତ୍ରାଙ୍ଗଦା ସତୀ
ତାର ଗର୍ଭେ ଅର୍ଜୁନର ସୁପୁତ୍ର ଉତ୍ପତ୍ତି ।
ବଭ୍ରୁବାହନ ନାମରେ ଖ୍ୟାତ ଭୂମଣ୍ଡଳେ
ବିପୁଳ ବିକ୍ରମୀ ଅଟେ ସେହୁ ଧରାତଳେ ।
ଅର୍ଜୁନ ଔରସେ ଦେବୀ ସୁଭଦ୍ରା ଉଦରେ
ମହାବଳୀ ଅଭିମନ୍ୟୁ ଜନ୍ମଲଭ କରେ ।
ବାଲ୍ୟକାଳରୁ ବୀରଙ୍କ ମଧ୍ୟେ ଶ୍ରେଷ୍ଠ ସେହି
ମହାରଥୀ ଗଣେ ରଣେ ଦେଲା ଯେ ହରାଇ ।
ସର୍ବ କୁରୁକୁଳ ଯାକ କ୍ଷୟ ହୁଅନ୍ତେଣ
ସେକାଳେ ଉତ୍ତରା ଗର୍ଭୁଁ ଜନ୍ମିଲା ସନ୍ତାନ ।
ସର୍ବଗୁଣେ ଯୁକ୍ତ ଅଟେ ସେ କୁମରମଣି
ପରୀକ୍ଷିତ ନାମେ ଖ୍ୟାତ ଅଟଇ ଧରଣୀ ।
ଏ ପରୀକ୍ଷିତ ଯେ କାଳେ ଗର୍ଭ ମଧ୍ୟେ ଥିଲେ
ଅଶ୍ୱତ୍ଥାମା ବ୍ରହ୍ମ ଅସ୍ତ୍ର ହାଣିଲା ସେ କାଳେ ।
ସେହି ବାଣ ଗର୍ଭେ ମଧ୍ୟେ ଭସ୍ମୀଭୂତ ହେଲା
ବଞ୍ଚାଇଲେ ପରୀକ୍ଷିତେ ପ୍ରଭୁ ନନ୍ଦବଳା ।
ଧର୍ମ ଅନୁସାରେ ଏବେ ସେହି ପରୀକ୍ଷିତ
ଅନନ୍ତ ପୃଥିବୀ ପାଳେ ସଦା କରି ଯତ୍ନ ।
ଏହିପରି କୁରୁବଂଶ ବିବରଣ ମାନ
ବଖାଣ କରିଲେ ପୌରାଣିକ ତପୋଧନ ।
ତାହାପରେ ଆନ କଥା ପ୍ରଚାରିବା ପାଇଁ
ବୋଇଲେ ଋଷିଙ୍କ ସୁତ କ୍ଷେତର କହଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ ସୁତ
ଶୌନକ ସମ୍ବାଦେ ପାଣ୍ଡୁବଂଶ
ବର୍ଣ୍ଣନଂ ଚରିତେ ନାମ
ସପ୍ତୋବିଂଶୋଽଧ୍ୟାୟଃ ।



## ଚତୁର୍ବିଂଶ ଅଧ୍ୟାୟ
## ପରୀକ୍ଷିତଙ୍କର ବଂଶାନୁଚରିତବର୍ଣ୍ଣନ

ସୂତ ଉବାଚ

ବଦନ୍ତି ଯେ ପୌରାଣିକ ସୂତ ଆନନ୍ଦରେ
ଶୁଣ ଆହେ ମୁନିଗଣମାନେ କର୍ଣ୍ଣଦ୍ୱାରେ ।
ଯେଉଁ ଯେଉଁ ରାଜାମାନେ ହେବେ ଭବିଷ୍ୟତେ
ସେହିକଥାମାନ ମୁହିଁ ପ୍ରକାଶିବି ଏଥେ ।
କୁରୁବଂଶର ଚନ୍ଦ୍ରମା ରାଜା ପରୀକ୍ଷିତ
କହିଲଇଁ ତାହାଙ୍କର ଜନମ ବୃତ୍ତାନ୍ତ ।
ପରଂବ୍ରହ୍ମ ଶ୍ରୀହରିଙ୍କ ପ୍ରଧାନ ଭକତ
ତାହାଙ୍କ ପରି ଧରାରେ ନାହିଁ ଭାଗ୍ୟବନ୍ତ ।
ଏବେ ସେହି ପରୀକ୍ଷିତ ଅର୍ଜୁନଙ୍କ ନାତି
ସର୍ବଶୁଦ୍ଧେ ହୋଇଛନ୍ତି ଏ ଧରାର ପତି ।
ଚାରିଗୋଟି ପୁତ୍ରହେଲେ ତାଙ୍କର ଉତ୍ପନ୍ନ
ଅତି ଗୁଣବନ୍ତ ଭବେ ସେ ଚାରି ନନ୍ଦନ ।
ଜନ୍ମେଜୟ ନାମେ ଜ୍ୟେଷ୍ଠ କୁମର ଅଟଇ
ଶ୍ରୁତସେନ ଉଗ୍ରସେନ ମଧ୍ୟମ ବୋଲାଇ ।
କନିଷ୍ଠ ନନ୍ଦନ ନାମ ଅଟେ ଭୀମସେନ
ଏହି ପରକାରେ ଅଟେ ସେ ଚାରି ନନ୍ଦନ ।
ଜ୍ୟେଷ୍ଠ ହେତୁ ଜନ୍ମେଜୟ ହେବ ନରପତି
ପାଳିବ ପ୍ରଜାମାନଙ୍କୁ ଆନନ୍ଦରେ ଅତି ।
ଜନ୍ମେଜୟର ନନ୍ଦନ ଶତାନିକ ହେବ
ଯାଜ୍ଞବଲ୍କ୍ୟ ପାଶେ ସେହୁ ବେଦଜ୍ଞ ହୋଇବ
ଅସ୍ତ୍ର ଶିକ୍ଷାକରି କୃପାଚାର୍ଯ୍ୟଙ୍କ ପାଶରେ
ବିଷୟେ ବିରକ୍ତ ଚିତ୍ତ ହୋଇବ ତାହାରେ ।
ହେ ଶୌନକ ତୁମ୍ଭ ଉପଦେଶରେ ସେ ପୁଣ
ଉତ୍ତମ ପ୍ରକାରେ ଲଭି କରି ଆତ୍ମଜ୍ଞାନ ।
ଶେଷେ ଶତାନିକ ବ୍ରହ୍ମଜ୍ଞାନୀ ହୋଇକରି
ନିର୍ବାଣ ମୁକ୍ତି ଲଭିବ ହରିଙ୍କୁ ସୁମରି ।
ତାହାଙ୍କ କୁମର ଅଶ୍ୱମେଧଦତ୍ତ ହେବ
ଅଧିସୀମ କୃଷ୍ଣ ତାର ତନୟ ହୋଇବ ।
ତାହାର ତନୟ ହେବ ନିଚକ୍ଷୁ ନାମର
ଯେ ସମୟେ ଅଧିକାର ହୋଇବ ତାହାର ।
ହସ୍ତିନା ନଗର ହେବ ଗଙ୍ଗାର ଗର୍ଭସ୍ଥ
କୌଶାମ୍ବୀରେ ଯେ ନିଚକ୍ଷୁ ହେବ ଅଧିଷ୍ଠିତ

ତାହାଙ୍କ ଔରସେ ଉଷ୍ଣ ଲଭିବ ଜନମ
ଚିତ୍ରରଥ ହେବ ସେହି ଉଷ୍ଣର ନନ୍ଦନ ।
ଶୁଚିରଥ ତାର ପୁତ୍ର ମହା ଗୁଣବନ୍ତ
ବୃଷ୍ଟିମାନ ନାମେ ପୁଣି ହୋଇବ ତା ସୁତ ।
ସୁଷେଣ ନାମରେ ବୃଷ୍ଟିମାନ ପୁତ୍ର ହେବ
ତାହାର ପୁତ୍ରନାମ ଯେ ସୁନୀଥ ହୋଇବ ।
ତାହାର ପୁତ୍ର ହୋଇବେ ରୁଚ ନାମଧାରୀ
ନିଚକ୍ଷୁ ନାମେ କୁମର ହେବ ଯେ ତାହାରି
ମହାବଳ ନିଚକ୍ଷୁର ସନ୍ତାନ ହୋଇବ
ଆବର ତାହାର ନାମ ସୁଖାବଳ ହେବ ।
ପରିପ୍ଲବ ନାମେ ସୁଖାବଳର ନନ୍ଦନ
ମେଧାବୀ ତାର ତନୟ ବୋଲାଇବ ଜାଣ ।
ତାହାର ଜାତ ହୋଇବ ଯେବଣ କୁମର
ନୃପଞ୍ଜୟ ବୋଲି ନାମ ଖ୍ୟାତ ହେବ ତାର
ନୃପଞ୍ଜୟର କୁମାର ନାମ ହେବ ମୃଦୁ
ମୃଦୁ ପୁତ୍ର ତିଗ୍ମ ନାମେ ହେବ ମହା ସାଧୁ ।
ତିଗ୍ମ ବୀର୍ଯ୍ୟେ ବୃହଦ୍ରଥ ଜନମ ଲଭିବ
ତାର ପୁତ୍ର ବସୁଦାମ ନାମ ପ୍ରକାଶିବ ।
ସେହି ବସୁଦାମ ହେବ ଅତି ବୁଦ୍ଧିମାନ
ଶତାନୀକ ନାମେ ହେବ ତାହାର ସନ୍ତାନ ।
ଶତାନୀକର କୁମାର ନାମ ଉଦୟନ
ଉଦୟନ ପୁତ୍ର ଅହୀନର ହେବ ନାମ ।
ଅହୀନର ଠାରୁ ହେବ ଯେଉଁ ପୁତ୍ରବର
ଖଣ୍ଡପାଣି ବୋଲି ନାମ ହୋଇବ ତାହାର
ତାହାର ନନ୍ଦନ ନାମ ହେବ ନରମିତ୍ର
କ୍ଷେମକ ନାମେଣ ହେବ ନରମିତ୍ର ପୁତ୍ର ।
ସେ କ୍ଷେମକ ମହାମତି ଅତି ପୁଣ୍ୟବନ୍ତ
ଯାହାର ନିମନ୍ତେ ହୁଏ ଏକ ଶ୍ଳୋକ ଗୀତ ।
ଯେଉଁ ବଂଶ କରେ ବିପ୍ର, କ୍ଷତ୍ରୀଙ୍କ ଉତ୍ପନ୍ନ
ସେ ବଂଶ ଉଜ୍ଜ୍ୱଳ କଲେ ରାଜ-ଋଷିଗଣ ।
ସେ ବିସ୍ତୀର୍ଣ୍ଣ କୁରୁ ରାଜବଂଶ କଳିକାଳେ
ଏହି ସେହି କ୍ଷେମକ ନାମକ ମହୀପାଳେ ।
ସମାପ୍ତ ହୋଇବ ଏହା ଜାଣ ସୁନିଶ୍ଚୟ
କୁରୁବଂଶ କଥା ଏହିପରି ଚିତ୍ରମୟ ।
ବିଚିତ୍ର ବୀର୍ଯ୍ୟ ଆବର ପାଣ୍ଡୁବଂଶ କଥା
ଶୁଣିଲିତ ସେ ବଂଶର ଭବିଷ୍ୟ ବାରତା ।

ହେ ଶୌନକ ଆଦି ସର୍ବ ବ୍ରହ୍ମ-ମୁନିଗଣ
ପରମ ପବିତ୍ର ଅଟେ ଏ ବ୍ରହ୍ମ ପୁରାଣ ।
ମନ ଦେଇ ଭକ୍ତିଭାବେ ଯେବା ଏହା ଶୁଣେ
କି ଅବା ପଠନକରି ହୃଦମଧ୍ୟେ ଗୁଣେ ।
ବହୁ ପୁଣ୍ୟ ଲଭଇ ସେ ଭାଗ୍ୟବନ୍ତ ଜନ
ଏଥିରେ ସଂଶୟ ନାହିଁ ଜାଣ ତପୋଧନ ।
ଏହାକହି ମୁନିବର ହୋଇଲେ ମଉନ
ଗୀତଛନ୍ଦେ ଭାବି ଲେଖେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ କୁରୁବଂଶ
ବିବରଣ ବର୍ଣ୍ଣନେ ନାମ
ଚତୁଃତ୍ରିଂଶୋଽଧ୍ୟାୟଃ ।

—o—

## ପଞ୍ଚତ୍ରିଂଶ ଅଧ୍ୟାୟ
## ଇକ୍ଷ୍ୱାକୁ ବଂଶର ବିବରଣ ବର୍ଣ୍ଣନ
### ସୂତ ଉବାଚ

କହନ୍ତି ସେ ସୂତମୁନି ଶୁଣ ତପୋଧନ
ଇକ୍ଷ୍ୱାକୁ ବଂଶରେ ହେବେ ଯେତେକ ରାଜନ
ତୁମ୍ଭ ନିକଟେ କହିବି ତାହାଙ୍କ ବିଷୟ
ଯାହାପରେ ସେହୁ ଭବେ ହେବେ ନରରାୟ
ବୃହଦ୍‌ବଳ ନାମେ ଯେଉଁ ନୃପତି ଶେଖର
ବୃହତ୍ କର୍ଣ୍ଣ ନାମେ ହେବେ ତାହାର କୁମର
ତାର ପୁତ୍ର ଉରୁକ୍ଷୟ ମହାବଳୀ ହେବ
ବତ୍ସ ନାମେ ଉରୁକ୍ଷୟ କୁମର ଲଭିବ ।
ବତ୍ସର ହୋଇବ ଯେଉଁ ସୁବୁଦ୍ଧି ତନୟ
ତାହାର ନାମ ପ୍ରକାଶ ହେବ ଉତ୍ସବ୍ୟୂହ ।
ଉତ୍ସବ୍ୟୂହର ତନୟ ଖ୍ୟାତ ପ୍ରତିବ୍ୟୋମ
ପ୍ରତିବ୍ୟୋମ ପୁତ୍ରହେବ ଦିବାକର ନାମ ।
ଦିବାକର ଠାରୁ ଯେଉଁ ସନ୍ତାନ ଜନ୍ମିବ
ତାର ନାମଟି ହୋଇବ ବୀର ସହଦେବ ।
ସହଦେବର ନନ୍ଦନ ହେବ ବୃହଦଶ୍ୱ
ଭାନୁରଥ ନାମେ ତାର ପୁତ୍ର ସେ ପ୍ରକାଶ ।
ଭାନୁରଥର କୁମର ଜନମିବ ଏକ
ତାହାର ନାମ ବିଖ୍ୟାତ ହୋଇବ ପ୍ରତୀକ ।
ପ୍ରତୀକର ସୁପ୍ରତୀକ ନାମେ ପୁତ୍ର ହେବ
ତାର ଯେଉଁ ପୁତ୍ର ହେବ ନାମ ମରୁଦେବ ।
ମରୁଦେବ ଠାରୁ ଜନ୍ମ ହେବ ଯେଉଁ ପୁତ୍ର
ଧରଣୀରେ ନାମ ସେ ବହିବ ସୁନକ୍ଷତ୍ର ।
ସୁନକ୍ଷତ୍ରର ଜନ୍ମିବ ଯେବଣ କୁମର
ତାହାର ନାମ ଗୋଟି ସେ ହୋଇବ କଙ୍କରୀ
କିଙ୍କର ଠାରୁ ଜନମ ହେବ ଯେ ମହୀରେ
ଅନ୍ତରୀକ୍ଷ ବୋଲି ନାମ ହୋଇବ ତାହାରେ
ଅନ୍ତରୀକ୍ଷର ସୁବର୍ଣ୍ଣ ନାମେ ପୁତ୍ର ହେବ
ତାର ପୁତ୍ର ମିତ୍ରାଜିତ ନାମ ପ୍ରକାଶିବ ।
ମିତ୍ରାଜିତର ଜନ୍ମିବ ଯେବଣ କୁମର
ବୃହଦ୍ଭ୍ରାଜ ବୋଲି ନାମ ହୋଇବ ତାହାର
ହୋଇବ ବୃହଦ୍ଭ୍ରାଜର ଧର୍ମିନାମେ ସୁତ
ଜଗତ ମଧ୍ୟରେ ସେହୁ ମହା ପୁଣ୍ୟବନ୍ତ ।
ଧର୍ମିର ହୋଇବ ସୁତ ନାମ କୃତଞ୍ଜୟ
କୃତଞ୍ଜୟ ପୁତ୍ର ନାମ ହେବ ରଣଜୟ ।
ତାହାର ତନୟ ଶାକ୍ୟ ନାମେ ବୋଲାଇବ
ଶୁଦ୍ଧୋଦନ ବୋଲି ଏକ ପୁତ୍ର ତାର ହେବ ।
ଶୁଦ୍ଧୋଦନର ନନ୍ଦନ ରାହୁଳ ହୋଇବ
ପ୍ରସେନ୍‌ଜିତ ରାହୁଳର ପୁତ୍ର ଜନମିବ ।
ସେହି ପ୍ରସେନ୍‌ଜିତର ଯେ ହେବ କୁମର
କ୍ଷୁଦ୍ରକ ବୋଲି ତା ନାମ ହୋଇବ ପ୍ରଚୁର
କ୍ଷୁଦ୍ରକ କୁମର ନାମ ହେବ ସେ ସୁରଥ
ସୁରଥର ପୁତ୍ର ନାମ ହୋଇବ ସୁମିତ୍ର ।
ସୁମିତ୍ର ରାଜନ ଠାରୁ ଇକ୍ଷ୍ୱାକୁଙ୍କ ବଂଶ
କଳିଯୁଗରେ ହେ ମୁନି ହୋଇଯିବେ ଶେଷ ।
ଏହି ପର୍ଯ୍ୟନ୍ତ ଯେ ସୂର୍ଯ୍ୟ ପୁତ୍ରଙ୍କର କୁଳ
କ୍ରମେ କ୍ରମେ ଏହି ବଂଶ ହୋଇବ ଦୁର୍ବଳ ।
ବୃହଦ୍‌ବଳ ରାଜା ଠାରୁ ଆରମ୍ଭ କରଣ
ସୁମିତ୍ର ରାଜା ଅମଳେ ହେଉ ସମାପନ ।
ଏହି ଯେ ଇକ୍ଷ୍ୱାକୁ ମହୀପତିଙ୍କର ବଂଶୀ
ସକଳେ ମହା ତେଜସ୍ୱୀ ଆବର ଯଶସ୍ୱୀ ।
ସୁମିତ୍ରର ଅବସାନ ସମୟରେ ଜାଣ
ଘୋର କଳି ବ୍ୟାପିଯିବ ଏ ସାରା ଭୁବନ ।
ବିଶାଖଯୂପ ନୃପତି ନାମ ପ୍ରକାଶିବ
ସେତେବେଳେ ଅବତୀର୍ଣ୍ଣ ହେବେ କଳ୍‌କୀଦେବ
ବିହଦ୍ରଥ ରାଜାର କୁମାରୀ ପଦ୍ମାବତୀ
ତାହାଙ୍କୁ ବିବାହ ହେବେ ଶ୍ରୀକଳ୍‌କୀ-ମୂରତି

ଦୁଷ୍ଟ ଦଳ ସନ୍ତପାଳି ଟେକିବେ ବିନାଶ
କଳିଯୁଗ ଶେଷ ହେବ ବିଚିତ୍ର ଘଟଣା ।
ଦେବାପି ନାମେଣ ରାଜା ସୋମବଂଶେ ଜାତ
ସୂର୍ଯ୍ୟବଂଶୀୟ ଯେ ମରୁ ନାମେ ନରନାଥ ।
ପ୍ରଭୁ କଲ୍‌କୀ ହରି ଏହି ରାଜନ ଦୁହିଙ୍କି
ଏ ଭାରତେ ରାଜପଦ ମାନ ଦେବେ ଡାକି ।
ପୁନରାୟ ସତ୍ୟଯୁଗ କରି ପ୍ରବର୍ତ୍ତିତ
ଚଳିବେ ବୈକୁଣ୍ଠ ପୁରେ ପ୍ରଭୁ ଜଗନ୍ନାଥ ।
କଳିର ବଂଶ ସମୂଳେ ବିନାଶ ହୋଇବ
ମ୍ଳେଚ୍ଛ ସଂହାରଣ ଲୀଳା କରିବେ ମାଧବ ।
ତେବେ ସାଧୁ ଧର୍ମ ରକ୍ଷା ହେବେ ଭୂମଣ୍ଡଳେ
ଘଟିବ ଏପରି କଥା ଜାଣ ଅବହେଳେ ।
ସୁମିତ୍ର ରାଜନଙ୍କର ରାଜତ୍ୱ ପର୍ଯ୍ୟନ୍ତ
ଭରଣ ପୁରୁଷ ହେବେ ସୂର୍ଯ୍ୟବଂଶୀ ଖ୍ୟାତ ।
ଏହିବଂଶରେ ଯେ ବୁଦ୍ଧଦେବ ଜନ୍ମ ହେବେ
ସଂସାରେ ବଉଦ୍ଧ ଧର୍ମ ପ୍ରଚାର କରିବେ ।
ପ୍ରକାଶ କରିଣ ଯଥୋଚିତରେ ଯେ ଅହିଂସା
ଅନ୍ତର୍ଦ୍ଧାନ ହୋଇ ଯାଇଛନ୍ତି ମହାଯଶା ।
ବୁଦ୍ଧ ଆଉ କଲ୍‌କୀ ଏହି ବେନି ଅବତାର
ସର୍ବ ଅବତାର ଠାରୁ ଶେଷ ମନେ କର ।
ଏହି ବେନି ଅବତାର ମଧ୍ୟେଣ ଶ୍ରୀରଙ୍ଗ
ଭକ୍ତ ଭାବ ଘେନି ଅବତରିବେ ଗୌରାଙ୍ଗ ।
ରାଧାକୃଷ୍ଣ ଦୁଇ ଦେହ ଏକ ତନୁ ଧରି
ଧନ୍ୟ କଳିକାଳେ ବିହରିବେ ଗୌରହରି ।
ସେହି ସମୟରେ ଜାଣ ଉତ୍କଳ ପ୍ରଦେଶେ
ନୃପଙ୍କ ମଉଡ଼ମଣି କୃଷ୍ଣଭକ୍ତ ବେଶେ ।
ଶ୍ରୀ ପ୍ରତାପରୁଦ୍ର ନାମେ ଗଙ୍ଗ ବଂଶଧର
ପରମ ଭକ୍ତ ହୋଇବେ ପୂର୍ଣ୍ଣବ୍ରହ୍ମଙ୍କର ।
ଇକ୍ଷ୍ୱାକୁ ବଂଶୀୟ ମରୁ ନାମେ ନରପତି
ଏଥିପରେ କଲ୍‌କୀଙ୍କର ଆଜ୍ଞା ଶିରେ ଧିତି ।
ଚନ୍ଦ୍ରବଂଶୀ ଦେବାପିର ବନ୍ଧୁ ପଣେ ଜାଣ
ସତ୍ୟ ଯୁଗ ଆରମ୍ଭରେ ବିସର୍ଜିବେ ପ୍ରାଣ ।
କଳି ରାଜା ଦର୍ପ ଏହିଠାରୁ ହେବ ହତ
ଧର୍ମ କର୍ମରେ ଚଳିବେ ମାନବେ ସମସ୍ତ ।
ଏହି ଯେ ଇକ୍ଷ୍ୱାକୁ ବଂଶ କଥା ପୁଣ୍ୟମୟ
ଶ୍ରବଣ ମାତ୍ରକେ ପାପ ତାପ ହୁଏ କ୍ଷୟ ।
ମହାପୁଣ୍ୟ ଲଭନ୍ତି ଯେ ଧର୍ମବନ୍ତମାନେ
ଏଥିରେ ସଂଶୟ ନାହିଁ ଆହେ ମୁନିଗଣେ ।
ଏହି ଆର୍ଯ୍ୟ ବଂଶାବଳି କଥା ଚମତ୍କାର
ଯେହୁ ଶୁଣେ ଶୁଭଗତି ହୁଅଇ ତାହାର ।
ଆଗମ ବଚନ ଏହୁ ନିଗମର ବାଣୀ
କହିଲି ତୁମ୍ଭ ଆଗରେ ସର୍ବ ପରମାଣି ।
ଏମନ୍ତେ କହିଣ ପୌରାଣିକ ସୁତ ବର
ବସିଲେ ମୁନିମାନଙ୍କ ମଧ୍ୟେ ହୋଇ ସ୍ଥିର ।
ଏ ବ୍ରହ୍ମ ପୁରାଣ ଅଟେ ଅମୀୟ ବାରିଧି
ଶ୍ରବଣ ପଠନେ ଲଭି ହୁଏ ସର୍ବ ସିଦ୍ଧି ।
ଅଷ୍ଟାଦଶ ପୁରାଣର ମୂଳ ଗ୍ରନ୍ଥ ଏହି
ପଢ଼ି ଶୁଣି ଜନମାନେ ଭବୁଁ ହୁଅ ସାହି ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
କ୍ଷେତ୍ର ମୋହନ ଯୁ ଭାଷା ପ୍ରବନ୍ଧେ ରଚଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ଭବିଷ୍ୟତ
ରାଜବଂଶ କଥନେ ନାମ
ପଞ୍ଚବିଂଶୋଽଧ୍ୟାୟଃ ।

—✦—

## ଷଟ୍‌ବିଂଶ ଅଧ୍ୟାୟ

### ବୃହଦ୍ରଥ ବଂଶଙ୍କର ଭବିଷ୍ୟତ ବର୍ଣ୍ଣନ

ଶୁଣ ଆହେ ସୁଜ୍ଞଜନ ଅପୂର୍ବ ଚରିତ
ମୁନିମାନଙ୍କୁ ଅନାଇଁ ପ୍ରକାଶିଲେ ସୁତ ।
ଶୁଣ ହେ ସକଳ ମୁନିଗଣ ମନସ୍ଥିରେ
ସଂକ୍ଷେପି କହୁଛି ତୁମ୍ଭମାନଙ୍କ ଆଗରେ ।
ମଗଧ ଦେଶର ରାଜା ଯେହୁ ଜରାସନ୍ଧ
ତାହା ବଂଶ ଗାଥା ଶୁଣ କରି ହୃଦ ବୋଧ ।
ଯେଉଁମାନେ ଭବିଷ୍ୟତ ବଂଶଧର ତାର
ସେମାନଙ୍କ ନାମ ଏବେ କରିବା ପ୍ରଚାର ।
ସହଦେବ ନାମେ ଜରାସନ୍ଧର ତନୟ
ତାହାର ପୁତ୍ର ସୋମାରି ମରତରେ ଶ୍ରେୟ ।
ସେ ସୋମାରି ପୁତ୍ର ନାମ ହେବ ଶ୍ରୁତବାନ
ଶ୍ରୁତବାନର କୁମର ଅୟୁତାୟୁ ଜାଣ ।

ଅଯୁତାୟୁ ଠାରୁ ଜନମିବ ଯେଉଁ ସୁତ
ତାହାର ନାମ ପ୍ରକାଶ ହେବ ଖାରମିତ୍ର ।
ଖାରମିତ୍ରର ଯେବଣ ତନୟ ହୋଇବ
ସକ୍ଷେମ ବୋଲିଣ ବ୍ରହ୍ମାଣ୍ଡରେ ଖ୍ୟାତ ହେବ
ତାହାର ଔରସେ ଜନମିବ ଯେଉଁ ସୁତ
ବୃହତ୍କର୍ମା ବୋଲି ନାମ ଜଗତେ ବିଖ୍ୟାତ
ସେନଜିତ୍ ନାମେ ବୃହତ୍ କର୍ମାର ନନ୍ଦନ
ତାହାର ପୁତ୍ର ହୋଇବ ଶ୍ରୁତଞ୍ଜୟ ନାମ ।
ଶ୍ରୁତଞ୍ଜୟର ତନୟ ବିପ୍ର ନାମେ ଖ୍ୟାତ
ସେହି ବିପ୍ରର ହୋଇବ ଶୁଚି ନାମେ ପୁତ୍ର ।
ଯେବଣ ପୁତ୍ର ଶୁଚିର ହୋଇବ ଜନମ
ଜଗତେ ପ୍ରକାଶ ହେବ ତାର ନାମ କ୍ଷେମ ।
କ୍ଷେମର ନନ୍ଦନ ଯେହୁ ହେବ ଧରାଧାମେ
ସଂସାରେ ଖ୍ୟାତ ହୋଇବ ସେ ସୁବ୍ରତନାମେ
ତାହାର ଯେ ପୁତ୍ର ଏକ ହୋଇବ ଉତ୍ପନ୍ନ
ଧର୍ମ ବୋଲି ନାମ ତାର ଖ୍ୟାତ ହେବ ଜାଣ
ଧର୍ମର ପୁତ୍ର ଶୁଶ୍ରବା ହେବ ବଳବାନ
ତା ପୁତ୍ର ନାମ ହୋଇବ ଜାଣ ଦୃଢ଼ସେନ ।
ଦୃଢ଼ସେନର ହୋଇବ ଏକଇ ସନ୍ତତି
ତାହାର ନାମ ବିଖ୍ୟାତ ହେବ ଯେ ସୁମତି ।
ନୃପତି ସୁବଳ ହେବ ତାହାର କୁମର
ସୁନୀଥ ନାମରେ ତାର ଜନ୍ମିବ କୁମର ।
ସତ୍ୟଜିତ ବୋଲି ପୁତ୍ର ତାହାର ହୋଇବ
ତାହାର କୁମର ବିଶ୍ୱଜିତ୍ ବୋଲାଇବ ।
ବିଶ୍ୱଜିତର ପୁତ୍ର ଯେ ହେବ ଉତପନ
ରିପୁଞ୍ଜୟ ନାମେ ଖ୍ୟାତ ହୋଇବ ଭୁବନ ।
ଏହିବଂଶେ ସହସ୍ରେକ ବରଷ ରହିବ
ଯେବେ ଏହି ନୟୁଗିତ କାଳ ଗତ ହେବ ।
ବିସ୍ତାର ନୋହିବ ଆଉ ଏହି ବଂଶ ଭବେ
କହିଲି ମୁଁ ସାର ଗାଥା ପୁରାଣ ପ୍ରସ୍ତାବେ ।
ମଗଧ ଦେଶରେ ଏ ଯେ ବୃହଦ୍ରଥ ବଂଶ
ଜରାସନ୍ଧଠାରୁ ଜାଣ ତେଇଶ ପୁରୁଷ ।
ଏ ଉତ୍ତାରୁ ପ୍ରଦ୍ୟୁତର ରାଜବଂଶ ଗାଥା
କହିବି ତୁମ୍ଭ ଅଗ୍ରତେ ପ୍ରକାଶିଣ ଯଥା ।
ସେହି ଯେ ଭବିଷ୍ୟ ରାଜାଗଣ ଯେହୁ ଯେତେ
ମହାତମା ସେହି ନନ୍ଦରାଜାର ସହିତେ ।

ସଭିଙ୍କ ନାମ ଏଠାରେ କରିବି ପ୍ରକାଶ
କଳି ପ୍ରାଦୁର୍ଭାବ ରାଜ ଚରିତ ବିଶେଷ ।
ଏମନ୍ତେ ପୁରାଣ ବକ୍ତା ସୁତ ମୁନିବର
ସାର ଗାଥା ପ୍ରକାଶିଲେ ମୁନି ସମାଜର ।
ଆରାଧି ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଗୀତରେ ଭଣଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ବୃହଦ୍ରଥ ବଂଶ
ଭବିଷ୍ୟତ ବର୍ଣ୍ଣନେ ନାମ
ଷଡ଼ବିଂଶୋଽଧ୍ୟାୟଃ ।

## ସପ୍ତବିଂଶ ଅଧ୍ୟାୟ
## ପ୍ରଦ୍ୟୋତ ବଂଶୀୟ ଓ ଭବିଷ୍ୟ ରାଜାମାନଙ୍କ ବିବରଣ

ସୁତ ଉବାଚ

ବଦନ୍ତି ଯେ ସୁତ ମୁନି ଶୁଣ ମୁନିବର
ଏ ବ୍ରହ୍ମ ପୁରାଣ ଗାଥା ଅମୃତହୁଁ ସାର ।
ବୃହଦ୍ରଥ ବଂଶରେ ଯେ ଶେଷ ନରପତି
ରାଜ ରିପୁଞ୍ଜୟ ନାମେ ଯେହୁ ଅଟେ ଖ୍ୟାତି ।
ସୁନୀକ ନାମରେ ମନ୍ତ୍ରୀ ତାହାର ହୋଇବ
ସେହି ଦୁଷ୍ଟ ରାଜ୍ୟ ଲୋଭେ ତାହାକୁ ବଧିବ
ଆପଣା ପୁତ୍ର ପ୍ରଦ୍ୟୋତେ ଦେବ ରାଜ୍ୟଭାର
ପାଳକ ହୋଇବ ସେହି ପ୍ରଦ୍ୟୋତ କୁମର ।
ତାହାର ହେବଟି ଯେଉଁ ସୁବୁଦ୍ଧି ନନ୍ଦନ
ବିଶାଖଯୁଥ ବୋଲିଣ ପ୍ରକାଶିବ ନାମ ।
ସେହି ବିଶାଖଯୁଥ ଯେ ହେବ ବିଷ୍ଣୁଭକ୍ତ
ଏହି ଧରାକୁ ପାଳିବ ହୋଇ ନରନାଥ ।
ସେହି ନୃପତି ଅମଳେ ପ୍ରଭୁ ନାରାୟଣ
କଳ୍କୀ ଅବତାର କରିଥିବେ ଯେ ଧାରଣ ।
ବହୁ ଉପଦେଶ କଥା ପ୍ରସଙ୍ଗରେ ଦେବେ
ରାଜ୍ୟରେ ଅଧର୍ମ ନାଶି ଧର୍ମକୁ ସ୍ଥାପିବେ ।
ବିଶାଖଯୁଥର ଯେହୁ ହୋଇବ କୁମର
ଅଜକ ବୋଲିଣ ନାମ ହୋଇବ ତାହାର ।
ତାଙ୍କଠାରୁ ଜନ୍ମିବ ଯେ ଯେବଣ ନନ୍ଦନ
ତାର ନାମ ଖ୍ୟାତ ହେବ ଶ୍ରୀ ନନ୍ଦବର୍ଦ୍ଧନା

ସେହି ଅଜକର ସୁତ ମହା ବିଷ୍ଣୁ ଭକ୍ତ
ପ୍ରଦ୍ୟୋତ ପ୍ରଭୃତି ପଞ୍ଚ ରାଜା ଗୁଣଯୁକ୍ତ ।
ଧର୍ମ ପରାୟଣ ନନ୍ଦ ବର୍ଦ୍ଧନ ନୃପତି
ଅତି ବିଚକ୍ଷଣ ମହା ଗୁଣବନ୍ତ ବ୍ୟକ୍ତି ।
ବିଶାଖୟୂଥର ନାତି ସେ ଅଜକ ସୁତ
ଏକଶ ଅଠାଶି ବର୍ଷ ସମ୍ଭଳେ ରାଜତ୍ୱ ।
ତାପରେ ସେହି ରାଜନ ପଞ୍ଚତ୍ୱ ପାଇବ
ଏ ମର୍ତ୍ତ୍ୟ ମଣ୍ଡଳେ ଯଶ କୀରତି ରଖିବ ।
ପ୍ରଦ୍ୟୋତ ଠାରୁ ଆରମ୍ଭ କରି ହେ ତାପସ
ଶ୍ରୀନନ୍ଦବର୍ଦ୍ଧନଯାଏ ଯେ ପାଞ୍ଚ ପୁରୁଷ ।
ଏ ପାଞ୍ଚ ପୁରୁଷ ରାଜା କ୍ରମେଣ ମରିବେ
ଯେ ଯାହାର ଯଶ ରଖି ଶରୀର ତେଜିବେ ।
ନନ୍ଦବର୍ଦ୍ଧନଙ୍କ ପୁତ୍ର ଶିଶୁନାଗ ଥିବ
ତାର ପୁତ୍ର କାକବର୍ଣ୍ଣ ଜନମ ଲଭିବ ।
ସେ କାକବର୍ଣ୍ଣର ପୁତ୍ର ହେବ କ୍ଷେମଧର୍ମା
କ୍ଷେମଧର୍ମାର ତନୟ ଶ୍ରୀକ୍ଷେତ୍ରୋଜା ନାମା ।
ତାହାଙ୍କ ଠାରୁ ଜନ୍ମିବ ଯେବଣ କୁମର
ଭବେ ତା ନାମ ବିଦିତ ହେବ ବିମ୍ବିସାର ।
ଅଜାତଶତ୍ରୁ ନାମେଣ ବିମ୍ବିସାର ସୁତ
ତାହାର ପୁତ୍ର ଅର୍ଭକ ନାମେ ହେବ ଖ୍ୟାତ
ଅର୍ଭକ ଠାରୁ ହୋଇବ ଯେବଣ କୁମର
ଉଦୟନ ବୋଲି ନାମ ରଜିବ ତାହାର ।
ଦ୍ୱିତୀୟ ନନ୍ଦବର୍ଦ୍ଧନ ଉଦୟନ ସୁତ
ମହାନନ୍ଦୀ ନାମେ ଜନମିବ ତାର ପୁତ୍ର ।
ଶିଶୁନାଗ ଆଦି ଏହି ଦଶଟି ପୁରୁଷ
ଭୁଞ୍ଜିବେ ରାଜ୍ୟ ତିନିଶତ ବାଷଠି ବରଷ ।
ଏ ସମସ୍ତ ରାଜା କ୍ରମେ ଶରୀର ତେଜିବେ
ତାହାପରେ ଯା ଘଟିବ ଶୁଣ ମୁନି ସର୍ବେ ।
ସେହି ମହାରାଜା ମହାନନ୍ଦୀ ନୃପେଶ୍ୱର
ଶୂଦ୍ରା ଗର୍ଭରେ ପୁତ୍ରେକେ ଜନ୍ମିବ ତାହାର
ମହା ବଳବନ୍ତ ହେବ ସେହି ନରନାଥ
ତା ଉପାଧି ହେବ ନନ୍ଦ ନାମ ମହାପଦ୍ମ ।
ପରଶୁରାମଙ୍କ ତୁଲ୍ୟ ଧରଣୀରେ ସେହି
ହୋଇବ ପ୍ରଧାନ ବୀର ରାଜକୁଳରେ ହିଁ ।
ମହୀରେ ଥାଇ ଏ ରାଜା ପ୍ରଜାଙ୍କୁ ପାଳିବେ
ତଦବଧି ଶୂଦ୍ର ରାଜା ପୃଥିବୀରେ ହେବେ ।

ଶୂଦ୍ର ରାଜାମାନଙ୍କର ଅନ୍ୟାୟ ବିସ୍ତର
କରିବେ ଅଧର୍ମ ରାଜନୀତି ଯେ ପ୍ରଚୁର ।
ନିଷ୍ଠୁର ପଣ କରିବେ ପ୍ରଜାଙ୍କ ଉପରେ
ନିର୍ଦ୍ଦୟଭାବେ ଶାସନ କରିବେ ମହୀରେ ।
ନ ଆଚରି କ୍ଷମା ଗୁଣ ପରଜା ପୀଡ଼ିବେ
ତେଣୁ କ୍ରମେ କ୍ରମେ ସେହୁ ପତନ ହୋଇବେ
ରାଜା ହୋଇକରି ଜଣେ ନ ରହିବେ କେହି
ଶୂଦ୍ରେ ରାଜୁତି କରିବେ ରାଜ୍ୟେ ମନ୍ତ୍ରୀ ହୋଇ
ସେହି ଶୂଦ୍ର ରାଜାଙ୍କର ବଢ଼ିବ ଯେ ଦର୍ପ
ସତ୍ୟ ଆରମ୍ଭରେ କ୍ରମେ ହେବେ ସେହୁ ଲୋପ
ଅତିଶୟ ଖଳବଳ ମ୍ଲେଚ୍ଛମାନେ ହେବେ
ଧର୍ମକର୍ମମାନ ତେଜି ଅନ୍ୟାୟ କରିବେ ।
ଶମ୍ଭଳ ନଗ୍ରରେ ଜନ୍ମି ପ୍ରଭୁ ନାରାୟଣ
ମ୍ଳେଚ୍ଛମାନଙ୍କୁ ସମୂଳେ କରିବେ ନିଧନ ।
ଯେଉଁ ଶୂଦ୍ରା ଗର୍ଭଜାତ ମହାପଦ୍ମ ନାମେ
ଜନମ ଲଭିବ ସେହୁ ଏହି ଧରାଧାମେ ।
ତାହାରି ବଂଶରେ ଜନ୍ମି ମହାପଦ୍ମ ରାଜା
ସସାଗରା ପୃଥିବୀରେ ହେବ ମହାତେଜା ।
କେହି ନ ଲଙ୍ଘିଲେ କେବେ ତାହାର ଶାସନ
ସେ ମହାପଦ୍ମର ହେବେ ଆଠ ଯେ ନନ୍ଦନ ।
ସୁନାଳ ସୁମାଳ ଆଦି ହେବ ତାଙ୍କ ନାମ
ଅବନୀରେ ଦେଖାଇବେ ମହା ପରାକ୍ରମ ।
ସନାତନ ଧର୍ମ କ୍ରମେ ଲୋପ ହୋଇଯିବ
ଦେବ ସେବା ବ୍ରତ ଆଦି ହ୍ରାସକୁ ଭଜିବ ।
ସେହି ମହାପଦ୍ମ ଆଉ ତାହାର ତନୟ
ଶତବର୍ଷ ରାଜ୍ୟ ଭୋଗ କରିବେ ନିଶ୍ଚୟ ।
ତଦନ୍ତେ କୌଟିଲ୍ୟ ନାମେ ଜଣେ ଯେ ବ୍ରାହ୍ମଣ
ସେ ନନ୍ଦ ବଂଶର କଲେ ଉଚ୍ଛେଦର ସାଧନ ।
ମୌର୍ଯ୍ୟଗଣ ପୃଥିବୀର ନାନା ସ୍ଥାନେ ସ୍ଥାନେ
ବଳାତ୍କାରେ ଅଧିକାର କରିବେ ସେମାନେ
କୌଟିଲ୍ୟ ନାମକ ବିପ୍ର ସେହିକାଳେ ଜାଣ
ଚନ୍ଦ୍ରଗୁପ୍ତେ ରାଜ୍ୟଦେବ ଆହେ ତପୋଧନ ।
ଚନ୍ଦ୍ରଗୁପ୍ତ ସୁତ ନାମ ହେବ ବିନ୍ଦୁସାର
ଅତି ଗୁଣବନ୍ତ ପୁତ୍ର ହୋଇବ ତାହାର ।
ସେ ପୁତ୍ର ନାମ ବହିବ ଅଶୋକ ବର୍ଦ୍ଧନ
ଅବନୀ ମଣ୍ଡଳେ ସେହୁ ହୋଇବ ଧନ୍ୟ ।

ଅପାର ଯଶ କୀର୍ତ୍ତି ମହୀରେ ଥାପିବେ
ତାଙ୍କ ଅମଳରେ ସର୍ବେ ସୁଖରେ ରହିବେ ।
ଅଶୋକ ନାମେଣ କୀର୍ତ୍ତିସ୍ତମ୍ଭ ରୁହାଇବ
ଦୟା କ୍ଷମା ଆଦି ଗୁଣେ ଭୂଷିତ ସେ ହେବ ।
ଅଶୋକ ବର୍ଦ୍ଧନ ଠାରୁ ହେବ ଯେଉଁ ସୁତ
ସୁଯଶ ବୋଲିଣ ଭବେ ହୋଇବ ବିଖ୍ୟାତ
ତାହାଙ୍କ ନନ୍ଦନ ନାମ ହେବ ଦଶରଥ
ତାହାର ତନୟ ନାମ ହେବ ସଙ୍ଗହସ୍ତ ।
ସଙ୍ଗହସ୍ତ ଠାରୁ ଶାଳିହୁକ ଜନ୍ମ ହେବ
ଶାଳିହୁକ ସୁତ ସୋମଶର୍ମା ବୋଲାଇବ ।
ସେହି ସୋମଶର୍ମା ପୁତ୍ର ହେବ ଶତଧନୁ
ଶତଧନ୍ୱା ନାମ ପ୍ରକାଶିବ ସେହି ସୂନୁ ।
ବୃହଦ୍ରଥ ଜନମିବ ଶତଧନ୍ୱା ବୀର୍ଯ୍ୟେ
ପରମ ଧାର୍ମିକ ହେବ ସେ ପୁତ୍ର ସ୍ୱରାଜେ ।
ଚନ୍ଦ୍ରଗୁପ୍ତ ଆଦି ଏହି ଦଶ ମୌର୍ଯ୍ୟଗଣ
ଯାବତ ଭୁଞ୍ଜିବେ ରାଜ୍ୟ ଶୁଣ ତପୋଧନ ।
ଏକଶତ ସପ୍ତତ୍ରିଂଶ ବରଷ ଯାବତ
କରିବେ ସେ ସୁଖେ ରାଜ୍ୟ ଜାଣ ହେ ତାବତ
ତଦନ୍ତେ ରାଜ୍ୟରେ ହେବେ ଶୁଙ୍ଗେ ଅଧିପତି
ସେ ପ୍ରସଙ୍ଗ କହୁଅଛି ଶୁଣ ମହାମତି ।
ପୁଷ୍ୟମିତ୍ର ନାମରେ ଯେ ଶୁଙ୍ଗ ହେବ ଜଣେ
ସେ ରହିବ ବୃହଦ୍ରଥ ସେନାପତି ପଣେ ।
ବୃହଦ୍ରଥଙ୍କୁ ସେ ଶୁଙ୍ଗ କରିବ ସଂହାର
ଆପଣେ ହରି ନେବ ରାଜ୍ୟ ଅଧିକାର ।
ପୁଷ୍ୟମିତ୍ର ଠାରୁ ହେବ ଅଗ୍ନି କ୍ଷେତ୍ର ପରେ
ତା’ପୁତ୍ର ନାମ ସୁଜ୍ୟେଷ୍ଠ ଜାଣ ମୁନିବରେ ।
ସୁଜ୍ୟେଷ୍ଠ ଠାରୁ ହୋଇବ ବସୁମିତ୍ର ନାମ
ବସୁମିତ୍ର ଠାରୁ ହେବ ଆଦ୍ରକ ନନ୍ଦନ ।
ତାର ସୁତ ପୁଳିନ୍ଦକ ଜନ୍ମିବ ଭୁବନେ
ତାହାର ତନୟ ହେବ ଘୋଷବସୁ ନାମେ ।
ଘୋଷବସୁ ଠାରୁ ବଜ୍ରମିତ୍ର ଜନମିବ
ଭଗବତ ନାମେ ସେହୁ କୁମର ପାଇବ ।
ଭଗବତ ଠାରୁ ଦେବଭୂତି ହେବ ଜାତ
ଶୁଙ୍ଗ ବଂଶ ଏହି ଦଶ ପୁରୁଷ ବିଖ୍ୟାତ ।
ଏମାନେ ପର୍ଯ୍ୟାୟେ କ୍ରମେ ହେବେ ମହୀପତି
ସଞ୍ଚପି କହିଲି ଭୂମ୍ଭ ଆଗେ ହେ ସୁମତି ।

ଶତେ ବାର ବରଷ ହୋଇବ ଅଧିକାର
ତଦନ୍ତେ ଯେ କଣ୍ୱମାନେ ହେବେ ନୃପବର
ଆସକ୍ତ ହୋନ୍ତେ ବ୍ୟସନେ ରାଜା ଦେବଭୂତି
ବସୁଦେବ ନାମା କଣ୍ୱ ଆସିଣ ତତ୍କ୍ଷତି ।
ଅବଳମ୍ବେ ସେ ରାଜାଙ୍କୁ କରିଣ ସଂହାର
ନିଜେ ହରିଣ ନେବ ରାଜ୍ୟ ଅଧିକାର ।
ବସୁଦେବ ଠାରୁ ପରେ ଭୂମିତ୍ର ଜନ୍ମିବ
ତାହାର ନନ୍ଦନ ନାମ ନାରାୟଣ ହେବ ।
ନାରାୟଣ ଠାରୁ ହେବ ସୁଶର୍ମା ନନ୍ଦନ
କରିବ ସେ ପୃଥିବୀରେ ପ୍ରଜାଙ୍କୁ ଶାସନ ।
ଏହି ଚାରି କଣ୍ୱାୟନ ନରପତିମାନେ
ପଞ୍ଚ ଚାଳିଶ ବରଷ ରହିବେ ରାଜନେ ।
ତା ଅନ୍ତେ ଶିବୁକ ନାମା ଅନ୍ଧ ଜାତି ଜନ
ମହାରାଜା ସୁଶର୍ମାଙ୍କୁ କରିବେ ନିଧନ ।
ଆପେ ସେହି ଉପଭୋଗ କରିବ ଧରଣୀ
ଯାହା ଘଟିବ ତାପରେ ଶୁଣ ଆହେ ମୁନି ।
ସୁଶର୍ମାର ଭ୍ରାତା କୃଷ୍ଣ ବଳ ପ୍ରକାଶିଣ
ଭ୍ରାତାର ରାଜ୍ୟକୁ ନେବ କରି ଯେ ହରଣ ।
କୃଷ୍ଣଠାରୁ ଯେ ଶ୍ରୀନାଥ କର୍ଣ୍ଣି ଜନ୍ମ ହେବ
ତା ପୁତ୍ର ଅତି ରୁଚିର ସ୍ୱଜ୍ୟେ ବୋଲାଇବ ।
ପୂର୍ଣ୍ଣୋସଙ୍ଗ ଠାରୁ ସାତକର୍ଣ୍ଣିର ଉତ୍ପନ୍ନ
ତାର ପୁତ୍ର ଜନମିବ ଲମ୍ବୋଦର ନାମ ।
ହିବୀଳେ ପୁତ୍ର ପାଇବ ସେହି ଲମ୍ବୋଦର
ମେଘସ୍ୱାତି ନାମେ ତାର ହୋଇବ କୁମର ।
ତାହାର ନନ୍ଦନ ନାମ ହେବ ପଟୁମାନ
ଅରିଷ୍ଟକର୍ମା ହୋଇବ ତାହାର ସନ୍ତାନ ।
ସେ ଅରିଷ୍ଟକର୍ମା ପୁତ୍ର ହେବ ଲେହ ନାମେ
ଲେହ ସୁତ ପତନକ ହେବ ଧରାଧାମେ ।
ପତନକ ଠାରୁ ହେବ ଶ୍ରୀ ପୁଳିନ୍ଦସେନ
ସୁନ୍ଦର ନାମରେ ହେବ ତାହାଙ୍କ ନନ୍ଦନ ।
ସୁନ୍ଦର ଠାରୁ ଜନ୍ମିବ ଯେବଣ କୁମର
ତାହାରନାମ ଗୋଟି ଯେ ହୋଇବ ଚକୋର
ଚକୋର ନନ୍ଦନ ନାମ ହେବ ଶିବସ୍ୱାତି
ଶିବସ୍ୱାତିର ସନ୍ତାତି ଅଟଇ ଗୋମତୀ ।
ଗୋମତୀର ସୁତ ହେବ ନାମ ପୁଳମାନ
ଶିବଶ୍ରୀ ବୋଲି ସେ ପୁଳମାନର ନନ୍ଦନ ।

ଶିରସ୍କନ୍ଧ ନାମେ ହେବ ତାହାର କୁମର
ତା ପୁତ୍ର ନାମ ଯଜ୍ଞଶ୍ରୀ ଜାଣ ମୁନିବର ।
ଯଜ୍ଞଶ୍ରୀ ତନୟ ନାମ ହୋଇବ ବିଜୟ
ଚନ୍ଦ୍ର ନାମରେ ହେବ ତାହାର ତନୟ ।
ପୁଲୋମାରି ନାମେ ହେବ ଚନ୍ଦ୍ରଶ୍ରୀର ସୁତ
ପର୍ଯ୍ୟାୟ କ୍ରମେ ଏମାନେଇବେ ହେବେ ଜାତ
ପରମ ସୁଖେ କରିବେ ଅବନୀ ପାଳନ
ନୋହିବେ ପ୍ରଜା କଣ୍ଟକ ଏହି ନୃପଗଣ ।
ତିନ ସହସ୍ର ଚାରିଶତ ଛପନ ବରଷ
ଉପଭୋଗ କରିବେ ଏମାନେ ରାଜ୍ୟଦେଶ ।
ପୁଲୋମାର ଅବସ୍ଥାନେ ଯା ହେବ ଘଟଣ
ସେହିକଥା କହୁଅଛି କର ହେ ଶ୍ରବଣ ।
ଆଭୀର ଜାତୀୟ ଚାରି ଭୃତ ସାତଜଣ
ଗନ୍ଧ ଭିଲାଶ୍ୱ ଯେ ଦଶ ଆହେ ତପୋଧନ ।
ସକଳେ ମିଳି କରିବେ ରାଜ୍ୟ ଅଧିକାର
ତଦନ୍ତେ ଘଟିବ ଯାହା ଶୁଣ ସମାଚାର ।
ଆନ ଷୋଳ ଭୂପତିଙ୍କ ଅଧିକାର ହେବ
କହୁଅଛି ତଦଅନ୍ତେ ଯା ସବୁ ଘଟିବ ।
ଆଠ ଯବନ ଆବର ଚଉଦ ତୁଷାର
ତେର ଜଣ ମୁରୁଣ୍ଡ ଯେ ମଉଳ ଏଗାର ।
ଦେଖାଇଣ ଏହିମାନେ ନିଜ ପରାକ୍ରମ
ଯଥାକ୍ରମେ କରିବେ ଯେ ଅବନୀ ଶାସନ ।
ସହସ୍ର ତ୍ରିଶତ ବର୍ଷ ଯେ ନବ ନବତି
ଏମାନେ ପାଳିବେ ରାଜ୍ୟ ଆହେ ମହାମତି ।
ଏହି ନରପତିଙ୍କର ହୋଇନ୍ତେ ଲୋକାନ୍ତର
ପୌର ଆନ୍ଧ୍ର ଏକାଦଶ ହେବେ ନୃପବର ।
ତ୍ରିଶତ ବର୍ଷ ଅବନୀ ସେମାନେ ପାଳିବେ
ତାପରେ ପୁଣି ଯବନ ରାଜତ୍ୱ କରିବେ ।
ପ୍ରଥମରେ କେଳକିଳ ନାମରେ ଯବନ
ସେହି ଯେ ଆଣି ରାଜତ୍ୱ କରିବ ଗ୍ରହଣ ।
ତାହାପରେ ବିନ୍ଧାଶକ୍ତି ନାମେ ଏକଜଣ
ବାହୁବଳେ ଆଧିପତ୍ୟ କରିବ ସ୍ଥାପନ ।
ସେ ବିନ୍ଧାଶକ୍ତିର ପରେ ଆହେ ମହାପତି
ଯେଉଁମାନେ ହେବେ କ୍ରମେ ରାଜ୍ୟେ ଅଧିପତି
ତାହାଙ୍କର ନାମ ମାନ କରନ୍ତୁ ଶ୍ରବଣ
ପ୍ରଥମେଣ ପୁରଞ୍ଜୟ ନାମରେ ରାଜନ ।

ରାମଚନ୍ଦ୍ର ତାହାପରେ ହେବ ନରପତି
ତା ଅନ୍ତେ ହୋଇବ ରାଜା ଧର୍ମ ଯେ ନୃପତି
ସେ ଉତ୍ତାରୁ ଧାର୍ମିଙ୍କ ହେବ ନୃପବର
ତାପରେ କୃତ ନନ୍ଦନ ହେବ ନରେଶ୍ୱର ।
ଶିଶୁ ନନ୍ଦ ନାମେ ରାଜା ହୋଇବେ ତାପରେ
ପୁଣି ରାଜା ହେବ ନନ୍ଦଯଶା ଯେ ଧରାରେ ।
ଶିଶୁଙ୍କ ହୋଇବ ତାହାପରେ ଯେ ଭୂପାଳ
ତଦନ୍ତେ ପ୍ରବୀର ନାମେ ହେବ ମହୀପାଳ ।
ଏହି ରାଜାମାନେ ଏକଶତ ଦୁଇବଷ
ରାଜତ୍ୱ କରିବେ ରାଜ୍ୟେ ହୋଇଣ ନରେଶ ।
ପ୍ରବୀର ନୃପର ହେବ ତେରଟି ନନ୍ଦନ
ବାହ୍ଲିକ ବଂଶୀୟ ଆଉ ବୀର ତିନି ଜଣ ।
ପୁଷ୍ପମିତ୍ର ପଟୁମିତ୍ର ପଦ୍ମମିତ୍ର ବୀର
ସ୍ଥାନେ ସ୍ଥାନେ ଏମାନଙ୍କ ହେବ ଅଧିକାର ।
ପୃଥିବୀର ନାନା ସ୍ଥାନେ ଏ ବୀର ସକଳେ
ଅଧିପତି ହୋଇଣ ରହିବେ କୁତୁହଳେ ।
ସେହିକାଳେ କୋଶଳସ୍ଥ ବୀର ନଅ ଜଣ
କୋଶଳରେ ଆଧିପତ୍ୟ କରିବେ ସ୍ଥାପନ ।
ନିଷଧର ନଅ ଜଣ ନୈଷଧ ରାଜ୍ୟରେ
ସ୍ଥାପିବେ ସ୍ୱ ଆଧିପତ୍ୟ ସେମାନେ କ୍ରମରେ ।
ବିଶ୍ୱସ୍ଫାଟିକ ନାମେଣ ତହୁଁ ଏକ ଜଣ
ନାନା ବର୍ଣ୍ଣ କରିବ ଯେ ସେ ଜନ ସୃଜନ ।
କୈବର୍ତ୍ତ, ପୁଳିନ୍ଦ, ପଟୁ, ବ୍ରାହ୍ମଣ ନିକରେ
ଆନନ୍ଦ ମନେ ସ୍ଥାପିବ ମଗଧ ଦେଶରେ ।
ଅକସ୍ମାତ ନାଗବଂଶ ଆସି ନଅ ଜଣ
ମଗଧ କ୍ଷତ୍ରିୟଗଣେ ସେ କାଳେ ଘେନିଣ ।
କାପୁରୀ ମଥୁରା ଆଉ ପଦ୍ମାବତୀ ଦେଶେ
ସ୍ଥାପନ କରିବେ ଜାଣ ମନର ହରଷେ ।
ଥୋକାଏ ଯେ କ୍ଷତ୍ରିୟଙ୍କୁ କରିଣ ଗ୍ରହଣ
ଗଙ୍ଗାତୀରବର୍ତ୍ତୀ ଦେଶ କରିବେ ସ୍ଥାପନ ।
ମଗଧମାନେ ଗୁପତେ କୋଶଳ ନଗରୀ
ଭୋଗ କରିବେ ସେ ଉଡ୍ର ପୁଣ୍ଡ୍ରକୁ ଆବର ।
କଳିଙ୍ଗମାନେ ଆଉ ଯେ ମାହିଷିକ ଗଣ
ମାହେନ୍ଦ୍ରକୁ ଯାଇଣ କରିବେ ବାସସ୍ଥାନ ।
ଅଧିକନ୍ତୁ ଭୌମ ଗୁହା କରି ଅଧିକାର
ବସତି କରିବେ ସେହୁ ତଥା ଅନିବାର ।

ଦେବରକ୍ଷିତ ନାମରେ ଖାର ଏକ ଜଣ
ସାଗର ଖାର ପୁରୀକ କରିବ ଭକ୍ଷଣ ।
ଆସିଣ ଯେ ମାଳବାନ ବଂଶର ସକଳେ
ନୈଷଧନୈମିଷରେ ସେ ରହିବେକୌଶଳେ
ଅଧିକନ୍ତୁ କାଳ ତୋର ନାମା ଜନ ପଦେ
ଅଧୀଶ୍ୱର ହେବେ ସେହୁ ଜାଣ ମୁନିବୃନ୍ଦେ ।
କନକ ଆହ୍ୱୟ ନାମା ଯେତେ ଖାରଗଣ
ଜନପଦରେ ବୈରାଜ୍ୟ ହୋଇବେ ରାଜନ ।
ମୁଷିକ ନାମରେ ଯେଉଁ ଜନପଦ ଚୟ
ସେଠାରେ ସେମାନେ ରାଜା ହୋଇବେନିଶ୍ଚୟ
ବ୍ରାତ୍ୟ ଦ୍ୱିଜ ଶୂଦ୍ର ଆଉ ଆଭୀରାଦିଗଣ
ଆଧିପତ୍ୟ ପାଇବେ ଯେ ସ୍ଥାନେ ତାହା ଶୁଣ
ଆବର୍ତ୍ତ ସୌରାଷ୍ଟ୍ର ଶୁର ଆଭୀର ଆବର
ଆବର୍ତ୍ତ ଅର୍ବୁଦ ମରୁ ପ୍ରଦେଶ ନିକର ।
ଏହି ସବୁ ଦେଶେ ଆଧିପତ୍ୟ ସେ ପାଇବେ
ପୁରାଣେ ଭଣନ୍ତି ଏହା ଜାଣ ମୁନି ସର୍ବେ ।
ବ୍ରାହ୍ମ୍ୟ ଶୂଦ୍ର ଆଉ ଯେତେ ମ୍ଳେଚ୍ଛାଦି ରାଜନ
ସିନ୍ଧୁତଟେ ଆଧିପତ୍ୟ କରିବେ ସ୍ଥାପନ ।
ଦାର୍ବି କୌର୍ବି ଚନ୍ଦ୍ରଭାଗା ଆଉ ଯେ କାଶ୍ମୀରେ
ଆଧିପତ୍ୟ ପାଇବେ ସେ ଜାଣ ମୁନିବରେ ।
ଏହି ସବୁ ରାଜା ଯାହା କଲି ମୁଁ ବର୍ଣ୍ଣନ
କାହାର ଧର୍ମ କର୍ମରେ ନ ରହିବ ମନ ।
ଅଳପ ଆୟୁଧ କରେ କରିବେ ଧାରଣ
ଅଳ୍ପ ସାର ବେଶ ମାତ୍ର କରିବେ ଗ୍ରହଣ ।
ପରସ୍ୱ ଅପହରଣେ ହେବେ ଅନାସକ୍ତି
ବହୁ କୋପଯୁକ୍ତ ହେବେ ସେମାନେ ଅସ୍ଥିର
ନାରୀହତ୍ୟା ଶିଶୁହତ୍ୟା ଗୋହତ୍ୟା କରିବେ
ଏସବୁ କାର୍ଯ୍ୟରେ କେବେ ବିମୁଖ ନୋହିବେ
ନାନା ଜନପଦବାସୀ ଯେତେ ନାରୀ ନରେ
ମ୍ଳେଚ୍ଛତ୍ୱ ଲଭିବେ କ୍ରମେ କହିଲି ଭୂମିରେ ।
କାଳେହିଁ ଅକାଳେ କ୍ଷୀଣ ହୋଇବେ ସକଳେ
ଧର୍ମର ଆଦର ନ ରହିବ କେଉଁ ସ୍ଥଳେ ।
କୌଳୀନ୍ୟର ହେତୁ ହେବ ଅର୍ଥ ହିଁ ତକ୍ଷଣ
ଧରମର ହେତୁ ବଳ ଦେବ ଦରଶନ ।
ଅଭିରୁଚି ହେବ ମାତ୍ର ଦାମ୍ପତ୍ୟର ହେତୁ
ନାରୀତ୍ୱ ଜାଣିବ ବିଶ୍ୱେ ସମ୍ଭୋଗର ହେତୁ ।

ବିପ୍ରତ୍ୱର ହେତୁ ହେବ ଯଜ୍ଞସୂତ୍ର ଖାର
ପଇତା ଥିଲେ ପଡ଼ିବେ ବ୍ରାହ୍ମଣରେ ଗାର ।
ନ ରହିବେ କେହି ସତ ନିଷ୍ଠାବନ୍ତ ହୋଇ
ବଢ଼ିଯିବ ଚୌର୍ଯ୍ୟବୃତ୍ତି ହେବେ ସାଧୁଦ୍ରୋହୀ
ଆଦାନ ଧର୍ମର ହେତୁ ଦ୍ୱିଜ ବୋଲାଇବେ
ତୈଳ ଲବଣାଦି ସବୁ ବ୍ରାହ୍ମଣ ବିକିବେ ।
ନୀଚ ଜାତିମାନେ ହେବେ ଉଚ୍ଚ ଅଧିକାର
ନ ରହିବ କଳେ ମାତ୍ର ବେଦର ବିଚାର ।
ଦରିଦ୍ର ହୋଇଲେ ତାଙ୍କୁ ଅସାଧୁ କହିବେ
ସ୍ନାନଆଦି କଲେ ତାରେ ପବିତ୍ର ବୋଲିବେ
ମସ୍ତକ ମୁଣ୍ଡନ ଆଦି ଯେ ଶିଖା ଧାରଣ
ଆଶ୍ରମର ହେତୁ ହେବ ଆହେ ତପୋଧନ ।
ହୀନତାର ହେତୁ ହେବ ଦୁର୍ବଳତା ସାର
ସୁବେଶ ଦେଖିଲେ ହେବ ସତ୍ପାତ୍ର ବିଚାର
ଉଦ୍ଧତ ବାକ୍ୟ ଯଦି ହୁଏ ଉଚ୍ଚାରଣ
ପାଣ୍ଡିତ୍ୟର ହେତୁ ହେବ ଜାଣ ମୁନିଗଣ ।
ଦୂରସ୍ଥ ଦେଶେ ରହିବ ସେହି ସବୁ ଜଳ
ତୀର୍ଥ ବୋଲି ଗଣାଯିବ ହୋଇବ ସକଳ ।
ଏହିରୂପେ ନାନା ଦୋଷ ଘୋରତନ୍ତ୍ରେ ଧରାରେ
ଘଟିବ ଯେବଣ କାଣ୍ଡ କହିବି ଭୂମିରେ ।
ସକଳ ବର୍ଣ୍ଣ ମଧ୍ୟେ ଯେ ହେବ ବଳବାନ
ସେହିଜନ ରାଜାହେବେ ଏ କଥା ପ୍ରମାଣ ।
ରାଜ୍ୟ ପାଇ ପରଜାଙ୍କୁ କରିବେ ପୀଡ଼ନ
କର ଭାରରେ ପୀଡ଼ିତ ହେବେ ପ୍ରଜାଗଣ ।
ରାଜ୍ୟ ବାଡ଼ି ତ୍ୟାଗକରି ପରଜା ସକଳେ
ଆଶ୍ରୟ ନେବେ ପର୍ବତେ କନ୍ଦରା ବନସ୍ଥଳେ ।
ମଧୁଶାକ କନ୍ଦମୂଳ କରିବେ ଭୋଜନ
ଚିର ପତ୍ର ବକଳାଦି ପିନ୍ଧିବେ ସେ ଜନ ।
ଶୀତ ଗ୍ରୀଷ୍ମ ବରଷାର ଦାରୁଣ ଯାତନା
ସହିବା ହେବ ସଭିଙ୍କୁ ଅଶେଷ ଯନ୍ତ୍ରଣା ।
ମାନବେ କଷ୍ଟରେ କାଳ କରିବେ ଯାପନ
ତେଇଶ ବରଷେ ଆୟୁ ହେବ ସମାପନ ।
କଳିର ପ୍ରଭାବେ ସର୍ବେ କ୍ରମେ ହେବେ କ୍ଷୀଣ
ଘଟିବ ଯାତନା ରାଶି କ୍ରମେ ଦିନୁଁ ଦିନ
କଳିର ପ୍ରଭାବ ହେତୁ ଆହେ ମୁନିଗଣ
ଧରମ ବିପ୍ଳବ ବହୁ ହୋଇବ ଘଟଣ ।

ନାମ ମାତ୍ର ଧର୍ମ ଏହି ନଦୀଦ ରହିବ
ଧର୍ମ ଏହି ନାମ ମାତ୍ର ଶ୍ରୁତି ପଥେ ଯିବ ।
ସେହି ସମୟରେ ପ୍ରଭୁ ଜଗତ ଜୀବନ
ବିଷ୍ଣୁ ଯଶା ବିପ୍ର ଘରେ ହେବେ ଉତପନ ।
ସମ୍ଭଳ ନଗରେ ସେହି ବ୍ରାହ୍ମଣର ଘର
କଳ୍କୀ ରୂପେ ଅବତାର ହେବେ ଚକ୍ରଧର
ଏହିରୂପେ ଅବତରି ପ୍ରଭୁ ନାରାୟଣ
ଦୁରାତ୍ମା ମ୍ଲେଚ୍ଛଙ୍କୁ ସେ କରିବେ ଶାସନ ।
ଅଧାର୍ମିକ ସମସ୍ତଙ୍କୁ କରିବେ ନିଧନ
ଧର୍ମରେ ଜଗତ ପୁଣି ସ୍ଥାପିବେ ମର୍ତ୍ତ୍ୟେଣ ।
କଳ୍କୀ ରୂପେ ଅବତୀର୍ଣ୍ଣ ହୋଇେ ଗଦାଧର
ଘୁଞ୍ଚିବ କଳିର ଦର୍ପ ମନେ ହେତୁ କର ।
ନ ରହିବ କଳିରାଜା ଦର୍ପ ଆଉ କିଛି
ଅଧର୍ମ ଅନ୍ୟାୟମାନ ସବୁ ଯିବ ଲୁଚି ।
ସ୍ୱଧର୍ମେ ସଂସାର ପୁଣି ହୋଇବ ସ୍ଥାପନ
ସାଧୁ ଜନମାନେ ଯେ ଲଭିବେ ପରିତ୍ରାଣ ।
ଜନପଦ ବାସୀ ଯେତେ ଜନଗଣମାନେ
ପୁନଶ୍ଚ ପ୍ରବୃଦ୍ଧ ହେବେ ଶୁଣ ଏକମନେ ।
ପୁନର୍ବାର ବୃଦ୍ଧ ବୁଦ୍ଧି ଲଭିବେ ସକଳେ
ଧର୍ମ କର୍ମେ ସର୍ବ ମତି ଦେବେ କୁତୂହଳେ ।
ପ୍ରଧାନ ଯୁବା ବୟସ କାଳେ ନରଗଣ
କରିବେ ରମଣୀ ଗର୍ଭେ ସନ୍ତାନ ଉତ୍ପନ୍ନ ।
ଯେଉଁ ସନ୍ତାନ ହେବେ ତାହାଙ୍କ ଗର୍ଭରେ
ସର୍ବଦା ମତି ରଖିବେ ସେ ସତ୍ୟ ଧର୍ମରେ ।
ଏମନ୍ତେ ପ୍ରସିଦ୍ଧି ଅଛି ଶାସ୍ତ୍ର ପୁରାଣରେ
ସତ୍ୟଯୁଗ ଉପସ୍ଥିତ ହୁଏ ଯେ କାଳରେ ।
ଚନ୍ଦ୍ର ସୂର୍ଯ୍ୟ ବୃହସ୍ପତି ପୁଷ୍ୟା ଋକ୍ଷବାର
ଏକରାଶି ଗତ ହୋଇେ ଆହେ ମୁନିବର ।
ସତ୍ୟଯୁଗ ସେହି ଦିନ କରେ ଆଗମନ
ତୁମ୍ଭ ଆଗେ କହିଲଇଁ ନିଗୂଢ଼ ବଚନ ।
ଭୂତ ଭାବୀ ବର୍ତ୍ତମାନ ନୃପଙ୍କ ବିଷୟ
ବର୍ଣ୍ଣନ କଲି ଏଠାରେ ଆହେ ମୁନିରାୟ ।
ପରୀକ୍ଷିତ ଯେଉଁଦିନ ଜନ୍ମେ ତାରପରେ
ସହସ୍ରେକ ପଞ୍ଚଦଶ ବରଷ ଉତ୍ତାରେ ।
ମହା ପଦ୍ମର ଜନମ ବ୍ରହ୍ମାଣ୍ଡେ ହୋଇବ
ନନ୍ଦ ଉପାଧିରେ ସେହି ଗଣନା ଯେ ହେବ ।

ସପ୍ତର୍ଷି ମଣ୍ଡଳ ମଧ୍ୟେ ଯେ ନକ୍ଷତ୍ର ଦ୍ୱୟେ
ଆକାଶ ମଣ୍ଡଳେ ଆସି ଉଦ୍ଭାବନ ହୁଏ ।
ଏକଇ ନକ୍ଷତ୍ର ତହିଁ ରଜନୀ ଯୋଗରେ
ସମଭାବେ ଦେଖାଯାଏ ସଭିଙ୍କ ନେତ୍ରରେ ।
ତାହାରି ସହିତ ମିଳି ସପ୍ତର୍ଷି ନିକର
ଅବସ୍ଥାନ କରନ୍ତି ସେ ଶତ ସମ୍ବତ୍ସର ।
ପରୀକ୍ଷିତ ରାଜା ହୋଇେ ଆହେ ତପୋଧନ
ମଘାନକ୍ଷତ୍ରର ସଙ୍ଗେ ହୁଅନ୍ତି ମିଳନ ।
ସେହିକାଳେ କଳିଯୁଗ ହୋଇଛି ଆଗତ
କଳିର ପ୍ରଭାବ କେତେ କରିବ ବ୍ୟକତ ।
ବାସୁଦେବ ସ୍ୱର୍ଗାରୂଢ଼ ହୋଇେ ତାହାପରେ
କଳିର ଉଦୟ ଏହି ସଂସାର ମଧ୍ୟରେ ।
ଯେତେଦିନ ସେହି କୃଷ୍ଣ ଯୁଗଳ ପଦରେ
ସ୍ପର୍ଶିଣ ଥିଲେ ଏହି ଦେବୀ ବସୁଧାରେ ।
ସେ ଯାଏ କୌଣସି ରୂପେ କଳି ଦୁରାତ୍ମାର
ଆସି ନ ପାରଇ ଏହି ସଂସାର ମଧ୍ୟର ।
ବାସୁଦେବ ନିଜେ ସ୍ୱର୍ଗ ଆରୋହଣ ହୋଇେ
ଧର୍ମରାଜ ଯୁଧିଷ୍ଠିର ବିଷାଦିତ ଚିତ୍ତେ ।
ନାନାବିଧ ଦୁର୍ନିମିତ୍ତ କରି ଦରଶନ
ରାଜ୍ୟ ପରିହାର କରି ଭ୍ରାତୃ ସହିତେଣ ।
ପରୀକ୍ଷିତ ଅଭିଷେକ କଲେ ସିଂହାସନେ
ଅଧିକ କହିବି କିବା ତୁମ୍ଭ ସନ୍ନିଧାନେ ।
ମହାପଦ୍ମ ଯେକାଳେ ପାଇବ ଅଧିକାର
ସପ୍ତର୍ଷି ମଣ୍ଡଳ ନ ରହିବେ ଏ ପ୍ରକାର ।
ପୂର୍ବାଷାଢ଼ା ନକ୍ଷତ୍ରରେ ହୋଇବେ ମିଳନ
କଳିର ପ୍ରଭାବ ବୃଦ୍ଧି ହେବ ସେ କାଳେଣ ।
ଯେଉଁଦିନ କୃଷ୍ଣ କଲେ ସ୍ୱର୍ଗେ ଆରୋହଣ
ସେହିଦିନ କଳି ଆସି ଦେଇଛି ଦର୍ଶନ ।
ସହସ୍ରେକ ଦୁଇଶତ ବର୍ଷ ଦେବମାନେ
ରହିବ ଦୁର୍ଜ୍ଜୟ କଳି ଏହି ଧରାଧାମେ ।
କଳିଯୁଗ ପରମାୟୁ ମନୁଷ୍ୟ ମାନରେ
ପ୍ରମାଣ ଚଉ ଲକ୍ଷ ବତିଶି ସହସ୍ର ବତ୍ସରେ ।
ପୁନଶ୍ଚ କଳିର ଶେଷ ହେବ ଯେ କାଳେଣ
ସତ୍ୟଯୁଗ ସେହିକାଳେ ଦେବ ଦରଶନ ।
ଯୁଗ ପରିବର୍ତ୍ତନ ଏମନ୍ତେ ବାର ବାର
ହେଉଅଛି ବିଶ୍ୱ ମଧ୍ୟେ ଶୁଣ ମୁନିବର ।

ପୂର୍ବ ଯୁଗେ ଯୁଗେ ସେହି ସକଳ ବ୍ରାହ୍ମଣ
କ୍ଷତ୍ରିୟ ବୈଶ୍ୟ ଶୂଦ୍ରାଦି ଲଭନ୍ତି ଜନମ ।
ପୁନରୁକ୍ତ ହେତୁ ଆଉ ବାହୁଲ୍ୟ କାରଣ
ସେମାନଙ୍କ ସଂଖ୍ୟା ମୁହିଁ ନକଲି ବର୍ଣ୍ଣନ ।
ମନୁ ବଂଶୀ ନରପତି ଦେବାପି ସୁମତି
ଇକ୍ଷ୍ୱାକୁ ବଂଶୀୟ ପୁରୁ ଧର୍ମନିଷ୍ଠ ଅତି ।
ଏହି ଦୁହେଁ ଯୋଗବଳ କରିଣ ଆଶ୍ରୟ
କଳାପ ଗ୍ରାମରେ ରହି ଅଛନ୍ତି ନିଶ୍ଚୟ ।
ସତ୍ୟଯୁଗ ଉପସ୍ଥିତ ହେବ ଯେ ସମୟେ
କ୍ଷତ୍ରିୟଙ୍କ ପ୍ରବର୍ତ୍ତକ ହେବେ ଏହି ଦୋହେଁ
ସେକାଳେ ଆଉରି କ୍ରମେ ମନୁଙ୍କ ତନୟ
ଧରଣୀରେ ରାଜା ହେବ ଜାଣ ମୁନିଚୟ ।
ସତ୍ୟ ତ୍ରେତା ଦ୍ୱାପର ଯୁଗକୁ ଏହିଭାବେ
ବଂଶ ପରମ୍ପରା ନୃପେ ଭଲେ କଟାଇବେ ।
ଏହି ତିନି ଯୁଗ କ୍ରମେ ଗତ ହେଲା ପରେ
ପୁନଶ୍ଚ ଆସିବ କଳି ଜଗତ ମଧ୍ୟରେ ।
ଯେସନେ ଦେବାପି ଆଉ ପୁରୁ ବର୍ତ୍ତମାନେ
ଅବସ୍ଥିତ କରିଛନ୍ତି ସେ କଳାପ ଗ୍ରାମେ ।
ସେହିରୂପେ କେହି କ୍ଷତ୍ରୀ ବୀଜଭୂତ ହୋଇ
ଭୂମଣ୍ଡଳକୁ ରକ୍ଷିବ କହିଲି ଚେତାଇ ।
ଭବିଷ୍ୟତ ରାଜବଂଶ କଲିଇଁ ବର୍ଣ୍ଣନ
ବିସ୍ତାରି କହିବା ପାଇଁ ଅଛି କେଉଁଜନ ।
ସବିସ୍ତାରେ ଯଦି ମୁହିଁ କହଇ ତୁମ୍ଭରେ
ଶତବର୍ଷେ ନ ପାରିବି ଶେଷ କରିବାରେ ।
ଯେଉଁ ସବୁ ରାଜା ପୂର୍ବେ ଲଭିଛନ୍ତି ଜନ୍ମ
ମୋହ ବଶେ ଥିଲେ ସର୍ବେ ଅତି ଭ୍ରାନ୍ତ ମନ
ସର୍ବଦା ଚିନ୍ତିତ ସେହିମାନେ ମାନସରେ
ବସୁନ୍ଧରା ମହୀରେ ରହିବୁଁ କି ପ୍ରକାରେ ।
ଚିରକାଳ ଧରାଭୋଗ କରିବୁ କିପରି
ବହୁ ପୁତ୍ର ପୌତ୍ର ମାନ କେଉଁଲେ ଲଭିକରି ।
କି ରୂପେ ରାଜା ହୋଇବେ ପୁତ୍ର ନାତିମାନେ
ସୁଖ ଶାନ୍ତିରେ ଜୀବନ ଯାପିବେ ବା କେଉଁଲେ
ଏହିପରି ସର୍ବେ ଚିନ୍ତା କରି ଅନୁକ୍ଷଣ
ଅକାଳେ କାଳର ମୁଖେ ହୋଇଲେ ପତନ
ତାହାଙ୍କ ପୂର୍ବରୁ କେତେ କେତେ ନରପତି
ଏହି ଧରଣୀକି ଭୋଗ କରି ଯାଇଛନ୍ତି ।

ଏ ଅନ୍ତେ ଯେମାନେ ରାଜ୍ୟ କରିବେ ଗ୍ରହଣ
ତାହାଙ୍କ ପରେ ହୋଇଲେ ଯେତେ ରାଜାଗଣ
ବିଷୟେ ଆସକ୍ତ ଯେଉଁ ନରପତିମାନେ
ବିଷୟ ରସରେ ବସିଥାନ୍ତି ନିଶିଦିନେ ।
ସେମାନଙ୍କୁ ଦେଖିକରି ବସୁମତୀ ସତୀ
ଶରତ କାଳରେ ପରିହାସ୍ୟମୁଖୀ ହୋନ୍ତି ।
ପୂର୍ବକାଳେ ଥିଲେ ଋଷି ଅସିତ ନାମରେ
ଜନକ ନିକଟେ ଗଲେ ସେହୁ ଦିନକରେ ।
ପୃଥିବୀ କଥିତ କଥା ତାଙ୍କ ସନ୍ନିଧାନେ
ବର୍ଣ୍ଣନ କଲେ ଅସିତ ଆନନ୍ଦିତ ମନେ ।
ତୁମ୍ଭମାନଙ୍କ ଆଗେ ତା କରିବି ବର୍ଣ୍ଣନ
ସାବଧାନ ହୋଇ ଶୁଣ ସର୍ବ ତପୋଧନ ।
ପୃଥିବୀ କହିଣ ଥିଲେ ଏହିପରି ଗୀର
ବୁଦ୍ଧିମନ୍ତ ନର ଶ୍ରେଷ୍ଠ ଯେତେ ଜଗତର ।
ସେମାନଙ୍କ ମୋହ ଜନ୍ୟେ ଚମତ୍କାର ଅତି
ଦେଖି ନ ପାରନ୍ତି ସେହୁ ଆପ ମୋର ଭ୍ରାନ୍ତି
ଆପଣକୁ ଜୟଶୀଳ ଭାବି ସେ ଆଦ୍ୟରେ
ଜିଣିବା ପାଇଁ ଇଚ୍ଛନ୍ତି ବଳ ମନ୍ତ୍ରୀବରେ ।
ତାହାପରେ ଭୃତ୍ୟ ଆଉ ପୌର ଜନଗଣ
ଜିଣିବା ପାଇଁ ସମସ୍ତ ବିସ୍ତରନ୍ତି ମନ ।
ପରେ ସେ ବାଞ୍ଛନ୍ତି ଜିଣିବାରେ ଶତ୍ରୁଚୟ
ଶେଷରେ ଇଚ୍ଛନ୍ତି ମୋରେ କରିବାକୁ ଜୟ ।
ସାଗର ସଂଯୁକ୍ତ ମୋର ଜୟର କାରଣ
ମନେ ମନେ ଇଚ୍ଛା କରି ସେ ସବୁ ରାଜନ ।
ମୃତ୍ୟୁକୁ ଦର୍ଶନ କରିବାର ଇଚ୍ଛା କରି
ସକ୍ଷମ ନୁହନ୍ତି କେଭେଁ ଶୁଣନ୍ତୁ ସବୁରି ।
ଆପଣା ମନରେ ଯେତୁ କରନ୍ତି ଚିନ୍ତନା
ଦେଖନ୍ତୁ ଏହି ଯେ ଭୂମି ସିନ୍ଧୁ ଆବରଣା ।
ଏହି ସମସ୍ତ ଅଟଇ ଆମ୍ଭ ବଶବର୍ତ୍ତୀ
କାହାର ସାଧ୍ୟ ଆମ୍ଭଙ୍କୁ ପାରଇ ବା ଜିତି ।
ଯେମାନଙ୍କ ପିତୃମାନେ ପୂର୍ବରୁ ଯେସନ
ମୋକ୍ଷ ପଦ ଅବହେଳେ କରି ବରଜନ ।
ମୋର ବଶୀଭୂତ ହୋଇ କାଳର କବଳେ
ନିପତିତ ହୋଇଛନ୍ତି ଜାଣନ୍ତି ସକଳେ ।
ତେସନେ ସେମାନେ ସ୍ୱୀୟ ଭ୍ରାନ୍ତି ନିବନ୍ଧନ
ମୋର ଜୟ କରିବାରେ କରିଥାନ୍ତି ମନ ।

ମୋର ମୋହ ଜାଲେ ପଡ଼ି ସେ ସବୁ ନୃପତି
ପିତୃ ମାତୃ ଭ୍ରାତୃଗଣ ଢେନଣ ତଳନ୍ତି ।
ବାରମ୍ବାର ଜନ୍ମ ମୃତ୍ୟୁ କରନ୍ତି ବରଣ
ମନେ ମନେ ଏହାସବୁ କରନ୍ତି ଚିନ୍ତନ ।
ଅଖିଳ ଧରାରେ ଆମ୍ଭେ ଅଟୁ ଅଧୀଶ୍ୱର
ନୋହିବେ ନୃପତି କେବେହେଁ ଆଉ କେଉଁ ନର
ଏପରି ମୋହ ବଶରେ ଯେଉଁମାନେ ଥିଲେ
କ୍ରମେ କ୍ରମେ କାଳମୁଖେ ସକଳେ ପଡ଼ିଲେ ।
ପିତାର ମରଣ ଦେଖି ସେ ରାଜ କୁମର
ମୋତେ ବରଜନ କରେ ଭାବି ଚିନ୍ତି ଗୀର ।
ମୋହର ମାୟା ଜାଲରେ ସେହୁ ନ ପଡ଼ଇ
ମମତା ରଜ୍ଜୁରେ କେଉଁ ବନ୍ଧନ ହୁଅଇ ।
ସେହି ସବୁ ନରପତି ସଂସାର ମଧ୍ୟରେ
ପ୍ରାଣୀଙ୍କି ପ୍ରେରଣ କରି ବିପକ୍ଷ ଗୋଚରେ ।
ଏହି ଧରା ଅଟେ ମୋର ତୁମ୍ଭେ ଅବିଳମ୍ବେ
ପରିତ୍ୟାଗ କରି ଯାଅ ଇଚ୍ଛାମତ ଠାବେ ।
ଏମନ୍ତ ସମ୍ବାଦ ବେଗୁଁ କରନ୍ତି ପ୍ରେରଣ
କରେ ଉପହାସ ମୁହିଁ ତାଙ୍କୁ ଅନୁକ୍ଷଣ ।
ହସମାଡ଼େ ମୋ ବଦନେ ଦେଖି ତାଙ୍କ ରୀତି
ମୋହ କି ନକରେ ଚିତ୍ତେ ଭାବଇ ମୁଁ ନିତି
ସେମାନଙ୍କ ପ୍ରତି ପୁଣି ଦୟା ହୁଏ ମୋର
ସମସ୍ତଙ୍କ ଗତି ହୁଏ ସଂସାର ମଧ୍ୟର ।
ଏତେ ବୋଲି ପୌରାଣିକ ଆବର କହନ୍ତି
ପୃଥିବୀ କଥିତ ବାକ୍ୟ କହିଲଇଁ ଏଥି ।
ଏହି କଥାମାନ ଯେହୁ କରନ୍ତି ଶ୍ରବଣ
ମମତା କହି ନ ହୋନ୍ତି ସେହି ସାଧୁଜନ ।
ସନ୍ତାପ ବିନାଶ ହୁଏ ତାଙ୍କର ଅଚିରେ
ଅଧିକ କହିବି କିସ ମୁଁ ତୁମ୍ଭ ଆଗରେ ।
ମହାତ୍ମା ମନୁଙ୍କ ବଂଶ କଥା ଯେଉଁପରି
ଶ୍ରବଣ କଲତ ତୁମ୍ଭେମାନେ ଶ୍ରୁତିଡ଼େରି ।
ମନୁଙ୍କ ବଂଶ ଚରିତ କଲେ ସୁଶ୍ରବଣ
ସକଳ ପାତକମାନ ହୁଅଇ ଦହନ ।
ଭକ୍ତିଭାବେ ଆଦ୍ୟ ପ୍ରାନ୍ତ ଯେଉଁଜନ ଶୁଣେ
ଜୀବନାନ୍ତେ ବୈକୁଣ୍ଠକୁ ଯାଏ ସେ ତକ୍ଷଣେ
ଶାସ୍ତ୍ରର ବଚନ ଏହା କେବେହେଁ ମିଥ୍ୟା ନୁହଁ
ଚନ୍ଦ୍ର ସୂର୍ଯ୍ୟବଂଶ କଥା ଶୁଣ ତପିଚୟ ।

ମହାବଳୀ ପରାକ୍ରମୀ ଇକ୍ଷ୍ୱାକୁ ରାଜନ
ଐଶ୍ୱର୍ଯ୍ୟ ଶାଳୀ ମାନଧାତା ନୃପଜାଣ ।
ନହୁଷ ଯଯାତି ଆଉ ନୃପତି ସଗର
ରଘୁବଂଶେ ଅନ୍ୟ ଅନ୍ୟ ନୃପତି ପ୍ରବର ।
କାଳ କ୍ରମାଗତ ଯେତେ ଶ୍ରେଷ୍ଠ ନରପତି
ସେମାନଙ୍କ କଥା ଶୁଣେ ଯେଉଁ ମହାମତି ।
ତାହା ଦେହରେ ମମତା କେବେ ନ ରହଇ
ପୁତ୍ର ଦାରା ଗୃହ କ୍ଷେତ୍ରେ ଆସକ୍ତ ନୁହଇ ।
ପୂର୍ବେ ଥିଲେ ଯେଉଁ ସବୁ ପ୍ରବଳ ଭୂପତି
ଊର୍ଦ୍ଧ୍ୱ ବାହୁ ହୋଇ ତପେ ବଳାଇଲେ ମତି
କାଳ କବଳେ ପଡ଼ିଲେ ସେହୁ ଯଥାକାଳେ
ନିପତିତ ହୋଇ ଯାଇଛନ୍ତି ସେ ସକଳେ ।
ଅଖିଳ ଶତ୍ରୁ ଚକ୍ରକୁ କରି ନିବାରଣ
ଯେଉଁମାନେ କଲେ ସର୍ବ ଲୋକ ବିଚରଣ ।
ସେହି ସାଧୁ କେଣେ ଗଲେ ଭାବି ତ ଅନ୍ତରେ
ବିଚିତ୍ର କାଣ୍ଡ କେମନ୍ତ ଦେଖ ଏ ସଂସାରେ ।
ବାହୁବଳେ ଯେବା କରି ଶତ୍ରୁଗଣେ କ୍ଷୟ
ଏକ ଆଧିପତ୍ୟ ମର୍ତ୍ତ୍ୟେ ସ୍ଥାପିଲେ ନିଶ୍ଚୟ ।
କଥା ପ୍ରସଙ୍ଗରେ ଲୋକେ ଯେ ଜନର ନାମ
ବଦନେ ଉଚ୍ଚାରୁଥାନ୍ତି ଭବେ ଅଭିରାମ ।
ସେହି କାର୍ତ୍ତବୀର୍ଯ୍ୟ ଏବେ କାହିଁ ଗଲା ଗଳି
ଭାବି ବୁଝ ତ ଅନ୍ତରେ ହେ ମୁନିମଣ୍ଡଳୀ ।
ଆଉ ଦେଖ ଦଶାନନ ଲଙ୍କାର ରାଜନ
ଅଥବା ଯେ ରଘୁବଂଶେ ଅନ୍ୟ ନୃପଗଣ ।
ଅତୁଳ ସମ୍ପତ୍ତି ପାଇ କେତେ କୀର୍ତ୍ତି କଲେ
ଭାବି ଦେଖିତ ଅନ୍ତରେ କେଣେ ସେହୁ ଗଲେ
ତାହାଙ୍କ ଐଶ୍ୱର୍ଯ୍ୟ ଯେବେ ହୋଇଲା ନିଧନ
କାହାର ବିଷୟ କହ ରହିବ କେସନ ।
ବିଷୟା ରସରେ ଯେଉଁ ପ୍ରାଣୀ ମଜ୍ଜି ରହି
ଭ୍ରୂଭଙ୍ଗୀ କରନ୍ତି ମଦେ ଅହଙ୍କାର ବହି ।
କି ହେବ ତାହାଙ୍କ ଦଶା ହେଜ ମୁନିଗଣ
ଅଧିକ କହିବି କିସ ତୁମ୍ଭ ସନ୍ନିଧାନ ।
ଅଖିଳ ଧରାର ପତି ମାନ୍ଧନତା ହୋଇ
ଦୁଇଦିନ ପରେ ଯେଣୁ ଚଳିଗଲେ କାହିଁ ।
ତେବେ ଏ ମମତାଜାଲେ କିନ୍ତୁ ନରଗଣ
ଆବଦ୍ଧ ହୋଇ କରନ୍ତି ବିପଦ ଘଟଣ ।

ଭଗୀରଥ ଦଶାନନ, ବକୁସ୍ଥ, ସଗର
ଯୁଧିଷ୍ଠିର ଆଦି ଆଉ ରାମ ରଘୁବୀର ।
ଏମାନେ ଯେଉଁ ପ୍ରକାରେ ଲଭିଛନ୍ତି ଗତି
ଅନ୍ୟ ପ୍ରତି କବା କଥା ଆହେ ମହାମତି ।
ଭୂତ, ଭାବୀ, ବର୍ତ୍ତମାନ ନୃପଙ୍କ ବିଷୟ
ବର୍ଣ୍ଣନ କଲି ଯେ ମୁହିଁ ତାହା ସମୁଦାୟ ।
ଏହା ସବୁ ଜାଣି ଶୁଣି ଯେତେ ସୁଧୀଜନ
ହୃଦୟରୁ ମମତା କରିବେ ବର୍ଜନ ।
ଯେଉଁସବୁ ନରପତି ପୁତ୍ର ପରିଜନେ
ବେଷ୍ଟିତ ହୋଇଣ ସୁଖେ ଅଛନ୍ତି ଏକ୍ଷଣେ ।
ଯଥାକାଳେ ଯେଝନବେ ସେ ଅନ୍ୟ କଳେବର
କେହି ରହିନାହିଁ ନ ରହିବେ କେ ଆବର ।
ଧନ ଜନ ବଡ଼ ପଣ ଏ ସକଳ ମିଥ୍ୟା
କେବଳ ସତ୍ୟ ଅଟଇ ଏକା ହରି କଥା ।
ସବେ ଚଳିଯିବେ ଏ ସଂସାରୁ କାଳବଳେ
ଯଶ କୀରତି ରହିବ ମାତ୍ର ମହୀତଳେ ।
ଏ ହେତୁ ମମତା ଗର୍ବ ଦମ୍ଭ ଅହଙ୍କାର
ବର୍ଜ୍ଜନ କଲେଟି ଭବୁଁ ପ୍ରାଣୀ ହୋନ୍ତି ପାର
ଏହି ଯେ ବ୍ରହ୍ମ ପୁରାଣ ଉତ୍ତର ଖଣ୍ଡରେ
ରାଜବଂଶ ବର୍ଣ୍ଣା କଥା କହିଲି ଭୂମ୍ଣରେ ।
ଏଣିକି ଅନ୍ୟ ପ୍ରସଙ୍ଗ କରିବି ବଖାଣ
ଯାହା ଲେଖିଛନ୍ତି ମହାମୁନି ବ୍ୟାସ ଜାଣ ।
ସକଳ ଚରିତ କ୍ରମେ ଶୁଣାଇବି ଏଥ
ଯହିଁରେ ପୂର୍ଣ୍ଣ ହୋଇବ ତବ ମନୋରଥ ।
ଏମନ୍ତେ ସୂତ ମହର୍ଷି ପୌରାଣିକ ଧୀର
ମୁନି ସମାଜେ କହିଲେ ମଧୁମୟ ଗୀର ।
ଶ୍ରବଣେ ନୈମିଶ ଜନବାସୀ ମୁନିବୃନ୍ଦ
ମନ ମଧ୍ୟରେ ଲଭିଲେ ଅପୂର୍ବ ଆନନ୍ଦ ।
ଏହି ପୁରାଣର ଗାଥା ସୁଲଳିତ ଅତି
ଭାଷା ଛନ୍ଦେ ବିରଚିଲେ ଯେ ସାଧୁ ସୁମତି ।
ଆରାଧ୍ୟ ଦେବତାଙ୍କର କରୁଣା ବଳରେ
ଅକିଞ୍ଚନ ଯୋଷ ଏହା ରଚଇ ଗୀତରେ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ ସୂତ
ଶୌନକ ସମ୍ବାଦେ ଭବିଷ୍ୟତ ରାଜବଂଶ
ଚରିତ ବର୍ଣ୍ଣନେ ନାମ ସପ୍ତବିଂଶୋଽଧ୍ୟାୟଃ

—ଃ୦ଃ—

## ଅଷ୍ଟାବିଂଶଃ ଅଧ୍ୟାୟ

## ପରଂବ୍ରହ୍ମ କୃଷ୍ଣଚନ୍ଦ୍ରଙ୍କର

## ମହିମା ବର୍ଣ୍ଣନ

ସୂତ ଉବାଚ

ଏଥିଅନ୍ତେ ଯେ ଶୌନକ ଅମିୟ ବଚନେ
ସୂତ ମୁନିଙ୍କୁ ପୁଚ୍ଛିଲେ ଶ୍ରଦ୍ଧାବନ୍ତ ମନେ ।
ଆହେ ପୌରାଣିକ ବର ସର୍ବଜ୍ଞ ଆପଣ
କହିଲ ଯେତେକ ରାଜବଂଶ ବିବରଣ ।
ଭୂତ ଭବିଷ୍ୟତ ବର୍ତ୍ତମାନ ବଂଶାବଳୀ
ସମସ୍ତ ଶ୍ରବଣ କଲୁ ତାପସ ମଣ୍ଡଳୀ ।
ସେ ସବୁ କଥା କେବଳ ଅଟେ ରାଜସିକ
ତାମସିକ ଭାବ ତିଳେ ନାହିଁ ତାଙ୍କ ପାଖ ।
ଶୁଣାଅ ବିଧାନେ କିଛି ସତ୍ତ୍ୱଗୁଣ ଗୀର
ଶ୍ରଦ୍ଧା ବଳୁଛି ଶୁଣିବା ପାଇଁକି ଆମ୍ଭର ।
ପୂର୍ବେ କହିଅଛ ଆମ୍ଭମାନଙ୍କ ଅଗ୍ରତେ
କଂସ ବଧଶାଳେ ଜନ୍ମହେଲେ ଜଗନ୍ନାଥେ ।
ଯେଉଁ ଯଦୁବଂଶୀ ବସୁଦେବଙ୍କର ସୁତ
କି କାରଣେ ହେଲେ ପ୍ରଭୁ ଆପଣେ ଅଚ୍ୟୁତ
କି ହେତୁ ବ୍ରହ୍ମାଣ୍ଡନାଥ ହରି ଜନାର୍ଦ୍ଦନ
ଅବନୀରେ ନରରୂପେ ହେଲେ ଅବତୀର୍ଣ୍ଣ ।
କଂସ ଭୟେ କାହିଁପାଇଁ ମୁକୁନ୍ଦ ମୁରାରି
ନନ୍ଦଘରେ ବଢ଼ିଲେ ଯେ ତେଜି ମଧୁପୁରୀ ।
କଲ୍ପେ କଲ୍ପେ ଗୋଲୋକରେ ତାଙ୍କ ନିତ୍ୟବାସ
କାହିଁକି ସେ ଗୋପପୁରେ ଗୁପ୍ତେ କଲେ ବାସ
ଆଲୋକିତ ଲୀଳାକାରୀ ଗୋଲୋକ ବିହାରୀ
କେଉଁ କେଉଁ ଲୀଳା କଲେ ଯେଝନ ଗୋପନାରୀ
ପୁଣି ଗୋପୀଙ୍କ ଗୃହରେ ବାଳ୍ୟତ କାଳରେ
କି କି ଲୀଳାକଲେ କୃଷ୍ଣ କୁହନ୍ତୁ ଆମ୍ଭରେ ।
ଯେଉଁ ଶିଶୁ ସଙ୍ଗୀଗଣ ତାହା ସଙ୍ଗେ ଥିଲେ
ସେମାନେ କିଏ ଅଟନ୍ତି କୁହ ତାହା ଭଲେ
ଯଶୋବନ୍ତୀ ଯେଉଁ ଅଟେ କୃଷ୍ଣଙ୍କ ଜନନୀ
କିଏସେ ଅଟନ୍ତି ସେହୁ କୁହ ଆହେ ମୁନି ।
ଜନ୍ମକଲ ପୁତ୍ର ସମ କଲେ ସେ ପାଳନ,
ସେ କଥାମାନ ବୁଝାଇ କହନ୍ତୁ ବଦନ ।
ରାଧା କିଏ ସେ ଆବର କେଉଁଠି ସେ ଥିଲେ
କୃଷ୍ଣଙ୍କ ସଙ୍ଗରେ କିମ୍ପା ଲୀଳା ଭିଆଇଲେ ।

ପୁଣି କହେଉ ଗୋପୀଏ ଗୋପାଳ ଗୃହରେ
ରହି କୃଷ୍ଣଙ୍କୁ ଭଜିଲେ ଏକାନ୍ତ ଚିତ୍ତରେ ।
ପୂର୍ବ ଜନମରେ କେଉଁ ପୁଣ୍ୟ କରିଥିଲେ
ତେଣୁ ସେ କୃଷ୍ଣଙ୍କୁ ପତି ରୂପରେ ପାଇଲେ ।
କାହିଁପାଇଁ ଗୋପପୁର ତେଜି ଶ୍ରୀମ ହରି
ମଥୁରା ପୁରକୁ ଗଲେ କୁହ ତପସ୍ଵୀ ।
କରୁପେ କୁବୁଜା ନାରୀ କରିଲେ ସୁନ୍ଦର
କଂସକୁ ବଧିଲେ ଯେଉଁପରି ଦାମୋଦର ।
ପୁନଶ୍ଚ ଦ୍ୱାରକାପୁର କମ୍ପା ନିର୍ମାଣିଲେ
ସେଠାବରେ କେଉଁ କେଉଁ ଲୀଳାମାନ କଲେ
ଶେଷରେ ଯଦୁକୁଳକୁ ନାଶି ଭଗବାନ
କରୁପେ ଗୋଲୋକଧାମେ କରିଲେ ଗମନ ।
କୃଷ୍ଣଙ୍କୁ ନଦେଖି ତାଙ୍କ ପ୍ରିୟଜନମାନେ
କେମନ୍ତେ ରହିଲେ କୁହ ଆମ୍ଭ ସନ୍ନିଧାନେ ।
ଗୋପଲୀଳା ଆବର ଯେ ମଧୁପୁର ଲୀଳା
ଦ୍ୱାରକାଲୀଳା ସହିତେ ଯାହା ଯେତେ ହେଲା
ସାର ସାର କଥାମାନ କରନ୍ତୁ ପ୍ରକାଶ
ଶୁଣିବା ପାଇଁକି ବଳଅଛି ଆମ୍ଭ ଆଶ ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ଲୀଳା ଆଦ୍ୟପ୍ରାନ୍ତ କରି
ହେ ପୌରାଣିକ ଆମ୍ଭରେ କୁହନ୍ତୁ ବିସ୍ତାରି ।
ବିସ୍ତାର ଭାବରେ ତାହା କରନ୍ତୁ ବର୍ଣ୍ଣନ
ଯା ଶୁଣି ପାତକ ରାଶି ହୁଏ ବିମୋଚନ ।
ଏ ଜଗତେ ଏକା ସିନା କୃଷ୍ଣକଥା ସାର
ତାଙ୍କ କଥା ବିନେ ଆଉ ସକଳ ଅସାର ।
କୃଷ୍ଣ ଚରିତ ଅଟଇ ଅମୃତ ସମାନ
ଯାହା ଶ୍ରବଣରେ ପାପ ହୁଏ ବିମୋଚନ ।
ଅନଳ ଯେସନ ତୃଣରାଶି ଭସ୍ମ କରେ
ସେହିପରି କୃଷ୍ଣକଥା ପାପ ନାଶ କରେ ।
ଶୌନକ ମୁନିଙ୍କଠାରୁ ଶୁଣି ଏ ବଚନ
କହି ଆରମ୍ଭିଲେ ସୁତ ହୋଇ ତୋଷମନ ।

### ସୁତ ଉବାଚ

ହେ ଶୌନକ ଅଟ ତୁମ୍ଭେ ମହା ପୁଣ୍ୟବନ୍ତ
ଯେଣୁ ହରିଙ୍କ କଥାରେ ବଳାଇଛ ଚିତ୍ତ ।
ଭୂମଣ୍ଡଳେ ଜଣେ କେବେ ଦେଖିନାହିଁ ମୁହିଁ
ଅବନୀ ମଧ୍ୟରେ ଶ୍ରେଷ୍ଠ ଅଛ ଯେ ବୋଲାଇ ।
ଧର୍ମଶୀଳ ନ ଦେଖେ ମୁଁ ତୁମ୍ଭପରି କାହିଁ
ତେଣୁ ସର୍ବ ଋଷିପରେ ଅଛ ପୂଜ୍ୟହୋଇ ।
ଶୁଣ ଏବେ ମନଦେଇ ତପସ୍ୱୀ ପ୍ରବର
କହୁଅଛି ସଂକ୍ଷେପେ ମୁହିଁ କୃଷ୍ଣ ସମାଚାର ।
ଅତି ବିଚିତ୍ର ଅଟଇ କୃଷ୍ଣଙ୍କ ମହିମା
ମୁଁ ଛାର ବର୍ଣ୍ଣିବି କିବା ଯାର ନାହିଁ ସୀମା ।
କୃଷ୍ଣର ଚରିତ ଗାନ ଅତି ମନୋହର
କୃଷ୍ଣ ନାମ ରସାୟନ ଅମୃତର ଧାର ।
କୃଷ୍ଣଗୁଣ କୃଷ୍ଣଲୀଳା ଅଗାଧ ସାଗର
ଯହିଁରେ ମଜ୍ଜିଲେ ଭବଭୟ ହୁଏ ଦୂର ।
କୃଷ୍ଣନାମ କୀର୍ତ୍ତନରେ ସର୍ବପାପ ହରେ
ମାନବ ପବିତ୍ର ପୂତ ହୁଏ କଳେବରେ ।
ଅକୈତବ ଧନ ଏକା କୃଷ୍ଣ ନାମ ପ୍ରେମ
ସୁବର୍ଣ୍ଣ ମଧ୍ୟରେ ଯେସନେ ଜମ୍ବୁନଦ ହେମ ।
ଯେଉଁ ଜନ ଅତି ଘୋର ପାପେ ଲିପ୍ତ ଥାଏ
ଶୁଣିଲେ ସେ କୃଷ୍ଣ କଥା ଭବୁଁ ତରିଯାଏ ।
ଦୀର୍ଘ ଆୟୁ ଲଭେ ସେହି ପୁଣ୍ୟବନ୍ତ ଜନ
ପବିତ୍ର ହୁଅନ୍ତି ତାର ବଂଶ ପ୍ରାଣୀଗଣ ।
ଶ୍ରୀହରି ପୂଜାରେ ଯେବା ଦିଅନ୍ତି ମନ ପ୍ରାଣ
ତା ପାଶକୁ ଶତ୍ରୁ ନ ଆସନ୍ତି କଦାଚନ ।
ଗ୍ରହଗଣ ପ୍ରତିକୂଳ ନ ହୁଅନ୍ତି ତାକୁ
ଅଚିରେ ଘୁଞ୍ଚାଏ ସେହୁ ସକଳ ବିଘ୍ନକୁ ।
ଯେଉଁମାନେ କୃଷ୍ଣପ୍ରତି ସଦା ଅନୁରାଗୀ
କେବେହେଁ ନୁହନ୍ତି ସେହୁ ଅମଙ୍ଗଳ ଭାଗୀ ।
କୃଷ୍ଣଭକ୍ତି ପରାୟଣ ଅଟେ ଯେଉଁ ନର
ତାହାର ଜୀବନ ଧନ୍ୟ ଅଟଇ ସଂସାର ।
ବିଷ୍ଣୁଙ୍କ ଦର୍ଶନେ ଯେଉଁ ଫଳ ନ ମିଳଇ
ତାହାଙ୍କ ଭକତଗଣେ ଅଧିକ ଯେ ହୋଇ ।
ଶ୍ରୀହରି ଚରିତ ଅଟେ ସର୍ବପରେ ସାର
ଭଜନେ ଦୁରିତ ମାନ ହୋଇଯାଏ ଦୂର ।
ଯେଉଁ ଚକ୍ଷୁ ଦେଖେ ସଦା ଶ୍ରୀହରି ଚରଣ
ସଫଳ ସେହି ନୟନ ଆହେ ତପୋଧନ ।
ଶ୍ରୀହରି ଚରଣାମୃତ ଯେ ଜିହ୍ୱା ଚାଖଇ
ସଫଳ ଅଟେ ସେ ଜିହ୍ୱା ଶୁଣ ମନଦେଇ ।
ଯେଉଁ ଜିହ୍ୱା କୃଷ୍ଣନାମ କରେ ସଦା ପାନ
ଅଟଇ ସେହି ରସନା ମୋକ୍ଷର କାରଣ ।

ଆହୁର କଥାଏ ଶୁଣ ଆହେ ତପୋଧନ
ବେଦର ଅପେକ୍ଷା ଶାସ୍ତ୍ର ନୁହେ କଦାଚନ ।
ତେସନ କୃଷ୍ଣ ଅପେକ୍ଷା ଦେବ ନାହିଁ ଆଉ
ଦେବଙ୍କ ଉପରେ ଦେବ ସେହି ମହାବାହୁ ।
ଆସିଣ ଏହି ସଂସାର କାନନ ମଧ୍ୟରେ
ଦାବାନଳେ ଦଗଧଭୂତ ମାନବ ନିକରେ ।
ସଂସାରକୁ ଆସି ଆଉ ନାହିଁଟି ଉପାୟ
କୃଷ୍ଣପୂଜା ସାର ମାତ୍ର ଆହେ ମୁନିଚୟ ।
ସଂସାର ଅଧୀନେ ପ୍ରାଣୀ ହୋଇଣ ବିଭୋଳ
ମାୟା ଜାଲେ ସଦା ବାନ୍ଧି ହୁଅନ୍ତି କେବଳ ।
ବଡ଼ଇ କଠିନ ଅଟେ ମାୟା ସେହି ଡ଼ୋର
ଛୁଣ୍ଡାଇ ପାରଇ ଯେହୁ ସେହି ସାଧୁନର ।
ଏହି ଏଥୁ ଛେଦିବାରେ ସେହି ମାୟାଡୋର
ଆକାଂକ୍ଷା ଯଦ୍ୟପି କର ଅତି ଯତ୍ନକର ।
କୃଷ୍ଣ ଭକ୍ତିରୂପ ତୀକ୍ଷ୍ଣ କୁଠାର ଘାତରେ
ଦାରୁଣ ମାୟା ଜାଲକୁ ଛେଦିବ ସତ୍ୱରେ ।
ଅସୀମ ସୁଖ ଶାନ୍ତିକି ଲଭିବ ଅବଶ୍ୟ
କେବେହେଁ ନୋହିବ ଆଉ ସେ ମାୟାରଦାସ
ଏ ଭବ ସଂସାର ସବୁ ଜାଣ ହେ ନଶ୍ୱର
କୃଷ୍ଣ ନାମ ଲୀଳା ଗୁଣ ଏକମାତ୍ର ସାର ।
ଯେଉଁଜନ କୃଷ୍ଣ ଚିନ୍ତା କରେ ଅନୁକ୍ଷଣ
ତାହାର ସୁକୃତ କଥା କେ କରେ ବର୍ଣ୍ଣନ ।
କୃଷ୍ଣ ପାଦପଦ୍ମେ ଯେଉଁ ମନ ସମର୍ପିତ
ନୁହଁ ତପୋଧନ ସେହି ମନ ଯେ ପ୍ରକୃତ ।
ସେହିମନ ଯଥାର୍ଥରେ ପବିତ୍ର ଅଟଇ
ସାର ଧନରତ୍ନ ଜାଣ ସହଜେ ଚିହ୍ନଇ ।
ଯେଉଁ ବାକ୍ୟ ସଦା କରେ କୃଷ୍ଣ ଗୁଣଗାନ
ତହିଁରେ ସେ ଜନ ଲଭେ ଆନନ୍ଦ ବିଜ୍ଞାନ ।
ସେ ବାକ୍ୟ ପ୍ରକୃତ ବାକ୍ୟ ମନୁଷ୍ୟ ଜନ୍ମରେ
ଆନ ବାକ୍ୟ ଲକ୍ଷ୍ୟନୁହେ ତାହା ସମାନରେ ।
ଯେଉଁକର୍ଣ୍ଣ ସବୁବେଳେ କୃଷ୍ଣକଥା ଶୁଣେ
ସେ କର୍ଣ୍ଣ ସାର୍ଥକ ଜାଣ ମାନବ ଜୀବନେ ।
କୃଷ୍ଣଙ୍କ ସୂକ୍ଷ୍ମାନୁସୂକ୍ଷ୍ମ ଅଜର ବିଷୟ
ସର୍ବଦେବ ପୂଜା କୃଷ୍ଣ ପୂର୍ଣ୍ଣ ବିଶ୍ୱମୟ ।
ଆକାଶ ପାତାଳ ଆଦି ମର୍ତ୍ତ୍ୟ ସବୁଠରେ
ପୂରିଛନ୍ତି ପରଂବ୍ରହ୍ମ କୃଷ୍ଣ ସବୁଠାରେ ।

ଭକତି ଭାବରେ କୃଷ୍ଣେ କରେ ଯେ ବନ୍ଦନ
ସେହି ଜନ ଜଗତରେ ଅଟେ ଏକା ଧନ୍ୟ ।
ଯେଉଁଜନ ମାୟାମୋହେ ସଦା ଘାଣ୍ଟି ହୋଇ
ଧନମଦେ ମାତି କୃଷ୍ଣ ନାମ ନ ଧରଇ ।
କ୍ଷଣକ ସୁଖରେ ମାତି ନାମକୁ ସେ ଧରେ
କି ଫଳ ପାଇବ ଅବା କ୍ଷଣିକ ସୁଖରେ ।
ଭାବି ଦେଖ ମରଣତ ନିଜ କରତଳ
ଏ ଜୀବନ ବୃଥା ପଦ୍ମପତ୍ରେ ଯେହ୍ନେ ଜଳ ।
ଧନ ବୋଲି ଗର୍ବ ଯାହା କରୁଥାନ୍ତି ମନେ
ପଦେ ପଦେ ସଦା ଭୟ ରହିଛି ସେ ଧନେ ।
ସେ ଧନ ହରଣେ ନୃପ କରୁଥାଏ ମନ
ଚୋର ହରି ନେବାପାଇଁ ଭାବେ ନିତିଦିନ ।
କେବେବା କି ଫଳ ଘଟେ କେହି ନ ଜାଣଇ
ବିଷମ ଯାତନା ମାତ୍ର ସେହୁ ଭୋଗୁଥାଇ ।
ତେବେ ସେ ଧନରେ ଆଉ କିବା ପ୍ରୟୋଜନ
ବୁଝିଦେଖ କି ସୁଖହା ହୁଏ ପ୍ରୟୋଜନ ।
ଧନ ଯେ ଅଟଇ ଜାଣ ସଦା ଦୁଃଖ ମୟ
ଧନର ସିନା କୁଜ୍ଞାନ ହୁଅଇ ଉଦୟ ।
ଆୟୁ ଶେଷ ହୁଏ ବୃଥା ନିଦ୍ରା ଆଳସ୍ୟରେ
ଅଜ୍ଞାନୀ ଜନ ନ ଦେଖେ ତା ଜ୍ଞାନ ନେତ୍ରରେ
ନାନା ପ୍ରକାର ଆହାରେ ଭବେ ପ୍ରାଣୀଗଣ
ଅନାୟାସେ ଯେ ତେଜନ୍ତି ଆପଣ ପରାଣ ।
ଯଦି କହ କର୍ମମାନ ହୋଇବ କେସନ
କେମନ୍ତେ ଜନ୍ମିବ ଭକ୍ତି ଶ୍ରୀହରି ଚରଣ
ଦମ୍ଭ ଗର୍ବ ଆଦି ସବୁ କରି ପରିହାର
କରୁଥିବ ଧର୍ମ ଚର୍ଚ୍ଚା । ସଂସାରେ ମଧ୍ୟର ।
ତେଣୁ କୁହ ମୁନିମାନେ ଶୁଣ ମୋ ବଚନ
ଏ ସଂସାର ମଧ୍ୟେ ପ୍ରାଣୀ ହୋନ୍ତି ନିପତନ ।
ଅବଶ୍ୟ ବିନାଶ ଦିନେ ଘଟିବ ଅଚିରେ
ଲୋଭ ଅଭିମାନ ନାଶ ହୋଇବ ତାହାରେ
ଏହି କଳେବର ଗୋଟି ବ୍ୟାଧିର ମନ୍ଦିର
ପରିପୂର୍ଣ୍ଣ ହୋଇଅଛି ଯେ ମଳ ମୂତ୍ରର ।
ଦେଖ ୨ ଏ ଅନିତ୍ୟ ପାପାଚ୍ଛନ୍ନ କାୟ
କମ୍ପା ମାୟାମୋହେ କରୁଥାନ୍ତି ଏତେସ୍ନେହ
ନିତ୍ୟ ମାୟା ଘୋର ଭାବ କାହିଁକି ମିଥ୍ୟାରେ
ଅଛନ୍ତି ପାପରେ ଘାଣ୍ଟି ଜାଣି ଶୁଣି ନରେ ।

ଏହି ନଶ୍ୱର ସଂସାର ଅଟଇ ଅସାର
ତିଳେମାତ୍ର ସୁଖ ନାହିଁ ଦୁଃଖ ଅନିବାର ।
ନିଶ୍ଚୟ ଆସିବ ଜାଣ ସେହି ଏକଦିନ
ଅବଶ୍ୟ ଘଟିବ ନାଶ ଦୈବର ଅଧୀନ ।
କେହ୍ନେ ବୋଲି ଏ ସଂସାରେ ବିଶ୍ୱାସ ବା ହୁଏ
ବିଶ୍ୱାସରୁ ସର୍ବନାଶ କହୁଛି ନିଶ୍ଚୟେ ।
ନାହିଁ ପରିତ୍ରାଣ କାଳ କରାଳରୁ ଜାଣ
କହିଲଟି ସାରକଥା ଶାସ୍ତ୍ର ପ୍ରମାଣ ।
ଏହି ମାନବ ଜନମ ଅତ୍ୟନ୍ତ ଦୁର୍ଲ୍ଲଭ
ଦେବତାମାନେ ବାଞ୍ଛନ୍ତି ହେବାକୁ ଜନମ ।
ଏମନ୍ତ ଦୁର୍ଲ୍ଲଭ ଜନ୍ମ ଧରି ସଂସାରରେ
କମ୍ପା ମନ୍ଦକର୍ମମାନ କରନ୍ତି ଗର୍ବରେ ।
କାମ କ୍ରୋଧ ଆଦି ରିପୁ କରି ପରିହାର
ସାଦରେ କରିବ ସଦା ଧର୍ମ ବ୍ୟବହାର ।
ନିଯୁତ ବିଶୁଦ୍ଧ ଭାବେ ଶ୍ରୀକୃଷ୍ଣ ଚରଣ
ହୃଦୟେ କରିବ ଧ୍ୟାନ ହୋଇ ଏକ ମନ ।
ଜନ୍ମାର୍ଜିତ ଉପାର୍ଜିତ ପୁଣ୍ୟର କାରଣ
ଦେବ ବୁଦ୍ଧି କି ଲଭନ୍ତି ନରେ ଅନୁକ୍ଷଣ ।
ଜ୍ଞାନ ବୁଦ୍ଧି ଭୋଗବୁଦ୍ଧି ଏଥିରୁହିଁ ହୁଏ
ସତ୍ୟ ସତ୍ୟ ଏ ବଚନ କହୁଛି ନିଶ୍ଚୟେ ।
ଯେଉଁ ଜନ ନର ଜନ୍ମ କରିଣ ଗ୍ରହଣ
ବୃଥାକର୍ମେ ରତହୋଇ କଟାଏ ପରାଣ ।
ତାହାପରି ଆଉ କିଏ ହତ ଜ୍ଞାନ ହେବ
ମହା ପାତକୀରେ ସେହୁ ଗଣନା ହୋଇବ ।
ଭକତ ବତ୍ସଳ ଦେବ କୃଷ୍ଣ ଭଗବାନ
ତାହାଙ୍କୁ ଭକତି ଭାବେ କରିବ ଅର୍ଚ୍ଚନ ।
କୃଷ୍ଣପୂଜନରେ ଯେହୁ ସମର୍ପଇ ମତି
ତାହାକୁ ବେଢ଼ି ନପାରେ କେବଣ ଦୁର୍ଗତି ।
ଗଗନେ ଯେସନେ ଏହି ବିଶ୍ୱ ଚରାଚର
ସ୍ଥାବର ଜଙ୍ଗମ ଆଦି ବ୍ୟାପ୍ତ ନିରନ୍ତର ।
ଅର୍ଥାତ୍ ଗଗନ ଯଥା ନିତ୍ୟମୟ ହୋଇ
ସକଳ ସ୍ଥାନରେ ନିଜ ରୂପ ବିସ୍ତାରଇ ।
ବିଶ୍ୱଆତ୍ମା କୃଷ୍ଣ ଜାଣ ଅଟନ୍ତି ତେସନ
ଏକ ବ୍ରହ୍ମ ବହୁ ରୂପେ ଦିଶନ୍ତି ଶୋଭନ ।
ସର୍ବତ୍ର ଅଛନ୍ତି ସେହି ବ୍ରହ୍ମ ସର୍ବବ୍ୟାପୀ
ତାଙ୍କ ଆଦି ଅନ୍ତ ନାହିଁ ସେ ଯେ କାମରୂପୀ ।

ବିଧିମତେ ଭକ୍ତି ଭରେ କରିଣ ପୂଜନ
ତାଙ୍କ ପ୍ରୀତି ଜନମାଏ ଯଦି କେହି ଜନ ।
ଯମକୁ କି ଭୟ ତାର ପାତକେ କି ଭୟ
ମୋକ୍ଷ ତାର ହସ୍ତଗତ ଜାଣ ହେ ନିଶ୍ଚୟ ।
ଯେସନେ ଭୀଷଣ ମୃତ୍ୟୁ ଅତି ଦୁନିବାର
ତେସନକ କୃଷ୍ଣ ପୂଜା ସବୁଠାରୁ ସାର ।
କୃଷ୍ଣ ପୂଜା ପାଶେ ମୃତ୍ୟୁ କେବେହେଁ ନରହେ
କୃଷ୍ଣ ପୂଜାବଳେ ମୃତ୍ୟୁ ପରାଜୟ ପାଏ ।
ଦାରୁଣ ସଂସାର-ଫାଶ ହୁଏ ବିମୋଚନ
କୌଣସି ଭୟ ରହଇ ନାହିଁ କଦାଚନ ।
ଏଣୁ ସେହି ପରଂବ୍ରହ୍ମ କୃଷ୍ଣ ନିରଞ୍ଜନେ
ଆଚରିବ ଦୃଢ଼ ଭକ୍ତି ଐକାନ୍ତିକ ମନେ ।
ତାହାଙ୍କୁ ପୂଜିବ ସଦା କରିଣ ଯତନ
ତାଙ୍କ ନାମ ଅନୁକ୍ଷଣ କରିବ କୀର୍ତ୍ତନ ।
ସୁଧାମୟ କୃଷ୍ଣ ନାମ ତୁଣ୍ଡରେ ଭଣିଲେ
ସଂସାର ସମୁଦ୍ର ପାରି ହେବ ଅବହେଳେ ।
କୃଷ୍ଣ ଭକ୍ତି ପଥେ ଗତି କରେ ଯେଉଁ ଜନ
କୃଷ୍ଣଭକ୍ତ ସଙ୍ଗେ ଯେବା ବଞ୍ଚେ ନିଶିଦିନ ।
କୃଷ୍ଣ ଭକ୍ତି ରସେ ରତ ହୁଏ ଯେଉଁ ନର
ତାହାର ମନ ପବିତ୍ର ଶୁଦ୍ଧ କଳେବର ।
କୃଷ୍ଣ ଗାଥା ଯେଉଁଠାରେ ହୁଏ ସଂକୀର୍ତ୍ତନ
ଅବିରତ ସଦା ଥାନ୍ତି ତହିଁ ଦେବଗଣ ।
କେବା କହିପାରେ ମୁଖେ କୃଷ୍ଣଙ୍କର ଗୀର
ଚରାଚରେ ଆଦି ଅନ୍ତ ନାହିଁ ତାହାଙ୍କର ।
ଯେ ସ୍ଥାନେ ତାଙ୍କ ମହିମା ହୁଅଇ କୀର୍ତ୍ତନ
ତହିଁ ରହିଥାନ୍ତି ସିଦ୍ଧ ସାଧୁ ମୁନିଗଣ ।
କୃଷ୍ଣକଥା ଶୁଣନ୍ତେ ଯେ ପାପ ଧ୍ୱଂସ ହୁଏ
ଆପଦ ବିପଦ ଆଜି କିଛିହିଁ ନ ରହେ ।
କିବା ଜପ କିବା ତପ କିବା ଯଜ୍ଞ ଦାନ
କେହି ଯେ ନୁହଇ କୃଷ୍ଣକଥାର ସମାନ ।
ଏକ ଚିତ୍ତେ କୃଷ୍ଣକଥା କଲେଟି ଶ୍ରବଣ
ଅନାୟାସେ ମୋକ୍ଷ ପଦ ପାନ୍ତି ଜୀବପଣ ।
ଅର୍ଚ୍ଚନା ଦାସତ୍ୱ ସଖୀ ସ୍ମରଣ ସେବନ
ଶ୍ରବଣ କୀର୍ତ୍ତନ ସ୍ତୁତି ଆତ୍ମ ନିବେଦନ ।
ଏ ନବ ଭାବେ କୃଷ୍ଣଙ୍କୁ ଭକ୍ତିରେ ସେବିଲେ
ଜୀବନ ସଫଳ ମୋକ୍ଷ ମିଳେ ଅନ୍ତଃକାଳେ ।

କୃଷ୍ଣ ଭକ୍ତଜନେ ନାହିଁ ଯମର ଶାସନ
ବିଷ୍ଣୁ ଧାମେ ପୁଷ୍ପରଥେ ସେ କରେ ଗମନ ।
ଗରୁଡ଼କୁ ଦେଖି ଯେହ୍ନେ ଖିତ ସର୍ପଗଣ
କୃଷ୍ଣ ଭକତଙ୍କୁ ଦେଖି ତେସନ ଶମନ ।
କୃଷ୍ଣଭକ୍ତଙ୍କୁ ଗୁପ୍ତରେ ଘେନି ଭଗବାନ
ଆଡ଼ୁଆଳ କରିଥାନ୍ତି ଚକ୍ର ସୁଦର୍ଶନ ।
କୃଷ୍ଣଭକ୍ତ ପାଶେ ଯମଦୂତେ କେ ନ ଯାନ୍ତି
ଅନୁକ୍ଷଣ ଦେବଗଣ ସନ୍ତୋଷେଣ ଥାନ୍ତି ।
କୃଷ୍ଣଭକ୍ତକୁ ଆପଦ କେବେ ନ ଘଟଇ
ନିର୍ଭୟରେ କୃଷ୍ଣଭକ୍ତ ଭ୍ରମଣ କରଇ ।
କୃଷ୍ଣ ପ୍ରେମଧନେ ମହାଧନୀ ହୋଇ ସେହି
ଅପୂର୍ବ ଆନନ୍ଦ ଅନୁଭବ କରୁଥାଇ ।
କାନ୍ତା ଭାବେ କୃଷ୍ଣଙ୍କୁ ଯେ ଜନ ସଦା ଭଜେ
ଅନ୍ତେ ଗୋଲକରେ ନିତ୍ୟ ରାସରସେ ମଜେ ।
କୃଷ୍ଣ ଅନୁଗ୍ରହେ ସେହି ଭକତ ପ୍ରଧାନ
ମର୍ତ୍ତ୍ୟ ଆସି ପୁନର୍ଜନ୍ମ ନ କରେ ଗ୍ରହଣ ।
କୃଷ୍ଣଧନ ପାଇ ପ୍ରେମରସେ ହୁଏ ଭୋଳ
ଆପଣେ ଉଦ୍ଧରି ଉଦ୍ଧରଇ ସପ୍ତକୁଳ ।
କୃଷ୍ଣଗୁଣ ଗାନ କରେ ସଦା ଯେଉଁ ନର
ସର୍ବ ଅବସ୍ଥାରେ ଶୁଚି ତା ବାହ୍ୟ ଅନ୍ତର ।
ଭକ୍ତିଭାବେ କୃଷ୍ଣନାମ ଯେ କରେ କୀର୍ତ୍ତନ
ଅନ୍ତିମରେ ତାହାଙ୍କର ପାଦେ ହୁଏ ଲୀନ ।
କୃଷ୍ଣନାମ ଶ୍ରବଣେ ଯା ନେତ୍ରୁ ବହେ ନୀର
ତାହାର ସର୍ବାଙ୍ଗ ହୁଏ ସ୍ୱେଦେ ଜର ଜର ।
କମ୍ପ ରୋମାଞ୍ଚ ଆଦି ଯା ଅଙ୍ଗେ ହୁଏ ଜାତ
ସେହି ଜନ ଜଗତରେ ଅଟଇ ପବିତ୍ର ।
ବାତୁଳ ପରାୟେ ଯେହୁ ହସେ କାନ୍ଦେ ଗଡ଼େ
ସାଧୁଙ୍କ ପୟର ତଳେ ପ୍ରେମଭୋଳେ ପଡ଼େ ।
ଦେଖେ କୃଷ୍ଣମୟ ଏହି ଅଖିଳ ସଂସାର
କୃଷ୍ଣବିନେ ଆନକଥା ନ ଭଜେ ମନର ।
ଯେହି ଏକା ଜାଣେ କୃଷ୍ଣ ନାମର ମହାତ୍ମ୍ୟ
କେ ଅନ୍ତ କରିପାରିବ ତା ସୀମା ସୁକୃତ ।
ଏମନ୍ତ କହିଣ ସୁତ ହୋଇଲେ ମଉନ
ଗୀତଛନ୍ଦେ ବିରଚିଲା କ୍ଷେତ୍ରବାସୀ ଦୀନ ।
ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ କୃଷ୍ଣଙ୍କ ମହିମା
ବର୍ଣ୍ଣନେ ନାମ ଅଷ୍ଟନବିଂଶୋଽଧ୍ୟାୟଃ ।

—୦—

## ଊନଚତ୍ୱାରିଂଶ ଅଧ୍ୟାୟ
## ହରିଭକ୍ତଙ୍କ ମହିମା କୀର୍ତ୍ତନ

ଶୌନକ ଉବାଚ

ଏଥୁ ଅନନ୍ତରେ ଯେ ଶୌନକ ତପୋଧନ
ପୁଚ୍ଛିଲେ ସୁତ ମୁନିଙ୍କୁ ହୋଇ ତୋଷମନ ।
କହ କହ ଆହେ ବିଜ୍ଞ ପୁରାଣ ବକତା
ଶୁଣିବି ମୁଁ କୃଷ୍ଣଭକ୍ତଙ୍କର ଗୁଣ ଗାଥା ।
ଏହା ଶୁଣି ପୌରାଣିକ ସୁତ ମୁନିବର
ହରି ଭକ୍ତଙ୍କ ମହିମା କହିଲେ ପ୍ରଚୁର ।

ସୁତ ଉବାଚ

ଶୁଣ ଶୁଣ ଏକ ମନେ ସର୍ବ ତପୋଧନ
ଶ୍ରୀହରି ଭକ୍ତଙ୍କ ଗାଥା କରୁଛି ବର୍ଣ୍ଣନ ।
ଯେଉଁ ଜନ ପରଂବ୍ରହ୍ମ ଶ୍ରୀହରି ଭକତ
ଅଟଇ ଜଗତେ ସେହୁ ମହା ଭାଗ୍ୟବନ୍ତ ।
ଅନ୍ତର ବାହାରେ କୃଷ୍ଣ ଦର୍ଶନ କରଇ
ସ୍ଥାବର ଜଙ୍ଗମେ ସଦା ବିଷ୍ଣୁଙ୍କୁ ଦେଖଇ ।
କୃଷ୍ଣନାମେ ନିରନ୍ତରେ ହୋଇଥାଏ ଭୋଳ
କୃଷ୍ଣବିନୁ ଆନକଥା ନ ଦେଖେ କେବଳ ।
ବୈଷ୍ଣବ ବୋଲି ତାହାକୁ କହନ୍ତି ଶାସ୍ତ୍ରରେ
ସେହି ଏକା ଭାଗ୍ୟବାନ ଏହି ଜଗତରେ ।
କାମାଦି ଦାରୁଣ ରିପୁ କରି ପରିହାର
କୃଷ୍ଣମୟ ଦେଖେ ଏହି ଅଖିଳ ସଂସାର ।
ତାହାଙ୍କ ବ୍ୟତୀତ ଆନ ନ ଦେଖେ ନୟନେ
କୃଷ୍ଣନାମ ଗୁଣ ହୃଦେ ଚିନ୍ତେ ରାତ୍ରି ଦିନେ ।
ପ୍ରକୃତ ବୈଷ୍ଣବ ସେହୁ ଅବନୀ ମଧ୍ୟରେ
ଜଗତେ ସେବା କରନ୍ତି ସର୍ବେ ତା ପୟରେ ।
କୃଷ୍ଣ ପାଦପଦ୍ମ ସଦା ଯେ କରେ ଭଜନ
ଆନ ଚିନ୍ତା ନ ଆଣଇ ହୃଦେ କଦାଚନ ।
ମୁଖେ କୃଷ୍ଣନାମ ଗାନ କରେ ଅନୁକ୍ଷଣ
କୃଷ୍ଣ କଥା ଶୁଣି ହୁଏ ଆନନ୍ଦେ ମଗନ ।
ଶୟନେ ସ୍ୱପନେ କିମ୍ବା ନିଦ୍ରା ଜାଗରଣେ
ଏକାନ୍ତେ ଶ୍ରୀକୃଷ୍ଣନାମ ଭଜେ ନିରବଧନେ ।
ଯାହା ଯେବେ ପାଏ କୃଷ୍ଣେ କରେ ସମର୍ପଣ
ନ ଦେଇ କୃଷ୍ଣଙ୍କୁ ଜଳ ନ କରେ ଭକ୍ଷଣ ।

ମିଥ୍ୟା ନ ଭାଷଇ ବଞ୍ଚନା ସେ ନ କରଇ
ଅନ୍ତର ବାହାର ତାର ନିର୍ମଳ ଅଟଇ ।
କୃଷ୍ଣଙ୍କର ପାଦେ ଯେହୁ ବିକଥାଏ ପ୍ରାଣ
ନିମିଷେ ଛାଡ଼ଇ ନାହିଁ ଶ୍ରୀହରି ଚରଣ ।
ଗୁରୁଦତ୍ତ କୃଷ୍ଣ ମନ୍ତ୍ର ଗଣ୍ଠି ଧନ ତାର
ସେ ଅକିଞ୍ଚନ ନ ରସେ ସେ ଗ୍ରାମ୍ୟ ଗୀତର ।
କୃଷ୍ଣ ବିମୁଖ ପ୍ରାଣୀଙ୍କ ସଙ୍ଗ ନ ଲୋଡ଼ଇ
ସାତ୍ତ୍ୱିକ ରସ ସିନ୍ଧୁରେ ନିରତେ ବୁଡ଼ଇ ।
ଦେଖି ସର୍ବଦେବ ଭାବେ କରେ ନମସ୍କାର
ମାଗି ଘେନେ ସମସ୍ତଙ୍କୁ କୃଷ୍ଣ ଭକ୍ତବର ।
ଶ୍ରୀହରି ବାସରେ ନିଶା ଜାଗରଣ କରେ
ହରି ଜନ୍ମାଷ୍ଟମୀ ବ୍ରତ ପାଳଇ ବିଧିରେ ।
ମନସୁଖେ ପାଳେ ମହା ଦ୍ୱାଦଶୀ ବ୍ରତକୁ
ସୁପ୍ରସନ୍ନେ ଗାନ କରେ ସର୍ବଦା ନାମକୁ ।
ଏହି ଗୁଣମାନ ପୂର୍ଣ୍ଣ ଅଛି ଯାହାଠାରେ
ପ୍ରକୃତ ବୈଷ୍ଣବ ସେହି ସଂସାର ମଧ୍ୟରେ ।
ଏକଇ ବୈଷ୍ଣବ ଭବେ ଲଭିଲେ ଜନମ
ପାପ କେବା ତା ବଂଶରେ ନ ହୁଏ ଘଟନ ।
ଯେବା କରଇ ଦର୍ଶନ ବୈଷ୍ଣବ ଜନରେ
ମହାପାପୀ ହେଲେ ମଧ୍ୟ ମୁକ୍ତି ଲଭେ ନରେ
ସର୍ବପାପ କ୍ଷୟ ହୁଏ ବୈଷ୍ଣବ ଦର୍ଶନେ
ବ୍ରହ୍ମହତ୍ୟା ଆଦି ଦୂର ହୁଅଇ ବିଧାନେ ।
ପ୍ରକୃତ ବୈଷ୍ଣବ ଜନେ ଯେହୁ ସ୍ପର୍ଶ କରେ
ସକଳ ପାତକ ମାନ ତା ଅଙ୍ଗୁ ନିବାରେ ।
ମୋକ୍ଷ ଫଳ ମିଳେ ସାଧୁ ବୈଷ୍ଣବ ଦର୍ଶନେ
ଉପ ପାତକ ଘୁଞ୍ଚଇ ବୈଷ୍ଣବ ସ୍ପର୍ଶନେ ।
ଭାଗ୍ୟବଶେ କରେ ଯେବା ବୈଷ୍ଣବ ଦର୍ଶନ
ଅନ୍ତଃକାଳେ ତାର ଗତି ବୈକୁଣ୍ଠ ଭୁବନ ।
ବୈଷ୍ଣବ ଜନଙ୍କୁ ସେବା କରେ ଯେଉଁ ନର
ବିଷ୍ଣୁ ସହ ଏକ ଆତ୍ମା ମଣେ ନିରନ୍ତର ।
ତା ଦୁର୍ଲ୍ଲଭ ନୁହଇ କୃଷ୍ଣ ଭକ୍ତି ଧନ
ଆପଦ ବିପଦ ତାର ହୁଅଇ ମୋଚନ ।
ବୈଷ୍ଣବଙ୍କ ଗୁଣ କର୍ମ୍ମ କେବା ବର୍ଣ୍ଣିପାରେ
ସ୍ୱୟଂ ବିଷ୍ଣୁ ଅସମର୍ଥ ହୋନ୍ତି କହିବାରେ ।
ଯେଉଁ ଜନ ବିଷ୍ଣୁ ଭକ୍ତ ବିଷ୍ଣୁ ପରାୟଣ
ଅନ୍ତର୍ଗତେ କୃଷ୍ଣ ନାମ ସ୍ମରେ ଅନୁକ୍ଷଣ ।
ବିପ୍ର ମଧ୍ୟେ ପ୍ରଧାନ ସେ ବେଦେ ଛନ୍ତି ଭଣି
ଅର୍ଚ୍ଚନ କରନ୍ତି ତାଙ୍କୁ ସର୍ବଦେବ ଶ୍ରେଣୀ ।
ବୈଷ୍ଣବ ଶରୀରେ ବିଷ୍ଣୁ କରନ୍ତି ବିହାର
ଯେ ବୈଷ୍ଣବ ସେହି ବିଷ୍ଣୁଙ୍କର ଅବତାର ।
ଦଶ ଲକ୍ଷଣ ବହନ୍ତି ବୈଷ୍ଣବ ଆପଣେ
ଶୁଣ ସେ ଦଶ ଲକ୍ଷଣ ସର୍ବ ମୁନିଗଣେ ।
ଅକ୍ରୋଧ, ବୈରାଗ୍ୟ, ଜିତେନ୍ଦ୍ରିୟ, କ୍ଷମାଶୀଳ
ପରମ ଦୟାଳୁ, ସର୍ବ ଗୁଣରେ କୁଶଳ ।
ଲୋଭ ଶୂନ୍ୟ, ଦାତା ପୁଣି ଭୟ ଶୋକହୀନ
ଉତ୍ତମ ବୈଷ୍ଣବଙ୍କର ଏ ଦଶ ଲକ୍ଷଣ ।
ବୈରାଗ୍ୟର ଚିହ୍ନ ଯାହା ଶାସ୍ତ୍ରେ ନିରୂପଣ
ସେ ପଞ୍ଚଲକ୍ଷଣ ବୈଷ୍ଣବଙ୍କ ଏବେ ଶୁଣ ।
ତିଳକ, ତୁଳସୀମାଳା, ମସ୍ତକ ମୁଣ୍ଡିତ
ଶିଖା କଉପୀନ ବାସ ଧାରଣ ଯେ ମାନ ।
ସଦା ହରିନାମ ଯୁକ୍ତ ଦୁଶ୍ଚିନ୍ତା ବର୍ଜ୍ଜିତ
ଏହିଟି ଅଟଇ ସାଧୁ ବୈଷ୍ଣବ ଲକ୍ଷଣ ।
ସର୍ବଦା ବିଷ୍ଣୁ ସମ୍ବନ୍ଧ ଶାସ୍ତ୍ର ସୁଚିନ୍ତନ
ନିଦ୍ରା ଆଳସ୍ୟ ମୈଥୁନ ଯେ କରେ ବର୍ଜ୍ଜନ ।
ଜଟା ବଳକଳ ଧାରି ଯେ ତେଜିଛି ସଂସାର
ସେ ଜନ ପ୍ରକୃତ ବିଷ୍ଣୁ ଭକତରେ ସାର ।
ସ୍ୱୟଂ ଶ୍ରୀମୁଖରେ ବିଷ୍ଣୁ କହିଛନ୍ତି ଯାହା
କହୁଛି ସେ କଥା ଏବେ ଶୁଣ ପୁଣ୍ୟଦେହା ।
ଯାହା ଶୁଣିଲ ମାନବଙ୍କ କଳୁଷ ନାଶଇ
ସେହି ବିଷ୍ଣୁଙ୍କର ବାଣୀ କହୁଅଛି ମୁହିଁ ।
ପ୍ରାଣୀମାନେ କଳିଯୁଗେ ପାପରେ ମଜ୍ଜିବେ
ଦେହର ବିହିତ ବିଧି ବିଧାନ ତେଜିବେ ।
ଗୋ ବ୍ରାହ୍ମଣ ଦେବତାଙ୍କୁ ପୂଜା ଆଦି ସର୍ବ
ବର୍ଜ୍ଜନ କରିବେ ମୂଢ଼େ ମନେ ବହି ଗର୍ବ ।
ସ୍ୱଧର୍ମ୍ମ କର୍ମକୁ ଛାଡ଼ି ଦାମ୍ଭିକ ହୋଇବେ
ତେଣୁ ଦରିଦ୍ର ଅଳ୍ପାୟୁ ଭକ୍ତିହୀନ ହେବେ ।
ହରିକଥା ହରିଗୁଣ ଶୁଣିଲେ ହସିବେ
ବ୍ରାହ୍ମଣେ ବେଦକୁ ଛାଡ଼ି କୁକର୍ମେ ରସିବେ ।
ବିଷ୍ଣୁ ଭକ୍ତ କଳିପ୍ରାଣୀ ଲଭିବେ ମୁକତି
କୃଷ୍ଣେ ନିଷ୍ଠା ଧର୍ମେ ଯେହୁ ସମର୍ପିବେ ମତି ।
ଏକମନେ ଶୁଣ ମୁନି ବୈଷ୍ଣବ ଲକ୍ଷଣ
ଯା ଶୁଣନ୍ତେ ପାପ ତାପ ହଟଇ ତକ୍ଷଣ ।

ନିରନ୍ତର ହରିକଥା ମନେ ଯେ ଚିନ୍ତଇ
ପ୍ରଧାନ ବୈଷ୍ଣବ ଜାଣ ଏ ସଂସାରେ ସେହି ।
ଶ୍ରଦ୍ଧାରେ ଶୁଣଇ ସେବା କୃଷ୍ଣଲୀଳା ଗୁଣ
ତାହାର ଠାରେ ଅଛନ୍ତି ବୈଷ୍ଣବ ଲକ୍ଷଣ ।
କୃଷ୍ଣ ଲୀଳା ହେଜ ଯେହୁ ଆନନ୍ଦେ ଭାସଇ
ଏ ଭବେ ବୈଷ୍ଣବ ବୋଲି ତାକୁ ଏକା କହି
କାମ କ୍ରୋଧ ଲୋଭମୋହ ମମତା ଯେ ଛାଡ଼େ
ପ୍ରକୃତ ବୈଷ୍ଣବ ସେହି ବିପଦେ ନ ପଡ଼େ ।
ଜୀବନାନ୍ତେ ଯେବା ନ ଭାଷଇ ମିଥ୍ୟା ବାଣୀ
ତାକୁ ବୈଷ୍ଣବ ବୋଲି ଯେ ଶାସ୍ତ୍ରେ ଛନ୍ତି ଭଣି
ଜ୍ଞାନ ଧର୍ମ କହି ଯେହୁ ମୋହେ ପ୍ରାଣୀମନ
ପ୍ରକୃତ ବୈଷ୍ଣବ ଏ ସଂସାରେ ସେହି ଜନ ।
ମାତା ପିତାଙ୍କୁ ଭକତି କରେ ଯେଉଁ ନର
ଜ୍ଞାତି ଜନଙ୍କୁ ପୋଷଇ କରିଣ ଆଦର ।
ସବୁରି ଆଗରେ କହେ କୃଷ୍ଣର ଚରିତ
ପ୍ରଧାନ ବୈଷ୍ଣବ ସେହି ଜାଣ ତପୋବନ୍ତ ।
ଦୁଃଖୀ ଦରିଦ୍ରଙ୍କୁ ଦେଖି ଯେହୁ ଦୟାକରେ
ଅତିଥି ଜନଙ୍କୁ ପୂଜେ ଶ୍ରଦ୍ଧା ଭକ୍ତିଭରେ ।
ବେଦମାର୍ଗେ ହରି ଗୋରୁ ବ୍ରାହ୍ମଣେ ସେବଇ
ପ୍ରଧାନ ବୈଷ୍ଣବ ବୋଲି ତାକୁ ଶାସ୍ତ୍ରେ କହି
ପର ରମଣୀକୁ ଯେହୁ ଦେଖେ ମାତୃବତ
ନପୁଂସକ ହୁଏ କାମ ବିକାରେ ମର୍ଦ୍ଦିତ ।
ଆନନ୍ଦେ ଗମନ କରେ ଶ୍ରୀହରି କ୍ଷେତ୍ରକୁ
ଆଲୋଚନା କରେ ନିତ୍ୟେ ଯେ ସାଧୁ ଶାସ୍ତ୍ରକୁ
ପାଳେ ଏକାଦଶୀ ବ୍ରତ ଅନୁରାଗ ବହି
ଗାଉଥାଏ ଶ୍ରୀହରିଙ୍କ ନାମ ଯହିଁ ତହିଁ ।
ଜୀବେ ଦୟାଭାବ ମନେ ସମ୍ପାଦଣ ଥାଏ
ପରମ ବୈଷ୍ଣବ ସେହୁ ସଂସାରେ ବୋଲାଏ ।
ଏକ ଆତ୍ମା ଯେହୁ ମଣେ ଶ୍ରୀହରି ହରଙ୍କୁ
ଭେଦ ବୁଦ୍ଧି ନ ରଖଇ ଯେ ଆନ ପ୍ରାଣୀଙ୍କୁ ।
ସବୁରି ହୃଦୟେ ନାରାୟଣ ଛନ୍ତି ରହି
କାହାକୁ ହିଂସା ନକରେ ମନେ ଗର୍ବବହି ।
ଜାଣିବା ପ୍ରକୃତ ସାଧୁ ଅଟେ ସେହି ଜନ
ଶ୍ରୀମୁଖ ବଚନ ଏହା ନ ଅଟଇ ଆନ ।
କୃଷ୍ଣପ୍ରୀତି ଅର୍ଥେ ଯେହୁ କର୍ମମାନ କରେ
ସମ୍ମାନରଖେ ଅଶ୍ୱତ୍ଥ ଧାତ୍ରୀ ବୃକ୍ଷପରେ ।

ତୁଳସୀ ରୋପଣ କରି ସେବାକରେ ନିତ୍ୟ
ପ୍ରକୃତ ବୈଷ୍ଣବ ମଧ୍ୟେ ଅଟଇ ଗଣିତ ।
ଦେଉଳ ମଣ୍ଡପ ତୋଳି ପରମ ସ୍ନେହରେ
ପ୍ରଦାନ କରଇ ଯେହୁ ଦେବ ହରିହରେ ।
କ୍ଷଣେ ମାତ୍ର ମୁଖୁଁ ହରିନାମ ନ ଛାଡ଼ଇ
ବୈଷ୍ଣବ ପଦକୁ ଏକା ଭଜନ ଯେ ସେହି ।
ଶ୍ରୀବିଷ୍ଣୁ ପାଦ ଉଦକ ଗର୍ଭକୁ କ୍ଷେପଇ
ସେହି ଶ୍ରୀଚରଣାମୃତ ମସ୍ତକେ ମାଖଇ ।
ତୁଳସୀ ଆଘ୍ରାଣ କରି ମନେ ବହି ମୋଦ
ସେବାକରେ ଶ୍ରୀକୃଷ୍ଣଙ୍କ ନୈବେଦ୍ୟ ପ୍ରସାଦ ।
ଦିବସେ ଶୟନ କରି ନିଦ୍ରାହିଁ ନଯାଏ
ପ୍ରକୃତରେ ସେହି ବ୍ୟକ୍ତି ବୈଷ୍ଣବ ବୋଲାଏ
କଣ୍ଠେ କର୍ଣ୍ଣେ ଶିରେ ଯେହୁ ଘେନଇ ତୁଳସୀ
ନିରନ୍ତରେ ହରି କଥା ହେଉଥାଏ ଘୋ
କୃଷ୍ଣ ଭକ୍ତ ସଙ୍ଗ ଇଚ୍ଛି ଶୁଣେ କୃଷ୍ଣଗୁଣ
କୃଷ୍ଣ ବିହରଣ ସ୍ଥାନେ ଗମଇ ସେ ପୁଣ ।
କୃଷ୍ଣ ମନ୍ତ୍ର ଜପକରେ ପୁଲକିତ ମନେ
ସେହିଟି ବୈଷ୍ଣବ ଶ୍ରେଷ୍ଠ ଅଟଇ ଭୁବନେ ।
ତୁଳସୀ ମୂଳ ଯେ ନିତି ପରିଷ୍କାର କରେ
ସ୍ନାନ ସାରି ଜଳ ଦିଏ ତାହାର ମୂଳରେ ।
ତୁଳସୀମୂଳ ମୃତ୍ତିକା ଘେନଇ ତିଳକ
କୃଷ୍ଣ ଚରଣ ତୁଳସୀ ଭକ୍ଷେ ସେ କାଳକ ।
ତୁଳସୀ ବୃକ୍ଷେ ମଣ୍ଡଇ କୁସୁମ ଚନ୍ଦନ ।
ତ୍ରିସନ୍ଧ୍ୟା କାଳେ କରଇ ତାହାକୁ ବନ୍ଦନ
ଭକ୍ତିଭରେ କୃଷ୍ଣପ୍ରିୟା ତୁଳସୀ ପୂଜଇ
ସେହି ଯେ ବୈଷ୍ଣବ ଏକା ସଂସାରେ ଅଟଇ ।
ନିତ୍ୟ ଯେ ମାର୍ଜନ କରେ ଶ୍ରୀହରି ମନ୍ଦିର
ଜାଳଇ ପ୍ରଦୀପାବଳୀ ଦିବସ ରାତ୍ରିର ।
ଅଷ୍ଟ କାଳନ ସେବାରେ ଯେ ଥାଏ ତତ୍ପର
ଭଜନ ସାଧନେ ହେଳା ନ କରେ ଯେ ନର
ଗୁରୁ କୃଷ୍ଣଙ୍କ ଚରଣେ ଦୃଢ଼ ଭକ୍ତି ରଖେ
ସେହିଟି ପ୍ରଧାନ ଭକ୍ତ ଅଟଇ ପ୍ରତ୍ୟକ୍ଷେ ।
ଅଭୟ ଦିଅଇ ଯେବା ଭୟାତୁର ଜନେ
ଉଦବେଗ ଯେହୁ ନ ଦିଅଇ କଦାଚନେ ।
କାହାରଠାରୁ ଯେ କେବେ ଉଦ୍‌ବେଗ ନପାଏ
ପ୍ରଧାନ ବୈଷ୍ଣବ ସେହୁ ଜାଣ ସୁନିଶ୍ଚୟେ ।

ବିଦ୍ୟା ଦାନ କରେ ମୂର୍ଖ ଜନଙ୍କୁ ଯେ ନିତ
ଅନ୍ନବସ୍ତ୍ର ଦାନେ ସଦା କରଇ ଯେ ତୃପ୍ତି ।
ତୃଷାର୍ତ୍ତପ୍ରାଣୀକି ଯେହୁ ଦିଏ ଜଳଦାନ
ବୈଷ୍ଣବ ପଦକୁ ଏକା ଅଟଇ ଭାଜନ ।
ଅନାଥ ରୋଗୀଙ୍କି ଯେହୁ ଦିଅଇ ଔଷଧ
ମଧୁର ବଚନ କହି କରେ ମନ ବୋଧ ।
କୁତ୍ସିତ କୃପଣ ବୁଦ୍ଧି ଯାହାଠାରେ ନାହିଁ
ପ୍ରକୃତ ବୈଷ୍ଣବ ଅଟେ ସଂସାରରେ ସେହି ।
ପ୍ରାଣୀମାନଙ୍କର ହିତେ ବିଚାରି ଯେ ଜନ
ଖୋଳାଏ ଏ ବାପୀ ତଡ଼ାଗ କୂପ ଖର୍ଚ୍ଚି ଧନ
ଗୋରୁଙ୍କ ମୁଖରେ ନିତି ଦିଏ ତୃଣ ଜଳ
ସେହିଟି ବୈଷ୍ଣବ ଅଟେ ହେ ମୁନି ସକଳ ।
ଆମ୍ବ ଅଶ୍ୱତ୍ଥ ବୃକ୍ଷ ଯେ କରଇ ରୋପଣ
ଜଳାଶୟ ତୀରେ ରୋପେ ପୁଷ୍ପ ଉପବନ ।
ଯେ ପ୍ରାଣୀ ଗୁରୁ ଜନଙ୍କୁ ନିରତେ ସେବନ୍ତି
ବ୍ରାହ୍ମଣ ଅତିଥିଙ୍କର ସେବା ଆଚରନ୍ତି ।
ସେହିମାନଙ୍କୁ ବୈଷ୍ଣବ କହନ୍ତି ସଂସାରେ
ମହାପୁଣ୍ୟ ଅରଜନ୍ତି ଜଗତ ମଧ୍ୟରେ ।
କନ୍ୟାଦାନ କରେ ଯେହୁ ଉତ୍ତମ ପାତ୍ରକୁ
ପ୍ରକୃତ ସାଧୁରେ ଜନେ ଗଣନ୍ତି ତାହାଙ୍କୁ ।
ପରାପର ନ ବିଚାରେ ଯେହୁ ମାନସରେ
ଆତ୍ମାକୁ ଚିହ୍ନଇ ଯେବା ସକଳ ଘଟରେ ।
ସ୍ଥାବର ଜଙ୍ଗମେ ଦେଖେ ସର୍ବ ବିଷ୍ଣୁମୟ
ସେହିଟି ବୈଷ୍ଣବ ବୋଲି ଶାସ୍ତ୍ରରେ ନିର୍ଣ୍ଣୟ ।
ପରନିନ୍ଦା ଅପବାଦ ମୁଖେ ଯେ ନ ଆଣେ
ପର ଉପକାରେ ରହିଥାଏ ଅନୁକ୍ଷଣେ ।
ପରଦୁଃଖେ ଦୁଃଖୀ ଯେହୁ ପରସୁଖେ ସୁଖୀ
ସେହିଟି ବୈଷ୍ଣବ ବୋଲି ଶାସ୍ତ୍ରେ ଛନ୍ତି ଲେଖି
ଦେବସ୍ୱ ବ୍ରହ୍ମସ୍ୱ ଯେହୁ ନ କରେ ହରଣ
ପରଦ୍ରବ୍ୟକୁ ମଣଇ ଢେଲାରି ସମାନ ।
ପର ଧନ ଦେଖି ଯେବା ଲୋଭ ନ କରଇ
ପରସ୍ତ୍ରୀକି ଜନନୀ ପରାୟେ ମଣଇ ।
ପରକୁ ନ ହିଂସେ କେବେ ବାଞ୍ଛେ ପରହିତ
ସେହିଟି ବୈଷ୍ଣବ ବୋଲି ଶାସ୍ତ୍ରରେ କଥିତ ।
ପାଷାଣ୍ଡ ସଙ୍ଗରେ ଯେହୁ ନକରେ ଆଳାପ
ଗ୍ରାମ୍ୟ ଗୀତେ ନ ରସଇ ମଣି ମହାପାପ ।
ଅମୃତ ପରି ଭାଷଇ ବିନୟ ବଚନ
ସେ ପ୍ରାଣୀ ସଂସାର ମଧ୍ୟେ ବୈଷ୍ଣବ ପ୍ରଧାନ ।
ଭକ୍ତିରେ ସର୍ବଦା ଯେହୁ ପୂଜେ ଇଷ୍ଟଦେବେ
ହରିହର ଏକଆତ୍ମା ବୋଲି ମନେ ଭାବେ ।
ସାଧୁଶାସ୍ତ୍ର ଉପଦେଶ କରଇ ପାଳନ
ଅନ୍ୟ ଶାସ୍ତ୍ରର ନ ବାଛେ ଗୁଣ ଦୋଷମାନ ।
ନିଜ ଧର୍ମ ନ ଛାଡ଼ଇ ନିଧନ ପର୍ଯ୍ୟନ୍ତ
ସେହିଟି ବୈଷ୍ଣବ ଜନ ମହାପୁଣ୍ୟବନ୍ତ ।
ଭୋଜନ ଆଚ୍ଛାଦନରେ ଯାର ଚିନ୍ତା ନାହିଁ
ସେ ଭାର ବିଶ୍ୱମ୍ଭରଙ୍କଠାରେ ଅପଥାଇ
କେବେହେଁ ନୁହଇ କ୍ଷଣେ ବିଷୟଲାଳସୀ
ନିରତେ କୃଷ୍ଣ କଥାରେ ହେଉଥାଇ ତୋଷି
କୃଷ୍ଣ ଭକ୍ତଙ୍କର ସଙ୍ଗେ ବଞ୍ଚୁଥାଏ ଦିନ
ସେହି ଏକା ବଇଷ୍ଣବ ପଣକୁ ଭାଜନ ।
ଶ୍ରୀକୃଷ୍ଣ ନିର୍ମାଲ୍ୟ ଯେହୁ ନିତ୍ୟ ତୁଣ୍ଡେ ଭରେ
କୃଷ୍ଣ ଅଙ୍ଗଲାଗି ମାଳା ବହଇ ଶିରରେ ।
କୃଷ୍ଣଙ୍କ ଚରିତ ସଦା କରଇ କୀର୍ତ୍ତନ
କୃଷ୍ଣଙ୍କର ନାମ ମାନ ତୁଣ୍ଡେ କରେ ଗାନ ।
ତାହାକୁ ବୈଷ୍ଣବ ବୋଲି ସୁଜନେ କହନ୍ତି
ଧରାକୁ ପବିତ୍ର କରେ ଜାଣ ସେହି ବ୍ୟକ୍ତି ।
ବୈଷ୍ଣବଙ୍କର ଜାତି କୁଳ ସଙ୍ଖ୍ୟା ଗୋତ୍ର ନାହିଁ
ଅଚ୍ୟୁତ କେବଳ ଗୋତ୍ର ଅନନ୍ତ ଶାଖାହିଁ ।
କଳିଯୁଗ ନ ବାଧଇ ବୈଷ୍ଣବ ଜନକୁ
କୃଷ୍ଣ କୃପାରେ ସେ ସାଧିପାରେ ଅସାଧ୍ୟକୁ ।
ଯହିଁ ତହିଁ ଗଲେ ମନେ ନ ଥାଏ ଭାବନା
କୃଷ୍ଣ ଚିନ୍ତାବିନୁ କିଛି ନ କରେ କାମନା ।
ବୈଷ୍ଣବଙ୍କୁ କେବେ କିଛି ଅପ୍ରାପତ ନାହିଁ
ଯାହା ବାଞ୍ଛା କରେ ତାହା ଅଚିରେ ମିଳଇ
ବୈଷ୍ଣବଠାରେ ଛଅଟି ଗୁଣ ଯେ ପ୍ରଧାନ
ମନଦେଇ ଶୁଣ ତାହା କରୁଛି ବଖାଣ ।
ଗୀତ ନାଟ୍ୟ ତଥା ଗାନ ଗାତ୍ର ବିକମ୍ପନ
ମହାଅଭୟ ସର୍ବଦା ଉଲ୍ଲସିତ ମନ ।
ପ୍ରେମ ପୂର୍ଣ୍ଣ ରସାବ୍ଧିରେ ମଗ୍ନ ଅନୁକ୍ଷଣେ
ବୈଷ୍ଣବେ ଯେ ଶୋଭା ପାନ୍ତି ଏହି ଷଡ଼ଗୁଣେ
ଲୋଡ଼ନ୍ତି ନାହିଁ ବୈଷ୍ଣବେ ବିଷୟ ବୈଭବ
ବୈରାଗ୍ୟ ସମ୍ପଦେ ମହାଧନୀ ସାଧୁସର୍ବ ।

ସ୍ମରଣ କୀର୍ତ୍ତନ ଆଦି ହରିନାମ ଯୁକ୍ତ
ଅନବରତରେ ମାୟା ମମତାରୁ ମୁକ୍ତ ।
ବହିରଙ୍ଗ ସଙ୍ଗ ତ୍ୟାଗୀ ଶଠତା ବିହୀନ
ପ୍ରବଞ୍ଚନା କୃପଣତା ମିଥ୍ୟାବାକ୍ୟ ଶୂନ୍ୟ ।
ବିଷ୍ଣୁ ମନ୍ତ୍ରରେ ଦୀକ୍ଷିତ ବିଷ୍ଣୁ ପରାୟଣ
ଏଣୁଟି ଦ୍ୱି ଜ୍ଞାସୁ ବିଷ୍ଣୁ ବୈଷ୍ଣବ ସୁଜନ ।
ଅବଧୂତ ବୈଷ୍ଣବଙ୍କ ଲକ୍ଷଣ ଯେମନ୍ତ
ଶ୍ରବଣ କରମି ତାହା ଆହେ ତପୋବନ୍ତ ।
ବାସରେ ଆଶା ନ ଥାଏ ତିଳେ କଦାଚନ
ବାହ୍ୟ ଅନ୍ତର ନମ୍ର କ ଅଭିମାନ ଶୂନ୍ୟ ।
ସର୍ବଭୂତେ ମହାନନ୍ଦ ଦାନେ ସଦା ରତ
ସେହିଟି ସଂସାରେ ବଇଷ୍ଣବ ଅବଧୂତ ।
ବାସନା ଶ୍ରୀ ବାସୁଦେବ ଚରଣ କମଳେ
ସକଳ ପ୍ରାଣୀଙ୍କୁ ସମ ଦେଖେ ସବୁବେଳେ ।
ଆପଣା ବାନ୍ଧବ ବୋଲି ସଭିଙ୍କୁ ମଣଇ
ବସୁଧାଟି ଯାକ ନିଜ କୁଟୁମ୍ବେ ଗଣଇ ।
ଧୂଳି ଧୂସରିତ ଗାତ୍ର ତହିଁ ନାହିଁ ସ୍ନେହ
ନ ଜାଣେ ଅଛୁ କି ନାହିଁ ସ୍ଥୂଳ ମାଟିଦେହ ।
ହୁଏ ଗତାଗତ ଧର୍ମା ଧର୍ମକୁ ବିଚାରି
ଦୁର୍ବଳ ନ କରେ ନିଜ ମନକୁ ତାହାରି ।
ଜିତେନ୍ଦ୍ରିୟ ସତ୍ୟବାଦୀ ସ୍ୱଭାବ ତାହାର
ଆତ୍ମତତ୍ତ୍ୱ ଜ୍ଞାନେ ସେହୁ ଅଟେ ଧୂରନ୍ଧର ।
ସମ୍ପଦେ କିବା ବିପଦେ ସଦା ହର୍ଷମନ୍ତ
ସେହିଟି ବୈଷ୍ଣବ ଜନେ ଅଟଇ ଗଣନ୍ତ ।
ଶୁଣ ଏବେ ଉଦାସୀନ ସାଧୁଙ୍କ ଲକ୍ଷଣ
ମୁଖେ ଉଦଗାରନ୍ତି ହରି ନାମ ଅନୁକ୍ଷଣ ।
ନିର୍ମଳ ବଚନ ମୁଖେ ସଦା ଉଚ୍ଚାରନ୍ତି
ଉଦାର ଭାବ ସକଳ ପ୍ରାଣୀରେ ବହନ୍ତି ।
ଦୟା କ୍ଷମା ସତ ଶାନ୍ତ ଏହି ଗୁରୁଗୁଣେ
ଭୂଷିତ ଅନବରତ ଦମ୍ଭ ଗର୍ବ ଶୂନ୍ୟେ ।
ଶ୍ରୀ କେଶବେ ଦୃଢ଼ଭକ୍ତି ଅଟଳ ବିଶ୍ୱାସ
ଦୀନ ହୀନ ଜୀବେ ଦୟା କରନ୍ତି ପ୍ରକାଶ ।
ଶାନ୍ତ ଶୀଳ ସଦା ହରିନାମ ପରାୟଣ
ସମ୍ପଦେ କେବଳ ମାତ୍ର କରଇ ସ୍ମରଣ ।
ହିଂସା କ୍ରୋଧ ତାହାଠାରେ ତିଳେହେଁ ନଥାଏ
ନାଗମାନେ ଅବିରତ ରତ ରହି ଥାଏ ।

କୋମଳ ବଚନ ଭାଷି ମୋହେ ପ୍ରାଣୀମନ
ଉଦାସୀନ ବୈରାଗୀଙ୍କ ଏମନ୍ତ ଲକ୍ଷଣ ।
ବିରକ୍ତ ସାଧୁମାନଙ୍କ ଲକ୍ଷଣ ଯେମନ୍ତ
ତାହା କହୁଅଛୁ ଏବେ ଶୁଣ ତପୋବନ୍ତ ।
ଶ୍ରୀ ବୃନ୍ଦାବନରେ ବାସ ବୃତ୍ତି ମଧୁକରୀ
ଭଜନ କେବଳ ନନ୍ଦ ନନ୍ଦନ ଶ୍ରୀହରି ।
ନିଷ୍କାମ ବାସନାତ୍ୟାଗି ରାଗ ନିଷ୍ଠାବନ୍ତ
କୃଷ୍ଣ କେଳି ବିଳାସରେ କାନ୍ତାଭାବେ ରତ ।
ରାଗ ଦ୍ୱେଷ ତାଙ୍କଠାରେ ନ ଥାଏ ଯେ ରହି
ଅନ୍ୟକର୍ମ ତ୍ୟକ୍ତକାରୀ ଅଟନ୍ତି ଯେ ସେହି ।
ତତ୍ତ୍ୱଜ୍ଞାନ ଅନୁରାଗୀ ଗୋପୀ ଅନୁଗତ
ବିରକ୍ତ ସାଧୁଜନଙ୍କ ଲକ୍ଷଣ ଏମନ୍ତ ।
ପୁଣି ଭାବୁକ ଭକ୍ତଙ୍କ ଲକ୍ଷଣ ଯେସନ
କହୁ ଅଛୁ ଏକମନେ ଶୁଣ ତପୋଧନ ।
ଅଶ୍ରୁକମ୍ପ ପୁଲକରେ ଭୂଷିତ ଶରୀର
ଅନ୍ତର ଗତରେ ନ ଥାଏ ଯେ ଅହଙ୍କାର ।
ହସେ କାନ୍ଦେ ଉନମଦେ କରଇ କୀର୍ତ୍ତନ
ସୁମଧୁରେ ଗୀତ ଗାଏ ଭାବରେ ମଗନ ।
ଦେବ ଦର୍ଶନେ ମୂର୍ଚ୍ଛିତ ହୋଇ ପଡ଼େ ତଳେ
ଝର ଝର ହୋଇ ତାର ଅଙ୍ଗୁ ସ୍ୱେଦଗଳେ ।
ଏମନ୍ତ ଲକ୍ଷଣ ଅଟେ ଭାବୁକ ଭକ୍ତର
ଶରଣାଗତ ଲକ୍ଷଣ ଶୁଣ ହୋଇସ୍ଥିର ।
କୃଷ୍ଣ ପାଦ ପଦ୍ମେ ଯେହୁ ଶରଣ ପଶଇ
ଅବିରତ କୃଷ୍ଣଙ୍କର ନାମ ଗାଉଥାଇ ।
ମାଧବ ମଧୁସୂଦନ କେଶବ କଂସାରି
ଏ ନାମ ମାନ ଉଚ୍ଚାରେ ନେତ୍ରୁ ଢାଳି ବାରି ।
ଆନ କେଉଁ ଦେବତାଙ୍କୁ ନେତ୍ରେ ନ ଦେଖଇ
ହରିଙ୍କ ବିନୁ ଆନ କଥା ସେହୁ ନ ଜାଣଇ ।
ପତିବ୍ରତା ନାରୀ ଯେହ୍ନେ ନିଜ ପତି ବିନା
ଆନ ପୁରୁଷକୁ ମନେ ନ କରେ କାମନା ।
ତେମନ୍ତ ଶ୍ରୀକୃଷ୍ଣେ ଯେହୁ ଶରଣ ପଶଇ
ଆନ ଦେବତାରେ ତାଙ୍କ ଚିତ୍ତ ନ ରସଇ ।
ପ୍ରାଣ ପତି ବୋଲି ଏକା ଜାଣଇ କୃଷ୍ଣଙ୍କୁ
ମଉଆଳୀ ହୁଏ ଭଜି ତାହାଙ୍କ ନାମକୁ ।
ଜୀବନ ସଙ୍ଖାଳି କରିଥାଏ ତାଙ୍କନାମ
କୃଷ୍ଣ କୃଷ୍ଣ ବୋଲି ଭଜୁଥାଏ ଅବିରାମ ।

ଶରଣାଗତ ଭକ୍ତର ଏମନ୍ତ ଲକ୍ଷଣ
ଅଧିକାରୀ ମହନ୍ତର ଲକ୍ଷଣ ଯା ଶୁଣ ।
ସଦ୍ୟାଚାରେ ପ୍ରବୀଣ ଯେହୁ ସତକୁଳେ ଜାତ
ଅନ୍ତର ବାହାର ଯାର ଅଟଇ ଶୁଚିବନ୍ତ ।
ସୁଶୀଳ ସୁଶାନ୍ତ ଧୀର ଗମ୍ଭୀର ସ୍ୱଭାବ
ଶାନ୍ତ ଦାନ୍ତ ସଦାଗୁଣୀ ସୂକ୍ଷ୍ମ ବୁଦ୍ଧି ଭାବ ।
କେଶବ ପଦରେ ଦୃଢ଼ ଭକ୍ତି ନିରନ୍ତର
ସକଳ ଜୀବଙ୍କୁ ଦେଖେ ସମାନ ଦୃଷ୍ଟିର ।
ବହୁ ପ୍ରଜ୍ଞ ଦୟାବନ୍ତ ଅନୁରାଗ ଯୁତ
ଇଷ୍ଟ ନିଷ୍ଠ ସୁସାଧକ କ୍ଷମା ଗୁଣବନ୍ତ ।
କ୍ରୋଧ ଶୂନ୍ୟମତି ମହାଭାଗ ଅତିପ୍ରିୟ
ଅଦାମ୍ଭିକ ସଦା ଯେ ଐଶ୍ୱର୍ଯ୍ୟ ସଦାଶୟ ।
ଦୃଷ୍ଟେ ଦଣ୍ଡକାରୀ ସର୍ବ ପ୍ରାଣୀ ହିତେ ରତ
ନିତ୍ୟ ପର ଉପକାରେ ଥାଆନ୍ତି ସେ ରତ ।
ନାମରେ ସର୍ବଦା ଶ୍ରଦ୍ଧା ଥାଏ ତାହାଙ୍କର
ଏ ପଞ୍ଚବିଂଶ ଲକ୍ଷଣ ଅଟଇ ଯାହାର ।
ସେହିଜନ ଅଧିକାରୀ ମହନ୍ତଟି ଜାଣ
ସତ୍ୟ ସତ୍ୟ ଅଟେ ଏହା ଶାସ୍ତ୍ରର ପ୍ରମାଣ ।
ଆବର ହରି ଭକ୍ତଙ୍କ ଲକ୍ଷଣ ଯା ଅଛି
ତୁମ୍ଭ ଆଗରେ ହେ ମୁନି ତା ସବୁ କହୁଛି ।
ଯୋଗାରୁଢ ଶଙ୍କର ବୈଷ୍ଣବ ଚୂଡ଼ାମଣି
ପାର୍ବତୀଙ୍କ ଆଗେ ପୂର୍ବେ ଯାହା ଥିଲେ ଭଣି
ପରମବ୍ରହ୍ମ ଶ୍ରୀହରି ଅର୍ଜ୍ଜୁନଙ୍କ ଆଗେ
ଯାହା କହିଥିଲେ ପୂର୍ବେ ଅତି ଅନୁରାଗେ ।
ତାହା ମୁଁ ତୁମ୍ଭ ସମୀପେ କରୁଛି ବଖାଣ
ଆହେ ମୁନିମାନେ ସର୍ବେ ଏକମନେ ଶୁଣ ।
କୃଷ୍ଣ ଉପାସନା ସଦା କରେ ଯେଉଁ ଜନ
ଭକ୍ତ ସିନ୍ଧୁମାରେ ସଦା ଥାଏ ନିଗମନ ।
ଏକାନ୍ତ ମାନସେ ପୂଜା କରେ ବାସୁଦେବେ
ନିୟମଭଙ୍ଗ ନକରେ ଯେବେ କାଳ କେବେ ।
ଶ୍ରଦ୍ଧାଚିତ୍ତେ କରୁଥାଇ ଭଜନ ପୂଜନ
ଭକ୍ତଙ୍କ ପ୍ରଧାନ ଅଟେ ସେହି ସୁଧୀଜନ ।
ସର୍ବ ଜୀବେ ସମଭାବେ ଯେହୁ ଦେଖିପାରେ
ସବୁରି ମଙ୍ଗଳ ହେତୁ ଖଟେ ଯେ ସେବାରେ
କେଉଁଜନ ଜିତେନ୍ଦ୍ରିୟ ହୋଇ ଅବିରତ
କୂଟସ୍ଥ ପରବ୍ରହ୍ମଙ୍କୁ ଭାବଣ ଉସତ ।

ମାନସିକେ ଅବା ବାହ୍ୟେ କରଇ ଅର୍ଚ୍ଚନ
ଦେହାନ୍ତେ ଲଭଇ ସେହୁ ବ୍ରହ୍ମପଦେ ସ୍ଥାନ ।
ଯେଉଁଜନ କୃଷ୍ଣେ କରେ କର୍ମ ସମର୍ପଣ
ସର୍ବଦା ଆନନ୍ଦ ମତ୍ତ ଭକ୍ତ ସର୍ବାଗ୍ରଣ ।
ଶୁଦ୍ଧ ମନେ କରେ କୃଷ୍ଣ ପୂଜା ସେବାବିଧି
ମାନଇ ହରି ବାସର ଜନ୍ମ ତିଥି ଆଦି ।
କୃଷ୍ଣ ଲୀଳା କୃଷ୍ଣ ଗୁଣ ପ୍ରେମ ଭୋଳେ ଗାଏ
ହେଲେ ସେହୁ ଭବ ସିନ୍ଧୁ ପାର ହୋଇଯାଏ
ତାହାଙ୍କୁ କରନ୍ତି କୃଷ୍ଣ ଅଚିରେ ଉଦ୍ଧାର
ମୃତ୍ୟୁର ଯାତନା ସେହୁ କରେ ପରିହାର ।
କୃଷ୍ଣ ଚିନ୍ତାରେ ମନକୁ ଯେହୁ ସ୍ଥିର କରେ
ପ୍ରାଣ ମନ ଅର୍ପେ ଯେହୁ ତାହାଙ୍କ ପଦରେ ।
ସକଳ କାମନା ତ୍ୟାଗକରି ଭଜେ ହରି
ଭକ୍ତି ସହିତରେ ଧ୍ୟାନକରେ ମୋଦଭରି ।
କୃଷ୍ଣ ପ୍ରୀତି ହେତୁ ମନେ ବ୍ରତ ପୂଜା ଯେବେ
ମୋକ୍ଷ ପଦ ନ ଇଚ୍ଛଇ ସେହୁ କଦାଚନେ ।
ନିରବଧି ଥାଏ କୃଷ୍ଣ ଚରଣ ଆଶ୍ରୟେ
ସିଦ୍ଧି ଋଦ୍ଧି ନିଧି ନ ଲୋଡ଼ଇ ସେ କେବେହେଁ
ଭଲ ମନ୍ଦ କର୍ମ ଫଳ କୃଷ୍ଣେ କରେ ଦାନ
ଅଚିରେ ଲଭଇ ସେହୁ ପରମ କଲ୍ୟାଣ ।
ପ୍ରାଣୀଙ୍କ ଠାରେ ଯାହାର ଦ୍ୱେଷ ଭାବ ନାହିଁ
ଅହଙ୍କା ମମତା ଶୂନ୍ୟ ନିରନ୍ତରେ ସେହି ।
ଜିତେନ୍ଦ୍ରିୟ କୃପାଳୁ ଯେ ଭକ୍ତ ସର୍ବାଗ୍ରଣ
ସୁଖେ ଦୁଃଖେ ସମ ଭାବ ସଦା ହର୍ଷ ମନ ।
ଜୀବଗଣେ କେବେ ହେଲେ ନ ଦିଅଇ କ୍ଲେଶ
ନିର୍ଦ୍ଦୋଷୀ ନିର୍ମ୍ମୋହୀ ନିତ୍ୟେ ଧରେ ସାଧୁବେଶ
କୌଣସି ପ୍ରାଣୀଙ୍କଠାରୁ ଉଦ୍‌ବେଗ ନ ପାଏ
ମାନ ଅପମାନକୁ ସମାନ ମଣି ଥାଏ ।
ଶୀତ ଗ୍ରୀଷ୍ମ ବର୍ଷା କାଳେ ସହେ ସବୁ କଷ୍ଟ
ପାଞ୍ଚେ ନାହିଁ ମନେ କେବେ କାହାରି ଅନିଷ୍ଟ
ଅନୁଚିତ ହର୍ଷ ଭୟ ବିପଦ ନ ଗଣେ
ସକଳ ପ୍ରାଣୀଙ୍କି ସଦା ଆତ୍ମତୁଲ୍ୟ ମଣେ ।
ସ୍ପୃହାଶୂନ୍ୟ ପକ୍ଷପାତ ବର୍ଜ୍ଜିତ ଆବର
ଶୁଚି ଦକ୍ଷ ପୀଡ଼ାହୀନ ନୁହେଁ କାମ୍ୟକର ।
କର୍ମ୍ମ କରି କର୍ମ୍ମ ଫଳ ପରିତ୍ୟାଗ କରେ
ସେ ଜନ କୃଷ୍ଣଙ୍କ ପ୍ରିୟ ଅବନୀ ମଧ୍ୟରେ ।

ଶୋକେ ହର୍ଷ ଦ୍ୱେଷେ ଦୁଃଖେ ଯାର ଏକଭାବ
ତାପସ୍ୱଣ୍ୟ ଦରିତ୍ୟାଗ ଯାହାର ସ୍ୱଭାବ ।
ବିଷୟେ ଆକାଂକ୍ଷା ନାହିଁ ଅନୁକ୍ଷଣେ ସ୍ଥିର
ଶତ୍ରୁ ମିତ୍ର ଏହିପରି ନକଟେ ଯାହାର ।
ନିନ୍ଦା କମ୍ବା ସ୍ତୁତି ଅବା ମାନେ ଅପମାନେ
ଛିଲାର୍ଦ୍ଧ ମାତ୍ରେ ବିକାର ନ ଥାଏ ଯା ମନେ
ସଦା ଏକ ଭାବ ନୁହେ ହରଷ ବିଷାଦ
ସାମାନ୍ୟେ ସନ୍ତୁଷ୍ଟ ହୁଏ ଭାବେ ଉନମାଦ ।
ସଦା ମୌନ ଅବଲମ୍ବୀ ଉଦାସୀନ ଭାବ
ଭକ୍ତିଭରେ ଚନ୍ତେ ସଦା ମୁକୁନ୍ଦ ମାଧବ ।
ସେ ଜନ ଭବେ ଅଟଇ କୃଷ୍ଣ ପ୍ରିୟ ପାତ୍ର
ଏଥିରେ ସଂଶୟ ଜାଣ ନାହିଁ ତିଳେ ମାତ୍ର ।
ଆପଣା ବଡ଼ାଇ ଯେଉଁ ଜନ ନ ଦେଖାଏ
ତୃଣ ପେକ୍ଷା ନୀଚ ସେହୁ ସଦା ମଣୁଥାଏ ।
ତରୁପ୍ରାୟ ସହେ ସବୁ କର୍ମ ଦୋଷ ମାନ
ବ୍ରତରେ ଦିଅଇ ମାନ ହୋଇ ଆତ୍ମାଜ୍ଞାନ ।
ସର୍ବଦା ଶ୍ରୀହରି ନାମ କୀର୍ତ୍ତନେ ଆନନ୍ଦ
ନ କରଇ କାହା ସଙ୍ଗେ ତିଳେମାତ୍ର ଦ୍ୱନ୍ଦ୍ୱ ।
ଅଳପେ ବହୁତେ ସେହୁ ସନ୍ତୋଷ ହୁଅଇ
ଅଭିମାନ ଶୂନ୍ୟ ହୋଇ କାଳକୁ ବଞ୍ଚଇ ।
ଏମନ୍ତ ଯେ ହରିଭକ୍ତ ସୁଲକ୍ଷଣବନ୍ତ
କି କହିବି ମୁହିଁ ତାର ମହିମା ଅନନ୍ତ ।
ଗଙ୍ଗା ସ୍ନାନକରି ଯେହୁ ହରିଙ୍କି ଭଜଇ
ବିଷ୍ଣୁ ଭକ୍ତ ସଙ୍ଗ ବିନୁ ଆନ ନ ଇଚ୍ଛଇ ।
ତାହାଙ୍କୁ ଦେଖିବା ମାତ୍ରେ ହୁଅଇ ଆନନ୍ଦ
ବିଷ୍ଣୁ ପରି ମଣେ ଯଦି ଦେଖେ ଭକ୍ତ ବୃନ୍ଦ ।
ବୈଷ୍ଣବ ଦର୍ଶନେ କୁହେ ନିସ୍ତରିଲ ମୁହିଁ
ଆପଣାଙ୍କୁ ଧନ୍ୟ ମଣେ ଦେଖିଲେ ତାକୁହିଁ ।
ତାହାଙ୍କ ଉଚ୍ଛିଷ୍ଟ ଶେଷେ କରଇ ଆହାର
ନିଷ୍ପାପ ହୋଇଲି ବୋଲି ବିଶ୍ୱରେ ମନର ।
ଭକ୍ତଙ୍କର ପାଦଧୌତ ଜଳ କରେ ପାନ
ସେ ଜଳ ମଥାରେ ସିଞ୍ଚି ବୋଲଏ ମୁଁ ଧନ୍ୟ
ତାହାଙ୍କ ସଙ୍ଗରେ ଦିନ ବଞ୍ଚେ ଅହର୍ନିଶି
ସେବଇ ତାଙ୍କ ଚରଣେ ହୋଇଣ ବିଶ୍ୱାସୀ ।
ଏମନ୍ତ ଯେବଣ ଜନ ସଂସାର ମଧ୍ୟରେ
ବିଷ୍ଣୁ ଭକ୍ତଙ୍କ ପ୍ରସଙ୍ଗେ ମହାଶକ୍ତ ଧରେ ।

ଅବଶେଷେ ମହାଭକ୍ତ ବୋଲଏ ସେ ଜନ
ପ୍ରକୃତ ବୈଷ୍ଣବ ତାଙ୍କୁ ବୋଲନ୍ତି ସୁଜନ ।
ତାହାର ଅଙ୍ଗ ପବନ ଜୀବନ କୃତାର୍ଥ
ଶମନ ନ ଦଣ୍ଡେ ତାଙ୍କୁ ଜାଣ ତିଳେମାତ୍ର ।
ତୁଳସୀ ବନରେ ଯେହୁ ଭ୍ରମଣ କରଇ
କୃଷ୍ଣ ପ୍ରିୟା ତୁଳସୀକୁ ସଦା ଆରାଧଇ ।
ମାନବ ଜନମେ ଅଟେ ବୈଷ୍ଣବ ସେ ଜାଣ
ଆବର ନାନାଦି ତୀର୍ଥେ କରେ ଯାଇ ସ୍ନାନ
ଶ୍ରୀହରି ଅର୍ଚ୍ଚନା କରେ ହରିଧାମେ ଯାଇ
ତୀର୍ଥବାସୀ ପଦରଜ ମଥାରେ ଘେନଇ ।
ହରିଦ୍ୱାର ଆଦି କ୍ଷେତ୍ରେ କରଇ ଗମନ
ଶ୍ରୀବ୍ରଜ ମଥୁରା ଦ୍ୱାରକାରେ ହରେ ଦିନ ।
ହୃଦେ ତାର ହରି ଭକ୍ତି ଉଦୟ ହୁଅଇ
ପ୍ରକୃତ ବୈଷ୍ଣବ ଜନେ ଗଣାଯାଏ ସେହି ।
ସଂସାର ମଧ୍ୟରେ ହୁଏ ବିଷ୍ଣୁ ପରାୟଣ
ରିପୁମାନେ ନ ଆସନ୍ତି ତା ପାଶକୁ ଜାଣ ।
ବାଧା ବିଘ୍ନ ଦେବାପାଇଁ ସୁଖରେ ତାହାର
ଗ୍ରହଗଣେ କ୍ଷମ ନ ହୁଅନ୍ତି ଯେ ବିଶ୍ୱର
ଦାନବେ ତାହାକୁ ନ ପାରନ୍ତି ଯେ ଆକ୍ରୋଶି
କି ଭୟ ତାହାର ଆଉ କୁହ ଆହେ ଋଷି ।
ଶ୍ରୀହରିଙ୍କ ପାଦେ ଯାର ଦୃଢ଼ ଭକ୍ତି ରହେ
ସମସ୍ତ ମଙ୍ଗଳ ତାର ଘଟଇ ନିଶ୍ଚୟେ ।
ଧନ୍ୟ ଧନ୍ୟ ଅଟେ ସେହି ସଂସାର ମଧ୍ୟରେ
ସାର୍ଥକ ଜନମ ତାର ପାପ ହଟେ ଦୂରେ ।
ଗମଇ ଯେବଣ ପାଦ ଶ୍ରୀବିଷ୍ଣୁ ମନ୍ଦିର
ସେ ପାଦ ସାର୍ଥକ ଅଟେ ଆହେ ମୁନିବର ।
ଯେଉଁକର ପୂଜାକରେ କୃଷ୍ଣ ପାଦ ବେନି
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ ଦେନି ।
ସେହି ହସ୍ତ ଜାଣ ତାର ଅଟଇ ପବିତ୍ର
ଯାହା ଶିରେ ଲାଗେ ସେହୁ ହୁଏ ପାପ ମୁକ୍ତ ।
ଶ୍ରୀହରି ପଦ ଯେ ନେତ୍ର କରଇ ଦର୍ଶନ
ସଫଳ ଅଟଇ ଜାଣ ଧନ୍ୟ ସେ ନୟନ ।
ଶ୍ରୀହରି କୀର୍ତ୍ତନ ଯେଉଁ ଜିହ୍ୱା ନିତ୍ୟ କରେ
ସେ ଜିହ୍ୱା ସଫଳ ଅଟେ ଜାଣ ମୁନିବରେ ।
ବ୍ରହ୍ମରେ ନିବିଷ୍ଟ ରହିଥାଏ ଯେଉଁ ମନ
ସୁମନ ବୋଲି ତାହାକୁ ବଦନ୍ତି ସୁଜନ ।

କୃଷ୍ଣଲୀଳା ଗାଉଥାଏ ସର୍ବଦା ଯେ ବାଣୀ
ସର୍ବଶ୍ରେଷ୍ଠ ବାଣୀ ମଧ୍ୟେ ହୁଏ ସେ ବଖାଣି ।
ଶ୍ରୀହରି କଥାରେ ରତଥାଏ ଯେଉଁ କର୍ଣ୍ଣ
ଅଟେ ଉପଯୁକ୍ତ ସେହୁ ଶାସ୍ତ୍ରର ବିଧାନ ।
ଯେବଣ ମସ୍ତକ ଲାଗେ ଶ୍ରୀହରି ଚରଣେ
ଧନ୍ୟ ସେ ମସ୍ତକ ଏହା ସର୍ବଶାସ୍ତ୍ର ଭଣେ ।
ଶୁଣ ସର୍ବ ଋଷିମାନେ ମୋହର ବଚନ
ବିଷ୍ଣୁ ଭକ୍ତର ମହିମା କେ କରେ ବର୍ଣ୍ଣନ ।
ଚଣ୍ଡାଳ ଯଦ୍ୟପି ବିଷ୍ଣୁ ଭକ୍ତ ହୋଇଥାଏ
ତଥାପି ବ୍ରାହ୍ମଣପେକ୍ଷା ପୂଜ୍ୟ ସେ ବୋଲାଏ ।
ବ୍ରାହ୍ମଣ ଏହି ସଂସାରେ ହେଲେ ଭକ୍ତିହୀନ
ଚଣ୍ଡାଳ ଅପେକ୍ଷା ସେହୁ ନୀଚ ଅଟେ ଗଣ୍ୟ ।
ସକଳ ଠାବରେ ହୁଏ ସେ ଘୃଣାର ପାତ୍ର
ତାର ଦେହ ମନ କେବେଁ ନୁହଇ ପବିତ୍ର ।
ନିନ୍ଦନୀୟ ହୁଏ ସେହୁ ଜଗତ ମଧ୍ୟରେ
ଏଥିରେ ସଂଶୟ ନାହିଁ ବିଚାର ହୃଦରେ ।
ରାଗ ଦ୍ୱେଷ ହୀନ ହେଲେ ଚଣ୍ଡାଳ ଆବର
ବିପ୍ରଠାରୁ ଶ୍ରେଷ୍ଠ ସେହୁ ବୋଲାଏ ମହୀର ।
ପୂର୍ବେ କହିଅଛନ୍ତି ଯେ ମୁନି ମାର୍କଣ୍ଡେୟ
ଶ୍ରବଣ କର ସେ କଥା ଶୁନକ ତନୟ ।
* ମରଣ ସମୟେ ଯଦି ସୌଭାଗ୍ୟ ବଶରେ
କେହି ବିଷ୍ଣୁ ଭକ୍ତ ଥାଏ ତାହାର ପାଶରେ ।
ତେବେ ସେ ଆସନ୍ନ ମୃତ୍ୟୁ ମାନବ ଅବଶ୍ୟ
ବ୍ରହ୍ମଘାତି ହେଲେ ସୁଦ୍ଧା ହେବ ଅକଳ୍ମଷ ।
ବିଷ୍ଣୁ ଭକ୍ତର ମହିମା ଗୁଣେ ନିଶ୍ଚେ ସେହି
ପରମ ଗତି ଲଭିବା ସଂଶୟ ଯେ ନାହିଁ ।
ଦୁର୍ଲ୍ଲଭ ମନୁଷ୍ୟ ଜନ୍ମ ଲଭି ଯେଉଁ ଜନ
ସାଦରେ ନ କରେ ସାଧୁ ବୈଷ୍ଣବ ପୂଜନ ।
ତାହାଠାରୁ ବଳି ମୂର୍ଖ କେ ଅଛି ସଂସାରେ
ଅଚେତନ ପ୍ରାଣୀ ସେହି ଶାସ୍ତ୍ରର ବିଚାରେ ।
ବିଷ୍ଣୁ ଭକ୍ତ ଜନ ଯେ ଚଳନ୍ତି ଜଗନ୍ନାଥ
ଯେଉଁ ଜନ ତାଙ୍କୁ ସେବେ ଭକ୍ତିରେ ଅତ୍ୟନ୍ତ
ତାର ମନୋରଥ ପୂର୍ଣ୍ଣ କରନ୍ତି ଶ୍ରୀହରି
ଅନ୍ତଃକାଳେ ଚଳିଯାଏ ଶ୍ରୀବୈକୁଣ୍ଠପୁରୀ ।

ବିଷ୍ଣୁ ଭକ୍ତ ସାକ୍ଷାତେ ଯେ ପରଂବ୍ରହ୍ମ ମୂର୍ତ୍ତି
ଜଗତ ମଙ୍ଗଳ ପାଇଁ ଭବେ ବିହରନ୍ତି ।
ବିମଳବୁଦ୍ଧି ଅଟନ୍ତି ବିଷ୍ଣୁ ଭକ୍ତଗଣ
ଯେବଣ ସ୍ଥାନକୁ ସେହୁ କରନ୍ତି ଗମନ ।
ସର୍ବ ତୀର୍ଥମୟ ସେହି ସ୍ଥାନଟି ବୋଲାଏ
ଦ୍ୱିତୀୟ ବୈକୁଣ୍ଠପୁରୀ ଜାଣ ସୁନିଶ୍ଚୟେ ।
ଶୂଦ୍ର ନିଷାଦ ଚଣ୍ଡାଳ ହେଲେହେଁ ବୈଷ୍ଣବ
ତାହାଙ୍କର ଜାତି କୁଳ କେବେ ନ ଛିଡ଼ିବ ।
ପତିତପାବନ ବାନା ବହିଥାନ୍ତି ଯେଣୁ
ସର୍ବ ଜାତିଶ୍ରେଷ୍ଠ ସେହୁ ବୋଲାନ୍ତିଟି ତେଣୁ ।
ହୀନ ଅତ୍ୟାଚାରୀ ହୋଇଥିବ ଯେଉଁ ନର
ଯେବେ ସେ ରୁହଇ ବିଷ୍ଣୁ ଭକ୍ତ ଆଶ୍ରିତର ।
ତାର ପାପ ତାପ ସବୁ ଧୌତ ହୋଇଯାଏ
ଅନ୍ତଃକାଳେ ବିଷ୍ଣୁଲୋକେ ଆଶ୍ରୟ ସେ ପାଏ
ଏମନ୍ତ ଅଟଇ ହରି ଭକ୍ତଙ୍କ ମହିମା
ସଂକ୍ଷେପି କହିଲି ତୁମ୍ଭ ଆଗେ ମହତମା ।
ଶ୍ରୀ ବିଷ୍ଣୁ ଭକ୍ତେ ଚିହ୍ନିବା ସହଜ ନୁହଇଁ
ତେମନ୍ତ ଶଙ୍କର ଦେବଙ୍କର ଶୁଦ୍ଧା ନାହିଁ ।
ମହାମୁନି ବ୍ୟାସ ଦେବଙ୍କର ଅନୁଗ୍ରହେ
ହେ ତାପସବୃନ୍ଦ ମୁହିଁ ବର୍ଣ୍ଣିଲି ଥୋକାଏ ।
ଏଥି ପୂର୍ବେ ମୋତେ ପ୍ରଶ୍ନ କରିଅଛ ଯାହା
ସେହି ପରଂବ୍ରହ୍ମ ତତ୍ତ୍ୱ ଆହେ ପୁଣ୍ୟ ଦେହା ।
ପ୍ରକାଶ କରିବି ଏବେ ତବ ସନ୍ନିଧାନେ
ସକଳ ମୁନି ଶ୍ରବଣ କର ସାବଧାନେ ।
ଏମନ୍ତେ ସୂତମହର୍ଷି ପୁରାଣ ପାଠକ
ବର୍ଣ୍ଣନ କଲେ ମହିମା ଶ୍ରୀହରି ଭକ୍ତଙ୍କ ।
ଜଗତ ଜନନୀଙ୍କର ଚରଣେ ଶରଣ
କ୍ଷେତ୍ରମୋହନ ଲେଖଇ ଏ ବ୍ରହ୍ମ ପୁରାଣ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ପରଂବ୍ରହ୍ମ ହରିଭକ୍ତ ମହିମାଦି ବର୍ଣ୍ଣନଂ
ନାମ ଊନଚତ୍ୱାରିଂଶୋଽଧ୍ୟାୟଃ ।

—*—

* ସମୀପେ ତିଷ୍ଠତେ ଯସ୍ୟ ହ୍ୟନ୍ତ କାଳେପିବୈଷ୍ଣବଃ
ଗଚ୍ଛତେ ପରମଂ ସ୍ଥାନଂ ଯଦ୍ୟପି ବ୍ରହ୍ମହା ଭବେତ୍ ।

## ଚତ୍ୱାରିଂଶ ଅଧ୍ୟାୟ

### ପରଂବ୍ରହ୍ମଙ୍କର ଅବତାର ପ୍ରସଙ୍ଗେ କଥୋପକଥନ

ଶୌନକ ଉବାଚ

ଏଥୁ ଅନନ୍ତରେ ଯେ ଶୌନକ ମୁନିବର
ଶ୍ରୀ ସୂତ ମୁନିଙ୍କୁ ପୃଚ୍ଛନ୍ତି ଆଦର ।
ଆହେ ପୌରାଣିକ ଶେଷ ମହାପୁଣ୍ୟ ଦେହା
ଏଥିପୂର୍ବେ ଆପଣଙ୍କୁ ପଚାରିଲୁଁ ଯାହା ।
କାଳରୂପେ ଯେଉଁ ହରି କରନ୍ତି ସଂହାର
ଅନ୍ତର୍ଯ୍ୟାମୀ ରୂପେ କରେ ଭକ୍ତଙ୍କୁ ଉଦ୍ଧାର ।
ମାୟାରେ କୃଷ୍ଣ ତାଙ୍କର ନର ଅବତାର
ଏହି ତତ୍ତ୍ୱ କହ ତୁଣ୍ଡେ କରିଣ ବିସ୍ତାର ।
ଶୁଣିଅଛୁ ରୋହିଣୀଙ୍କ ପୁତ୍ର ବଳରାମ
କି ରୂପେ ଦେବକୀ ଗର୍ଭେ ହୋଇଲେ ଉତ୍ପନ୍ନ
ଏକ ଦେହ ଦୁଇ ଗର୍ଭେ କେମନ୍ତେ ପ୍ରବେଶ
କହିବ ଏକଥା ମାନ ବୁଝାଇ ବିଶେଷ ।
ଦେବକୀ ଉଦରେ ହରି କୃଷ୍ଣ ଜନ୍ମ ହେଲେ
ଗୋକୁଳ ନଗରେ ଯାଇ କେମନ୍ତେ ବଢ଼ିଲେ
ପୁଣି କି କି କର୍ମ କଲେ ଗୋକୁଳରେ ରହି
କି କର୍ମ ମାନ କରିଲେ ମଧୁପୁରେ ଯାଇ ।
ସେହି ମଥୁରା କଟକେ ବିହରି ଆପଣେ
ସାକ୍ଷାତେ ମାତୁଳ ବଧ କଲେ କି କାରଣେ ।
ଏହା ଆମ୍ଭଙ୍କୁ ଲାଗଇ ବଡ଼ ଆଚମ୍ବିତ
ଦୟାକରି ପ୍ରକାଶନ୍ତୁ ଆହେ ତପୋବନ୍ତ ।
ପ୍ରକାଶିଲେ ସେହୁ ଲୀଳା କୃଷ୍ଣ ନରରୂପେ
କେଉଁ କର୍ମମାନ କଲେ ଯଦୁକୁଳ ଆପେ ।
କଂସ ବନ୍ଦିଘରେ ପିତା ମାତା ରହିଥିଲେ
କେମନ୍ତେ ତାହାଙ୍କୁ ହରି ଉଦ୍ଧାର କରିଲେ ।
ଗୁରୁ ଗୃହେ ଯାଇ କିସ କରିଲେ କେଶବ
ପୁଣି କେହ୍ନେ ଶଙ୍ଖୋଳିଲେ ଅକ୍ରୂର ଉଦ୍ଧବ ।
ନିଧନ କରିଲେ ଜରାସନ୍ଧଙ୍କୁ କେସନେ
ଯବନଧ୍ୱଂସି ଦ୍ୱାରକା କଲେ କି କାରଣେ ।
ବଳଦେବ ରେବତୀଙ୍କ ବିବାହ ପ୍ରସଙ୍ଗ
ରୁକ୍ମିଣୀ ହରଣ କଲେ କି ରୂପେ କେଶବ ।
ମୁଚୁକୁନ୍ଦଙ୍କୁ କେମନ୍ତେ କରିଲେ ଉଦ୍ଧାର
ଆଉ କିସ କର୍ମମାନ କଲେ ଦ୍ୱାରକାର ।
ସକଳ ବିଷୟ ଠିକେ ଠିକେ ବୁଝାଇଣ
କହନ୍ତୁ ଆମ୍ଭ ଅଗ୍ରତେ ଆହେ ତପୋଧନ ।
ଦ୍ୱାରାବତୀ ପୁରେ ମହା ଐଶ୍ୱର୍ଯ୍ୟ ସ୍ଥାପିଲେ
ଯାଦବ ଗଣଙ୍କୁ କେହ୍ନେ ସେଠାରେ ପାଳିଲେ
କେତେ କେତେ ରାଜକନ୍ୟା ବିଭାହେଲେ ହରି
ଆଉ କେଉଁ କର୍ମମାନ କଲେ ଚକ୍ରଧାରୀ ।
ସକଳ କଥା ଆମ୍ଭଙ୍କୁ ବିସ୍ତାର ଭାବରେ
କହ ତିନି ଧାମ ଲୀଳା କେମନ୍ତ ପ୍ରକାରେ ।
ପରଂ ବ୍ରହ୍ମଙ୍କର ତତ୍ତ୍ୱ ତୁମ୍ଭଠାରୁ ଶୁଣି
କ୍ଷୁଧାତୃଷା ନ ବାଧନ୍ତି ଆମ୍ଭଙ୍କୁ ଯେ ପୁଣି ।
ଶ୍ରୀହରିଙ୍କ କଥାମୃତ ଆମ୍ଭେ ପାନକରି
କୃତାର୍ଥ ମଣିବୁ ପ୍ରାଣ ମନ ଯେ ସବୁରି ।
ଶୌନକ ଆଦି ଋଷିଙ୍କ ମୁଖୁଁ ଏହା ଶୁଣି
ପରମ ଆନନ୍ଦ ହେଲେ ସୂତ ତପିମଣି ।
ସକଳ ଋଷିମାନଙ୍କ ମୁଖକୁ ଅନାଇଁ
କହି ଆରମ୍ଭିଲେ ଧୀରେ କୃଷ୍ଣକଥା ତହିଁ ।

ସୂତ ଉବାଚ

ଧନ୍ୟ ଧନ୍ୟ ଅଟ ତୁମ୍ଭେ ହେ ନୈମିଷବାସୀ
ଶୁଣିବାକୁ କୃଷ୍ଣକଥା ହୋଇଛ ପ୍ରୟାସୀ ।
ଉତ୍ତମ ପ୍ରଶ୍ନ ଯେ ମୋତେ ପଚାରିଛ ଏଥି
ହରି କଥାମୃତେ ପାନେ ଯେଣୁ ଦୃଢ଼ମତି ।
ଶ୍ରୀହରି ମହିମା ଗାନ କରିବାକୁ କେହି
ଏହି ତିନି ଜଗତରେ ସମ୍ଭଳ ନୁହଇ ।
ମୁହିଁ ଅବା ତୁମ୍ଭ ଆଗେ ବଖାଣିବି କିସ
ମାତ୍ର ଠିକେ ଠିକେ କିଛି କରିବି ପ୍ରକାଶ ।
ହରି କଥା ଯେବେ ଭକ୍ତେ ଯେ ଶ୍ରବଣ କରେ
ପବିତ୍ର ହୁଅନ୍ତି ସେହୁ ସଂସାର ମଧ୍ୟରେ ।
ତାଙ୍କ ପଦ ଜଳେ ସୁ ପବିତ୍ର ତ୍ରିଭୁବନ
ପରମ ଗତି ଲଭନ୍ତି ଜାଣ ସେହି ଜନ ।
କୃଷ୍ଣ କଥାମୃତ ପାନ ଇଚ୍ଛଇ ଯେ ନର
ସକଳ କଳୁଷମାନ ନାଶ ହୁଏ ତାର ।
ଏମନ୍ତେ ମୁନିମାନଙ୍କୁ ପ୍ରଶଂସା କରିଣ
ପରମ ଉଲ୍ଲାସେ ସୂତ କରନ୍ତି କଳ୍ୟାଣ ।
କଂସ ଜରାସନ୍ଧ ଆଦି ଦୁଷ୍ଟ ଦୁରାତ୍ମରେ
ଯେତେବେଳେ ଉପଦ୍ରବ କରିଲେ ସଂସାରେ

ତାହାଙ୍କ ଭୟରେ ବସୁମତୀ ବ୍ୟାକୁଳରେ
ଶରଣ ପଶିଲେ ଯାଇ ବ୍ରହ୍ମାଙ୍କ ପାଦରେ ।
ବୋଇଲେ ହେ ବେଦବର ମୋ ଦୁଃଖହରଣୀ
ଶ୍ରବଣେ ତୁମ୍ଭର ହୃଦ ହୋଇବ କରୁଣ ।
କଂସାସୁର ଜରାସନ୍ଧ ଆଦି ଦୈତ୍ୟଗଣ
ବେଳୁଁ ବେଳ ମୋତେ ଦିଅନ୍ତି ଅପାର କଷଣ
ତେଣୁ ତାଙ୍କ ଭାର ଆଉ ସହି ନ ପାରଇ
ଦେଖ ମୋ ମସ୍ତକୁ ସଦା ରୁଧିର ଗଳଇ ।
ଧରା ବାଣୀର ବ୍ୟାକୁଳ ଦେଖି ନୟନରେ
ଇନ୍ଦ୍ରାଦି ଦେବଙ୍କୁ ଧାତା ଘେନି ସଙ୍ଗତରେ ।
ବିଳମ୍ବ ନ କରି ସର୍ବେ କରିଲେ ଗମନ
ଯହିଁ କ୍ଷୀର ସିନ୍ଧୁ ମଧ୍ୟେ ବିଜେ ଭଗବାନ ।
ଏକ ମୁଖ ହୋଇ ସର୍ବ ଅମର ମଣ୍ଡଳୀ
ଶ୍ରୀବିଷ୍ଣୁଙ୍କୁ ସ୍ତବ କଲେ ହୋଇ କୃତାଞ୍ଜଳି ।
ତାହାଙ୍କ ଆରତ ଦେଖି ପ୍ରଭୁ ଆର୍ତ୍ତତ୍ରାଣ
ମହାଶୂନ୍ୟେ ରହି ବୋଇଲେକ ତତକ୍ଷଣ ।
ଭୟ ନାହିଁ ଭୟ ନାହିଁ ତୁମ୍ଭ ମାନଙ୍କର
ଦୁଃଖ ବିନାଶ ହୋଇବ ଅଳପ ଦିନର ।
ଏହା ଶୁଣି ଧାତା ସର୍ବ ଦେବତାଙ୍କୁ ଚାହିଁ
ବୋଇଲେ ଆଉ ଭାବିବା ଦରକାର ନାହିଁ ।
ଶୁଣିଲ ତ ଦେବଗଣ ପରଂବ୍ରହ୍ମ ବାଣୀ
ମହାଶୂନ୍ୟେ ଶ୍ରୀମୁଖରେ କହିଲେ ଯା ଭଣି ।
ପୃଥିବୀର ଦୁଃଖ ପ୍ରଭୁ ଜାଣନ୍ତି ଆପଣେ
ତେଣୁ ଆଜ୍ଞାବାଣୀ କଲେ ତାଙ୍କ ସମାଧାନେ
ତୁମ୍ଭେ ସର୍ବେ ଜନ୍ମ ଘେନ ଯାଇ ଯଦୁବଂଶେ
ମର୍ତ୍ତ୍ୟ ଦେହ ବହ ଏବେ ନିଜ ନିଜ ଅଂଶେ
ବସୁଦେବ ଘରେ ମୁହିଁ ଦେବକୀ ଉଦରେ
ଆପଣେ ଅବତରିବି ଯାଇ ଅବନୀରେ ।
ଦିବ୍ୟ ମୂର୍ତ୍ତି ଛନ୍ତି ଯେତେ ଅମର ସୁନ୍ଦରୀ
ଜନମ ଲଭନ୍ତୁ ଯାଇ ନାରୀରୂପ ଧରି ।
ଅନନ୍ତ ଧରଣୀଧର ସହସ୍ର ବଦନ
ପ୍ରଥମେ ଆସିଣ ସେହୁ ଲଭିବେ ଜନମ ।
ବିଷ୍ଣୁମାୟା ଭଗବତୀ ଜଗତ ଜନନୀ
ତାଙ୍କୁ ଆଜ୍ଞା ଦେଲେ ପ୍ରଭୁ ଶଙ୍ଖ ଚକ୍ରପାଣି ।
ଶୁଣ ଗୋ ଦେବୀ ଅମ୍ବିକେ ମୋହର ବଚନ
କାର୍ଯ୍ୟ ସାଧିବାରେ ଗୋପେ ଲଭିବୁ ଜନମ ।

ପୁଣି ବ୍ରହ୍ମା ଆଦି କରି ଅମରଙ୍କୁ ଚାହିଁ
ଶୁଣାଇ କହିଲେ ପ୍ରଭୁ ବ୍ରହ୍ମାଣ୍ଡ ଗୋସାଇଁ ।
ଏ ଗୁରୁ କଥାକୁ ଆଉ ନ ଭାଳ କେ ମନେ
ମୋର ବୋଲ ମାନି ଚଳ ନିଜ ନିଜ ସ୍ଥାନେ
ପୃଥିବୀଙ୍କି ଆଜ୍ଞା ଦେଲେ କରିଣ ଆଶ୍ୱାସ
ଛାଡ଼ ଗୋ ଧରଣୀ ଦେବୀ ତୁମ୍ଭ ମନୁ ତ୍ରାସ ।
ଏମନ୍ତେ ଆଜ୍ଞା କରନ୍ତେ ପ୍ରଭୁ ଜନାର୍ଦ୍ଦନ
ବ୍ରହ୍ମା ସହିତେ ଅମରେ ଗଲେ ଯେଝା ସ୍ଥାନ ।
ଏଥୁଅନ୍ତେ ସମାଚାର ଶୁଣ ମୁନିଗଣେ
କହୁଛି ମୁଁ ତୁମ୍ଭ ଆଗେ ବିଚିତ୍ର କଥନ ।
ଶୂରସେନ ନାମେ ରାଜା ଥିଲେ ଯଦୁକୁଳେ
ସେ ରାଜା ମଥୁରା ନାମେ ପୁରୀ ନିର୍ମାଣିଲେ ।
ରାଜଭୋଗ କଲେ ସେହି ମଥୁରାରେ ବସି
ରାଜଧାନୀ ନାମ ତାର ତେଣୁ ଅଛି ରହି ।
ଯେଉଁ ମଧୁପୁରେ ହରି ନିତ୍ୟ ସନ୍ନିଧାନ
ଶୂର ବଂଶେ ଥିଲେ ତହିଁ ବସୁଦେବ ନାମ ।
ଥିଲେ ଉଗ୍ରସେନ ନାମେ ଏକ ନରପତି
ତାଙ୍କ ଭ୍ରାତା ଥିଲେ ଯେ ଦେବକ ମହାମତି ।
ଦେବକୀ ନାମେ ତାଙ୍କର କନ୍ୟାର ବିବାହେ
ଆଣିଲେ ବସୁଦେବଙ୍କୁ ଡକାଇ ଆଗ୍ରହେ ।
ଯଥା ବିଧାନରେ ବସୁଦେବଙ୍କୁ ବରିଲେ
ବିଧି ଅନୁସାରେ ତାଙ୍କୁ କନ୍ୟା ଦାନ କଲେ ।
ବହୁ ଧନ ରତ୍ନ ଦେଲେ ଯୌତୁକ ନିମନ୍ତେ
କନ୍ୟା ବରକୁ ବସାଇ ତହୁଁ ଦିବ୍ୟରଥେ ।
ଚାରି ଶତ ମତ୍ତଗଜ କାଞ୍ଚନେ ଭୂଷିତ
ରଥର ଆଗେ ସଜାଇ କଲେ ନିଯୋଜିତ ।
ଅଠର ଶତ ରଥ ଯେ କାଞ୍ଚନେ ନିର୍ମାଣ
ପନ୍ଦର ସହସ୍ର ଅଶ୍ୱ କଲେକ ପ୍ରଦାନ ।
ଦୁଇ ଶତ ସମର୍ପିଲେ ଦାସ ଦାସୀଗଣ
ଅତି ସମାରୋହେ କଲେ କନ୍ୟା ସମର୍ପଣ ।
ଶଙ୍ଖ ଭେରୀ ଦୁନ୍ଦୁଭି ମୃଦଙ୍ଗ କୋଳାହଳ
ଦେବ ବାଦ୍ୟ ନର ବାଦ୍ୟ ବାଜେ ସୁମଙ୍ଗଳ
ଉଗ୍ରସେନ ସୁତ ଯୁବରାଜ କଂସ ନାମେ
ରଥର ସାରଥି ହୋଇ ଚଳିଲେ ଆପଣେ ।
ଧରନ୍ତେ ସେ ଅଶ୍ୱ ବାଗ ଭଗିନୀର ସ୍ନେହେ
ଅନ୍ତରୀକ୍ଷ ବାଣୀ ହେଲା ଏମନ୍ତ ସମୟେ ।

ଯାହା ରଥ ବାହୁଅଛରେ ଅବୋଧ ବର୍ବର
ତାହାର ଗର୍ଭ ହୋଇବ ମରଣ ତୋହର ।
ଅଷ୍ଟମ ଗର୍ଭରେ ନିଶ୍ଚେ ତୋହର ମରଣ
ନ ବୁଝି ରଥ ବାହୁଛୁ କୁମତି ଦାରୁଣ ।
ଏହି ଶୂନ୍ୟ ବାଣୀ ଶୁଣି କଂସ କୁଳାଙ୍ଗାର
ଖଳ ଅତି ମହାପାପୀ କ୍ରୂର ଦୁରାଚାର ।
ତକ୍ଷଣ ଖଡ଼ଗ ଉଞ୍ଚାଇ ଉଠିଲା ସତ୍ୱରେ
ଡେଇଁ ପଡ଼ି କୋପେ ଭଗିନୀର କେଶ ଧରେ ।
ବସୁଦେବ ଦେଖି କଂସର ଏ ଅତ୍ୟାଚାର
ନିର୍ଲଜ ପାପିଷ୍ଠ ମନ୍ଦମତି ଦୁରାଚାର ।
ମୁଖେ ହସ ହସ ତାର ଅନ୍ତରେ ଦୁଃଖିତ
ବସୁଦେବ କହେ ବୀର ଏ ନୋହେ ଉଚିତ ।
ତୁମ୍ଭ ଲାଗି ଭୋଜ ବଂଶେ ସୁଯଶ ବିସ୍ତାର
ପ୍ରଶଂସନ୍ତି ବୀରମାନେ ତୁମ୍ଭଙ୍କୁ ଅପାର ।
ତୁମ୍ଭେ ମହାବୀର କଂସ ଜଗତେ ବିଖ୍ୟାତ
କାହିଁ ପାଇଁ କରୁଅଛ ଅକର୍ମ ସମସ୍ତ ।
ସ୍ତ୍ରୀ ବଧ ମହାପାପ ଅଟେ ବୀରବର
ସହଜେ ଭଗିନୀ ଅଟେ ଦେବକୀ ତୁମ୍ଭର ।
ଏ କି ବ୍ୟବହାର କର ବିବାହ କାଳରେ
ତୁମ୍ଭ ପକ୍ଷେ ଉଚିତ ଯା ନୁହେଁ ଜାଣ ଧୀରେ
ଯଦି କହ ନିଜ ମୃତ୍ୟୁ ଖଣ୍ଡିବାର ପାଇଁ
କୌଣସିମତେ ମୃତ୍ୟୁକୁ କେହି ଏଡ଼ି ନାହିଁ ।
ଶରୀର ସଙ୍ଗରେ ମୃତ୍ୟୁ ଜନ୍ମେ ସଭିଙ୍କର
ଏକ୍ଷଣି ମରୁ କି ଅବା ଶତ ବର୍ଷପର ।
ଜୀବ ମାନଙ୍କେ ଅବଶ୍ୟ ମରଣ ଘଟଇ
କପାଳ ଲିଖନ ଆନ କରିପାରେ କେହି ।
ଏ ବୋଲ ବୁଝି ହେ ବୀର କ୍ରୋଧ ପରିହର
ଏ ରୀତି ଗତି କଦାପି ନୁହଁଇ ସୁନ୍ଦର ।
ତେଜିଲେ ଏ ଦେହ ଆଉ ଶରୀର ନ ହେବ
ଏମନ୍ତ କଥା କଦାପି ହେ ବୀର ନ ଭାବ ।
ଅନ୍ୟ ଦେହ ପାଇ ଜୀବ କାୟା ପରିହରେ
ଅଦୃଷ୍ଟ ଅଧୀନ ଜୀବ ଅଦୃଷ୍ଟ ସଞ୍ଚରେ ।
ପାଦଟେକି କରି ଜନେ ପାହୁଣ୍ଡ ପକାନ୍ତି
ଜୋକ ତୃଣ ତେଜି ଆନ ତୃଣକୁ ଧରନ୍ତି ।
ଜାଗ୍ରତେ ରଜାଦି ରୂପ ହୁଏ ଦରଶନେ
ଇନ୍ଦ୍ର ପଦ ସୁଖଭୋଗ ଶୁଣଇ ଶ୍ରବଣେ ।

ଶୟନ କାଳେ ଯେ କରି ତେମନ ଧିଆନ
ସ୍ୱପନେ ସେହି ପ୍ରକାରେ ଦେଖେ ବିଦ୍ୟମାନ
ଆପେ ଇନ୍ଦ୍ର ହୁଏ ଜୀବ ଆପେ ହୁଏ ରଜା
ଆପଣାର ପୂର୍ବ ଦେହ ପାସୋରେ ସେ ପ୍ରଜା ।
ମରଣ କାଳରେ ଜୀବ ଯେ ଦେହ ଚିନ୍ତଇ
ସେହି ଦେହେଁ ପୁଣି ଅନ୍ୟ ଜନମ ଲଭଇ ।
ଉତ୍ତମ ଅଧମ ଦେହ ଅଦୃଷ୍ଟ ପ୍ରଧାନ
ଅଦୃଷ୍ଟ ଯାହାକରେ ସେ କେବେ ନୁହେଁ ଆନ
ଏକଚନ୍ଦ୍ର ଏକ ସୂର୍ଯ୍ୟ ପ୍ରକାଶ ସ୍ୱରୂପ
ଜଳ ଭେଦେ ଦେଖାଯାଏ ଯେସନେ ନାନାରୂପ
ପବନ ବେଗେଁ ସେ ଯଥା ଚଳନ କମ୍ପନ
ବିଚାରି ଦେଖିଲେ ତାହା ସବୁ ଭ୍ରମ ମାନ ।
ଏହିପରି ଅଟେ ଜୀବ ଅଜର ଅମର
ଈଶ୍ୱରଙ୍କ ଅଂଶ ଜୀବ ଈଶ୍ୱର କିଙ୍କର ।
ଅନୁରାଗ କରି ମାୟା ବିରଚିତ ଦେହେଁ
ଜୀବ ଆଗ ପାସୋରଇ ନିଜକୁ ଧର୍ମେ ହେଁ ।
ପଣ୍ଡିତ ଅଟଇ ଯେହୁ କରଇ ବିଚାର
ବୁଝି ନ କରେ ସେ କେବେ ପର ଉପକାର ।
ନିଜର କୁଶଳେ ଯେହୁ ପରକୁ ହିଂସଇ
ସେହି ହିଂସକର ଭୟ ଅବଶ୍ୟ ଜନ୍ମଇ ।
ଏ ତୁମ୍ଭର ଭଗିନୀ କନିଷ୍ଠା ଅଚେତନା
ଏହାକୁ ନ ମାର ଯେ ଶିଶୁ ବୁଦ୍ଧି ହୀନା ।
ସାମ ଭେଦେ ବସୁଦେବ କରନ୍ତେ ବିନତି
ତେବେ ସନ୍ଦେହ ନୁହଁଇ କଂସ ପାପମତି ।
ତହୁଁ ବସୁଦେବ ବୁଝିପାରି ଦୁଷ୍ଟ ମନ
ଆପଣାର ଯୁକ୍ତି ଏକଇ ଚିନ୍ତିଲେ ବହନ ।
ଅଶୁଭ ଖଣ୍ଡନେ କରି କାଳକୁ ହରଣ
ଉପାୟ ଦେଖନ୍ତି ସର୍ବେ ଏହି ସେ କାରଣ ।
ମୃତ୍ୟୁ ଆସି ଯେତେବେଳେ ହୁଏ ଉପସନ୍ନ
ନିବାରିବ ବୁଦ୍ଧି ବଳେ କରିଣ ଯତନ ।
ଖଣ୍ଡି ନ ପାରିବ ମୃତ୍ୟୁ ପଥକୁ ଯଦ୍ୟପି
ଆପଣାର ଦୋଷ ଆଉ ଧରିବ କେ ମାପି ।
ଶୁଣ ମୋହର ବଚନ ଆହେ ବୀରବର
ଶପଥ କରି କହୁଛି ତୁମ୍ଭ ଅଗ୍ରତର ।
ଯେତେ ପୁତ୍ର ଦେବକୀର ହେବେ ଉତପନ
ସକଳ କରିବ ତୁମ୍ଭ ହସ୍ତରେ ଅର୍ପଣ ।

ଏହିକଥା ମାନି କରି ଦେବକୀକୁ ରକ୍ଷା
ଭଗିନୀକୁ ମାରି ନାହିଁ ଦେଲ ଶାନ୍ତ ଘୋଷା ।
ଯେତେବେ ସନ୍ତାନ ଜନ୍ମିବ ଏହାର ଗର୍ଭରେ
ଅପବି ବହନ ଆଣି ମୁହିଁ ତୁମ୍ଭ କରେ ।
ଏହିପରି କଂସ ପାଶେ ବିନୟ ହୋଇଣ
ନିଜମନେ ବସୁଦେବ ବିଗୁରନ୍ତି ପୁଣ ।
ଅଷ୍ଟମ ଗର୍ଭରେ ପୁତ୍ର ହେବ ଦେବକୀର
ତା ହସ୍ତେ ମରଣ ସନ୍ଧ ହୁଅଇ କଂସର ।
ଅବଶ୍ୟ ମାରିବ କଂସକୁ ମୋ ପୁତ୍ର ବର
କିଏ ଅବା ବୁଝିପାରେ ଗତି ବିଧାତାର ।
ସମ୍ପ୍ରତି କହୁଛି କରି ମୃତ୍ୟୁ ନିବାରଣ
ଅବଶ୍ୟ ହୋଇବ ଦୁଷ୍ଟ କଂସର ମରଣ ।
ଅନଳ ଲାଗିଲେ କାଷ୍ଠ ଯେହ୍ନେ ଜଳିଯାଏ
ଦେବ ଯୋଗେ ତାହାମଧ୍ୟେ ସେହି କାଷ୍ଠରହେ
ଘରକୁ ନିକଟେ ଛାଡ଼ି ପୋଡ଼ିଯାଏ ଦୂରେ
ଅଦୃଷ୍ଟେ ଯାର ଯେସନେ ତେହ୍ନେ ଫଳଧରେ
ଏହିପରି ଶରୀରର ସଂଯୋଗ ବିଚ୍ଛେଦ
ଅଦୃଷ୍ଟ କାରଣ ବିନେ ନାହିଁ କିଛି ଭେଦ ।
ବିମର୍ଷ କରିଣ ହୃଦ ଏହି ପରକାରେ
କହିଲେ ଯେ ବସୁଦେବ ଏମନ୍ତ ଭାବରେ ।
ଅଛି ଅଛି ହାସେ କରି ପ୍ରସନ୍ନ ବଦନ
ଅନ୍ତରେ ଦୁଃଖିତ ଥାଇ ବୋଇଲେ ଏସନ ।
ଶୁଣ ଯୁବରାଜ କଂସ ତୁମ୍ଭେ ବୁଦ୍ଧିମନ୍ତ
ନକର ଆଶଙ୍କା ମନେ କହୁଛି ଯଥାର୍ଥ ।
ଯେତେ ପୁତ୍ର ଜନମିବେ ଦେବକୀ ଉଦରେ
ନିଶ୍ଚୟ ମୁଁ ଆଣି ସମର୍ପିବି ତୁମ୍ଭ କରେ ।
ଅନ୍ତରୀକ୍ଷ ବାଣୀ ହେଲା ଯାହାର କାରଣେ
ତାକୁ ଆଣି ଦେବି ମୁହିଁ ତୁମ୍ଭ ବିଦ୍ୟମାନେ ।
ଏ କଥା ଶୁଣନ୍ତେ କଂସ ବିଗୁରଇ ମନେ
ଭଲ ତ କହିଲା ଏହୁ ମୋର ସନ୍ନିଧାନେ ।
ତକ୍ଷଣେ ଛାଡ଼ିଲା ଦୁଷ୍ଟ ଦେବକୀର କେଶ
ବସୁଦେବ ଚଳିଗଲେ ଆପଣା ନିବାସ ।
କେତେ ଦିନ ଅନ୍ତେ ସେହି ଦେବକୀ ଉଦରେ
ପୁତ୍ର ଏକ ଜନମିଲା ଯଥା ସମୟରେ ।
ବରଷକେ ଆଉ ଏକ ପୁତ୍ର ହେଲା ଜାତ
ଏହିପରି ଛଅ ପୁତ୍ର କଂସ କରେ ହତ ।

ଅବଶେଷେ ଏକ କନ୍ୟା ଲଭିଲା ଜନମ
ହେ ଶୌନକ ଶୁଣ ସେହି ବିଚିତ୍ର କଥନ ।
ପ୍ରଥମରେ ଯେଉଁ ପୁତ୍ର ହୋଇଲା ଜନମ
ତାହାର ନାମଟି କୀର୍ତ୍ତିମନ୍ତ ବୋଲି ଜାଣ ।
ଉପଯୁକ୍ତ ବସୁଦେବ ଅସତ୍ୟ ବଚନେ
ସେ ପୁତ୍ରକୁ ଦେଲେ ନେଇ କଂସ ସନ୍ନିଧାନେ
ସାଧୁଜନେ ନାହିଁ କିଛି ଦୁଃସହ ସଂସାରେ
ପଣ୍ଡିତ ଜନଙ୍କ କିବା ଅପେକ୍ଷା କାହାରେ ।
ଦୁଷ୍ଟ ଜନେ ନ କରନ୍ତି କିବା କୁକରମ
ଭକ୍ତେ ନ କରନ୍ତି କେବେ ଅସତ୍ୟ ଅଧର୍ମ ।
ତାର ସତ୍ୟ ଧର୍ମ ଦେଖି କଂସ ଯୁବରାଜ
ବିନୟ କରି କହିଲା ମନେ ପାଇ ଲାଜ ।
ଏହି ପୁତ୍ର ଲାଗି ମୋର କିଛି ଭୟନାହିଁ
ଘରକୁ ଚଳ ବହନ ତୁମ୍ଭେ ଯାକୁ ନେଇ ।
ଅଷ୍ଟମ ଗର୍ଭରେ ହେବ ଯେବଣ କୁମର
ମୃତ୍ୟୁଭୟ ରହିଅଛି ତାହାଲାଗି ମୋର ।
ପୁତ୍ର ନେଇ ବସୁଦେବ ଚଳିଲେ ସଦନେ
ପ୍ରତୀତ ନୁହଇ ତେବେ ଦୁଷ୍ଟର ବଚନେ ।
ଆସିଣ ସେ କାଳେ ଯେ ନାରଦ ତପୋଧନ
କଂସକୁ କହିଲେ ଗୁପ୍ତ ମନ୍ତ୍ରଣା ଦେଇଣ ।
ନନ୍ଦ ଆଦି ଗୋପେ ଯେତେ ଗୋକୁଳେ ଅଛନ୍ତି
ସପୁତ୍ର ବାନ୍ଧବ ତାଙ୍କ ଯେତେକ ଯୁବତୀ ।
ତୁମ୍ଭର ଯେତେକ ବନ୍ଧୁ ଅଛନ୍ତି ଯଦୁବଂଶୀ
ବସୁଦେବ ଆଦି ଯେତେ ମଥୁରା ନିବାସୀ ।
ଦେବକୀ ଆଦି ଯେତେକ ଯଦୁକୁଳ ନାରୀ
ସକଳେ ଦେବତା ଜନ୍ମ ବୁଝ ଦଣ୍ଡଧାରୀ ।
ଜ୍ଞାତି ବାନ୍ଧବ ସବୁରି ଯେତୁ ତବ ଭୃତ୍ୟ
ସେ ସର୍ବେ ଦେବତା ମୁହିଁ କହିଲି ନିଶ୍ଚିତ ।
ପୃଥିବୀ ଭାର ହରଣେ ଦେବଙ୍କ ମନ୍ତ୍ରଣା
ବୁଝିଣ ଉପାୟ କର କହିଛି ମୁଁ ଜଣା ।
ଏମନ୍ତ କହି ନାରଦ ହେଲେ ଅନ୍ତର୍ଦ୍ଧାନ
ତହୁଁ ମନେ ବିଗୁରଇ ସେ କଂସ ରାଜନ ।
ଦେବକୀର ଗର୍ଭେ ବିଷ୍ଣୁ ହେବ ଅବତାର
ସେହି ଯେ କରିବ ମୋତେ ଅବଶ୍ୟ ସଂହାର
ପୂର୍ବଜନ୍ମେ ଥିଲି ମୁହିଁ କାଳନେମି ନାମେ
ସେହି ଚକ୍ରପାଣି ମୋତେ ବଧିଲା ସଂଗ୍ରାମେ ।

ଏବେ ଯେ ଜନ୍ମିଛି ସେହୁ ଦେବକୀ ଉଦରେ
ଜନମ ଲଭିବ ଆସି ମାରିବାକୁ ମୋତେ ।
ଏହା ଜାଣିପାରି କଂସ ମହାକର୍ମ କଲେ
ନିଗଡ଼େ ବାନ୍ଧିଲା ବସୁଦେବ ଦେବକୀରେ ।
ପ୍ରତିବର୍ଷ ଜନମିଲେ ଏକ ଏକ ପୁତ୍ର
ବସ୍ତୁ ଶଙ୍କାରେ ମାରଇ କଂସ ନରନାଥ ।
ଖଳମତି କଂସ କରେ ଯେତେକ ଦୁର୍ମତ
ବନ୍ଧୁ ବଧ କରିବାର ଏ କେଉଁ ବିଚିତ୍ର ।
ପିତା ମାତା ବନ୍ଧୁ ପୁତ୍ର ମିତ୍ର ସହୋଦରେ
ରାଜ୍ୟଲୋଭେ ଲୋଭୀ ରାଜା ଏ ସବୁ ସଂହାରେ
ତା ପିତା ଉଗ୍ରସେନଙ୍କୁ ନିଗଡ଼େ ବାନ୍ଧିଲା
ଆପଣେ ନୃପତି ହୋଇ ରାଜ୍ୟ ଭୋଗ କଲା ।
ସୂଖରେ ବୁଝିନ୍ତୁ ଯେହ୍ନେ ମହା ଭାଗବତ
କଥାଛନ୍ତି କହି ମୁହିଁ ବୁଝିବାର ଅର୍ଥ ।
ଏହି ପରିହାର କରେ ମୁଁ ବୁଧ ଜନଙ୍କୁ
ନଧରିବେ ଛନ୍ଦେମାତ୍ର ମୋହର ଦୋଷକୁ ।
କୃଷ୍ଣକଥା ଦିବାନିଶି କରିଣ ଭଜନ
ଦିବସ ହରିବ ଏହା ବଳୁରୁଛି ମନ ।
ଚନ୍ଦ୍ରଦେଇ ଶୁଣ ମୁନି କୃଷ୍ଣଗୁଣ ବାଣୀ
ପରଂବ୍ରହ୍ମଙ୍କର ଗାଥା ପ୍ରେମ ତରଙ୍ଗିଣୀ ।
ନୈମିଷ୍ୟ ଅରଣ୍ୟେ ଋଷିମାନଙ୍କ ମେଳରେ
ବଖାଣିଲେ ସୁତ କ୍ଷେତ୍ର କହଇ ଗୀତରେ ।

ଇତିଶ୍ରୀ ବ୍ରହ୍ମ ପୁରାଣେ ଉତ୍ତରଖଣ୍ଡେ
ସୁତ ଶୌନକ ସମ୍ବାଦେ କଂସାସୁର
ଅତ୍ୟାଚାର କଥନଂ ନାମ
ଚତ୍ୱାରିଂଶୋଽଧ୍ୟାୟଃ



## ଏକଚତ୍ୱାରିଂଶ ଅଧ୍ୟାୟ

## କଂସର ଅତ୍ୟାଚାରରେ ଜର୍ଜରିତ ହୋଇ ଦେବତାମାନେ ବିଷ୍ଣୁଙ୍କୁ ଧ୍ୟାନ କରିବା

ସୁତ ଉବାଚ

ଶୁଣ ଆହେ ମୁନିଗଣେ ଅପୂର୍ବ ଚରିତ
ଯାହା ଶ୍ରବଣରେ ନାଶେ ସକଳ ଦୁରିତ ।
ବେଳୁବେଳ କଂସାସୁର କରି ଅତ୍ୟାଚାର
ଦେବତାମାନଙ୍କୁ ଆଣି ଖଟାଏ ପାଦର ।
ଅଘା ବକା ଷଣ୍ଢା ଆଉ ମୁଷ୍ଟିକ ଚାଣୁର
ଧେନୁକା ଦ୍ୱିବିନ୍ଦ୍ର ପୁତନାଦି ବାଣାସୁର ।
ପୁତନା ସହିତେ ଯେତେ ଦୁଷ୍ଟ ଦୁଷ୍ଟା ଗଣ
କଂସାସୁର ସମସ୍ତଙ୍କୁ ପାଶକୁ ଘେନିଣ ।
ଜରାସନ୍ଧର ସହାୟ ଘେନି ଦୁରାଚାର
ଯଦୁକୁଳ ନାଶିବାକୁ ପାଞ୍ଚିଲା ମନର ।
ତା ଭୟରେ ଯଦୁବଂଶ ବୀର ଏଣେତେଣେ
ପଳାଇ ଲୁଚିଲେ କନ୍ଦରରେ ଅବା ବଣେ ।
ଥୋକାଏ ଯାଦବ କେହ୍ନେ ଯାଇ ନ ପାରିଲେ
କଂସର ସେବକ ପଣେ ଖଟଣି ଖଟିଲେ ।
ଏହିପରି ପାପମତି କଂସାସୁର ବୀର
ଅବିରତେ ହିଂସାକଲା ଯଦୁଙ୍କ ସଙ୍ଗର ।
ଦେବକୀର ଛଅ ପୁତ୍ର କ୍ରମେ କଲା ନାଶ
ସପ୍ତମେ ଅନନ୍ତ ଦେବ ଗର୍ଭେ କଲେ ବାସ
କେବଳ ବୈଷ୍ଣବ ଧାମ ସହସ୍ର ବଦନ
ଦେବକୀ ଦେବୀଙ୍କ ଗର୍ଭେ ହେଲେ ଉତ୍ପନ
କଂସ ଭୟରେ ଦେବକୀ ହୁଅଇ ବିମର୍ଷ
ଜନ୍ମିଲେ ଶ୍ରୀହରି ପୁତ୍ର ରୂପେ ହୋଇ ତୋଷ
ଜଗତର ହିତ ଲାଗି ପ୍ରଭୁ ନାରାୟଣ
ଜନମିଲେ ଧରାଧାମେ ଭକ୍ତ ହିତେ ଜାଣ ।
ଯଦୁକୁଳେ କଂସଭୟ ଜାଣନ୍ତି ଆପଣେ
ପଠାଇ ଦେଲେ ମାୟାକୁ ସେହୁ ଶୁଭକ୍ଷଣେ ।
ଚଳ ମହାମାୟା ତୁମ୍ଭେ ନନ୍ଦର ମନ୍ଦିରେ
ଗୋପ ଗୋପୀ ଗୋଧନ ମଣ୍ଡିତ ନିରନ୍ତରେ
ବସୁଦେବଙ୍କର ଭାର୍ଯ୍ୟା ଅଛି ଯେ ରୋହିଣୀ
କଂସଭୟେ ଅଲକ୍ଷିତେ ଥାଏ ଏକାକିନୀ ।
ଦେବକୀ ଗର୍ଭରୁ ତୁମ୍ଭେ ରୋହିଣୀ ଉଦରେ
ଥୁଅନେଇ କେହି ଯେହ୍ନେ ତାଜାଣି ନପାରେ
ତେବେ ମୁହିଁ ପୂର୍ଣ୍ଣରୂପେ କଂସ ବଧଛଳେ
ପୂର୍ଣ୍ଣରୂପେ ଅବତାରିହୋଇବି ଏଥିରେ ।
ନନ୍ଦର ଘରଣୀ ସେହୁ ଯଶୋଦା ସୁନ୍ଦରୀ
ଯହିଁ ତୁମ୍ଭ ଜନ୍ମ ହୁଅ ଦିବ୍ୟ ରୂପ ଧରି ।
ନାନା ଯଜ୍ଞ ବଳିଦାନ ଦେଇ ଉପହାର
ନର ଲୋକମାନେ ପୂଜା କରିବେ ତୋହର ।

କୁମୁଦା ଚଣ୍ଡିକା ଦୁର୍ଗା ବିଜୟା ବୈଷ୍ଣବୀ
ନାରାୟଣୀ ଭଦ୍ରକାଳୀ ଶାରଦା ମାଧବୀ ।
ଏ ସମସ୍ତ ନାମ ମାନ ବହିବୁ ଯେ ତୁହି
କାଳେ ୨ ମର୍ତ୍ତ୍ୟେ ପୂଜା ପାଉଥିବୁ ରହି ।
ଗର୍ଭ ଆକର୍ଷଣ କରି ଆଣିବୁ ଆଦେଶେ
ସଙ୍କର୍ଷଣ ନାମ ଗୋଟି ହେବ ସେ କାରଣେ
ମନୋରମ ହେତୁ ନାମ ବଳରାମ ଦେବ
ବଳବାନ ହେତୁ ବଳଭଦ୍ର ବୋଲାଇବ ।
ଏହିରୂପେ ଆଜ୍ଞା ଯହୁଁ ଦେଲେ ଭଗବାନ
ମହାମାୟା ଶିରେ ବହି ଚଳିଲେ ବହନ ।
ଦେବକୀ ଗର୍ଭୁ ରୋହିଣୀ ଉଦରେ କୌଶଳେ
ଆଣି ଥୋଇଲେ ଯେ ମାୟା ମହାମାୟା ବଳେ
ହୋଇଲା ଦେବକୀଙ୍କର ଗର୍ଭପାତ ବୋଲି
ଚଉଦିଗରେ ପଡ଼ିଣ ଗଲା ହାଲି ହୋଲି ।
ଜଗତର ଆତ୍ମାପୂର୍ଣ୍ଣ ବ୍ରହ୍ମ ଭଗବାନ
ସଦା ଭକତେ କରନ୍ତି ଯେହୁ ପରିତ୍ରାଣ ।
ଆପେ ହୃଷିକେଶ ସର୍ବଶାନ୍ତ ମାନ ଘେନି
ବସୁଦେବ ହୃଦେକଲେ ପ୍ରବେଶ ତକ୍ଷଣି ।
ପରମ ବୈଷ୍ଣବ ଧାମ ଧରେ ବସୁଦେବ
ନ ସହନ୍ତି ତେଜ ସେହି ଅଟେ ସୂର୍ଯ୍ୟସମ ।
ସେହିକାଳେ ଭକ୍ତ ବାସୁଦେବ ମହାଭାଗ
ଦେଖିଲେ ଦୈବକୀ ମୁଖ ବହି ଅନୁରାଗ ।
ସର୍ବ ଶକ୍ତି ଯୁତ ଧାମ ଆନନ୍ଦ ମଙ୍ଗଳ
ଅଖଣ୍ଡ ଅଚ୍ୟୁତ ପରିପୂର୍ଣ୍ଣ ମହାବଳ ।
ବସୁଦେବ ଆରୋପିଲେ ଦୈବକୀର ମନେ
ଧରିଲା ଦେବକୀ ଧାମ ଚିତ୍ତ ସମାଧାନେ ।
ପୂର୍ବଦିଗେ ଉଦେ ଯେହ୍ନେ ପୂର୍ଣ୍ଣ ଶଶଧର
ଧରଇ ଦୈବକୀ ଧାମ ମାନସ ଭିତର ।
ଜଗତ ନିବାସ ତାଙ୍କ ନିବାସ ସ୍ୱରୂପ
ପ୍ରକାଶ ନ ହେଲା ତେବେ ଦୈବକୀର ରୂପ ।
କଂସର ମନ୍ଦିରେ ଦେବୀ ଥିଲେ ଯେ ବନ୍ଧନେ
ପ୍ରକାଶ ନ ହେଲା ତେଜ ତାହାର କାରଣେ ।
ପ୍ରଦୀପର ଶିଖା ଯେହ୍ନେ କୁମ୍ଭର ଭିତରେ
ମୂର୍ଖ ମୁଖେ ଶୁଦ୍ଧ ବାଣୀ ଯେସନେ ନିଷ୍ଠୁରେ
କଂସ ଆସି ଦୈବକୀରେ ଦେଖି ଆଚମ୍ବିତ
ଚିନ୍ତା ଲାଗିଲା ମାନସେ ପାଇ ମହାଭୀତ ।

ଏମନ୍ତ ଦୈବକୀରୂପ କେବେ ନାହିଁ ଦେଖି
ବିଷ୍ଣୁ ଆସି ଏହା ଗର୍ଭେ ଅବା ରହିଲେ କି ।
ଦୈବକୀର ଅଙ୍ଗତେଜ ସହି ଯେ ନ ହୁଏ
ଏବେ ମୁହିଁ କରିବଇଁ କେବଣ ଉପାୟେ ।
ପ୍ରୟୋଜନ କାରଣେ ଏ ବିକ୍ରମ ନ କରେ
ଯାହା ଯୋଗେ ଅପଯଶ ରହଇ ଲୋକରେ ।
ଏକେତ ସ୍ତ୍ରୀ ଜାତି ପୁଣି ଅଟେ ଗର୍ଭବତୀ
ତହିଁକି ଭଗିନୀ ବଧ ହେବ କେଉଁଗତି ।
ବଳବୀର୍ଯ୍ୟ ପରମାୟୁ ତୁଟଇ ସକଳ
ଜୀବନ୍ତେହିଁ ମୃତ୍ୟୁ ତାର ଜୀବନ କୁଫଳ ।
ସ୍ତ୍ରୀ ଗର୍ଭିଣୀ ବଧରେ ମହାପାପ ହୁଏ
ଅନ୍ତିମେ ନରକେ ଶାସ୍ତି ମିଳଇ ନିଶ୍ଚୟେ ।
ସଂଶୟ କରିଣ ଏହିପରି ମନେ ମନେ
ଚିତ୍ତକୁ ନିବାରି କଂସ ରହିଲା ମଉନେ ।
ପୁଣି ଆପଣା ମନରେ କରଇ ବିଚାର
ପନ୍ଥକୁ ବିପଦ ଅଛି କିବା ପ୍ରତିକାର ।
ଏପରି ନିରତେ କଂସ କରଇ ଭାବନ
ଜନମିବ ପରା ଭଗ୍ନି ଗର୍ଭୁ ଭଗବାନ ।
ରକ୍ଷା ପାଇବଇଁ ତା ଦାଉରୁ କେଉଁପରି
ଦିବାରାତ୍ର ଏହି ଚିନ୍ତାକରେ ବସିକରି ।
ମରଣର ପ୍ରତିକାର ହେଜୁଥାଇ ବସି
କିସ ଉପାୟ କରିବି ହେଉଥାଏ ଘୋଷି ।
ସ୍ନାନ ଭୋଜନ ଶୟନ କାଳେ ସେ ଦୁର୍ଜ୍ଜନ
କୃଷ୍ଣମୟ ଚରାଚରେ ଦେଖେ ଅନୁକ୍ଷଣ ।
କାଳ ପରି କୃଷ୍ଣ ତାକୁ ଯାଉଥାନ୍ତି ଦିଶି
ଘାରି ହେଉଥାଏ ହୃଦ ତାର ଦିବା ନିଶି ।
ଗୋବିନ୍ଦ ଧିଆନ କରି ରହେ ନିରନ୍ତର
ଚିନ୍ତିବାରେ ଚଉଦିଗେ ଦେଖେ ଚକ୍ରଧର ।
ନାରଦାଦି ସନକାଦି ସିଦ୍ଧ ମୁନିଗଣେ
ଇନ୍ଦ୍ର ଆଦି ଦେବଗଣ ଯେ ଯାହା ବାହନେ ।
ଆପଣେ ଆସିଣ ବ୍ରହ୍ମା ଦେବ ମହେଶ୍ୱର
ସ୍ତୁତି କରନ୍ତି ହରିଙ୍କି ଗର୍ଭର ଭିତର ।
ଯେପରି ସ୍ତୁତି କରନ୍ତି ସର୍ବ ଦେବଗଣ
ଆହେ ମୁନିମାନେ ତାହା କହୁଅଛି ଶୁଣ ।
ସତ୍ୟବ୍ରତ ପ୍ରଭୁ ତୁମ୍ଭେ ସତ୍ୟ ସର୍ବକାଳ
ସତ୍ୟରେ ତୁମ୍ଭଙ୍କୁ ପ୍ରାଣୀ ପାନ୍ତି ଯେ ସକଳ ।

ସତ୍ୟର ଆଧାର ତୁମ୍ଭେ ସତ୍ୟ ନାରାୟଣ
ସତ୍ୟ ଧର୍ମେ କର ପ୍ରଭୁ ସଭିଙ୍କି ପାଳନ ।
ସତ୍ୟ ଆରୋପିତ ସତ୍ୟ ଅଛୁ ତୁମ୍ଭପାରେ
ତୁମ୍ଭେ ଯେ ସତ୍ୟର ସତ୍ୟ ଜାଣୁ ସାକ୍ଷାତରେ
ସତ୍ୟମୟ ପ୍ରଭୁ ତୁମ୍ଭେ ଏକା ସତ୍ୟ ବ୍ରହ୍ମ
ଆମ୍ଭେ ସର୍ବେ ହେଲୁଁ ପଦ୍ମ ଚରଣେ ପ୍ରସନ୍ନ ।
ସଂସାର ବୃକ୍ଷର ଏକ ପ୍ରକୃତି ଆଶ୍ରୟ
ସୁଖ ଦୁଃଖ ଦୁଇ ଗୋଟି ଫଳ ଯେ ନିଶ୍ଚୟ ।
ସତ୍ତ୍ୱ ରଜ ତମ ଗୁଣ ତିନିଗୋଟି ମୂଳ
ଧର୍ମ ଅର୍ଥ କାମ ମୋକ୍ଷ ଚାରିରସ ତୁଲ ।
ଚକ୍ଷୁ କର୍ଣ୍ଣ ନାସା ଜିହ୍ୱା ଆଦିର ଯେ ତ୍ୱକ
ଜ୍ଞାନ ପରକାର ଏହି ଇନ୍ଦ୍ରିୟ ପଞ୍ଚକ ।
ଶୋକ ମୋହ ଜରା ମୃତ୍ୟୁ କ୍ଷୁଧା ତୃଷ୍ଣା ବାର
ଏହି ଛଅ ଗୋଟି ଅଟେ ସ୍ୱଭାବ ଏହାର ।
ରକ୍ତ ମାଂସ ରସ ଆଦି ସାତ ଧାତୁ ସ୍ଥଳ
ପଞ୍ଚଭୂତ ମନବୁଦ୍ଧି ଅହଂ ଅଷ୍ଟଡାଳ ।
ନଅଗୋଟି ଗର୍ଭେ ହୁଏ ସଞ୍ଚାର ବେଭାର
ଏହି ରୂପେ କହେ ଆଦି ବୃକ୍ଷର ବିସ୍ତାର ।
ଦଶଗୋଟି ପ୍ରାଣ ଅଟେ ବୃକ୍ଷ ଦଶ ପତ୍ରେ
ସର୍ବେ ଦୁଇ ଗୋଟି ହଂସ ଛନ୍ତି ତହିଁ ନିତ୍ୟେ
ଆବ୍ରହ୍ମ ପର୍ଯ୍ୟନ୍ତ ଭବ ଆଦି ବୃକ୍ଷ ବୋଲି
ସକଳ ପୁରାଣେ ବେଦେ ଭକତ ଏ ଭଳି ।
ଏ ସଂସାର ବୃକ୍ଷ ତୁମ୍ଭଠାରୁ ଉତପତ୍ତି
ତୁମ୍ଭରେ ପ୍ରଳୟ ହୁଏ ତୁମ୍ଭରେ ହିଁ ସ୍ଥିତି ।
ତୁମ୍ଭେ ଯେ ପାଳନ କରୁଅଛ ସର୍ବକାଳ
ତୁମ୍ଭ ବିନୁ ସତ୍ୟ କିଛି ନାହିଁ ଆଦିମୂଳ ।
ତୁମ୍ଭେ ସୃଜ ତୁମ୍ଭେ ପାଳି କର ଯେ ପ୍ରଳୟ
ମାୟାରେ ମୋହିତ ଜନେ ନାନାମତେ କୁହ ।
ତୁମ୍ଭେ ବ୍ରହ୍ମା ତୁମ୍ଭେ ବିଷ୍ଣୁ ତୁମ୍ଭେ ମହେଶ୍ୱର
ଏକ ପ୍ରଭୁ ତୁମ୍ଭେ ଧରି ନାନା କଳେବର ।
ତୁମ୍ଭେ ସର୍ବ ସତ୍ୟ ଜାଣିଥାନ୍ତି ବୁଦ୍ଧଜନେ
ଅସତ୍ୟ ମଣନ୍ତି ସତ୍ୟ ମୋହିତ ଯେସନେ ।
ତୁମ୍ଭେ ଜ୍ଞାନମୟ ଆତ୍ମା ଦିବ୍ୟରୂପ ଧରି
ଦିବ୍ୟ ଅବତାର ବହି ଭକ୍ତଙ୍କୁ ଉଦ୍ଧାରି ।
ଜଗତ ମଙ୍ଗଳ ଲାଗି ଧରି ସତ୍ୟମୟ
ଯହିଁରେଟି ତ୍ରାଣ ପାନ୍ତି ସର୍ବ ସାଧୁଚୟ ।

ଖଳ ନିବାରଣ ଲାଗି ତବ ଅବତାର
ଯୋଗୀଜନେ ଯେଉଁ ରୂପ ଚିନ୍ତି ହୋନ୍ତିପାର ।
ଯେତେ ଯେତେ ଭାଗବତ ଅଛନ୍ତି ପ୍ରଧାନ
ଚିନ୍ତନ୍ତି ତୁମ୍ଭର ଶୁଦ୍ଧ ତତ୍ତ୍ୱମୟ ଧାମ ।
ସମାଧି ସାଧନେ ଚିତ୍ତ କରି ନିରୋଧନ
ତୁମ୍ଭ ଶ୍ରୀଚରଣେ ନାବ ଚିନ୍ତି ଅନୁକ୍ଷଣ ।
ଗୁରୁଜନ ଉପଦେଶେ ବହି ପଦ କରି
ହେଳାରେ ତରନ୍ତି ଏହି ଭବ ସିନ୍ଧୁ ବାରି
ଆପଣେ ତରି ସଂସାର ସିନ୍ଧୁ ଭୟଙ୍କର
ଲୋକ ପରିତ୍ରାଣ ହେତୁ ଚିନ୍ତିଲେ ବିସ୍ତର ।
ଭକତ ବତ୍ସଳ ପ୍ରଭୁ ଦୟାର ଆଧାର
ତୁମ୍ଭ ଶ୍ରୀଚରଣେ ଭକ୍ତି କରିଣ ବିସ୍ତାର ।
ଚରଣ ପଙ୍କଜେ ନିରନ୍ତରେ ଥୋଇ ମନ
ତରିଗଲେ ଏ ସଂସାର ମଧ୍ୟୁ ମହାଜନ ।
ଦେବ ଦେବ ଦୟାଶୀଳ କମଳ ଲୋଚନ
ଭକତି ହୀନ ଜନର ବିଫଳ ଜୀବନ ।
ଯେଉଁମାନେ ତୁମ୍ଭ ପାଦେ ଭକ୍ତି ନ କରନ୍ତି
ଯୋଗସାଧି ଆପଣକୁ ବୋଲି ମଣେ ମୁକ୍ତି ।
କରିଣ ପରମ ପଦ ଦୁଃଖେ ଆରୋହଣ
ତହୁଁ ପୁଣି ହୁଏ ତାହାଙ୍କର ନିପତନ ।
ତୁମ୍ଭ ପଦାରବିନ୍ଦରୁ ଯେ ଜନ ବଞ୍ଚିତ
ନୁହେଁ ତାର ଶୁଦ୍ଧ ବୁଦ୍ଧି ଅଭିହୀନ ଚିତ୍ତ ।
ନ ପାଇ ସେ ମୁକ୍ତି ପଦ ଜନ୍ମେ ବାରବାର
ଭକ୍ତିବିନେ କେହି ନୁହେଁ ଭବସିନ୍ଧୁ ପାର ।
ହେ ମାଧବ ତୁମ୍ଭେ ଅଟ ଜଗତ ନିବାସ
ଭକତ ଜନର କେବେଁ ନ ଘଟେ ବିନାଶ ।
ପ୍ରେମ ଅନୁବନ୍ଧ କରି ତବ ଶ୍ରୀଚରଣେ
ଯହିଁ ତହିଁ ରହୁ ଭକ୍ତ ତବ ଗୁଣଧ୍ୟାନେ ।
ବିଘ୍ନ ଶିରେ ଚରଣ ସେ ରଖି ଦୃଢ଼କରି
ସ୍ୱଛନ୍ଦରେ ଭ୍ରମେ ସଦା ଭୟ ପରିହରି ।
ତୁମ୍ଭେ ରକ୍ଷାକର ଯହିଁ ନୁହେଁ ତାର ନାଶ
ଏମନ୍ତ ତୁମ୍ଭେ ଭକତ ବନ୍ଧୁ ପୀତବାସ ।
ଯଦ୍ୟପି କେବଳ ଆତ୍ମା ତୁମ୍ଭେ ଜ୍ଞାନମୟ
ତଥାପି ଭକତ ଜନ ପାଳନେ ସଦୟ ।
ବିଶୁଦ୍ଧ ପରମ ଧାମ ଦିବ୍ୟମୂର୍ତ୍ତି ଧରି
ଜୀବ ପରିତ୍ରାଣ ହେତୁ ନାନା ଲୀଳାକରି ।

ବେଦ ଯଜ୍ଞ କର୍ମ ଯଜ୍ଞ ଯୋଗ ତପକରି
ସେରୂପ ଭାବଣ ଲୋକ ଯାନ୍ତି ଭବୁଁ ତରି ।
ଏକାରଣୁ ଆବଶ୍ୟ ବି ହୁଅ ମରତରେ
ପ୍ରକଟ ପରମାନନ୍ଦ ଅଚିନ୍ତ୍ୟ ଭାବରେ ।
ତୁମ୍ଭେ ନ କରନ୍ତି କରି ମୂର୍ତ୍ତି ପରକାଶ
କେବା ଜାଣନ୍ତା ତୁମ୍ଭଙ୍କୁ ହେ ଜଗନ୍ନିବାସ ।
ଜଗଦୀଶ ଜ୍ଞାନ ଭବେ ନୁହନ୍ତା କାହାର
ଅଛନ୍ତି ବୋଲି ଈଶ୍ୱର ନ ଭାବନ୍ତେ ନର ।
ଅଜ୍ଞାନ କାହାର ମନୁ ବିଚ୍ଛେଦ ନୁହନ୍ତା
ଭବବନ୍ଧ ଖେଦ ତଳେ ମାନି ନ ଘୁଞ୍ଚନ୍ତା ।
ଏବେ ଯେ ଭଜି ତୁମ୍ଭର ଦିବ୍ୟ ଅବତାର
ସଂସାର ଦୁଃଖ ତେଜିଣ ତରିବେ ଯେ ନର ।
ଗୁଣକର୍ମ ଆଦି ତୁମ୍ଭେ ଭଜି ନାନାମତେ
ତେବେ ସୁଦ୍ଧା ନିରୂପଣ କରି ନୁହେଁ ଚିତ୍ତେ ।
ଅସଂଖ୍ୟ ରୂପ ତୁମ୍ଭର ଅସଂଖ୍ୟ ଯେ ନାମ
ବର୍ଣ୍ଣିନେ ତବ ମହିମା କେବା ହେବ କ୍ଷମ ।
ତୁମ୍ଭ ନାମ ଅନନ୍ତ ଯେ ଗୁଣ ଅବତାର
କରିବାକୁ ନିରୂପିତ ସକ୍ଷମ କାହାର ।
ତୁମ୍ଭେ ପ୍ରଭୁ ମନ ବଚନର ଅଗୋଚର
ସର୍ବଲୋକ ସାକ୍ଷୀ ତୁମ୍ଭେ ମହା ମହେଶ୍ୱର ।
କଦାଚିତ କରେ କେହି ପଥ ଅନୁମାନ
ଏମନ୍ତ ପ୍ରଭୁ ଯେ ତୁମ୍ଭେ ପୂର୍ଣ୍ଣ ଭଗବାନ ।
ସର୍ବେ ଚରଣାରବିନ୍ଦ ପରିଚର୍ଯ୍ୟା କରୁଁ
ଏମନ୍ତ ଉପାୟେ ଦୁଃଖ ସିନ୍ଧୁ ତରିପାରୁଁ ।
ଶୁଣିବୁ ସ୍ମରିବୁ ନାମ କରିବୁ କୀର୍ତ୍ତନ
ଜଗତ ମଙ୍ଗଳ ରୂପ କରିବୁ ଚିନ୍ତନ ।
ପରିଚର୍ଯ୍ୟା କର୍ମ କରି ହୃଦେ ଭକ୍ତି ଭରି
ସେହିହେତୁ ଯିବୁ ଘୋର ସଂସାରୁ ନିସ୍ତରି ।
ଆପଣେ ଈଶ୍ୱର ହୋଇ ଲଭିଲେ ଜନମ
ଏତେ ଦିନକେ ହୋଇବ ଭୂଭାର ଖଣ୍ଡନ ।
ଏହି ଭାଗ୍ୟ ଦେଖିବୁ ତୁମ୍ଭର ପାଦପଦ୍ମ
ମହା ଭାଗବତ ମତ୍ତ ମଧୁବ୍ରତ ସଦ୍ମ ।
ଚରଣ ପଙ୍କଜ ସୁଶୋଭିତ କ୍ଷିତି ତଳେ
ଦେଖିବୁ ପଦାରବିନ୍ଦ ଗଗନ ମଣ୍ଡଳେ ।
ଆପଣେ ଈଶ୍ୱର ତୁମ୍ଭେ ଅଜ ନିରଞ୍ଜନ
ନ ଦେଖି ବିନୋଦେ ବିନେ ଜନମ କାରଣ ।

ଯାହାଙ୍କ ମାୟାରେ ହୁଏ ସୃଷ୍ଟି ଯେ ପ୍ରଳୟ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାହାଙ୍କ ହୃଦୟ ।
ସେହି ପ୍ରଭୁ ତୁମ୍ଭେ ଭବେ ହୁଅ ଅବତାର
ସର୍ବେ ଦେଖି ପ୍ରୟୋଜନ କରିବ ବିହାର ।
ମତ୍ସ୍ୟ କୂର୍ମ ଆଦି ନାନା ଅବତାର ଧରି
ଜଗତ ରକ୍ଷଣ ଯେହ୍ନେ କର ଭାର ହରି ।
ସେହିରୂପେ ଏବେ ପୃଥିବୀର ଭାର ହରି
ଭୂତଗଣ ପାଳନ କର ହେ ନିରନ୍ତର ।
ସର୍ବଦା ରହୁ ତୁମ୍ଭର ଚରଣେ ବନ୍ଦନ
ଦେବକୀ ନିମନ୍ତେ ତହୁଁ କଲେ ସମ୍ଭାଷଣ ।
ପରମ ପୁରୁଷ ସାକ୍ଷାତରେ ଭଗବାନ
ତୁମ୍ଭର ଉଦରେ ହେଲ ତାଙ୍କ ଉପାଦାନ ।
କଂସକୁ ତଳେହେଁ ତୁମ୍ଭେ ନକର ଯେ ଭୟ
ସାକ୍ଷାତେ ବୈକୁଣ୍ଠନାଥ ତୁମ୍ଭର ତନୟ ।
ଏହି ରୂପେ ସ୍ତବକରି ସର୍ବ ଦେବଗଣ
ବ୍ରହ୍ମା ଶିବ ଆଦି କରି ହେଲେ ଅନ୍ତର୍ଦ୍ଧାନ ।
ଦେବ ସ୍ତୁତି କୃଷ୍ଣ କଥା ବୁଦ୍ଧି ଅନୁସାରେ
କହିଲି ସକଳ କଥା ମୁଁ ତୁମ୍ଭ ଆଗରେ ।
ହେ ଶୌନକ ଆଦି ସର୍ବ ତାପସ ନିକର
କୃଷ୍ଣ ଜନ୍ମ ସମାଚାର ହୃଦେ ଚିନ୍ତାକର ।
ଏହାକହି ପୌରାଣିକ ସୁତ ମୌନ ହେଲେ
କ୍ଷେତ୍ରମୋହନ ଏହାକୁ ଗୀତରେ ଭଣିଲେ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ
ଦେବସ୍ତୁତି ବର୍ଣ୍ଣନଂ ନାମ
ଏକ ଚତ୍ୱାରିଂଶୋଽଧ୍ୟାୟଃ ।

—:o:—

## ଦ୍ୱିଚତ୍ୱାରିଂଶ ଅଧ୍ୟାୟ

## କୃଷ୍ଣ ଜନ୍ମ ବିବରଣ

ସୁତ ଉବାଚ

ବୋଲନ୍ତି ଯେ ସୁତ ଶୁଣ ଶୁଣ ସର୍ବ ମୁନି
ଅତି ଅଦଭୁତ କୃଷ୍ଣ ଜନମ କାହାଣୀ ।
ପ୍ରକାଶ ହେବାକୁ ପରଂବ୍ରହ୍ମ ଇଚ୍ଛା କଲେ
ସର୍ବ ସୁମଙ୍ଗଳ ଆସି ଏକତ୍ର ମିଳିଲେ ।
ସର୍ବ ଗୁଣ ଯୁତ କାଳ ପରମ ସୁନ୍ଦର
ପୃଥିବୀ ଭରି ହୋଇଲା ଆନନ୍ଦ ମଙ୍ଗଳ ।

ଶୁଣ ବାର ଯୋଗ ତିଥି ନକ୍ଷତ୍ର କରଣ
ପୁଣ୍ୟ ଗୁଣ ପୁଣ୍ୟ ଯୋଗ ସର୍ବ ସୁଲକ୍ଷଣ ।
ଦଶଦିଗ ପରସନ୍ନ ଗଗନ ମଣ୍ଡଳ
ଉଦିତ ତାରକାବଳୀ ମହାନ ମଞ୍ଜୁଳ ।
ନଦ ନଦୀ ସରୋବର ସୁବିମଳ ଜଳ
ବିକଶିତ ଉତପଳ କୁମୁଦ କମଳ ।
ଖଗ ଭୃଙ୍ଗ ନିନାଦିତ ପ୍ରବିକତ ବନ
ସୁଲଳିତ ପୁଣ୍ୟ ଗନ୍ଧ ସୁମନ୍ଦ ପବନ ।
ଜଳିଲ ଯେ ଶାନ୍ତ ହୋଇ ଯଜ୍ଞର ଅନଳ
ଉତ୍ତମ ଜନଙ୍କ ଚିତ୍ତ ହୋଇଲା ନିର୍ମଳ ।
ଆକାଶ ମଣ୍ଡଳେ ବାଜେ ଦୁନ୍ଦୁଭିର ସ୍ୱନ
ସୁର ମୁନିଗଣେ କଲେ ପୁଷ୍ପ ବରଷଣ ।
ଗନ୍ଧର୍ବ କିନ୍ନର ଗୀତ ଗାଆନ୍ତି ମଧୁର
ସ୍ତୁତି କରନ୍ତି ସକଳ ସିଦ୍ଧ ବିଦ୍ୟାଧର ।
ସୁର ବିଦ୍ୟାଧର ନୃତ୍ୟ କରନ୍ତି ଲଳିତ
ମନ୍ଦ ମନ୍ଦ ଜଳଧର ଘନ ଗରଜିତ ।
ଭାଦ୍ରମାସ ଅସିତ ଅଷ୍ଟମୀ ଶୁଭ ଦିନ
ଦ୍ୱିତୀୟ ପ୍ରହର ରାତ୍ରି ରୋହିଣୀ ଲକ୍ଷଣ ।
ରଜନୀ ଅନ୍ଧାର ହୋଇଅଛି ଅତି ଘୋର
ଏମନ୍ତ କାଳେ ଜନ୍ମିଲେ ଜଗତ ଠାକୁର ।
ଅତ୍ୟନ୍ତ ସୁନ୍ଦର ରୂପ ଦେବକୀ ନନ୍ଦନ
ଦେଖି ବସୁଦେବ ହେଲେ ଆନନ୍ଦେ ମଗନ ।
ରାଜୀବଲୋଚନ ନବଘନଶ୍ୟାମ କାୟ
ଶଙ୍ଖ ଚକ୍ର ଗଦା ପଦ୍ମ ବିଶେ ଶୋଭାମୟ ।
କିରୀଟ କୁଣ୍ଡଳ ହାର ବନମାଳା ଦୋଳେ
କୁଞ୍ଚିତ ଅଳକାବଳି ଲଳିତ କପୋଳେ ।
କିଙ୍କିଣୀ କଙ୍କଣ ଶୋହେ ମନ୍ଦ ମନ୍ଦ ହାସ
ମୁଖ ପଦ୍ମେ କେତେ ଶତଶଶୀ ପରକାଶ ।
ଏମନ୍ତେ ବିଚିତ୍ର ଶିଶୁ ଦେଖିଣ ନେତ୍ରରେ
ଚମକିତ ବସୁଦେବ ହେଲେ ସେହିଠାରେ ।
ପୁତ୍ର ନାରାୟଣ ବୋଲି ଜାଣି ତୋଷମନ
କଳେବର ପୁଲକିତ ସର୍ବାଙ୍ଗ କମ୍ପନ ।
ପୁତ୍ର ପ୍ରଭାବ ଦେଖିଣ ଭୟ ପରିହରି
ପ୍ରଣତ କନ୍ଧରେ ଚିତ୍ତ ନିଯୋଜିତ କରି ।
ଭୂମିରେ ପଡ଼ି କରଇ ଦଣ୍ଡ ପରଣାମ
କରଯୋଡ଼ି ସ୍ତୁତି ପାଠ କରେ ଅବିରାମ ।

ବୋଇଲେ ଜାଣିଲି ତୁମ୍ଭେ ଜଗତ ଈଶ୍ୱର
ତୁମ୍ଭେ ପରମ ପୁରୁଷ ପ୍ରକୃତିର ପର ।
ସର୍ବ ବୁଦ୍ଧି ସାକ୍ଷୀ ତୁମ୍ଭେ ଆନନ୍ଦ ସ୍ୱରୂପ
ବିବୁଦ୍ଧି ବିଜ୍ଞାନ ଘନ ପୂର୍ଣ୍ଣବ୍ରହ୍ମ ରୂପ ।
ଅତୁଳ ଏକେଶ୍ୱର ପୁରାଣ ପୁରୁଷ
ଆପଣା ମାୟାରେ କର ଏ ଜଗତ ବଶ ।
ତହିଁରେ ଆପଣେ ପୁଣି ଥାଅ ପରବେଶି
ଶୁଦ୍ଧ ସତ୍ତ୍ୱମୟ ତୁମ୍ଭେ ପୂର୍ଣ୍ଣ ବ୍ରହ୍ମରାଶି ।
ଜଗତର ହୁଏ ଯେଉଁ ଉତ୍ପନ୍ନ ବା ଧ୍ୱଂସ
ତୁମ୍ଭର ତହିଁରେ ବିନାଶ ନୁହେଁ ପୀଡାବାଧ ।
ଜଗତେ ପ୍ରବେଶ କରିଅଛ ନିରନ୍ତର
ତେବେହେଁ ପ୍ରକାଶ କରନାହିଁ ତା ଭିତର ।
ପଞ୍ଚଭୂତ ମୟ ଯେତେ କାରଣ ବିଶେଷେ
ବିଶ୍ୱକୁ ନିର୍ମାଣି ଯେହ୍ନେ ବିଶ୍ୱେ ପରବେଶେ ।
ବିଶ୍ୱ ସଙ୍ଗେ ନୁହେଁ ଯଥା ତାର ଅନୁବନ୍ଧ
ଏହିରୂପେ ତୁମ୍ଭେ ପ୍ରଭୁ ନିତ୍ୟ ପରାନନ୍ଦ ।
ବ୍ୟାପିଅଛ ଏ ଜଗତେ ଜଗତ ନିବାସ
ତୁମ୍ଭେ ଚିତ୍ତ ବୁଦ୍ଧି ମନ କର ପରକାଶ ।
ବ୍ୟାକୁଳ ହୋଇଣ ମୃତ୍ୟୁ ଭୟେ ସାଧୁନର
କିଏ କେଣେ ପଳାବନ୍ତି ନ ପାନ୍ତି ନିସ୍ତାର ।
ତୁମ୍ଭ ପାଦପଦ୍ମ ତଳେ କରିଣ ଆଶ୍ରୟ
ରହିବେ ସୁଖରେ ଜନେ ଖଣ୍ଡି ଭବଭୟ ।
ଉଗ୍ରସେନ ସୁତ କଂସ ଦୁରନ୍ତ ନିଷ୍ଠୁର
ଆମ୍ଭେମାନେ ତା ଭୟରେ ଆକୁଳ ଅନ୍ତର ।
ତୁମ୍ଭେ ଭକତ ବତ୍ସଳ ନାମ କର ଖ୍ୟାତ
ଭୃତ୍ୟଗଣେ ପରିତ୍ରାଣ କର ଜଗନ୍ନାଥ ।
ଯୋଗୀନ୍ଦ୍ରଗଣେ ଯାହାଙ୍କୁ ଚିନ୍ତନ୍ତି ଧିଆନେ
ଚର୍ମ ନେତ୍ରରେ ଦେଖିବୁ ସେ ମୂର୍ତ୍ତି କେସନେ
ପ୍ରତ୍ୟକ୍ଷ ନକର ଏହି ରୂପ ନାରାୟଣ
ଧ୍ୟାନଗମ୍ୟ ରୂପଗୋଟି କର ସମ୍ବରଣ ।
ପ୍ରଭୁ ଆସି ମୋର ଘରେ ହେଲ ଅବତାର
ତୁମ୍ଭଲାଗି କଂସ ମୋତେ ମାରିବ ପ୍ରଭୁ ଡର ।
ଶଙ୍ଖ ଚକ୍ର ଗଦା ପଦ୍ମ ଭୁଜ ବିରାଜିତ
ଏ ରୂପକୁ ପ୍ରଭୁ ତୁମ୍ଭେ ନକର ବିଦିତ ।
ଯେ ପ୍ରଭୁ ପ୍ରଳୟେ ଧରେ ବିଶ୍ୱ ଚରାଚର
ଅଖିଳ ବ୍ରହ୍ମାଣ୍ଡ ଯାକ ଯା ଗର୍ଭ ଭିତର ।

ସେ ପୁଣି ଆଜ ମୋ ଗର୍ଭେ ଅଟନ୍ତି ଉତ୍ପନ୍ନ
ମାନବ ଜାତିରେ ଏହା ଅଟେ ବଡ଼ମାନ୍ୟ ।
ଏମନ୍ତ ଭାବରେ ଦେଖି ପୁତ୍ରର ପ୍ରଭାବ
କଂସ ବନ୍ଦୀଶାଳେ ସେ ଦେବକୀ ବସୁଦେବ ।
ବିନୟେ ସ୍ତବନ କଲେ ଯୋଡ଼ି ବେନିକର
ଶିର ନୁଆଇ ନିଃଶ୍ୱାସ ମାରନ୍ତି ସେ ଘୋର ।
ସ୍ୱେଦଗଳେ ସର୍ବାଙ୍ଗରୁ ସଜଳ ନୟନ
ଆନନ୍ଦେ କରଯୋଡ଼ଣ କରନ୍ତି ସ୍ତବନ ।
"ତୁମ୍ଭେ ଆଦି ଅନ୍ତ ତୁମ୍ଭେ କାରଣ ଅର୍ଣ୍ଣବ
ତୁମ୍ଭେ ବ୍ରହ୍ମ ପୁରୁଷ ପ୍ରଧାନ ଆଦିଦେବ ।
ତୁମ୍ଭେ ଆକାଶ ପାତାଳ ନକ୍ଷତ୍ର ମଣ୍ଡଳ
ତୁମ୍ଭେ ଦେବ ବ୍ରହ୍ମଜ୍ଞାନ ପ୍ରଭୁ ଆଦିମୂଳ ।
ତୁମ୍ଭେ ବ୍ରହ୍ମା ତୁମ୍ଭେ ଶିବ ତୁମ୍ଭେ ଇନ୍ଦ୍ରଦେବ
ତୁମ୍ଭେ ସେ ଧରଣୀଧର ଅନନ୍ତ ମାଧବ ।
ତୁମ୍ଭେ ଅଖିଳ ସଂସାର ମୂଳ ସର୍ବତତ୍ତ୍ୱ
ତୁମ୍ଭେ ଧର୍ମାଧର୍ମ ଆଦି ସକଳ ମହତ୍ତ୍ୱ ।
ତୁମ୍ଭେ ପର୍ବତ କନ୍ଦର ବନ ନଦ ନଦୀ
ତୁମ୍ଭେ ସପତ ସାଗର ହେ କୃପାବାରିଧି ।
ତୁମ୍ଭେ ସର୍ବମୟ ଦେବ ସର୍ବ ଚରାଚର
ଚନ୍ଦ୍ର ସୂର୍ଯ୍ୟ ଜ୍ୟୋତିର୍ମୟ ବିଭୂତି ତୁମ୍ଭର ।
ତୁମ୍ଭେ ଏକା ଗୁଣି ଦିନେ ଆହେ ଜନାର୍ଦ୍ଦନ
ତୁମ୍ଭେ ସ୍ଥିର ମୁକ୍ତ, ସତ୍ତ୍ୱ ରଜ ତମ ଗୁଣ ।
ତୁମ୍ଭେ ସେ ଉତ୍ପତ୍ତି ସ୍ଥିତି ପ୍ରଳୟ କାରଣ
ତୁମ୍ଭେ ଯଜ୍ଞାହୁତି ବେଦ ଶାସ୍ତ୍ରାଦି ପୁରାଣ ।
ସତ୍ତ୍ୱ ଗୁଣେ ଶ୍ୱେତ ବର୍ଣ୍ଣ ଧରି ପାଳୁଥାଅ
ଜଗତ ଆଧାର ମାତ୍ର ଅଟେ ତୁମ୍ଭ ଦେହ ।
ରଜୋ ଗୁଣରେ ଆପଣେ ରକ୍ତ ବର୍ଣ୍ଣ ଧରି
ଇଚ୍ଛା ମାତ୍ରେ ଅଦଭୁତେ ସର୍ବ ସୃଷ୍ଟି କରି ।
ତମୋ ଗୁଣେ କୃଷ୍ଣ ବର୍ଣ୍ଣ କରି ଯେ ଧାରଣ
ମହାଭୀମ ମୂରତିରେ କର ସଂହାରଣ ।
ତୁମ୍ଭେ ସ୍ୱୟଂ ପରଂବ୍ରହ୍ମ ଦେବ ନାରାୟଣ
ଅଭୟ ଚରଣ ପଦ୍ମେ ପଶିଲୁଁ ଶରଣ ।"
କେଉଁ ପୁଣ୍ୟ ପୂର୍ବ ଜନ୍ମେ କରିଥିଲି ମୁହିଁ
ମୋଗର୍ଭେ ଆସି ଜନ୍ମିଲ ଜଗତର ସାଇଁ ।
ମୋର କେଉଁ ଭାଗ୍ୟବଳଶ ଆହେ ଚକ୍ରଧର
ଅବତରିଲ ଶ୍ରୀହରି କହ ସମାଚର ।

କରଯୋଡ଼ି କରୁଅଛି ମୁହିଁ ନିବେଦନ
ଏ ଚତୁର୍ଭୁଜ ରୂପକୁ କରି ସମ୍ବରଣ ।
ଜଗି ରହିଛନ୍ତି ସେ ଦୁର୍ଦ୍ଦାନ୍ତ କଂସ ଦୂତ
ଚଳାଇ ଯିବାକୁ କାହିଁ ନ ଦିଶଇ ପଥ ।
ରାଜା କଂସାସୁର ଉଗ୍ରସେନର ତନୟ
ଏହିକ୍ଷଣି ଆସିବ ସେ ଦୁଷ୍ଟ ଦୁରାଶୟ ।
ଦେଖାଇବ ଭୟ କରେ ଖଡ୍‌ଗ ଧରି ତାର
କି ବୁଦ୍ଧି କରିବି କହ ଲାଗେ ବଡ଼ ଡର ।
ଥରକୁ ଥର ଯେ ଏହିପରି ହେ ଶ୍ରୀବତ୍ସ
ଛଅ ପୁତ୍ରଙ୍କୁ ମୋହର ବଧ କରିଅଛି ।
ସେହି ଦୁଷ୍ଟ କଂସାସୁର ଅତି ଦୁରାଚାର
ଏ ରୂପକୁ ଯେସ୍ନେ ନ ଦେଖଇ ତାହା କର ।
ଏତେ ବୋଲି ବସୁଦେବ ଦୈବକୀ ସହିତେ
କରଯୋଡ଼ି ସ୍ତବ କରି ପଡ଼େ ପାଦ ଗତେ ।
ପିତା ମାତାଙ୍କର ଏ କାତର ଭାଜ ଦେଖି
ପ୍ରବୋଧ ବଚନେ କହନ୍ତି ସେ ପଦ୍ମଆଖି ।
"ନ କାନ୍ଦ ତାତ ଜନନୀ ହୁଅ ସଚେତନ
କି ଭାବନା ତାର, ଯାର ପୁତ୍ର ପ୍ରିୟ ଧନ ।
ଅନିତ୍ୟ ସଂସାରେ ଅଟେ ପୁତ୍ର ପ୍ରିୟ ଧନ
ହରି ଯାର ପୁତ୍ର ତାର କି ଘୋର ବନ୍ଧନ ।
ସାମାନ୍ୟ ତ ନୁହେଁ ତୁମ୍ଭେ ଜନନୀ ମୋହର
ତିନିବାର ହୋଇଛ ମୋ ଜନନୀ ପିଅର ।
ସ୍ୱାୟମ୍ଭୁବ ମନ୍ୱନ୍ତରେ ସୁଦେବ ସୁମନ୍ତ
ସୁତପ ନାମରେ ହେଲେ ଶ୍ରେଷ୍ଠ ପ୍ରଜାପତି ।
ପୃଶ୍ନୀ ନାମେ ଅଟ ମାଗୋ ଘରଣୀ ତାଙ୍କର
ଦୁହେଁ କରୁଥିଲେ ମୋର ଲଗି ଯୋଗାଗ୍ନିର
ବିଷୟ ଐଶ୍ୱର୍ଯ୍ୟ ତେଜି ବ୍ରହ୍ମାର ଆଦେଶେ
ପୁତ୍ର ଲାଗି ପୂଜ ମୋତେ ତପସ୍ୱୀଙ୍କ ବେଶେ ।
ଦୁଷ୍କର ତପସ୍ୟା ଦୁହେଁ କଲ ନିରନ୍ତର
ଶୀତ ବାତ ଗ୍ରୀଷ୍ମ ତାପ ସହିଲ ବିସ୍ତର ।
ସର୍ବ ବରଦାତା ମୁଁ ଯେ ହୋଇଣ ଉଦୟ
ବୋଇଲି କି ବାଞ୍ଛା ତବ ଏବେ ମୋତେ କହ
ଶ୍ୟାମ ରୂପେ ଦେଖି ମୋତେ କହିଲ ସେକ୍ଷଣ
ପୁତ୍ରରହ ପାଉଁ ଯେସ୍ନେ ପ୍ରଭୁ ତୋ ସମାନ ।
ତୁମ୍ଭେ ଦୁହେଁ ନହୋଇଲ ମାୟାରେ ମୋହିତ
ମୁକ୍ତି ପଦ ନ ମାଗିଲ ହେଲ ଯେ ବଞ୍ଚିତ ।

ମୁକ୍ତ ପଦେ ନାହିଁ ପୁତ୍ର-ପ୍ରେମ ସୁଖମୟ
ତେଣୁ ମାୟା ମୋହିତ ନ ହେଲ ଅତିଶୟ ।
ସେକାଳେ ତହୁଁ ଯେ ମନେ ମନେ ମୁଁ ଚିନ୍ତିଲି
ତ୍ରିଭୁବନେ ମୋହପରି କାହେ ନ ଦେଖିଲି ।
ତେଣୁ ପୁତ୍ରରୂପେ ଯାଇ ହୋଇଲି ଉତ୍ପନ୍ନ
ପୃଶ୍ନିଗର୍ଭ ନାମ ମୋର ହୋଇଲଟି ଜାଣ ।
ତହୁଁ ଆର ଜନମେ କଶ୍ୟପ ପ୍ରଜାପତି
ହୋଇଥିଲେ ଏହି ବସୁଦେବ ମହାମତି ।
ଦେବଙ୍କ ଜନନୀ ନାମ ଅଦିତି ସୁନ୍ଦର
ବାମନ ରୂପରେ ମୁହିଁ ହେଲି ଅବତାର ।
ମହୀଭାର କରିବାକୁ ଏବେ ଯେ ହରଣ
ଶିଷ୍ଟଙ୍କ ପାଳନ ହେତୁ ମୋହର ଜନମ ।
ନରବେଶେ ନ ଘୁଞ୍ଚିବ ମନୁଷ୍ୟର ଜ୍ଞାନ
ସେ କାରଣୁଁ ଏହି ରୂପ ଦେଖାଇଲି ଜାଣ ।
ବ୍ରହ୍ମ ଭାବ ଧରି କିବା ପୁତ୍ର ଭାବ ଧରି
ମୋତେ ସ୍ନେହକଲେ ମୁକ୍ତ ହୋଇବ ସୁନ୍ଦର
ଆଉ ଏକ କଥା ମୋରେ କର ଅବଧାନ
ନନ୍ଦ ନାମେ ଅଛି ଗୋପେ ଏକଇ ସଜନ ।
ତା ନାରୀ ଯଶୋଦା କନ୍ୟା ପ୍ରସବ କରିଛି
ବର୍ତ୍ତମାନ ଅଚେତନ ହୋଇ ପଡ଼ିଅଛି ।
ସେଇଠାରେ ମୋତେ ନେଇ ଥୁଅ ବେଗକରି
ଏଥିଠାରେ ଆଣି ରଖ ନନ୍ଦର କୁମାରୀ ।
ଏତେକ କହିଣ ହରି ହୋଇଲେ ମଉନ
ମାୟାରେ ବାଳକ ହୋଇ ରହିଲେ ତକ୍ଷଣ ।
ତହୁଁ ବସୁଦେବ ନିଜ ପୁତ୍ର ଘେନି କୋଳେ
ବନ୍ଦିଶାଳ ଦ୍ୱାରେ ଆସି ସଧ୍ୱଣ୍ଡେ ମିଳିଲେ ।
ମହାମାୟା ସେକାଳରେ କହିଲେ ଏପରି
ପଡ଼ିଛନ୍ତି ନିଦ୍ରା ଅଚେତନରେ ପ୍ରହରୀ ।
ବଡ଼ ବଡ଼ ଲୁହାର କବାଟ ଦୃଢ଼ତର
ପ୍ରତ୍ୟେକ ଲୁହା କଳଣୀ ଶିକୁଳି ଲୁହାର ।
ସବୁ ଖଣ୍ଡ ଖଣ୍ଡ ହୋଇ ସଭିଁର ପଡ଼ିଲା
ରବି କରଣେ ଅନ୍ଧାର ଯେସନ୍ତେ ଘୁଞ୍ଚିଗଲା ।
ସେହିପରି ବସୁଦେବ ମନେ ଚିନ୍ତାକଲା
ଗୋକୁଳକୁ ଯିବା ପଥ ନିର୍ମଳ ଦିଶିଲା ।
ମନ୍ଦ ମନ୍ଦ ହୋଇ ଗରଜନ୍ତି ମେଘମାଳେ
ବିଜୁଳି କଡ଼ା ଏ ପଥ ଆଲୋକେ ଚଞ୍ଚଳେ ।
ବାସୁକୀ ଆସିଣ ଫଣା ଟେକେ ଛତ୍ରପରି
ବସୁଦେବଙ୍କ କୋଳରେ ଛନ୍ତି ଶିଶୁ ହରି ।
ଛିଟକେ ଜଳ ନ ପଡ଼ଇ ବସୁଦେବ ଶିରେ
ଗୋପପୁର ମାର୍ଗେ ଯେହ୍ନେ ଚଳେ ଧୀରେ ଧୀରେ
ତରଙ୍ଗେ ଖେଳଇ ଜଳ ଗର୍ଭର ଯମୁନା
ପଥ ଗୁଡ଼ି ଦେଲା ନଦୀ ହୋଇ କମ୍ପମାନା ।
ତହୁଁ ବସୁଦେବ ଚଳେ ନନ୍ଦର ମନ୍ଦିରେ
ନିଦେ ଅଚେତନ ଗୋପ ଗୋପୀ ଘରେଘରେ
ନନ୍ଦ ଘରେ ବସୁଦେବ ହେଲେ ପରବେଶ
ଶୟନ ସ୍ଥାନେ ଯଶୋଦା ଥୋଇ ହୃଷିକେଶ ।
ସେ ବକୁଳ କନ୍ୟାଟିକୁ ଘେନିଣ କୋଳରେ
ସେହି ପରକାରେ ପୁଣି ବାହୁଡ଼ଇ ଘରେ ।
ଦେବକୀ ଶୟନ ସ୍ଥାନେ କନ୍ୟା ସମର୍ପିଲି
ଚରଣେ ତାହାର ଲୌହ ଶିକୁଳି ଲଗିଲି ।
ତଦନ୍ତେ ଶୟନ କଲା ବସୁଦେବ ପୁଣ
ତେବେ ନ ଜାଣେ ଯଶୋଦା ଏମନ୍ତ ଘଟଣ ।
ଜନ୍ମିଲା ଅପତ୍ୟ ବୋଲି ମାତ୍ର ଏହା ଜାଣେ
ପୁତ୍ର କି ଦୁହିତା ଜାତ ଏକଥା ନ ଜାଣେ ।
ଏକେତ ପ୍ରସବ ଦୁଃଖେ ପାଇଛି ବେଦନା
ତହିଁ କି ଯେ ମହାମାୟା କଲେ ଅଚେତନା ।
ଏଥିଅନ୍ତେ ଆନ ଗାଥା କରିବି ଗାୟନ
କ୍ଷେତ୍ରମୋହନ ଗୀତରେ କରଇ ରଚନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ କୃଷ୍ଣ ଜନ୍ମ
ସମାଚାର ବର୍ଣ୍ଣନେ ନାମ
ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ।



## ତ୍ରିଚତ୍ୱାରିଂଶ ଅଧ୍ୟାୟ

### କୃଷ୍ଣଙ୍କର ଜନ୍ମଲୀଳା କଥନ

ସୂତ ଉବାଚ

ବୋଲନ୍ତି ଯେ ସୂତ ମୁନି ଶୁଣ ମୁନିଗଣ
ଏଥିଅନ୍ତେ ସମାଚାର ବିଚିତ୍ର ଘଟଣ ।
ଲୁହାର କବାଟ ଆଗପରି ଲାଗିଗଲା
ଲୁହାର ଶୃଙ୍ଖଳ ସଙ୍ଗେ କଳଣୀ ପଡ଼ିଲା ।

ଦେବକୀ ବସୁଦେବଙ୍କ ଚରଣେ ଶିକୁଳି
ନିବିଡ଼ ବନ୍ଧନ ହୋଇଗଲା ଆଗଭଳି ।
ଏହିପରି ଦ୍ୱାରବନ୍ଧ ହେଲା ବନ୍ଦୀଘର
କେହି ନ ଜାଣନ୍ତି ଏହା କଲେ ମାୟାଧର ।
ମହାମାୟାଙ୍କର ଏହା ଅପୂର୍ବ ଭିଆଣ
କାହାକୁ ଗୋଚର ନୁହେଁ କଳ୍ପିତ ପ୍ରମାଣ ।
ସେହିକାଳେ ଯେ ବଜୁଳି କନ୍ୟା ଉଚ୍ଚସ୍ୱରେ
କୁଆଁ କୁଆଁ ରାବଦେଲା ଅତି ଉଚ୍ଚସ୍ୱରେ ।
ସେ କାନ୍ଦଣା ଶବଦକୁ କର୍ଣ୍ଣେ ଶୁଣି କରି
ଚିଆଁଇ ଉଠିଲେ ସବୁ ଦୁଆର ପ୍ରହରୀ ।
ତ୍ୱରିତେ ଯେ ଦ୍ୱାରୀମାନେ ଧାଇଁଣ ଯେ ଗଲେ
ଦାରୁଣ କଂସ ସମ୍ମୁଖରେ ଯାଇ ଜଣାଇଲେ ।
ଦେବକୀ ପ୍ରସବ କଥା ଶୁଣନ୍ତେ ଶ୍ରବଣେ
ଚମକିତ ହୋଇ କଂସ ଉଠିଲା ତକ୍ଷଣେ ।
ବୋଲେ ନଜାଣେ କହେବ ମୋର ପ୍ରତିକାର
ଯମ ଜନମିଲା ମୋତେ କରିବ ସଂହାର ।
ହୃଦୟେ ବ୍ୟାକୁଳେ ଅତି କମ୍ପଇ ଅଧିକ
ଖସିଲା ମଥାର ପାଗ ବନ୍ଧନ ଭୂଷଣ ।
ଧାଇଁଯାଇ ପ୍ରବେଶିଲା ସୂତିକା ଗୃହରେ
ତାହାକୁ ଦେଖି ଦେବକୀ କମ୍ପେ ଥରହରେ ।
କାକୁସ୍ଥେ ବିନତି କରି ଦେବକ-ନନ୍ଦିନୀ
କଂସକୁ କହଇ ନେତ୍ରୁ ଢ଼ାଳି ଅଶ୍ରୁପାଣି ।
ମୋ ବଚନ ଶୁଣ ଭାଇ କଂସ ନୃପବର
ଦୟାବହି ମୋହପ୍ରତି ତୁମ୍ଭେ ଏହିଥର ।
ଏହି କନ୍ୟା ଗୋଟି ଭାଇ ମୋରେ ଦିଅ ଦାନ
ମାରିଲୁତ ଆଗ ପଛ ନଅଟି ନନ୍ଦନ ।
ନ ମାର ଏ କନ୍ୟାଟିକୁ ଘେନ ନିବେଦନ
କନ୍ୟା ବଧିହେ କି ହେବ ତୋର ପ୍ରୟୋଜନ
ଯାହା କଲୁ କଲୁ ତହିଁ ମୋର ନାହିଁ ବ୍ୟଥା
ଏ କନ୍ୟାଟିକି ନ ମାର ଘେନ ମୋର କଥା
ଗର୍ଭ ଶେଷ କନ୍ୟା ଗୋଟି ରକ୍ଷାକରି ଭାଇ
ଏହାକୁ ନମଣ ଭାଇ ଶତ୍ରୁ ବୋଲି ତୁହି ।
ଏମନ୍ତେ ବିନୟ ବାଣୀ ଦୈବକୀ କହିଲା
ତଥାପି ପାପିଷ୍ଠ ଚିତ୍ତେ ଦୟା ନ ହୋଇଲା ।
ବିସ୍ତରି ଭର୍ତ୍ସନା କରି କଂସ ଦୂରାଚାର
ଟାଣି ଘେନିଗଲା କନ୍ୟା କୋଳୁ ଦୈବକୀର

ବେନି ଚରଣ ଧରିଣ କଂସ ସେ କନ୍ୟାର
ବ୍ରହ୍ମ ଶିଳାପରେ ନେଇ କଚାଡ଼େ ପାମର ।
ଶୂନ୍ୟମାର୍ଗେ ଗଲା କନ୍ୟା କଂସ ହସ୍ତୁ ଖସି
ବିଦ୍ୟୁତପରି ଆକାଶମାର୍ଗେ ଗଲା ଦିଶି ।
ଆଚମ୍ବିତେ ଦିବ୍ୟଦେବୀ ମୂର୍ତ୍ତି ହେଲା ତହିଁ
ଅଷ୍ଟଭୁଜେ ଅସ୍ତ୍ରଶସ୍ତ୍ର ମାନ ବିରାଜଇ ।
ନାନାବିଧ ରତ୍ନ ଭୂଷଣେ ଶ୍ରୀଅଙ୍ଗ ଭୂଷିତା
ବିଚିତ୍ର ବସନ ସେହି ଦିଶନ୍ତି ଶୋଭିତା ।
ଗନ୍ଧର୍ବ କିନ୍ନର ଯୋଗୀ ସିଦ୍ଧ ମୁନିଗଣେ
ନୃତ୍ୟ ଗୀତ ସ୍ତୁତି କଲେ ପୁଷ୍ପ ବରଷଣେ ।
କୌତୁକେ ପୂଜିଲେ ସର୍ବେ ଉପହାର ଦେଇ
ଜୟ ଜୟ ଶବଦରେ ଉଚ୍ଚୁଳଇ ମହୀ ।
ଥକାହୋଇ ଦୁଷ୍ଟ କଂସ ଦେଖଇ ଆକାଶେ
ହୃଦୟ ଥରଇ ତାର ସେହି ଅବକାଶେ ।
ଉଚ୍ଚସ୍ୱରେ ମହାମାୟା ଦେବୀ କଂସେ ଡାକି
ବୋଇଲେରେ ଦୁଷ୍ଟ ମୋତେ ମାରି ପାରିବୁକି
ଆରେ ଆରେ ଦୁରାଚାର ଦୁଷ୍ଟ ଖଳମତି
ମୋର ଅନିଷ୍ଟ କରିବ କାହାର ଶକତି ।
ମୋରେହିଂସା କରିବା ତୋ କିସ ପ୍ରୟୋଜନ
ଯେ ତୋତେ ମାରିବ ଲଭିଲାଣି ସେ ଜନମ ।
ଦୁଃଖିତ ପ୍ରାଣୀଙ୍କି କଷ୍ଟ ନ ଦିଅ ତୁ ବୃଥା
ତୋର ଶତ୍ରୁ ଜନ୍ମିଲାଣି ଆଜ ଶୁଣ ଯଥା ।
ଗୋକୁଳେ ନନ୍ଦର ଘରେ ବଢ଼ିବ ସେ ଜାଣ
ନାନା ଲୀଳା କରି ଶେଷେ ଘେନିବ ତୋ ପ୍ରାଣ
ସାବଧାନ ହୋଇ ଥାଅ ଆଜଠାରୁ ତୁହି
ତୋର ମହା କାଳରୂପୀ ପରବ୍ରହ୍ମ ସେହି ।
ଏତେ ବୋଲି ମହାମାୟୀ ଦେବୀ ଭଗବତୀ
ଦେଖୁ ଦେଖୁ ଅନ୍ତର୍ଦ୍ଧାନ ହୋଇଲେ ଝଟତି
ବଜୁଳି ପରାୟେ ଦେବୀ ହୋନ୍ତେ ଅନ୍ତର୍ଦ୍ଧାନ
ଚଢ଼ଦିଗେ ଗୃହେଁ କଂସ ହୋଇ ହତଜ୍ଞାନ ।
ଦେବୀର ଶୂନ୍ୟବାଣୀକି କଂସ ଶୁଣି କର୍ଣ୍ଣେ
ବିଶେଷେ ଚକିତ ହୋଇ ଭାବେ ମନେ ମନେ
ଏ କି ଆଚମ୍ବିତ ବାଣୀ ଶୁଣିଲି ଶ୍ରବଣେ
ମୋହର ମରଣ ଭେଦ କହିଲା କେ ଜଣେ ।
ସେହି କନ୍ୟା ଗୋଟି ମୋର ହସ୍ତୁ ଖସିଗଲା
ଅଷ୍ଟଭୁଜା ରୂପେ ଶୂନ୍ୟେ ଜ୍ୟୋତି ପ୍ରକାଶିଲା।

ସେହି ଦେଖା ଜଗଦମ୍ବା ମହାଭୟଙ୍କରୀ
କେଣେଗଲା ମୋ ମରଣ କଥା କହିକରି ।
ଜାଣିଲି ମରଣ ମୋର ନିକଟ ହେଲାଣି
ଭଉଣୀ ଭଣୋଇ ଠାରେ ହିଂସାକଲି ଜାଣି ।
କଂସାସୁର ଏତେପାଞ୍ଚି ତହୁଁ ଚଳିଗଲା
ଦେବକୀ ବସୁଦେବଙ୍କ ସନ୍ନିଧେ ମିଳିଲା ।
ଫେଡ଼ିଦେଲା ସେ ଦୁହିଁଙ୍କ ବନ୍ଧନ ଶିକୁଳି
ବିନୟ ବଚନେ ତାଙ୍କୁ ଲୁହେ ଭଳି ଭଳି ।
ଶୁଣହେ ଭଗିନୀ ପତି ଶୁଣ ମୋ ଭଗିନୀ
କିବା ଗତିହେବ ମୋର ନ ପାରୁଛି ଜାଣି ।
କେବଳ ମୁହିଁ ରାକ୍ଷସ ବଡ଼ ଦୁରାଚାର
ବ୍ୟର୍ଥେ ଏତେ ପୁତ୍ର ବଧ କରିଲି ତୁମ୍ଭର ।
ନିର୍ଲଜ ନିର୍ଦ୍ଦୟ ମୁହିଁ କଲି ହୀନକର୍ମ
ହିଂସା କରିଲି ତୁମ୍ଭଙ୍କୁ ତେଜି ଧର୍ମ କର୍ମ ।
ଜୀବନ୍ତେ ଥାଇଣ ମୁହିଁ ହେଲି ବ୍ରହ୍ମଘାତୀ
ନ ଜାଣେ ମଲେ ମୋହର ହେବ କେଉଁ ଗତି
ଜାଣୁ ଜାଣୁ ବହୁ ଅନ୍ୟାୟରେ ଭାଗୀ ହେଲି
ଦୈବବାଣୀ ଶୁଣି ଏତେ ଅପକର୍ମ କଲି ।
ପୁତ୍ରର ନିମନ୍ତେ ଆଉ ନକର କ୍ରନ୍ଦନ
ଭାଗ୍ୟରେ ଯା ଥିଲା ତାହା ଘଟିଗଲା ଜାଣ ।
ଅଦୃଷ୍ଟ ଅଧୀନ ଜୀବ ଅଦୃଷ୍ଟେ ମିଳାଏ
ଅଦୃଷ୍ଟରେ ପୁନରପି ବିଚ୍ଛେଦ କରାଏ ।
ମାଟିର ନିର୍ମିତ ପାତ୍ର ନାନା ପରକାର
କେତେ ହୁଏ କେତେ ଭାଙ୍ଗେ ମାଟି ମାତ୍ର ସାର
ମୃତ୍ତିକାର ଯେସନେ ନୁହେଁ ଉତ୍ଥାନ ପତନ
ନିମରେ ନିଜନ୍ତେ ଆତ୍ମା କରୁଛି ବଖାଣ ।
ସବୁ ଦେହରେ ହୁଅଇ ଉତ୍ପତ୍ତି ପ୍ରଳୟ
ଏହା ନ ବୁଝିଣ ହୁଏ ମତି ବିପର୍ଯ୍ୟୟ ।
ଆପଣାର ଦେଖେ ସେହୁ ଜନମ ମରଣ
ସେହି କାରଣେ କରନ୍ତି ସଂସାରେ ଭ୍ରମଣ ।
ଏହା ବିଚାରି ହେ ଭଗ୍ନି ଭଣୋଇ ମୋହର
ସନ୍ତାନ ନିମନ୍ତେ ଆଉ ଶୋଚନା ନକର ।
ସେମାନଙ୍କ ଅଦୃଷ୍ଟରେ ଥିଲା ଯା ଲିଖନ
ମାମୁଁ ହାତରେ ଭଣଜା ହୋଇଲେ ନିଧନ ।
ଯାର ଯେସନେ ଅଦୃଷ୍ଟ ତାର ତେସନେ ଫଳ
ଏହା ବିଚାରି ମୋ ଦୋଷ କ୍ଷମ କ୍ଷେ ସକଳ ।
ଯେ ମୋତେ ମାରିବ ମୁହିଁ ମାରିବି ତାହାରେ
ଯାବତ ଏମନ୍ତ ବୁଦ୍ଧି ହୃଦରେ ସଞ୍ଚରେ ।
ତାବତ ନ ଘୁଞ୍ଚେ ବଧ ବଧକ ଯେ ଭାବ
ବସୁଦେବ ଜାଣ ତୁମ୍ଭେ ଭଲ ମନ୍ଦ ସବ ।
ଚରଣ ଧରିଲା କଂସ କହିଣ ଏସନ
କାନ୍ଦି ଲାଗିଲା ଅଶେଷ ଭୟ ପାଇ ମନ ।
ବସୁଦେବ ଦେଖି ସେ କଂସର ଦୁଃଖ ଶୋକ
ଦେବକୀ ତୁଲେ ପ୍ରବୋଧି କହଇ ଏମନ୍ତ ।
ଭଲ କଥା କହିଲ ହେ କଂସ ବୀରବର
ଭେଦ ବୁଦ୍ଧି ଅଜ୍ଞମାନେ ହୁଏ ନିରନ୍ତର ।
ଏକ ଦେହ କରେ ଆଉ ଦେହର ବିନାଶ
ସୁଖ ଦୁଃଖ ଆଦି ଯେତେ ମନର ବିଳାସ ।
ଜୀବର ତହିଁରେ ସୁଖ ଦୁଃଖାଦି ନ ଧରେ
ଅଜ୍ଞାନୀ ଜନ ଯେ ଶତ୍ରୁ ମିତ୍ର ଭେଦ କରେ ।
ଶୁଣ କଂସ ମହାରାଜା ଶୋକ ପରିହର
ସନ୍ତୋଷ ହୋଇଣ ତୁମ୍ଭେ ଯାଅ ନିଜପୁର ।
ଏସନ ପ୍ରବୋଧ ବାଣୀ କହୁଁ ବସୁଦେବ
ମନରୁ କଂସ ବରଜି ଆପଣାର କ୍ଷୋଭ ।
ଆପଣାର ଅନ୍ତଃପୁରେ ପ୍ରବେଶ ହୋଇଲା
ପଲଙ୍କ ଉପରେ ଶୋଇ ନିଦ୍ରା ନ ଆସିଲା ।
ରଜନୀ ପ୍ରଭାତ ହୋଇନ୍ତେ ଉଠିଣ ବହନେ
ମନ୍ତ୍ରୀଗଣ ଡକାଇ ଆଣିଲା ତତକ୍ଷଣେ ।
ଆଦ୍ୟପ୍ରାନ୍ତ କରି ସବୁ କଥା ତାଙ୍କୁ କହି
ଭାଳି ବସିଲା ସେ କଂସ ହେଠ ମୁଖ ହୋଇ ।
ଯେତେ ସେନାପତି ମାନେ ସେ କଂସର ଥିଲେ
ବୀରଦର୍ପ ଦେଖାଇ ସେ ଦମ୍ଭରେ କହିଲେ ।
ଏ ଛାର କଥାକୁ କମ୍ପା ଏତେ ଚିନ୍ତାକର
ତୁମ୍ଭେ ଯେ ପ୍ରତାପ ନିଜ ବିକ୍ରମ ପାସୋର ।
ରିପୁ ଜନ୍ମହେଲା ଯଦି ସତ୍ୟ ହୁଏ ଏହା
କରିବୁ ତା ପ୍ରତିକାର କମ୍ପା କର ଭୟ ।
ଆଜିଠୁଁ ଯେ ଆମ୍ଭେ ଦଶ ଦିବସ ମଧ୍ୟରେ
ମାରିବୁ ସକଳ ଶିଶୁ ପ୍ରତି ଘରେ ଘରେ ।
ଏ ଛାର କଥାକୁ ମନେ ନକର ଭାବନ
ବାହୁବଳେ ଜିଣିଅଛ ପରା ତ୍ରିଭୁବନ ।
ଯଦି ଲୁହ ଆସିବେ ସାଜିଣ ଦେବଗଣ
ବସୁଜ୍ଞାନ ନ କରନ୍ତି ଦେବତା ବୋଲିଣ ।

ଇନ୍ଦ୍ରାକର ଯେ କାଳେ ଧନୁରେ ଦିଅ ଗୁଣ
ସର୍ବ ଅମରେ ସଭ୍ରମେ ପଡ଼ନ୍ତି ତକ୍ଷଣ ।
କି ହୁଏ ଦେବ ସମାଜେ ତୁମ୍ଭେ କି ନଜାଣ
ଧନୁରେ ଟଙ୍କାର ଦେଲେ କଂସ ତତକ୍ଷଣ ।
ତୁମ୍ଭେ ଯଦି ରାଜା ବାଣ ବରଷଣ କର
ପଳାଇ ଯାନ୍ତି ଭୟରେ ସକଳ ଅମର ।
କାନ୍ତସ୍ୱରେ କହେ କେହି ଯୋଡ଼ି କରପଦ
ଅସ୍ତ୍ର ତେଜଣ କେହି କରେ ଦଣ୍ଡବତ ।
କେହି କେଶ ବାନ୍ଧେ କେହି କଚ୍ଛା ମୁକୁଳାଏ
ନମାର ନମାର ବୋଲି ତ୍ରାସେ କେ ପଳାଏ
ରଥୀ ହୋଇ ଯଦି ରଥ ଛାଡ଼ଇ ସଂଗ୍ରାମେ
ଅସ୍ତ୍ର ତେଜି ଭୟେ ଯେବା ଲୋଟଇ ପ୍ରଣାମେ
ସଂଗ୍ରାମେ ବିମୁଖ ହୋଇ ଯେ ଜନ ପଳାଏ
ଧନୁ ଗୁଣ ଭାଙ୍ଗେ ଯେବା ସମର ନ ରୁହେଁ ।
ତା ଉପରେ ତୁମ୍ଭେ ଅସ୍ତ୍ର ନ କର ପ୍ରହାର
ତୁମ୍ଭେ ଯେ ବୀରଙ୍କ ଧର୍ମ ଜାଣ ନୃପବର ।
ଦେବଗଣ କି କରିବେ ସେ ଯେ ଭୟାକୁଳ
ଦର୍ପ ଦେଖାଇବା କାଳେ ଶୂର ସେ ସକଳ ।
ବିଷ୍ଣୁ ବୋଲି ତିଳେକ ନ କର ବସ୍ତୁ ଜ୍ଞାନ
ସର୍ବ ହୃଦେ ଗୁପ୍ତେ ରହି ନୁହ ବିଦ୍ୟମାନ ।
ଶିବ କିବା କରିପାରେ ଶ୍ମଶାନେ ବସନ୍ତି
କି କରି ପାରେ ଅଳପ ବଳ ଶଚୀପତି ।
କି କରି ପାରେ ସେ ବ୍ରହ୍ମା ରହିଛି ଧିଆନେ
ତପ ଛାଡ଼ି ଅନ୍ୟ ମନ ନାହିଁ ତାର ଧ୍ୟାନେ ।
ଏହା ବୋଲି ଉପେକ୍ଷିବା ପାଇଁ ନ ଯୋଗାଏ
ଶତ୍ରୁ ଉଦ୍ଧାରଣେ ତେବେ କରିବୁ ଉପାୟେ ।
ଆଜ୍ଞାଦିଅ ଆମ୍ଭେ ସର୍ବେ କିଙ୍କର ତୁମ୍ଭର
ଆମ୍ଭେ ସର୍ବେ ରିପୁ କୁଳ କରିବୁ ସଂହାର ।
ଅଙ୍ଗେ ବ୍ୟାଧି ହୁଏ ଯଦି ପ୍ରଥମ ସମୟେ
ନ ଘୁଞ୍ଚାଇଲେ ସେ ବ୍ୟାଧି ବଢ଼େ ଅତିଶୟେ
ପଛେ ଯେହ୍ନେ ସେହି ବ୍ୟାଧି ନଘୁଞ୍ଚେ ଝଟତି
ଶତ୍ରୁ ବଳବନ୍ତ ହେଲେ ଜିଣି ନ ପାରନ୍ତି ।
ସକଳ ଦେବଙ୍କ ମୂଳ ବିଷ୍ଣୁ ଯାର ନାମ
ସତ୍ୟ, ଧର୍ମ ଯଥା ତାର ନଥାଇ ବିଶ୍ରାମ ।
ଗୋ-ବ୍ରାହ୍ମଣ ତପ ଯଜ୍ଞ ବେଦ ବ୍ରତ ଯଥା
ଏ ସବୁ ଧର୍ମର ମୂଳ ବିଷ୍ଣୁ ରହେ ତଥା ।
ବ୍ରହ୍ମବାଦୀ ଯଜ୍ଞଶୀଳ ତପସ୍ୱୀ ବ୍ରାହ୍ମଣ
ହବିର୍ଦ୍ଧାମୀ ଯେତେ ଗାଈ ଛନ୍ଦ ଋଷିଗଣ ।
ଏସବୁ ମାରିବୁ ଆମ୍ଭେ ପାଇବୁ ବା ଯହିଁ
ପାଇଲେ ବିଷ୍ଣୁଙ୍କୁ ନଷ୍ଟେ ମାରିବୁ ଗୋଡ଼ାଇ
ଗୋ-ବ୍ରାହ୍ମଣ ତପ ଯଜ୍ଞ ବିଷ୍ଣୁର ଶରୀର
ତାକୁ ମାରିବାକୁ ଏହି ବୁଦ୍ଧି କର ସ୍ଥିର ।
ଅସୁରଙ୍କୁ ସେହି ବିଷ୍ଣୁ ହିଂସା ସବୁବେଳେ
ସକଳ ବେଦର ମୂଳ ଅଟେ ସେ ଶସ୍ତଳେ ।
ଏହି ଉପାୟେ ବିଷ୍ଣୁଙ୍କୁ ମାରି ତ ପାରିବା
ସର୍ବେ ମିଳି ଗୃଳ ଗୋରୁ ବିପ୍ରଙ୍କୁ ମାରିବା ।
ପାପମତି କଂସ ପାପ ବେଳାରେ ଉତ୍ପତ୍ତି
କୁମନ୍ତ୍ରୀଙ୍କ ମନ୍ତ୍ରଣାରେ ଢ଼ାଳିଦେଲା ମତି ।
ଦୁଷ୍ଟ ଦୈତ୍ୟ ଯେତେ ତାଙ୍କ କନ୍ଦଳରେ ପ୍ରୀତି
ଚଉଦିଗେ ପେଶି ଦେଲା ଦୁଷ୍ଟ ସେନାପତି ।
ପାପମତି ସେ ସକଳେ ଅତି ଦୁଷ୍ଟ ଖଳ
ଗୋ-ବ୍ରାହ୍ମଣ ସାଧୁ ଯେତେ ହିଂସିଲେ କେବଳ
ପରମାୟୁ ଶିରୀ ଆଉ ବେଦ ଧର୍ମ ଯଶ
ଇହଲୋକ ପରଲୋକ ସମ୍ପଦ ସର୍ବସ୍ୱ ।
ଏ ସବୁ ଯାହାଙ୍କ ନାଶ ହେବ ଏକାବେଳେ
ସେ ଯେ ଗୋରୁ ବ୍ରାହ୍ମଣ ବୈଷ୍ଣବ ହିଂସାକଲେ
କଂସର ସକଳ ନାଶ ହେବ ଯେ ସକାଶେ
ଦେବ ଦ୍ୱିଜେ ହିଂସାକରି ମଜ୍ଜିଲେ ସର୍ବଂଶେ
କୃଷ୍ଣ ଗୁଣ ସମୁଦିତ ଅସୁର ମନ୍ତ୍ରଣା
ପ୍ରକାଶିଲେ ସୁତ ମହାଋଷି ମହାମନା ।
କୃଷ୍ଣଜନ୍ମ ଲୀଳା କଥା ଭାଷା ଅନୁବାଦେ
ବ୍ରହ୍ମ ପୁରାଣେ କ୍ଷେତ୍ରବାସୀ ପଦ ବାନ୍ଧେ ।
ଏଥିଅନ୍ତେ ନନ୍ଦୋତ୍ସବ ବିଧାନ ପ୍ରକାଶ
ଶ୍ରବଣ କର ସୁଜନେ ପାପ ତାପ ନାଶ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ କୃଷ୍ଣ
ଜନ୍ମଲୀଳା କଥନଂ ନାମ
ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ



## ଚତୁର୍ଦ୍ଧାତ୍ରିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ବ୍ରତ କଥା

ଶୌନକ ଉବାଚ

ଭାଦ୍ରେ ମାସେ କୃଷ୍ଣପକ୍ଷେ
ଯସ୍ମାଜ୍ଜାତୋ ହରି ସ୍ୱୟମ୍
ତଦହଂ ଶ୍ରୋତୁ ମିଚ୍ଛାମି
କଥୟସ୍ୱ ମହାମୁନେ ।
ଶୌନକ ପୁଚ୍ଛନ୍ତି ସୂତ ମହର୍ଷିଙ୍କ ପ୍ରତି
ଆହେ ତ୍ରିକାଳଜ୍ଞ ଋଷି କହନ୍ତୁ ସମ୍ପ୍ରତି ।
ଭାଦ୍ରମାସ କୃଷ୍ଣ ପକ୍ଷେ ଶ୍ରୀହରି ଆପଣେ
ଅବତୀର୍ଣ୍ଣ ହୋଇଥିଲେ ଯେବଣ କାରଣେ ।
ହେ ସୂତ ମହର୍ଷି ତାହା ଶୁଣିବାକୁ ଆମ୍ଭେ
ଅତ୍ୟନ୍ତ ଶ୍ରଦ୍ଧାରେ ଇଚ୍ଛା କରୁଅଛୁଁ ଏବେ ।
ସେ କଥା ବିସ୍ତାର କରି କହନ୍ତୁ ଆପଣ
ଜନ୍ମ ସାର୍ଥକ ମଣିବୁଁ ଶୁଣି ସେ ବିଧାନ ।

ସୂତ ଉବାଚ

ଅଥ ଭାଦ୍ରାସିତାଷ୍ଟମ୍ୟାଂ
ପ୍ରାଦୁରାସୀତ୍ ସ୍ୱୟଂ ହରିଃ
ବ୍ରାହ୍ମଣା ପ୍ରାର୍ଥିତଃ ପୂର୍ବଂ
ଦେବକ୍ୟାଂ କୃପୟା ବିଭୁଃ ।
ରୋହିଣ୍ୟାକ୍ଷେ ଶୁଭ ତିଥୌ
ଦୈତ୍ୟାନାଂ ଯଶ ହେତବେ
ମହୋତ୍ସବଂ ପ୍ରକୁର୍ବୀତ
ଯନ୍ତସ୍ତଦ୍ଦିନେ ଶୁଭେ ।
ରାଜନୈ ବ୍ରାହ୍ମଣୈ ବୈଶ୍ୟୈଃ
ଶୂଦ୍ରୈ ଶୈବ ସ୍ୱ ଶକ୍ତିତଃ
ଉପବାସ ପ୍ରକର୍ତ୍ତବ୍ୟୋ
ନ ଭୋକ୍ତବ୍ୟଂ କଦାଚନ ।
କୃଷ୍ଣ ଜନ୍ମଦିନେ ଯସ୍ତୁ
ଭୁଙ୍କ୍ତେ ସାତୁ ନରାଧମଃ
ନିବସେନ୍ନରକେ ଘୋରେ,
ଯାବଦାହୂତ ସମ୍ପ୍ଳବମ୍ ।
ବୋଲନ୍ତି ଯେ ସୂତ ମୁନି ଶୁଣ ତପୋଧନ
ପୂର୍ବ କାଳରେ ବ୍ରହ୍ମାରେ ପ୍ରାର୍ଥିତ ହୋଇଣ ।
ଦୈତ୍ୟମାନଙ୍କୁ ବିନାଶ କରିବା ନିମନ୍ତେ
ଭାଦ୍ରମାସ କୃଷ୍ଣପକ୍ଷେ ରୋହିଣୀ ନକ୍ଷତ୍ରେ ।
ଶୁଭ ଅଷ୍ଟମୀ ତିଥିରେ ଆପଣେ ଶ୍ରୀହରି
ଦେବକୀ ଦେବୀଙ୍କ ଗର୍ଭେ ଥିଲେ ଅବତରି ।
ଏଣୁ ଏହି ଶୁଭ ଦିନେ ଯତ୍ନ ସହକାରେ
ମହା ମହୋତ୍ସବ କରାଇବେ ନାରୀ ନରେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରାଦି ସକଳେ
ନିଜ ନିଜ ଶକ୍ତି ମତେ ଶ୍ରଦ୍ଧା ଭକ୍ତିବଳେ ।
ଜନ୍ମାଷ୍ଟମୀ ଉପବାସ କରିବେ ଅବଶ୍ୟ
ବୃଦ୍ଧି ହେବ ଧନଜନ ପରମାୟୁ ଯଶ ।
ଶ୍ରୀକୃଷ୍ଣଙ୍କ ଜନ୍ମ ଦିନେ ଯେ ଅଧମ ଜନ
ବ୍ରତ ବିଧିକ ନ ପାଳି କରିବ ଭୋଜନ ।
ସେ ମହାପାତକୀ ମହାପ୍ରଳୟ ପର୍ଯ୍ୟନ୍ତେ
ଘୋର ନରକରେ ବାସ କରିବ ଦେହାନ୍ତେ ।

ଶୌନକ ଉବାଚ

ଶୌନକ ପୁଚ୍ଛନ୍ତି ପୁଣି ଏହେ ପୌରାଣିକ
ବ୍ରତ ଉପବାସ ବିଧି କହ କରି ଠିକ ।
ସବୁ ବ୍ରତଠାରୁ ଜନ୍ମାଷ୍ଟମୀ ବ୍ରତ ସାର
ଜୟନ୍ତୀ ଯୋଗରି ଫଳ ସାମାନ୍ୟ ତାହାର ।
ଉପବାସ ଜୟନ୍ତୀର ସଂଯମର ଫଳ
ପୂଜାର ବିଧାନ ଯାହା କହ ସେ ସକଳ ।
ଉପବାସ ପୂରଣର ବିଧାନ ଯେସନ
ବାସନା ପୂରଣ କରି କହ ସେ କଥନ ।

ସୂତ ଉବାଚ

ଶୌନକ ଆଦି ମୁନିଙ୍କ ଅନୁରାଗ ଭରେ
କହନ୍ତି ସୂତ ମହର୍ଷି ପରମ ସାଦରେ ।
ସପ୍ତମୀ ତିଥି ଦିବସେ ବ୍ରତକାରୀ ଜନ
ବେଳାଏ ହବିଷ୍ୟ ଅନ୍ନ କରିବେ ଭୋଜନ ।
ଅରୁଣ ଉଦୟ ହେବା କାଳେ ପରଦିନ
ପ୍ରାତଃକୃତ୍ୟ ସାରଣ ସଂକଳ୍ପ ଆଚରଣ ।
ବ୍ରତ ଉପବାସେ ଯେହ୍ନେ କୃଷ୍ଣ ହେବେ ପ୍ରୀତ
ବ୍ରତୀ ଜନ ବ୍ୟବହାର କରିବେ ତେମନ୍ତ ।
ଅନ୍ୟ ଅନ୍ୟ ଦିନେ ସ୍ନାନ ପୂଜନେ ଯେସନ
କୋଟି ଗୁଣ ଫଳ ଭାଦ୍ର ଅଷ୍ଟମୀ ତେସନ ।
ସେ ତିଥିରେ ପିତୃଗଣେ କଲେ ଜଳ ଦାନ
ତାର ଫଳ ଶତ ଗୟାଶ୍ରାଦ୍ଧର ସମାନ ।

ସୂତିକା ମନ୍ଦିର ନିର୍ମାଣିବେ ସ୍ନାନ କରି
ରଖିବେ ଯେ ଲୌହଅଂଶ ଅଗ୍ନିଦେବ କରି
ନାନାଦ୍ରବ୍ୟ ଭୁଲେ ନାଡ଼ୀ ଛେଦନ କରିବ
ପୂର୍ଣ୍ଣ ଦେହପୂର୍ଣା ଏକ ଧାତ୍ରୀକୁ ଡାକିବ ।
ସ୍ଥାପିବେ ପୂଜାର ଦ୍ରବ୍ୟ ଷୋଡ଼ଶୋପଚାରେ
ଅଷ୍ଟଫଳ ମିଷ୍ଟ ଦ୍ରବ୍ୟ ନାନା ଉପହାରେ
ନାନା ଜାତି ଫଳ ଦ୍ରାକ୍ଷା ଡାଳିମ୍ବ ଶ୍ରୀଫଳ
କୁଷ୍ମାଣ୍ଡ ଜାମୁ ଜମ୍ବୀର ଫଳାଦି ସକଳ ।
ପାଦ୍ୟ ଅର୍ଘ୍ୟ ଆଚମନ ମଧୁପର୍କ ସାର
ସ୍ନାନୀୟ ବସ୍ତ୍ର ଆସନ ତଳ୍ପ ମନୋହର ।
ଧୂପ ଦୀପ ଗନ୍ଧ ପୁଷ୍ପ ନୈବେଦ୍ୟ ସମ୍ଭାର
ତାମ୍ବୁଳ ଅନୁଲେପନ ମାଲ୍ୟ ଅଳଙ୍କାର ।
ଶୁଦ୍ଧ ବସନ ପିନ୍ଧିଣ ପାଦ ପଖାଳିଣ
ସ୍ୱସ୍ତି ଉଚ୍ଚାରିବେ ଶୁଦ୍ଧ ଆସନ ବସିଣ ।
ପଞ୍ଚ ଦେବତାଙ୍କ ଷଷ୍ଠ ସ୍ଥାପନ ଯେ କରି
ନିର୍ମଳ ମାନସେ ପୂଜା ବିଧିକି ଉଚ୍ଚାରି ।
କୃଷ୍ଣଙ୍କୁ ପୂର୍ଣ୍ଣ କୁମ୍ଭରେ କରି ଆବାହନ
ବସୁଦେବ ଦେବକୀଙ୍କୁ କରିବେ ଅର୍ଚ୍ଚନ ।
ଯଶୋଦାନନ୍ଦ ରୋହିଣୀ ଷଷ୍ଠୀ ବଳରାମ
ବସୁଧା ପୂଜା କରିବେ ଉଚ୍ଚାରଣ ନାମ ।
ପୂଜିବେ ମହାଲକ୍ଷ୍ମୀଙ୍କୁ ଯଥା ବିଧିମତେ
ଦକ୍ଷ ଗର୍ଗ ବ୍ରହ୍ମା ଶିବ ଦୁର୍ଗାଙ୍କ ସହିତେ ।
ସ୍ନାନ ଦେବାଷ୍ଟମୀ ଆଉ ବଳ ବିଭୀଷଣ
ଦେବଗଣ ଆଦି ଅଶ୍ୱତ୍ଥାମ ହନୁମାନ ।
ଶୁକ ସନକାଦି ବ୍ୟାସ କୃଷ୍ଣ ଦ୍ୱୈପାୟନ
ଭକତିଭରେ କରିବେ ଏହାଙ୍କୁ ପୂଜନ ।
ସମସ୍ତଙ୍କୁ ଯଥାବିଧି ପ୍ରଣାମ କରିବେ
ବିଧାନେ କୃଷ୍ଣଙ୍କ ଧ୍ୟାନ ଯତନେ ପଢ଼ିବେ ।
ତାହାପରେ ସାଷ୍ଟାଙ୍ଗରେ କରି ନମସ୍କାର
ପୂଜା ପୁଷ୍ପ ଦେବେ ବିପ୍ର ନିଜ ମସ୍ତକର ।
ପୁନର୍ବାର କରିବେ ସେ କୃଷ୍ଣଙ୍କର ଧ୍ୟାନ
ଅତି ଚମତ୍କାର ସାମବେଦ ଧ୍ୟାନ ମାନ ।
ପୂର୍ବେ ଧ୍ୟାନ କରୁଥିଲେ ଧାତା ଯେ କୁମର
ସେହି ଧ୍ୟାନ କହୁଛି ମୁଁ ଶୁଣ ମୁନିବର ।
ବାଳ ନୀଳାମ୍ବୁଜ ବର୍ଣ୍ଣ ଋଚି ଅତିଶୟ
ମୁଖାମ୍ବୁଜ ହାସ୍ୟ ରୂପ ପୂର୍ଣ୍ଣ ବ୍ରହ୍ମମୟ ।

ସ୍ତବନୀୟ ଧର୍ମ ବ୍ରହ୍ମା ଈଶାନ ଆବର
ଧ୍ୟାନ ସାଧ୍ୟ ଋଷିନ୍ଦ୍ର ମୁନିନ୍ଦ୍ର ଦେବଙ୍କର ।
ସିଦ୍ଧ ମନୁ ଯୋଗେନ୍ଦ୍ର ଆବର ଯେତେ ଜନ
ସାକ୍ଷୀ ସ୍ୱରୂପ ତୁମ୍ଭଙ୍କୁ କରନ୍ତି ଭଜନ ।
ଅଖିଳ ଭୁବନ ସାର ଶାନ୍ତ ସନାତନ
ନମସ୍ତେ ନମସ୍ତେ ପ୍ରଭୁ କମଳ ନୟନ ।
ଏହି ଧ୍ୟାନେ ପୁଷ୍ପ ଦେବ କଳସ ଉପରେ
ମନ୍ତ୍ର ପୂର୍ବକ ପୂଜନ କରିବ ତା ପରେ ।
ସ୍ତୁତି ଦ୍ରବ୍ୟ ବେଦମନ୍ତ୍ର କରି ଉଚ୍ଚାରଣ
କ୍ରମେ ସବୁ ମନ୍ତ୍ର ଏବେ ଶୁଣ ତପୋଧନ ।
ରତନେ ନିର୍ମିତ ସର୍ବ ଶୋଭାଢ଼୍ୟ ଆସନ
ବିଚିତ୍ର ରଚିତ ଏହା କରନ୍ତୁ ଗ୍ରହଣ ।
ହେ ଦେବ ଦେବକୀ ସୁତ ମଥୁରା ଈଶ୍ୱର
ଗ୍ରହଣ କରନ୍ତୁ ଦ୍ରବ୍ୟ ଆସନ ଆମ୍ଭର ।
ବିଶ୍ୱକର୍ମାଙ୍କ ନିର୍ମିତ ସୂକ୍ଷ୍ମ ବସନ
ପ୍ରତପ୍ତ ସ୍ୱର୍ଣ୍ଣ ଖଚିତ ଘେନ ଭଗବାନ ।
ପାଦ ପକ୍ଷାଳନ ଜଳ ହୋମ ପାତ୍ରେ ସ୍ଥିତ
ପବିତ୍ର ନିର୍ମଳ ପାଦ୍ୟ ଘେନ ଜଗନ୍ନାଥ ।
ମଧୁ ସର୍ପି ଦଧି କ୍ଷୀର ଶର୍କରା ସଂଯୁତ
ସ୍ୱର୍ଣ୍ଣ ପାତ୍ରେ ମଧୁପର୍କ ଘେନ ହେ ଅଚ୍ୟୁତ ।
ଦୁର୍ବାକ୍ଷତ ଶୁକ୍ଳ ପୁଷ୍ପ ଜଳ ସମନ୍ୱିତ
ଚନ୍ଦନାଗୁରୁ କସ୍ତୁରୀ ସୁଗନ୍ଧ ସହିତ ।
ଗ୍ରହଣ କରନ୍ତୁ ଭବ ଦୁଃଖ ବିଭଞ୍ଜନ
ଭକ୍ତିରେ ଉଦକ ଅର୍ଘ୍ୟ କରେ ନିବେଦନ ।
ସ୍ୱାଦୁ ସୁଶୀତଳ ତୋୟ ଗନ୍ଧେ ସୁବାସିତ
ଘେନ ଏ ଆଚମନୀୟ ପରମ ପବିତ୍ର ।
ବାସ ତୈଳ ଗନ୍ଧଦ୍ରବ୍ୟ ମିଶ୍ରିତ ସୁନ୍ଦର
ଧାତ୍ରୀ ଦ୍ରବ୍ୟେ ଏ ସ୍ନାନୀୟ ଘେନ ଚକ୍ରଧର ।
ରତନ ଜଡ଼ିତ ଆଚ୍ଛାଦିତ ସୂକ୍ଷ୍ମ ବାସ
ଏ ଶଯ୍ୟା ଗ୍ରହଣ କର ପ୍ରଭୁ ଶ୍ରୀନିବାସ ।
କସ୍ତୁରୀ ରସରେ ପୂର୍ଣ୍ଣ ଚୂର୍ଣ୍ଣ ବୃକ୍ଷସାର
ଘେନ ଗନ୍ଧବାରି ଗନ୍ଧ ବ୍ୟାପିତ ସୁସାର ।
କୁଙ୍କୁମ ଅଗୁରୁ ଯୁକ୍ତ ସୁଗନ୍ଧ କୁସୁମ
ଗ୍ରହଣ କରହେ ପ୍ରଭୁ ଶ୍ରୀପୁରୁଷୋତ୍ତମ ।
ସୁମିଷ୍ଟ ଫଳ ଗ୍ରହଣ କର ଜଗନ୍ନାଥ
ଶର୍କରା ସ୍ୱସ୍ତି ସଂଯୁକ୍ତ ମଧୁର ସହିତ ।

ଶର୍କରା ଶୀତଳ ନୀର ଅତି ସୁବାସିତ
କରୁଛି ବନ୍ତ ଯେନ ଜଗତର ନାଥ ।
ଲଡ଼୍ଡୁ ଆବର ମୋଦକ ଘୃତ ଦଧି କ୍ଷୀର
ନିବେଦନ କରେ ଯେନ ଜଗତ ଈଶ୍ୱର ।
ଧୂପ ଦୀପ ନଇବଦ୍ୟ ଗନ୍ଧାଦି ସହିତ
ସର୍ବ ଦେବଙ୍କର ପ୍ରିୟ ଯେନ ନନ୍ଦସୁତ ।
ଘୋର ଅନ୍ଧକାର ନାଶେ ଦୀପ୍ତ ସୁପ୍ରକାଶ
ପ୍ରଦୀପ ଗ୍ରହଣ କର ଜଗତର ଈଶ ।
କର୍ପୂର ମିଶ୍ରିତ ସୁ ପବିତ୍ରଜଳ ମାନ
ସର୍ବଜୀବଙ୍କ ନିମନ୍ତେ ଶୀତଳ ବିଧାନ ।
ରତ୍ନ ପାତ୍ରେ ଭରି ଯତ୍ନେ କରେ ନିବେଦନ
ପାନ ଅର୍ଥେ ଏହି ଜଳ ଯେନ ଭଗବାନ ।
ସୁବର୍ଣ୍ଣ ପାତ୍ରେ କର୍ପୂର ମିଶ୍ରିତ ତାମ୍ବୁଳ
ନିବେଦନ କରେ ଯେନ ହେ ନନ୍ଦ ଦୁଲାଳ ।
କୁଙ୍କୁମ କସ୍ତୁରୀ ଗୋରଚନା ଗୁଆ ଚୂର୍ଣ୍ଣ
ଗ୍ରହଣ କର ହେ ପ୍ରଭୁ ଏ ଅବିର ଚୂର୍ଣ୍ଣ ।
ନାନା ପୁଷ୍ପରେ ସୁଗନ୍ଧି ସୁମନ ଗୁନ୍ଥି ଛି
ଶ୍ରୀଅଙ୍ଗେ ମଣ୍ଡିତ ହୁଅ ଯଶୋଦାର ବଛି ।
ଏହିମତେ ନାନାଦ୍ରବ୍ୟ କରି ନିବେଦନ
ସକଳ କରିବ ଜଗନ୍ନାଥଙ୍କୁ ଅର୍ପଣ ।
ଅମ୍ଳଫଳ ନିବେଦନ କରିବ ଭକ୍ତିରେ
ମାତ୍ର ନାରିକେଳ ଫଳ ନିଷେଧ ଶାସ୍ତ୍ରରେ ।
ଅଷ୍ଟମୀରେ ନାରକେଳ ଗୋମାଂସ ସମାନ
ଏଣୁ ଶ୍ରୀହରିଙ୍କୁ ନ କରିବ ନିବେଦନ ।
ନାନା ପରକାର ମିଷ୍ଟ ଲବଣୀ ସହିତେ
ଭକ୍ତିଭାବେ ନିବେଦନ କରିବ ବିହିତେ ।
ଅଷ୍ଟମୀରେ ଅମ୍ଳଫଳ କଲେ ନିବେଦନ
କୃଷ୍ଣଙ୍କ ଦୟାରୁ ବଂଶ ବୃଦ୍ଧି ହୁଅନ୍ତି ଜାଣ ।
ଦେବୀ ଦେବୀ ମାନଙ୍କୁ ଯେ ପୂଜିବ ହରଷେ
ପୁଷ୍ପାଞ୍ଜଳି ଦିଅ ଦେବ ଅର୍ଚ୍ଚନାର ଶେଷେ ।
ନନ୍ଦ ଯଶୋଦା ଦେବକୀ ବସୁଦେବ ଭୁଲେ
ପ୍ରଭୁଙ୍କ ପିତାମାନଙ୍କୁ ଆରାଧିବ ଭଲେ ।
ଅଷ୍ଟ ସଖୀଙ୍କ ସଙ୍ଗରେ ଶ୍ରୀରାଧା ଦେବୀଙ୍କୁ
ବନ୍ଦନା କରିବ ଷୋଳ ସହସ୍ର ଗୋପୀଙ୍କୁ ।
ସୁବଳ ସୁଦାମ ଆଦି ଗୋପ ଶିଶୁ ଯେତେ
ବିହରନ୍ତି ବୃନ୍ଦାବନେ ଶ୍ରୀକୃଷ୍ଣଙ୍କ ସାଥେ ।

ଯଥା ବିଧିରେ କରିବ ତାହାଙ୍କୁ ପୂଜନ
ଆଉ ଯେତେ ଗୋପ ଗୋପୀ କରିବ ଅର୍ଚ୍ଚନ
ନନ୍ଦ ମହାରାଜାଙ୍କର ଭବ ବନ୍ଧୁଗଣେ
ଉପନନ୍ଦ ବସୁନନ୍ଦ ସୁନନ୍ଦକୁ ତେହ୍ନେ ।
ଭକ୍ତି ସହକାରେ ତାଙ୍କୁ ପୂଜନ କରିବ
ଆଉ ସର୍ବ ଗୋପାଳଙ୍କୁ ବିଧାନେ ପୂଜିବ ।
ନନ୍ଦଙ୍କର ପୁରୋହିତ ଗର୍ଗ ମହାମୁନି
ତାହାଙ୍କୁ ପୂଜା କରିବ ଭକ୍ତିଭାବ ଘେନି ।
କାର୍ତ୍ତିକେୟ ଗଜାନନ ଈଶ୍ୱର ପାର୍ବତୀ
ଏହାଙ୍କୁ ପୂଜା କରିବ ଭକତିରେ ଅତି ।
ଦଶଦିଗପାଳ ନବଗ୍ରହଙ୍କ ସହିତେ
ଶେଷଦେବ ସୁଦର୍ଶନ ପୂଜିବ ବିହିତେ ।
ଷଷ୍ଠୀ ଦେବୀ ମହାଲକ୍ଷ୍ମୀ ଆଉ ସରସ୍ୱତୀ
ପୂଜିବ ଅ[illegible] ଯତନେ ଦେବୀ ଭଗବତୀ ।
ନାନାବିଧ ଉପଚାରେ ଭିଆଇ ଉତ୍ସବ
ଆନନ୍ଦେ ଠୁଳ କରିବ ଯେତେ ପୂଜା ଦ୍ରବ୍ୟ ।
ପରଂବ୍ରହ୍ମ ଶ୍ରୀହରିଙ୍କ ଜନ୍ମବିଧି କଥା
ଶ୍ରବଣ କରିବେ ପୂଜା ଶେଷ କାଳେ ଯଥା ।
କୃଷ୍ଣଭକ୍ତ ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଇଣ
ତୋଷିବେ ତାହାଙ୍କ ଯଥା ବିଧି ବ୍ରତୀଜନ ।
ଶୁଦ୍ଧ ଆସନରେ ରାତ୍ର କାଳେ ବସିକରି
ନାମ କୀର୍ତ୍ତନ କରିବେ ବନ୍ଦନେ ଉଚ୍ଚାରି ।
ଆନନ୍ଦରେ ଜାଗରଣେ ନିଶି ପୁହାଇବେ
ପ୍ରଭାତେ ସ୍ନାନ ମାର୍ଜନେ ଶୁଚିମନ୍ତ ହେବେ ।
ନିତ୍ୟକର୍ମ ସାରି ବ୍ରତୀ ପବିତ୍ର ଶରୀରେ
କୃଷ୍ଣଙ୍କୁ ପୁଣି ଅର୍ଚ୍ଚନା କରିବେ ବିଧିରେ ।
ତଦନନ୍ତେ କରାଇବେ ବ୍ରାହ୍ମଣ ଭୋଜନ
ଯାହାକି ଶ୍ରୀକୃଷ୍ଣେ ହୋଇଥିବ ନିବେଦନ ।
ନିବେଦିତ ଦ୍ରବ୍ୟ ବିନେ ଅଦ୍ଭୁଣିଆ ଯାହା
ଭୋଗ ନ ଦେଇ ବ୍ରାହ୍ମଣେ ନ ଅର୍ପିବେ ତାହା
ଅତିଥି ସତ୍କାର ଆଉ ଗୋଧନ ସେବନ
ବୈଷ୍ଣବ ଜନେ ସେବିବେ ବ୍ରତକାରୀ ଜନ ।
ଦରିଦ୍ର ଜନମାନଙ୍କୁ ପ୍ରସାଦ ଭୁଞ୍ଜାଇ
ହରିନାମ ସଂକୀର୍ତ୍ତନେ ମାନସ ମଜ୍ଜାଇ ।
ଏହିପରି ମହା ମହୋତ୍ସବ ଭିଆଇବେ
ଜନ୍ମାଷ୍ଟମୀ ବ୍ରତ ବିଧି ଯତନେ ପାଳିବେ ।

## ଶୌନକ ଉବାଚ

ଶୌନକ ବୋଇଲେ ଶୁଣ ସୂତ ତପୋଧନ
ଜନ୍ମାଷ୍ଟମୀ ବ୍ରତ ବିଧି ଶୁଣିବାକୁ ମନ ।
ଯାହା କର୍ତ୍ତବ୍ୟ ଅଟଇ ବ୍ରତକାରୀଙ୍କର
ଦୟାବନ୍ତ ବାରେ ମୋର ତା ପ୍ରକାଶ କର ।
ବେଦ ପୁରାଣ ସଂହିତା ଶାସ୍ତ୍ର ଅନୁସାରେ
ଯେପରି ବିଧାନ ଅଛି ବ୍ରତ ବିଷୟରେ ।
ତାହା ସକଳ ବୁଝାଇ କହ ପୌରାଣିକ
ଆଉରି ପଚାରୁ ଅଛୁ ତୁମ୍ଭଙ୍କୁ ଏତେକ ।
ଜନ୍ମାଷ୍ଟମୀ ଦିବସରେ ଅନ୍ନାଦି ଭୁଞ୍ଜିଲେ
କେଉଁ ପାପ ହୁଏ ତାହାଙ୍କୁ ବ୍ୟକ୍ତିଙ୍କର ଭଲେ ।

## ସୂତ ଉବାଚ

କହନ୍ତି ସେ ସୂତ ମୁନି ଶୁଣ ମୁନିବର
ବ୍ରତୀଜନମାନେ ଆଚରିଲେ ସେ ପ୍ରକାର ।
ବ୍ରତର ପୂର୍ବ ଦିନରେ ସଂଯମ ରହିବେ
ଦିବସରେ ଥରେ ମାତ୍ର ହବିଷ୍ୟ ଭୁଞ୍ଜିବେ ।
ରାତ୍ରେ ଦୁଗ୍ଧ ଫଳ ମୂଳ କରିବେ ଆହାର
ଏମନ୍ତେ ସପ୍ତମୀ ଦିନ ଯିବ ବ୍ରତୀଙ୍କର ।
ବ୍ରତ ଆରମ୍ଭ ଦିନରେ ପ୍ରାତଃସନ୍ଧ୍ୟା ସାରି
ଆହ୍ନିକାଦି ନିତ୍ୟକର୍ମ ସମାପନ କରି ।
ଉତ୍ତରୀୟ ଅଙ୍ଗୁରୀୟ କରିବେ ଧାରଣ
ଆଚମନାନ୍ତେ କରିବେ ଶ୍ରୀବିଷ୍ଣୁ ସ୍ମରଣ ।
ଶ୍ରୀଲକ୍ଷ୍ମୀ ନାରାୟଣଙ୍କୁ କରି ଆରାଧନା
ବିଧାନେ ସୂର୍ଯ୍ୟଙ୍କୁ ଅର୍ଘ୍ୟ କରିବେ ପ୍ରଦାନ ।
ସ୍ୱସ୍ତି ବାଚନ ସହିତେ ସାକ୍ଷ୍ୟ ମନ୍ତ୍ର ପଢ଼ି
ସଂକଳ୍ପ ଅନ୍ତେ ଆନନ୍ଦେ ବେନି କରଯୋଡ଼ି
ଶ୍ରୀବିଷ୍ଣୁଙ୍କ ଉଦ୍ଦେଶ୍ୟରେ କୃତାଞ୍ଜଳି ହୋଇ
ପ୍ରାର୍ଥନା କରିବେ ମନ୍ତ୍ର ଉଚ୍ଚାରଣ ତହିଁ ।
ପୂଜାଦି ଭୋଜ୍ୟ ଉତ୍ସର୍ଗ କାର୍ଯ୍ୟ ଶେଷ ଅନ୍ତେ
ଡୋର ଧାରଣ କରିବେ ଯଥା ବିଧିମତେ ।
ବ୍ରତର କଥା ଶ୍ରବଣ ଦେବତା ପ୍ରଣାମ
ଇଷ୍ଟଦେବତା ଶ୍ରୀଗୁରୁ ଚରଣ ବନ୍ଦନ ।
ପୁରୋହିତ ବିପ୍ରେ ନମସ୍କାର ଆଚରିବେ
ବ୍ରତଦିନ ବିଧିମତେ ସଂଯମ ରହିବେ ।
ପୂଜାର ବିଧାନ ଅର୍ଦ୍ଧରାତ୍ରେ ବଢ଼ାଇବେ
ଶ୍ରୀକୃଷ୍ଣଙ୍କ ଧ୍ୟାନ ଯଥା ବିଧାନେ କରିବେ ।
ଗନ୍ଧ ପୁଷ୍ପ ଧୂପ ଦୀପ ନୈବେଦ୍ୟ ସମ୍ଭାରି
ଶକ୍ତି ଅନୁସାରେ ଯୋଗାଡ଼ିବେ ବ୍ରତୀନର ।
ଆରାତ୍ରିକ ବନ୍ଦାପନା ପୁଷ୍ପାଞ୍ଜଳି ଦେଇ
ଜପିବେ ଶ୍ରୀକୃଷ୍ଣ ମନ୍ତ୍ର ଏକମନ ହୋଇ ।
ବିଧାନେ କରିବେ ବ୍ରତୀ ଜପ ସମର୍ପଣ
ଇଚ୍ଛାହେଲେ ଆଚରିବେ ହୋମକର୍ମ ଜାଣ ।
ତିଳ ସହିତରେ ଗବ୍ୟ ଘୃତରେ ଅବଶ୍ୟ
ଆହୁତି ଦାନ କରିବେ ବାର ଅଷ୍ଟାବିଂଶ ।
କୃଷ୍ଣଙ୍କ ଶୟନ ଚିନ୍ତା କରିବେ ମାନସେ
ସକଳ କହିଛୁ ଏଥି ପୂର୍ବେ ତୁମ୍ଭ ପାଶେ ।
ଅର୍ଦ୍ଧରାତ୍ରି ପରେ ଚନ୍ଦ୍ର ଉଦୟ ହୁଅନ୍ତେ
ତାହାଙ୍କୁ ଅର୍ଘ୍ୟ ପ୍ରଦାନ କରିବେ ବିହିତେ ।
ସର୍ବ ଶେଷରେ କରିବେ ନାମ ସଂକୀର୍ତ୍ତନ
ଏହିପରି ଜାଣ ବ୍ରତୀଙ୍କର କାର୍ଯ୍ୟମାନ ।
ପୂଜାର ଯେ ମୁଖ୍ୟକାଳ କହୁଅଛୁ ଶୁଣ
ବେଦଶାସ୍ତ୍ରେ ଯାହା ହୋଇଅଛି ନିରୂପଣ ।
ଅଷ୍ଟମୀର ଅର୍ଦ୍ଧରାତ୍ରେ ରୋହିଣୀ ନକ୍ଷତ୍ର
ଯୁକ୍ତ ହେଲେ ମୁଖ୍ୟ କାଳ ସେହି ଅଟେ ମାତ୍ର
ପରମବ୍ରହ୍ମ ଶ୍ରୀହରି ସେହି ସମୟରେ ।
ଜନମ ଗ୍ରହଣ କରି ଥିଲେ ଅବନୀରେ ।
ଏହାକୁ ଜୟନ୍ତୀ ବୋଲି କହନ୍ତି ହେ ମୁନି
ଏଥି ଉପବାସୀ ହେବେ ବ୍ରତକାମୀ ପ୍ରାଣୀ ।
ଜାଗରଣ ଭୁଲେ ବ୍ରତ ଉପବାସ କଲେ
ଷାଠିଏ ଜନ୍ମର ପାପ ନାଶହୁଏ ଭଲେ ।
ସକଳ ଦୁଃଖ ସନ୍ତାପ ହୁଅଇ ହରଣ
ଏଥିରେ ସଂଶୟ ନାହିଁ ଆହେ ତପୋଧନ ।
ସପ୍ତମୀ ସହିତେ ଥିଲେ ଅଷ୍ଟମୀ ସଂଯୁକ୍ତ
ତାହା ବର୍ଜ୍ଜନ ନ କରିବେ ବ୍ରତକାମୀ ମାତ୍ର ।
ରୋହିଣୀ ନକ୍ଷତ୍ର ବିନେ ଅଷ୍ଟମୀ ପାଳିଲେ
ନିଷ୍ଫଳ ହୁଅଇ ବ୍ରତ ବେଦ ଶାସ୍ତ୍ରେ ବୋଲେ ।
ସେ ତିଥି ଅନ୍ତେ ସ୍ମରଣ କରି ଶ୍ରୀହରିଙ୍କି
ସମାପନ କରି ଦେବ ଅର୍ଚ୍ଚନା ବିଧିକ ।
ବାହା ପରଦିନ ବ୍ରତୀ ହେବେ ଉପବାସୀ
ପାରଣ କରିବେ ଭଲେ ଶେଷ ହୋଇନ୍ତେ ନିଶି ।

ଅଙ୍ଗ ହୀନ ହେଲେ ବ୍ରତ ପାରଣ ନିଷ୍ଫଳ
ଦିବସରେ ପାରଣଟି ଉତ୍ତମ କେବଳ ।
ନ କରିବେ ବ୍ରହ୍ମ ରାତ୍ରୀ କାଳରେ ପାରଣ
ଏଣୁ ଶାସ୍ତ୍ର ରହିଅଛି ଦିବସରେ ଜାଣ ।
ଅଷ୍ଟମୀରେ ଯେବେ ପଡ଼େ ବୁଧ ସୋମବାର
ଜୟନ୍ତୀ ଲଭ ହୁଅଇ ଧନ୍ୟ ସେ ବାସର ।
ଏହି ଜୟନ୍ତୀରେ ଧନ୍ୟ ବ୍ରତକାରୀ ଜନ
ଯେଉଁ ପୁଣ୍ୟ ତାହାଙ୍କର ଅଟଇ ଅକଥନ ।
ସେ ପ୍ରାଣୀଙ୍କ ଆଉ ଗର୍ଭବାସ କ୍ଳେଶ ନାହିଁ
ଅନ୍ତଃକାଳେ ପରଂବ୍ରହ୍ମେ ଯାନ୍ତି ଲୀନ ହୋଇ
କଦାଚିତ ଅଷ୍ଟମୀ ଥାଇ ନବମୀ ପଡ଼ିଲେ
ବୁଧ ଅବା ସୋମବାର ନହିଁ ଯୋଗଥିଲେ ।
ଏମନ୍ତ ତିଥିରେ କଲେ ବ୍ରତ ଉପବାସ
ଶତେକ ବର୍ଷର ପାପ ହୋଇଯାଏ ଧ୍ୱଂସ ।
ପୁଣ୍ୟ ଆଉ ହୁଏ ସେହି ପାତକ ବଦଳେ
କୋଟି ପୁରୁଷ ଉଦ୍ଧାର ହୋଆନ୍ତି ଏକାବେଳେ

ଶୌନକ ଉବାଚ

ପୁଚ୍ଛନ୍ତି ପୁଣି ଶୌନକ ହୋଇ ଆନନ୍ଦିତ
ଆହେ ପୌରାଣିକ ତୁମ୍ଭେ କହିଲ ଯଥାର୍ଥ ।
ଯଦି କେହି ଧନହୀନ ଜନ ଥାଏ ହୋଇ
କପରି ବା ଉପବାସ ପାଳିବ ବା ସେହି ।
ସଞ୍ଚି ନ ପାରିବ ଦ୍ରବ୍ୟ ଧନ ଅଭାବରେ
ତାହାର ଯେ ବ୍ରତକାର୍ଯ୍ୟ ହେବ କି ପ୍ରକାରେ
ବୋଲନ୍ତି ତାହାଙ୍କୁ ସୂତ ଶୁଣ ମୁନିବର
ଅକ୍ଷମ ହୋଇଲେ ବ୍ରତେ ବିତ୍ତହୀନ ନର ।
କେବଳ ସେ ଦିନଯାକ ଉପବାସ କଲେ
କୃଷ୍ଣ ତାହାରେ ସନ୍ତୋଷ ହୁଅନ୍ତି ଯେ ଭଲେ
କିବା ବ୍ରତେ ଅଷ୍ଟମୀରେ କେବା ଭକ୍ତଗଣ
ଆଚରିବେ ସାରି ଦିନ ହୋଇ ଜାଗରଣ ।
ତେବେ ତାହାଙ୍କର ବ୍ରତ ସଫଳ ହୁଅଇ
ସନ୍ତୋଷେ ରାଧା ମାଧବ ବର ଯାନ୍ତି ଦେଇ ।
ବ୍ରତରେ ଯେ ପ୍ରାଣୀ ବିତ୍ତଶାଠ୍ୟ ତ କରିଲେ
ସେହି ବ୍ରହ୍ମ ଜନଙ୍କୁ ଯେ ମହାଫଳ ମିଳେ ।
ବିତ୍ତଶାଠ୍ୟ କଲେ ବ୍ରତ ବିଫଳ ହୁଅଇ
ଏଥିରେ ଜାଣ ସଂଶୟ ତିଳେମାତ୍ର ନାହିଁ ।

ଅଷ୍ଟମୀରେ କି ଅବା ରୋହିଣୀ ନକ୍ଷତ୍ରରେ
ପାରଣ କଲେ ସେଦିନ କେହି ବ୍ରତୀ ନରେ ।
ପୂର୍ବପୁଣ୍ୟ ତାହାଙ୍କର ବିନାଶ ହୁଅଇ
ଉପବାସ କରିବାର ଫଳ ନ ମିଳଇ ।
ବ୍ରତକାରୀ ପ୍ରାଣୀ ଏଣୁହୋଇ ସାବଧାନ
ଚରିଦିନ ଉପବାସ କରିବେ ପାଳନ ।
ତୃତୀୟ ପ୍ରହର ନିଶୀ ହୋଇଲେ ଆଗତ
ପାରଣ କରିବେ ନର ତାହାପରେ ବ୍ରତ ।
ତାହାର ଯେ ବିଧି ମାନ କହୁଅଛି ଶୁଣ
ନିଶୀର ଛଅ ମୁହୂର୍ତ୍ତ ଗତ ହୁଅନ୍ତେଣ ।
ଯେବଣ କାଳେ ପ୍ରବେଶ ହୁଅଇଟି ଜାଣ
ମହାନିଶୀ ବୋଲି ତାକୁ କହନ୍ତି ବିଦ୍ୱାନ ।
ଏମନ୍ତ ମହା ନିଶାରେ ଭୁଞ୍ଜିବେ ଯେ ନର
ବ୍ରହ୍ମହତ୍ୟା ପାପେ ଭାଗୀ ହୋଇବେ ସତ୍ୱର ।
ତାହାଙ୍କ ଭୋଜନ ଫୁଲ ଫଳ ମୂଳ ଜଳ
ମଳ ମୂତ୍ର ଗୋମାଂସ ଯେ ବୋଲିଏ ସକଳ ।
ତୃତୀୟ ପ୍ରହର ରାତ୍ରୀ ପରିଯନ୍ତେ ଜାଣ
ନ ଭୁଞ୍ଜିବେ ବ୍ରତକାରୀ ଜନ କଦାଚନ ।
ଜନ୍ମାଷ୍ଟମୀରେ ଭୋଜନ କରଇ ଯେ ପ୍ରାଣୀ
ତିନ ଭୁବନର ପାପ ବହଇ ସେ ଜାଣି ।
ଯେଉଁ ଜନ ଜନ୍ମାଷ୍ଟମୀ ବ୍ରତ ନ ପାଳଇ
ରାକ୍ଷସ ଗଣରେ ସେହୁ ଗଣିତ ହୁଅଇ ।
ପ୍ରତିବରଷରେ ଯେଉଁ ସଧବା ରମଣୀ
କୃଷ୍ଣ ଜନ୍ମାଷ୍ଟମୀ ବ୍ରତ ନ କରଇ ଜାଣି ।
ପର ଜନ୍ମରେ ସର୍ପିଣୀ ହୋଇ ସେ ଜନ୍ମଇ
ଏଥିରେ ତିଳେ ମାତ୍ରକ ସଂଶୟ ଯେ ନାହିଁ ।
ମୋହବଶେ ଯେଉଁ ଜନ ଜୟନ୍ତୀର ଦିନେ
ଆହାର କରଇ ଜାଣିଶୁଣି ମୂଢ଼ପଣେ ।
ଏକାଦଶୀ ମହାବ୍ରତ କଲେ ମଧ୍ୟ ସେହି
ନରକ ମଧ୍ୟରୁ ତାର ପରିତ୍ରାଣ ନାହିଁ ।
ଜନ୍ମାଷ୍ଟମୀ ବ୍ରତବିଧି ପରିତ୍ୟାଗ କରି
ଅନ୍ୟବ୍ରତ ଆଦରନ୍ତି ଯେଉଁ ନରନାରୀ ।
ତାଙ୍କ ଦର୍ଶନ ଅଥବା ଶ୍ରବଣ ଜନିତ
କୌଣସି ପୁଣ୍ୟ କେବେହେଁ ନୁହଇ ପ୍ରାପତ ।
ଏହାର ପ୍ରଣାମ ବିଷ୍ଣୁ ରହସ୍ୟରେ ଯାହା
ଉଲ୍ଲେଖ ହୋଇଛି ଏବେ ଶୁଣ ମୁନି ତାହା ।

କୃଷ୍ଣ ଜନ୍ମାଷ୍ଟମୀ ତ୍ୟକ୍ତ୍ୱା ।
ଯୋଽନ୍ୟ ବ୍ରତମୁପାସତେ
ନାପ୍ନୋତି ସୁକୃତଂ କିଞ୍ଚି-
ଦ୍ଦୃଷ୍ଟଂ ଶ୍ରୁତମଥାପି ବା
ଆହୁର କହୁଛୁ ଶୁଣ ଆହେ ତପୋଧନ
ଜୟନ୍ତୀ ବୋଲି ଅଟଇ ଜନ୍ମାଷ୍ଟମୀ ଦିନ ।
ଏମନ୍ତ ଦିବସେ ପ୍ରାଣୀ ଉପବାସ କଲେ
ଏହି ତିଥି ଧନ ଧାନ୍ୟ ପୁଣ୍ୟ ଦିଅନ୍ତ ଭଲେ ।
କୃଷ୍ଣେ ପୋଷ୍ୟାଷ୍ଟମୀ ଭାଦ୍ରେ
ରୋହିଣ୍ୟାଢ଼୍ୟା ମହାଫଳା
ନିଶିଥେଽବାପି କର୍ତ୍ତବ୍ୟା
ଙ୍କେବାପି ନବମୀ ଯୁତା ।
ଭାଦ୍ରମାଘ କୃଷ୍ଣାଷ୍ଟମୀ ତିଥିରେ ଅବଶ୍ୟ
ଭକ୍ତଜନମାନେ କରିବେଟି ଉପବାସ ।
ଏ ଅଷ୍ଟମୀ ଯେବେ ହୁଏ ରୋହିଣୀ ସଂଯୁକ୍ତ
ଅଧିକ ଫଳ ଦିଅଇ ଆହେ ତପୋବନ୍ତ ।
ଅଷ୍ଟମୀରେ ଅର୍ଦ୍ଧ ରାତ୍ରେ ରୋହିଣୀ ନକ୍ଷତ୍ର
ଯୋଗ ହେଲେ ତହିଁ ସୋମ ବୁଧବାର ମାତ୍ର ।
ଅଥବା ନବମୀ ଯୁକ୍ତା ଅଷ୍ଟମୀ ହୋଇଲେ
ମହାଫଳକୁ ପ୍ରଦାନ କରଇ ସେ ଭଲେ ।
ଅର୍ଦ୍ଧରାତ୍ରେ ଯୋଗ ହେଲେ ନକ୍ଷତ୍ର ରୋହିଣୀ
ତହିଁରେ ଉପବାସାଦି କରି ବ୍ରତୀ ପ୍ରାଣୀ ।
କୃଷ୍ଣଙ୍କ ଅର୍ଚ୍ଚନା କଲେ ଯଥାବିଧି ମତେ
ତିନିଜନ୍ମ ପାପ ନାଶ ହୁଅଇ ତୁରିତେ ।
ସପ୍ତମୀରେ ଯେବେ ହୁଏ ଅଷ୍ଟମୀ ସଂଯୋଗ
ଏମନ୍ତ ତିଥିରେ ଉପବାସ କର ତ୍ୟାଗ ।
ତାହା ଆରଦିନ ବ୍ରତ କରିବେ ମାନବେ
ନବମୀ ବିଦ୍ଧା ଅଷ୍ଟମୀ ଶୁଭ ଦିଏ ଭବେ ।
ପୂର୍ବ ସୁକୃତ ବିନାଶ ହୁଅଇ ସମ୍ଭଳେ
ସପ୍ତମୀ ବିଦ୍ଧା ଅଷ୍ଟମୀ ଦିନ ବ୍ରତ କଲେଁ ।
ସମ୍ପୂର୍ଣ୍ଣେ ରୋହିଣୀ ଯୁକ୍ତା ଜନ୍ମାଷ୍ଟମୀ ଥିଲେ
ଯେବେ ସେ ସପ୍ତମୀ ମିଶିଥାଏ ତହିଁ ଭଲେ ।
ସେ ତିଥିରେ ବ୍ରତ ନ କରିବେ କଦାଚନ
ନବମୀ ଦିବସେ ବ୍ରତ ପାଳିବେ ସୁଜନ ।
ଏମନ୍ତେଣ ଜନ୍ମାଷ୍ଟମୀ ବିଷୟେ ହେ ମୁନି
ଅନେକ ପ୍ରମାଣ ଅଛି ପୁରାଣ କାହାଣୀ ।

ସକଳ ଶାସ୍ତ୍ର ସକଳ ସଂହିତା ତନ୍ତ୍ରରେ
କହିଛନ୍ତି ଋଷିମାନେ ଯେ ଯାହା ମତରେ ।
ବିଧି ନିଷେଧ ଯେପରି ରହିଛି ଏ ପ୍ରତି
ସଂକ୍ଷେପି ତୁମ୍ଭ ଆଗରେ କହିଲି ସମ୍ପ୍ରତି ।
ଏଣୁକରି ଅଷ୍ଟମୀରେ ରାତ୍ରେ ଯଥା କାଳେ
ପରମ ଯତନେ ମହାସମାରୋହେ ଛଳେ ।
ବ୍ରତକୋଣ୍ଡିଏ କରିବେ ପୂଜା ଅଭିଷେକ
ବ୍ରତକଥା ଶୁଣି ଅଙ୍ଗୁ ନାଶିବେ ପାତକ ।
ଜନ୍ମଲୀଳା ସଂକୀର୍ତ୍ତନେ ହେବେ ଆଗୁସାର
ମହୋତ୍ସବ ଭିଆଇବେ ହୋଇ ମୋଦଭର ।
ପରଦିନ ପ୍ରାତଃକାଳେ ବ୍ରତୀ ହେ ମାନବେ
ନନ୍ଦ ଉତ୍ସବ କଥା କରିବେ ପୁରାଣ ପ୍ରସ୍ତାବେ
ଶ୍ରୀ ନନ୍ଦଉତ୍ସବ କଥା କରିବେ ଶ୍ରବଣ
ସେହି ଉପଲକ୍ଷେ ଆରମ୍ଭିବେ ସଂକୀର୍ତ୍ତନ ।
ଜନ୍ମାଷ୍ଟମୀ ବ୍ରତଫଳ ଅଟେ ଅକଥନ
ବ୍ରତବିଧି ପାଳି ବ୍ରତୀ କଲେ ଜାଗରଣ ।
ଶତେକ ଜନ୍ମର ପାପ ହୋଇବ ମୋଚନ
ଅନ୍ୟଥା ନୁହଇ ଦେବ ବେଦାନ୍ତ ବଚନ ।
ଜନ୍ମାଷ୍ଟମୀରେ ଯେ ଉପବାସେହିଁ କେବଳ
ବ୍ରତ ଜାଗରଣ ବିନା ଅଶ୍ୱମେଧ ଫଳ ।
ବାଲ୍ୟକୌମାରେବାର୍ଦ୍ଧକ୍ୟେକଅବାଯୌବନେ
ସପ୍ତଜନ୍ମ ପାପ ନାଶେ ବ୍ରତ ଆଚରଣେ ।
କୃଷ୍ଣ ଜନ୍ମଦିନେ ଭୁଞ୍ଜେ ଯେଉଁ ନରାଧମ
ମାତୃଗାମୀ ଶତବ୍ରହ୍ମ ହତ୍ୟା ପାପ ସମ ।
ଷଷ୍ଠୀ ଜନ୍ମାର୍ଜ୍ଜିତ ପୁଣ୍ୟ ତାର ହୁଏ ନାଶ
ଅଶୁଚ ତା ପିତୃଦେବ କର୍ମ୍ମରେ ନୈରାଶ୍ୟ
ଯାବତ୍ ଚନ୍ଦ୍ର ଦିବାକର କାଳସୂତ୍ରେ ଗତ
ତୀକ୍ଷଣଦନ୍ତେ କୃମିଗଣ କାମୋଡ଼ି ଖାଆନ୍ତ ।
ତହିଁରୁ ଉଦ୍ଧରି ଦୁଃଖେ ସେହି ପାପ ଫଳେ
ଷାଠିଏ ହଜାର ବର୍ଷ ବିଷ୍ଠା ଭୁଞ୍ଜେ ବଳେ ।
ସେହି ବିଷ୍ଠା ମଧ୍ୟେ ପୁଣି କୃମି ହୋଇ ଜନ୍ମେ
ତଦନ୍ତେ ଶାଗୁଣା କାକ ହୁଏ ଧରାଧାମେ ।
ଏମନ୍ତେ ଦୁର୍ଦ୍ଦଶା ଭୋଗେ କୋଟି ସମ୍ବତ୍ସର
ଶତେକ ଜନ୍ମ ଶୂକର ହୁଏ ସେ ଅବଶ୍ୟ ।
ପୁଣି ସପ୍ତଜନ୍ମ ଶ୍ୱାନ ଶୃଗାଳ ହୁଅଇ
ତାହାର ଦୁର୍ଗତି ଅବା କେ ପାରିବ କହି ।

ନାନା ପରକାର ଯୋନ ଭ୍ରମି ଭ୍ରମି ସେହ୍ନ
ତାପରେ ମନୁଷ୍ୟ ରୂପେ ଜନମ ଲଭଇ ।
ଗଳତ୍କୁଷ୍ଟ ଯଦାତୁର କେତେ ଯେ ଲାଞ୍ଛନ
ବ୍ୟାଧରୂପେ ଜନ୍ମି କରେ ଜୀବଙ୍କୁ ହିଂସନ ।
ତଦନ୍ତରେ ଶୂଦ୍ର ହୋଇ ସଂସାରେ ଜନ୍ମଇ
ଖଣ୍ଡ ସ୍ୱଭାବରେ ନର ହନ୍ତାରେ ବୋଲାଇ ।
ପୁଣି ଜନ୍ମେ ତୈଳକାର ରଜକ ହୋଇଣ
ତଦନ୍ତେ ହୁଏ ଅଶୁଚ କେବଳ ବ୍ରାହ୍ମଣ ।
ଏହି ପରକାରେ ନାନା ଜନ୍ମ ହୁଏ ସେହି
ସେହି ଜନ ମହାପାପୀ ସଂସାରେ ବୋଲାଇ ।
ଏହି ମତେ ସେ ପାପୀର ଯେତେ ବିଡ଼ମ୍ବନ
କି କହିବ ତୁମ୍ଭ ଆଗେ ଆହେ ତପୋଧନ ।
ଏବେ ଶୁଣ ସାବଧାନେ ଦେଇ ମନକର୍ଣ୍ଣ
ଉପବାସେ ଅସମର୍ଥ ଯେବେ କେହି ଜନ ।
କରାଇବ ଏକଜଣ ବ୍ରାହ୍ମଣ ଭୋଜନ
ଧନ ଦେବ ସେ ବ୍ରାହ୍ମଣେ ଭୋଜନ ଦ୍ୱିଗୁଣ ।
କୃଷ୍ଣ ମନ୍ତ୍ର ଗାୟତ୍ରୀକି ଜପିବ ସେ ପ୍ରାଣୀ
ତହିଁକି ଅକ୍ଷମ ହେଲେ ଜାଣ ଆହେ ମୁନି ।
କେବଳ କରିବ ହରିନାମ ସଂକୀର୍ତ୍ତନ
ନାମ ବଳେ ସର୍ବ ପାପ ହୋଇବ ମୋଚନ ।
ଉପବାସକୁ ଅକ୍ଷମ ହେବେ ଯେଉଁମାନେ
ହରିନାମ ଉଚ୍ଚାରିବେ ସେହିନ ବଦନେ ।
ଅହୋରାତ୍ର କଲେ ହରିନାମ ସଂକୀର୍ତ୍ତନ
ବ୍ରତ ନ ପାଳିବା ଦୋଷ ହୋଇବ ଖଣ୍ଡନ ।
ସମର୍ଥ ଥାଉଁ ଏ ବ୍ରତ ଯେହୁ ନ ପାଳିବେ
ମହାପାପୀ ହୋଇ ସେହି ନରକେ ମଜ୍ଜିବେ ।
ଏ ବିଧି ନିଷେଧ କଥା କହିଲି ଯାହା
ଅବଶ୍ୟ ବ୍ରତୀ ମାନବେ ପାଳିବେ ଯେ ତାହା ।
ଇତ୍ୟାଦି ବିଧାନ ଯାକ ଉତ୍ତମ ପ୍ରକାରେ
ଆଚରିବେ ଅନାୟାସେ ନାରୀ କିବା ନରେ
ଶାକ୍ତ ଶୈବ ଗାଣପତ୍ୟ ସୂର୍ଯ୍ୟ ଉପାସକେ
ଅବୈଷ୍ଣବ ସୁବୈଷ୍ଣବଆଦି ନର ଲୋକେ ।
ସମସ୍ତଙ୍କ ପକ୍ଷେ ଶ୍ରେଷ୍ଠ ଜନ୍ମାଷ୍ଟମୀ ବ୍ରତ
ନ ପାଳିବେ ଘୋର ନରକରେ ହେବେ ଯୁକ୍ତ
ଆଉ ଯେ ଅଛି ପରମ ବ୍ରହ୍ମଙ୍କର ବ୍ରତ
ଏକାଦଶୀ ତହିଁ ମହାବ୍ରତରେ ଗଣିତ ।
ଶ୍ରୀରାମ ନବମୀ ଶ୍ରୀନୃସିଂହ ଚତୁର୍ଦ୍ଦଶୀ
ଶିବରାତ୍ରି ଦୁର୍ଗାଷ୍ଟମୀ ବାମନ ଦ୍ୱାଦଶୀ ।
ପୁଣି ଶ୍ରୀ ଅନନ୍ତ ଚତୁର୍ଦ୍ଦଶୀ ବ୍ରତରେ
ରହିଛି ଅନେକ ବ୍ରତ ଜନଙ୍କ ସହିତରେ ।
ଭକ୍ତିରେ କରିବେ ଏହି ବ୍ରତ ଆଚରଣ
ତୁମ୍ଭ ଆଗେ ବଖାଣିଲି ଆହେ ମୁନିଗଣ ।
ଏହିପରି ସୂତ ମୁନି କଲେ ପରକାଶ
କୃଷ୍ଣ ଜନ୍ମାଷ୍ଟମୀ ଗାଥା ଯେସନେ ପୀୟୂଷ ।
ଆହେ ନରନାରୀ ମାନେ ଶୁଣ ମୋର ଗୀର
କୃଷ୍ଣ ଜନ୍ମାଷ୍ଟମୀ ବ୍ରତ ପାଳ ଯତନର ।
ଶମନ ଭୟରୁ ଯେ ଲଭିବେ ପରିତ୍ରାଣ
ଚଳିଯିବ ଅନ୍ତଃକାଳେ ବୈକୁଣ୍ଠ ପୁରେଣ ।
ଶ୍ରୀଗୁରୁ ପରମବ୍ରହ୍ମ ଚରଣ ସରୋଜେ
ଅଧମ କ୍ଷେତ୍ର ମୋହନ ଦ୍ୱିବାକର୍ଣ୍ଣୀ ଭଜେ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଜନ୍ମାଷ୍ଟମୀ
ବ୍ରତ କଥନେ ନାମ
ଚତୁଶ୍ଚତ୍ୱାରିଂଶୋଽଧ୍ୟାୟଃ ।



## ପଞ୍ଚଚତ୍ୱାରିଂଶ ଅଧ୍ୟାୟ
## ନନ୍ଦ ଉତ୍ସବ ବିଧି ବର୍ଣ୍ଣନ

ଶୌନକ ଉବାଚ

ଗୋକୁଲେ ଗୋପ ରୂପେଣ
ଯଃ ସାକ୍ଷାତ୍ ଜଗତଃ ପତିଃ
ନମାମି ପରମା ଭକ୍ତ୍ୟା
ତଂ ବିଷ୍ଣୁଂ ଦେବକୀ ସୁତମ୍ ॥

ଶୌନକ ମୁନି ପ୍ରବର ଏଥୁ ଅନନ୍ତରେ
ସୂତ ମହର୍ଷିଙ୍କୁ ପୁଣି ପୁଚ୍ଛିଲେ ସାଦରେ ।
ଆହେ ପୌରାଣିକବର ତ୍ରିକାଳ ଜ୍ଞାତା
ବିସ୍ତାରି କହିଲ କୃଷ୍ଣ ଜନ୍ମାଷ୍ଟମୀ କଥା ।
ଗୋକୁଳ ନଗରେ ପରଂବ୍ରହ୍ମ ଭଗବାନ
ସାକ୍ଷାତେ ଯେ ଜଗପତି ହେଲେ ଅବତୀର୍ଣ୍ଣ ।
ସେହି ଦେବକୀ ସୁତଙ୍କୁ ଆମ୍ଭ ନମସ୍କାର
ଯାହାଙ୍କ ଜନ୍ମ ବୃତ୍ତାନ୍ତ କଲ ହେ ଗୋଚର ।

କୁଶଳେ ଶ୍ରବଣ କର ସେହିଟି ବିଧାନ
କୃତାର୍ଥ ମଣିଲୁ ଆମ୍ଭେ ସର୍ବେ ତପୋଧନ ।
ଏବେ ପଚ୍ଛୁରୁଛୁ ତୁମ୍ଭ ସମୀପରେ ପୁଣି
ଜନ୍ମାଷ୍ଟମୀ ବ୍ରତପରେ ଆନ ଯାହା ଭଣି ।
କି କର୍ମ କଲେ ଗୋକୁଳେ ଗୋପ ଗୋପୀଗଣ
ସେ କଥା ବିସ୍ତାର ଭାବେ କରନ୍ତୁ ବଖାନ ।
ପରଂବ୍ରହ୍ମ ଶ୍ରୀହରିଙ୍କ ଜନ୍ମ ସମାଚାର
ଶୁଣି ଦୂରାଇବୁ ମନୁଁ ସର୍ବ ବ୍ୟଥା ଘୋର ।
ଶୌନକ ମୁନିଙ୍କ ମୁଖୁଁ ଶୁଣି ଏ ବଚନ
କହି ଆରମ୍ଭିଲେ ତହୁଁ ସୁତ ତପୋଧନ ।
ଶୁଣିବା ହେଉ ହେ ମୁନି ଦିବ୍ୟ ସମାଚାର
କୃଷ୍ଣ ଜନ୍ମାଷ୍ଟମୀ ଅନନ୍ତ ମହୋତ୍ସବ ସାର ।
ଗଙ୍ଗାତୀରେ ପରୀକ୍ଷିତ ରାଜାଙ୍କର ଆଗେ
ଶୁକ ମୁନି ବଖାଣିଥିଲେ ଯା ସରାଗେ
ମୋର ପିତା ଉଗ୍ରଶ୍ରବା ମୁଖୁଁ ଥିଲି ଶୁଣି
ସେ କଥା ସମ୍ପ୍ରତି ଏବେ କହୁଛି ବଖାଣି ।
ତୁମ୍ଭେ ଏକମନେ ଶୁଣ ସର୍ବ ତପୋବନ୍ତ
ପୁତ୍ର ଜନମନ୍ତେ ନନ୍ଦ ହୋଇ ଆନନ୍ଦିତ ।
ଯେତେକ ବେଦଜ୍ଞ ବିପ୍ର ହକାରି ଆଣିଲେ
ପୁତ୍ରକୁ ଯତନେ ରାଜାସ୍ନାନ କରାଇଲେ ।
ଶ୍ରୀ ଅଙ୍ଗରେ ପିନ୍ଧାଇଲେ ରତ୍ନ ଆଭରଣ
ମହା ମହୋତ୍ସବ କଲେ ଗୋକୁଳେ ଭିଆଣ ।
ଜାତକର୍ମ କଲେ ହରି ଶ୍ରୀବିଷ୍ଣୁ ସ୍ମରଣ
ଯଥାବିଧି କଲେ ଦେବ ପିତୃ ଆରାଧନ ।
ବିଂଶ ଲକ୍ଷ ଧେନୁ ଦେଲେ ମଣ୍ଡିଣ କାଞ୍ଚନେ
ତିଳରେ ନିର୍ମିତ ସାତ ପର୍ବତ ପ୍ରମାଣେ ।
କାଞ୍ଚନେ ନିର୍ମିତ ସବୁ ମଣିରେ ଖଚିତ
କାଞ୍ଚନ ବସନେ କଲେ ପର୍ବତ ବେଷ୍ଟିତ ।
ସାତ ତିଳ ପର୍ବତ ଯେ ବିପ୍ରେ ଦେଲେ ଦାନ
ଅନ୍ନଜଳ ସହିତରେ ବସନ ଭୂଷଣ ।
ନାନା ଦ୍ରବ୍ୟ ଯେ ଦାନରେ ହୁଅଇ ଶୋଧନ
ତତ୍ତ୍ୱ ଜ୍ଞାନରୁ ହୁଅଇ ଚିତ୍ତ ସୁପ୍ରସନ୍ନ ।
ଜାତକର୍ମ ସଂସ୍କାର ସେ ହେତୁ ନାନା ଦାନେ
ଗର୍ଭ ଶୁଦ୍ଧି ହୁଏ ତହିଁ ଦେହ ଶୁଦ୍ଧି ସ୍ନାନେ
ତେଣୁ ଜାତ କର୍ମେ ନନ୍ଦ କଲେ ବହୁ ଦାନ
ସହଜେ ବିବେକୀ ନନ୍ଦ ମହା ବୁଦ୍ଧିମାନ ।

ଭାଟଗଣ ପଢ଼ିଲେ ଯେ ସୁମଙ୍ଗଳ ବାଣୀ
ସାମବେଦ ଉଚ୍ଚସ୍ୱରେ ପଢ଼ନ୍ତି ସେ ପୁଣି ।
ନର୍ତ୍ତକୀ ନାଚନ୍ତି ଗାଇ ସୁମଧୁର ଗୀତ
ବାଜଇ ଦୁନ୍ଦୁଭି ଭେରୀ ବାଜଣା ବହୁତ ।
ଗୋପଙ୍କର ଘରେ ଘରେ ଅଙ୍ଗଣେ ଅଙ୍ଗଣେ
ଚନ୍ଦନ ଲେପନ କଲେ କୁଙ୍କୁମ ସିଞ୍ଚନେ ।
ବିଚିତ୍ର ପତାକା ଧ୍ୱଜ ପଲ୍ଲବ ତୋରଣ
ଯାରି ସାରି ପୂର୍ଣ୍ଣଘଟ ରମ୍ଭା ଆରୋପଣ ।
ବୃଷ ଗାଈ ବତ୍ସାଗଣ ଧବଳ ବରନ
ତୈଳ ହରିଦ୍ରାରେ କଲେ ଅଙ୍ଗ ବିଲେପନ ।
ପୁତ୍ର ଜାତ ବୋଲି ନନ୍ଦ ଗୃହେ ଶୁଣିକରି
ବିବିଧ ଭୂଷଣେ ଅଙ୍ଗ ସଜାଇଲେ ଗୋପୀ ।
ବିଚିତ୍ର କାଞ୍ଚୁଲି ପାଟ ବିଚିତ୍ର ବସନେ
ବିଚିତ୍ର ବିବିଧ ଧାତୁ ମଣ୍ଡିତ କାଞ୍ଚନେ ।
ବହୁ ବିଧ ବହୁ ମୂଲ୍ୟ ଉପହାର ନେଇ
ଚଳିଲେ ସକଳ ଗୋପୀ ଆନନ୍ଦିତ ହୋଇ ।
ଯଶୋଦାଙ୍କ ପୁତ୍ର ଜନ୍ମ ଗୋପୀମାନେ ଶୁଣି
ନାନା ଆଭରଣେ କଲେ ଅଙ୍ଗକୁ ମଣ୍ଡଣି ।
ନବୀନ କୁଙ୍କୁମେ ଅଙ୍ଗ ମାନଙ୍କୁ ମାର୍ଜଣ
ବିଚିତ୍ର ବିବିଧ ଧାତୁ ସର୍ବାଙ୍ଗେ ମାଖିଣ ।
ବେଗେ ଚଳିଗଲେ ଗୋପୀ ଗୋରସଦେବାକୁ
ପୃଥୁ କୁଚ କଟିଭରେ ଗତି ମାନୁଥାଇ ।
ମଣି ହାରରେ ଯେ କଣ୍ଠ ହୋଇଛି ପୂରିତ
ଘନ କୁନ୍ତଳରେ ନାନା କୁସୁମ ମଣ୍ଡିତ ।
ନାନା ପ୍ରକାରେ ହୋଇ ସେ ବେଶ ଭୂଷଣ
ଚଳନ୍ତି ଗୋପିକା ମାନେ ଆନନ୍ଦ ମନେଣ ।
ସକଳେ ମିଳିଲେ ଯାଇ ନନ୍ଦର ମନ୍ଦିରେ
ପୁତ୍ରକୁ କଲ୍ୟାଣ କଲେ କର ଦେଇ ଶିରେ ।
ବୋଇଲେକ ଚିରଜୀବୀ ହୁଅ ବାପଧନ
ଧାନ୍ୟ ଦୁବା ଦେଇ ସର୍ବେ କରିଲେ ବନ୍ଦନ
ତୈଳ ହରିଦ୍ରା ଜଳରେ ସ୍ନାହାନ କରାଇ
ଦଧି ଦୁଗ୍ଧ ଘୃତ ମଧୁ ବରଷିଲେ ତହିଁ ।
ବିଚିତ୍ର ବାଜଣା ବାଜେ ନନ୍ଦର ମନ୍ଦିରେ
କୃଷ୍ଣଙ୍କ ସୌନ୍ଦର୍ଯ୍ୟ ଗୋପୀ ଗାଆନ୍ତି ସୁସ୍ୱରେ
ନନ୍ଦଘରେ ଜଗନ୍ନାଥ ହେଲେ ଉତପନ୍ନ
ଆନନ୍ଦେ ଗାବନ୍ତି ଗୀତ ସର୍ବ ଗୋପୀଗଣ ।

ସର ଫିଙ୍ଗାଫିଙ୍ଗି ହୋନ୍ତି ଗୋପୀ ଓ ଗୋପାଳ
ଆନନ୍ଦ ସାଗରେ ମଜ୍ଜି ଯାଆନ୍ତି ସକଳ ।
ନନ୍ଦ ରାଜା ପୂର୍ବେ ଯେଉଁ ପୁଣ୍ୟ କରିଥିଲେ
ପରମ ବ୍ରହ୍ମ ମୂରତି ଜନ୍ମ ଯାର ଆଳେ ।
ମହା ବୁଦ୍ଧିମନ୍ତ ନନ୍ଦ ଆନନ୍ଦ ମନରେ
ବରଚିଲେ ଗୋପୀ ଗୋପାଳଙ୍କୁ ସମାଦରେ ।
ଯେମନ୍ତ ଭକତି କରି ନନ୍ଦନ ପର୍ଯ୍ୟନ୍ତରେ
ପୂଜିଲେ ସକଳ ଜନେ ବସ୍ତ୍ର ଅଳଙ୍କାରେ ।
ନର୍ତ୍ତକ ବାଦକ ଭାଟ ନାନା ଗୁଣୀ ଗଣ
ସମସ୍ତଙ୍କୁ ଦେଲେ ନନ୍ଦ ଅନ୍ନ ବସ୍ତ୍ରଦାନ ।
ଯାହାକୁ ଯେପରି ଦେବା ଉଚିତ ଅଟଇ
ସେହିପରି ଗୋପାଳଙ୍କୁ ନନ୍ଦ ଦେଲେ ନେଇ
ବଦଧିଇ ପାଇ ଆନନ୍ଦ ସକଳ ପରଜା
ସନ୍ତୋଷ କଲେ ତାହାଙ୍କୁ ଗୋକୁଳର ରାଜା ।
ରୋହିଣୀ ଦେବୀ ଆନନ୍ଦେ ବେଶ ଭୂଷା ହୋଇ
ଉତ୍ସବ ଭିଆନ୍ତି ମନ ସବୁରି ମନାଇଁ ।
ଅଷ୍ଟ ଅଇଶ୍ୱର୍ଯ୍ୟ ଅଷ୍ଟସିଦ୍ଧି ଅଷ୍ଟନିଧି
ଗୋକୁଳ ମିଳିଲା ଶୁଭେ ସେଦିନ ଅବଧି ।
ଆପଣ ବିରାଜ ମାନ ଯହିଁ ନାରାୟଣ
ସାକ୍ଷାତ ଲକ୍ଷ୍ମୀଙ୍କ କ୍ରୀଡ଼ା ସ୍ଥାନଟେ ପ୍ରମାଣ ।
ରକ୍ଷକ ମାନଙ୍କୁ ନନ୍ଦ କରି ନିଯୁକ୍ତିତ
ମଧୁପୁରେ ନନ୍ଦଘୋଷ ଚଳିଲେ ତ୍ୱରିତ ।
କଂସର ବର୍ଷିକ କର ଦେବ ସେହି ଦିନେ
ମଥୁରା ପୁରୀକି ନନ୍ଦ ଗଲେ ସେ କାରଣେ ।
କଂସର ବର୍ଷିକ କର କରିଣ ଶୋଧନ
ବାହୁଡ଼ିଲେ ନନ୍ଦରାଜା ହୋଇ ତୋଷମନ ।
ଅପୂର୍ବ ପ୍ରସଙ୍ଗ ଶୁଣ ଆହେ ମୁନିଗଣ
ବସୁଦେବ ସେ ସମ୍ବାଦ କରନ୍ତେ ଶ୍ରବଣ ।
ପ୍ରବେଶିଲେ ନନ୍ଦରାଜା ଆନନ୍ଦ ଅନ୍ତରେ
ଦେଖି ବସୁଦେବ ଦନ୍ଦ ଆନନ୍ଦ ସତ୍ୱରେ ।
ସନ୍ତୋଷରେ ଦୁଇବନ୍ଧୁ କୋଳାକୋଳି ହେଲେ
ହାତ ଧରାଧରି ହୋଇ ଆସନେ ବସିଲେ ।
ସମ୍ପୃକ୍ତ ବେନି ସୁତେ ଆରୋପିଣ ଚିତ୍ତ
ବସୁଦେବ କହନ୍ତି ସେ କରିଣ ବିନତ ।
ଏହି ମହାଭାଗ୍ୟ ଭାଇ ଦେଖିଲି ତୁମ୍ଭର
ବୃଦ୍ଧକାଳେ ଜନମିଲେ ଦୁଇଟି କୁମର ।

ପୁନରପି ଯଉବନ ଲଭିବେ ଆପଣ
ସର୍ବଶୁଭେ ପୁତ୍ର ମୁଖ କଲ ଦରଶନ !
ରହିଛ କୁଶଳେ ବନ୍ଧୁ ବାନ୍ଧବ ସହିତେ
ନାହିଁତ ଉତ୍ପାତ ଗୋପପୁରେ କୁହ ମୋତେ
ମହାବନେ ତୃଣ ଜଳ ଅଛି ତ ବହୁତ
ନିରନ୍ତର ଯହିଁ ଥାଅ ଗୋଧନ ସହିତ ।
ଛନ୍ତି ତ ମୋ ପୁତ୍ର ଦୁହେଁ କୁଶଳ କଲ୍ୟାଣେ
ପାଳନ କରି ତାହାକୁ ଅତ୍ୟନ୍ତ ଯତନେ ।
ପିତା ବୋଲି ତୁମ୍ଭଙ୍କୁ ତ ମଣନ୍ତି ନନ୍ଦନ
ତୁମ୍ଭେ ତାହାଙ୍କୁ ଦେଖିବ ସନ୍ତାନ ସମାନ ।
ଧର୍ମ ଅର୍ଥ କାମ ମୋକ୍ଷ ଏହି ପ୍ରୟୋଜନ
ସନ୍ତୋଷ କରନ୍ତି ଏହା ଦେଇ ବନ୍ଧୁଜନ ।
କିବା ଧନେ କି ବା ଯଶେ ଏ ଘର ବସନ୍ତି
ଯାହାର ସଙ୍ଗେ ବନ୍ଧୁଙ୍କ ନ ଥାଏ ପୀରତି ।
ନନ୍ଦ ବୋଲନ୍ତି ହେ ଭାଇ ଶୁଣ ମୋ ବୃତ୍ତାନ୍ତ
ପାପିଷ୍ଟ କଂସ ମାଇଲା ତନୟ ବହୁତ ।
ସେ ଅବା ଗୋଟିଏ କନ୍ୟା ଅବଶେଷେ ହେଲା
ଅନ୍ତରୀକ୍ଷେ କଂସ କରୁ ସେହି ଖସିଗଲା ।
ଶୁଭ ଶୁଭ ଦୁଃଖ ସୁଖ ଅଦୃଷ୍ଟ କାରଣ
ଅଦୃଷ୍ଟ ବୁଝିଣ ସ୍ଥିର ହୋନ୍ତି ବୃଦ୍ଧଗଣ ।
ଶୁଣି କହେ ବସୁଦେବ ଶୁଣ ଶୁଣ ଭାଇ
ବିସ୍ତାର କଥାରେ ଆଉ ପ୍ରୟୋଜନ ନାହିଁ ।
ରାଜାର ବର୍ଷିକ କର ଦେଲ ତ ବେଭାର
କି କାର୍ଯ୍ୟ ଏଥି ରହିବା ଚଳ ନିଜଘର ।
ଗୋକୁଳେ ଉତ୍ପାତ ହେବ ପାରୁଛି ମୁଁ ଜାଣି
ବିଳମ୍ବ ନ କର ନନ୍ଦ ଶୁଣ ତଥ୍ୟ ବାଣୀ ।
ବସୁଦେବଙ୍କ ବଚନ ଶୁଣି ସେହିକ୍ଷଣେ
ନନ୍ଦ ମହାରାଜା ସହିତରେ ଗୋପିଗଣେ ।
ଶକଟ ମାନଙ୍କେ ସବୁ କଲେ ଆରୋହଣ
ଚଳିଲେ ଗୋକୁଳ ପଥେ ଗୋପାଳେ ବହନ
ବସୁଦେବ ସେମାନଙ୍କୁ ସମ୍ଭାଷଣ କରି
ମନସୁଖେ ଚଳିଗଲେ ଆପଣା ନଗରୀ ।
ନନ୍ଦ ଆଦି ଗୋପାଳେ ଯେ ପ୍ରବେଶିଗୋକୁଳେ
ଯଥା ବିଧାନରେ ମହାମହୋତ୍ସବ କଲେ ।
ନନ୍ଦ ମନ୍ଦିରେ ପରମ ବ୍ରହ୍ମ ଭଗବାନ
ଦିନକୁ ଦିନ ବଢ଼ନ୍ତି ଜଗତ ମୋହନ ।

ଏମନ୍ତେ ନନ୍ଦ ଉତ୍ସବ କଥା ସୁଧାସାର
ବଖାଣିଲେ ପୌରାଣିକ ସୁତ ଆନନ୍ଦର ।
ବ୍ରହ୍ମ ପୁରାଣ ପ୍ରସଙ୍ଗ ଅପୂର୍ବ ବିଧାନ
ଗୀତ ଛନ୍ଦେ ବିରଚିଲା କ୍ଷେତ୍ରବାସୀ ହୀନ ।
ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ନନ୍ଦ ଉତ୍ସବ
ବିଧାନେ ନାମ ପଞ୍ଚ ଚତ୍ୱାରିଂଶୋଽଧ୍ୟାୟ ।



## ଷଟ୍ଚତ୍ୱାରିଂଶ ଅଧ୍ୟାୟଃ
## ନନ୍ଦ, ଯଶୋଦାଙ୍କ ପୂର୍ବ ଜନ୍ମ ଉପାଖ୍ୟାନ

ସୁତ ଉବାଚ

ଏଥୁ ଅନନ୍ତରେ ପୌରାଣିକ ତପୋଧନ
ବୋଇଲେ ଶୁଣିମା ହେଉ ଆହେ ମୁନିଗଣ ।
ପଚାରିଥିଲେ ଯେ ଏଥି ପୂର୍ବେ ତପୋଧନ
ନନ୍ଦ ଯଶୋଦାଙ୍କ ପୂର୍ବ ଜନ୍ମର କଥନ ।
ଏବେ ମୁଁ କହୁଛି ସେହି ପୂର୍ବର କାହାଣୀ
ଏକ ମନେ ସୁଶ୍ରବଣ କର ମୁନି ଶ୍ରେଣୀ ।
ପୂର୍ବ ଜନ୍ମେ ନନ୍ଦଙ୍କର ନାମ ଥିଲା ଦ୍ରୋଣ
ଯଶୋଦାଙ୍କ ନାମ ଥିଲା ଧରା ବୋଲି ଜାଣ ।
କାଶୀଧାମ ନିକଟରେ ଶମ୍ଭୁ ପୁର ନାମେ
ଧରା ଦ୍ରୋଣଙ୍କ ନିବାସ ଥିଲା ସେହି ଗ୍ରାମେ ।
ଯୁବକ ଯୁବତୀ ସେହି ପତି ପତ୍ନୀ ବେନି
ବ୍ରାହ୍ମଣ କୁଳରେ ଜାତ ଗରିବ ସେ ପୁଣି ।
ବିଷ୍ଣୁ ଭକ୍ତିରେ ଦୁହିଁଙ୍କ ମନଯାଏ ମଜ୍ଜି
ନିଶି ଦିବସ ହରନ୍ତି ହରି ନାମ ଭଜି ।
କ୍ଷୁଦ୍ର କୁଟୀରଟି ମାତ୍ର ତୃଣରେ ଛାଏଣି
ତା ଘର ପାଶେ ବିବିଧ ପୁଷ୍ପବୃକ୍ଷ ଶ୍ରେଣୀ ।
ଅଗଣା ମଧ୍ୟରେ ଶୋହେ ତୁଳସୀର ବନ
ବେଲଗଛଟିଏ ତହିଁ ଅତ୍ୟନ୍ତ ଶୋଭନ ।
ବ୍ରାହ୍ମଣ ବ୍ରାହ୍ମଣୀ ଯାଇ ଏମନ୍ତ କୁଟୀରେ
ବ୍ରହ୍ମଶୀଳା ପୂଜୁଥାନ୍ତି ଦିବସ ଯାମରେ ।
ଦ୍ରୋଣ ପ୍ରତିଦିନ ଯାହା ଭିକ୍ଷା ମାଗି ଆଣେ
ରନ୍ଧନ କରେ ତା ଧରା ପରମ ଯତନେ ।
ବିଷ୍ଣୁଶିଳା ଶାଳଗ୍ରାମେ ନୈବେଦ୍ୟ ଦେଇଣ
ବିପ୍ର ଦମ୍ପତି ସୁଖେ ତା କରନ୍ତି ଭୋଜନ ।

ଅତିଥି କେହି ଦୁଆରେ ହେଲେ ଉପଗତ
ସତ୍କାର କରନ୍ତି ତାଙ୍କୁ ହୋଇ ଉଲ୍ଲସିତ ।
ସତ ଶାନ୍ତି ଦୟା କ୍ଷମା ଏହି ଗୁରୁଗୁଣ
ନାରୀରେ ଧରା ଦ୍ରୋଣଙ୍କ ଅଟଇ ଭୂଷଣ ।
ପରଂବ୍ରହ୍ମେ ମନ ପ୍ରାଣ ସମର୍ପଣ କରି
ଆନନ୍ଦେ କାଳ ବଞ୍ଚନ୍ତି ଶ୍ରୀହରି ସୁମରି ।
ଏକଦିନେ ମାୟାଧର ପ୍ରଭୁ ହୃଷୀକେଶ
ଆପଣେ ମନେ ବିଚାରି ଧରି ଛଦ୍ମବେଶ ।
ଭକ୍ତ ପରୀକ୍ଷା କରିବା ପାଇଁ ତାହାଙ୍କର
ଯୁବା ଦ୍ୱିଜ ରୂପଧରି ହୋଇଲେ ବାହାର ।
ତାହାଙ୍କ କୁଟୀର ଦ୍ୱାରେ ମିଳିଣ ଶ୍ରୀପତି
ଧରାକୁ ବୋଇଲେ ତୁମ୍ଭ ଗୃହେ ମୁଁ ଅତିଥି ।
ଛନ୍ତି ମୋର ବୃଦ୍ଧ ପିତା ମାତା ଦୁଇଜଣ
ବହୁତ ବୟସ ତାଙ୍କୁ ଚଳଶକ୍ତି ହୀନ ।
ଏଣୁ ଆଗୋ ସତୀ ଦିଅ ଆମ୍ଭଙ୍କୁ ଆଶ୍ରୟ
କ୍ଷୁଧା ତୃଷାରେ ପରାଣ ହେଉଛି ଅଥୟ ।
କରଯୋଡ଼ି ଧରାସତୀ ବୋଲେ ମଞ୍ଜୁବାଣୀ
ମୋ ପୂଜା ଗ୍ରହଣ କର ହେ ଅତିଥି ମଣି ।
ସ୍ୱାମୀ ଯେ ମୋହର ଯାଇଛନ୍ତି ଭିକ୍ଷାଅର୍ଥେ
ଭିକ୍ଷାଲବ୍ଧ ଅନ୍ନେ ସେବା କରିବୁଁ ଯଥାର୍ଥେ
ଦୟା କରି ହେ ଅତିଥି କରନ୍ତୁ ଅପେକ୍ଷା
ବିଷ୍ଣୁ ପୂଜା ଅତିଥି ସେବା ଯେ ଆମ୍ଭ ଦୀକ୍ଷା
ଏତେ ବୋଲି ଧରାସତୀ ଉଷତ ମନରେ
ଜଳ ଆଣି ଏକ ଶାଳ ପତର ଚୋଲରେ ।
ଛଦ୍ମବେଶୀ ଅତିଥିଙ୍କ ପାଦ ଧୋଇ ଦେଲା
ମଧୁର ବିନୟେ ଧରା ଏସନ ବୋଇଲା ।
କି ସୁଯୋଗେ ଆଜର ନିଶି ଯେ ଥିଲା ପାହି
ଅତିଥି ଦର୍ଶନେ ଧନ୍ୟ ହୋଇଲଇଁ ମୁହିଁ ।
ବିଶେଷେ ଦରିଦ୍ର ଆମ୍ଭେ ପତି ପତ୍ନୀ ଦୁଇ
ଭିକ୍ଷାବିନୁ ଆମ୍ଭର ଉପାୟ କିଛି ନାହିଁ ।
ପରମ ସୌଭାଗ୍ୟ ଆଜ ଅଟଇ ଆମ୍ଭର
ଏଣୁ ମିଳିଛି ଅତିଥି ସେବା ନିରନ୍ତର ।
ପ୍ରଭୁ ବୋଇଲେ ତୁମ୍ଭ ଘର ଅଛି କ୍ଷୁଦ୍ର
ମୁଠିଏ ମାତର ନାହିଁ ତଣ୍ଡୁଳ କି ଖୁଦ ।
ଅଟନ୍ତି ତୁମ୍ଭର ସ୍ୱାମୀ ସହଜେ ଭିକାରୀ
କେତେ ଦୂରକୁ ସେ ଯାଇଛନ୍ତି ଭିକ୍ଷାକରି ।

ଆଜ ଯଦି କିଛି ଭିକ୍ଷା ନ ମିଳିବ ତାଙ୍କୁ
ତାହାଲେ ଉପାସ କିବା ରଖିବ ଆମ୍ଭଙ୍କୁ ।
ଧରା ବୋଇଲେ ହେ ଅତିଥି ଯା କହିଲ ସତ
ଆମ୍ଭ ଭକ୍ତିଥିଲେ ବିଷ୍ଣୁ ପାଦରେ ନିରତ ।
ଅବଶ୍ୟ ତୁମ୍ଭ ସେବାରେ ଖଟିବୁ ନିଶ୍ଚୟ
ଏଥିରେ ତିଳେ ମାତର ନାହିଁ ନା ସଂଶୟ ।
ଦୟାକରି କିଛିକ୍ଷଣ ରୁହ ହେ ଅତିଥି
ମୋହର ସ୍ୱାମୀ ଏକ୍ଷଣି ହେବେ ଉପଗତ ।
ଭିକ୍ଷା ଆଣି ଆସୁଥିବେ ବହନ ସେ ଘର
ଆସିଲେ ତୁମ୍ଭର ସେବା କରିବୁ ସତ୍ୱର ।
ତୁମ୍ଭଙ୍କୁ ଦେଖିବେ ଯେବେ ଆସି ମୋର ପତି
ମନ ମଧ୍ୟରେ ଆନନ୍ଦ ହୋଇବେ ସେ ଅତି ।
ଆଗେ ଗୃହ ସ୍ୱାମୀଙ୍କର ସେବା କରିସାରି
ଶେଷରେ ଭୁଞ୍ଜିବୁ ଆମ୍ଭେ ସ୍ୱାମୀ ଆଉ ସ୍ତ୍ରୀ
ବିଷ୍ଣୁ ବୋଇଲେ ତୁମ୍ଭ ଗୃହ ସ୍ୱାମୀ କେବା
ନିଜେ ନ ଖାଇ କରୁଛ ଅପରର ସେବା ।
ଧରା କହେ ସେହୁ ଜଗତର ଅନ୍ତର୍ଯ୍ୟାମୀ
ସେହି ଅଟନ୍ତି ଆମ୍ଭର ଜାଣ ଗୃହସ୍ୱାମୀ ।
ତାହାଙ୍କ ପ୍ରୀତି କାମନା କରି ନିରନ୍ତର
ଆମ୍ଭେ ସର୍ବ କାର୍ଯ୍ୟକରୁ ହେ ଅତିଥିବର ।
ବିଷ୍ଣୁଙ୍କ ବିନା ଆମ୍ଭର ଆନ ଗତି ନାହିଁ
ସେ ଯାହା ଆଦେଶ ଦିଅନ୍ତି ପାଳୁ ଆମ୍ଭେ ଦୁଇ
ଆମ୍ଭର ଜୀବନ ପ୍ରାଣ ସମର୍ପିଛୁ ତାଙ୍କୁ
ଏ ଦେହ ମନ ବିକିଛୁ ଶ୍ରୀ ଜଗନ୍ନାଥଙ୍କୁ ।
ଏ ହେତୁ ସଂସାର ଚିନ୍ତା ଆମ୍ଭଙ୍କୁ ନ ଲାଗେ
ବିଷ୍ଣୁ ବୈଷ୍ଣବଙ୍କ ସେବା କରୁ ଅନୁରାଗେ ।
ଏହିପରି ବିନୟରେ କହେ ଧରାସତୀ
ନୟନୁ ତାହାର ପ୍ରେମଅଶ୍ରୁ ଗଳେ ଅତି ।
ଏହି ସମୟରେ ଦ୍ରୋଣଶର୍ମା ଭକ୍ତମଣି
ପ୍ରବେଶ ହୋଇଲା ଗୃହେ ଭିକ୍ଷାଝୁଳି ଘେନି ।
ଅତିଥି ଆସି ଅଛନ୍ତି ଜାଣି ଦ୍ୱିଜବର
ଆନନ୍ଦ ଜଳେ ମଜ୍ଜିଲା ମନମୀନ ତାର ।
ଭିକ୍ଷା ତଣ୍ଡୁଳ ରନ୍ଧନ କରିବାର ପାଇଁ
ଧରା ବାହାରିବା କାଳେ ତରତର ହୋଇ ।
ଭକ୍ତ ଭାବଗ୍ରାହୀ ପ୍ରଭୁ ଶ୍ରୀ ମଧୁସୂଦନ
ସୁପ୍ରସନ୍ନ ନିଜରୂପ ଦେହେ ଦରଶନ ।

ଚତୁର୍ଭୁଜ ମୂର୍ତ୍ତି ଦେଖି ଧରା ଦ୍ରୋଣ ଦୁଇ
ଭାବ ଗଦ ଗଦେ ସ୍ତୁତି ଆରମ୍ଭିଲେ ତହିଁ ।
ତାହାଙ୍କ ସ୍ତବେ ତୁଷ୍ଟ ହୋଇ ନାରାୟଣ
କି ବର ମାଗୁଛ ବୋଲି ବୋଇଲେ ତକ୍ଷଣ ।
ଧରା ଦ୍ରୋଣ ବୋଇଲେକ ଯୋଡ଼ି ବେନିକର
ତୁମ୍ଭ ରୂପ ଦରଶନେ ହୋଇଲୁ ନିସ୍ତାର ।
ପ୍ରୟୋଜନ ନାହିଁ ଆନ ବରରେ ଆମ୍ଭର
ପୁତ୍ର ରୂପେ ତୁମ୍ଭଙ୍କୁ ଲଭିବୁ ଚକ୍ରଧର ।
ବିଷ୍ଣୁ ବୋଇଲେ ଭୂଭାର ହରଣ ନିମନ୍ତେ
ଦ୍ୱାପର ଯୁଗରେ ଅବତାର ହେବି ମର୍ତ୍ତ୍ୟେ ।
ସେହିକାଳେ ତୁମ୍ଭେ ଦୁହେଁ ଗୋକୁଳ ନଗରେ
ରହିଥିବ ଜାଣ ନନ୍ଦ ଯଶୋଦା ନାମରେ ।
ତୁମ୍ଭ ପୁଣ୍ୟବଳେ ମୁହିଁ ନର ରୂପ ହୋଇ
ଦେବକୀ ଉଦରେ ଜନ୍ମ ହୋଇବଇଁ ଯାଇ ।
ତୁମ୍ଭ କୋଳେ ବସୁଦେବ ରଖେ ଥୋଇକରି
ବିଜୁଳି କନ୍ୟା ଆଣିବ ଯେ ପାଲଟ କରି ।
ପୁତ୍ର ରୂପେ ମୋତେ ତୁମ୍ଭେ କରିବ ପାଳନ
ସତ୍ୟ ସତ୍ୟ କହୁଅଛି ଏ ମୋର ବଚନ ।
ଏତେ କହି ଅନ୍ତର୍ଦ୍ଧାନ ହେଲେ ଚକ୍ରଧର
କୃତାର୍ଥ ହୋଇଲେ ବେନି ପ୍ରାଣୀ ସେ ସତ୍ୱର ।
ଜନ୍ମାନ୍ତରେ ଦ୍ୱାପରରେ ସେହୁ ବ୍ରଜ ଧାମେ
ଧରା ଦ୍ରୋଣ ଜାତ ନନ୍ଦ ଯଶୋଦାର ନାମେ
ପୂର୍ବ ଜନ୍ମ ପୁଣ୍ୟ ଫଳେ ସେ ବିପ୍ର ଦମ୍ପତି
ପୁତ୍ର ରୂପରେ ବିଷ୍ଣୁଙ୍କୁ ଲଭିଲେ ସମ୍ପ୍ରତି ।
ମନରୁ ତୁମ୍ଭ ସଂଶୟ ଘୁଞ୍ଚାଇବା ପାଇଁ
ସଞ୍ଜପି କହିଲି ଏହା ଆହେ ତପିସାଇଁ ।
ଏହିପରି ନନ୍ଦ ଯଶୋଦାଙ୍କ ପୂର୍ବ ଗାଥା
ବୁଝାଇ କହିଲେ ଋ ପୁରାଣ ବକତା ।
ବ୍ରହ୍ମ ପୁରାଣ ଉତ୍ତର ଖଣ୍ଡର ଆଖ୍ୟାନ
ସୁଧା ଠାରୁ ସୁମଧୁର ପାନ କର ଜନ ।
ଆହେ ସୁଜ୍ଞ ଜନେ ଦୋଷ ନ ଧରିବ ମୋର
ଚରଣ ତଳେ ବିନତି କରେ କ୍ଷେତ୍ର ଗୁର ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ନନ୍ଦ ଯଶୋଦାଙ୍କ ପୂର୍ବଜନ୍ମ କଥନେ
ନାମ ଷଟ୍ଚତ୍ୱାରିଂଶୋଽଧ୍ୟାୟଃ ।

## ସପ୍ତଚତ୍ୱାରିଂଶ ଅଧ୍ୟାୟ
## ପୂର୍ଣ୍ଣବ୍ରହ୍ମ କୃଷ୍ଣଙ୍କ ଶୈଶବଲୀଳା ଓ ବାଲ୍ୟଲୀଳା ବର୍ଣ୍ଣନ

ଶୌନକ ଉବାଚ

ଏଥୁଅନ୍ତେ ବ୍ରହ୍ମ ମୁନି ଶୌନକ ସୁଧୀର
ସୂତମହର୍ଷିଙ୍କୁ ପୁଚ୍ଛାକଲେ ମୃଦୁଗୀର ।
ବୋଇଲେ ଆହେ ସର୍ବଜ୍ଞ ସର୍ବଶାସ୍ତ୍ରବେତ୍ତା
କହିଲ ଯାହା ଆପଣ ପୁଣ୍ୟମୟ କଥା ।
ନନ୍ଦ ଯଶୋଦାଙ୍କ ପୂର୍ବଜନ୍ମ ସମାଚାର
ଶ୍ରବଣ କରି ଆନନ୍ଦ ଲଭିଲୁଁ ଅପାର ।
ପରଂବ୍ରହ୍ମ ଭଗବାନ ଶ୍ରୀ ମଧୁସୂଦନ
ଗୋପପୁରେ କି କି ଲୀଳା କଲେକୀଭିଆଣ ।
ଧରା ଦେବୀ ତପସ୍ୱିନୀ ଯଶୋମତୀ ନାମେ
ବିଖ୍ୟାତହୋଇଲେ ସତୀ ସେ ଗୋକୁଳଗ୍ରାମେ
ଦ୍ରୋଣଶର୍ମା ଗୋପପତି ନନ୍ଦରୂପେ ଜନ୍ମି
ପୁତ୍ର ଭାବରେ ପାଳିଲେ ପ୍ରଭୁ ଅନ୍ତର୍ଯାମୀ ।
ବାତ୍ସଲ୍ୟ ମମତା ରସେ ମଜ୍ଜି ସେ ଦମ୍ପତି
କେସନେ ଶ୍ରୀହରିଙ୍କି ସେ ଲାଳନ କରନ୍ତି ।
ସୂକ୍ଷ୍ମେ ସରଳ କଥାରେ କହିବ ବୁଝାଇ
ଯେଉଁ ଯେଉଁ ଲୀଳା କଲେ ପ୍ରଭୁ ଗୋପେରହି
ପ୍ରଥମେ ଶୈଶବଲୀଳା ଜଗଦୀଶଙ୍କର
ଆମ୍ଭମାନଙ୍କ ଆଗରେ ବଖାଣ ସତ୍ୱର ।
ବାଲ୍ୟ ପୌଗଣ୍ଡ କୈଶୋର ଲୀଳା କ୍ରମେ ପୁଣି
ଶୁଣାଇବ ଠିକେ ଠିକେ ହେ ବକ୍ତା ଅଗ୍ରଣୀ ।
ସଗୁଣ ବ୍ରହ୍ମଙ୍କ ସେହି ବିଚିତ୍ର ଚରିତ
ଶୁଣି ଆମ୍ଭେ ମୁନିମାନେ ହୋଇବୁଁ କୃତାର୍ଥ ।
ଶୌନକ ମୁନିଙ୍କ ମୁଖୁଁ ଶୁଣି ଏ ବଚନ
କହି ଆରମ୍ଭିଲେ ପୌରାଣିକ ତପୋଧନ ।

ସୂତ ଉବାଚ

ଆହେ ଶୌନକାଦି ମୁନି ଶୁଣ ମୋର ଗୀର
ପ୍ରଭୁଙ୍କ ଶୈଶବ କାଳ ଲୀଳା ସମାଚାର ।
ଦୁର୍ଦ୍ଦାନ୍ତ କଂସ ପାମର ମଧୁପୁରେ ଥାଇ
ମନମଧ୍ୟରେ ବସିଣ ଭାବନା କରଇ ।
ମୋହର ସଂହାର କର୍ତ୍ତା କାହିଁ ଜନମନ୍ତି
କେମନ୍ତେ ତାହା ସମ୍ବାଦ ପାଇବି ମୁଁ ଏଥି ।
ଏମନ୍ତେ ଚିନ୍ତାର୍ଥୀ ହୋଇ ମଥୁରା ନୃପତି
ବିଦ୍ୱେଷ ଅନଳେ ହୁଏ ତାପିତ ଦୁର୍ମତି ।
ଶୁଣି ପାରିଲା ସେ ଦୁଷ୍ଟ ଦାରୁଣ ଦାନବ
ଗୋପରାଜ ନନ୍ଦ ଘରେ ଜନମ ଉତ୍ସବ ।
ସେହି ମହା ଉତ୍ସବରେ ବିରାଟ ବ୍ୟାପାର
ଶ୍ରବଣ କରନ୍ତେ ଗୁଡ଼ି ଥରିଲା ତାହାର ।
ସେ ଜନ୍ମ ଶିଶୁକୁ ବଧ କରିବାର ପାଇଁ
ଉପାୟ ଚିନ୍ତିଲା ମନେ ମହାକ୍ରୋଧ ବହି ।
କୁଟିଳ ପ୍ରକୃତିକ ସେ ଅନ୍ତରେ ରଖିଲା
ବାହାରେ ନନ୍ଦ ସହିତ ସଦ୍ଭାବ ସ୍ଥାପିଲା ।
କପଟେ ପୁତନା ଧାଈକି ସେ ବେଗ କରି
ପଠାଇଲା ଦୁରାଚାର ଗୋକୁଳ ନଗରୀ ।
କଂସର ଅଭୀଷ୍ଟ ସାଧିବାକୁ ମନେ ଗୁଣି
ବକା ନାମେ ରାକ୍ଷାସୁଣୀ ବକର ଭଉଣୀ ।
ବେଶଭୂଷା ଅଳଙ୍କାରେ ମଣ୍ଡି ହୋଇକରି
ମାୟାରେ ହୋଇଲା ସେ ଯେ ଅପୂର୍ବ ସୁନ୍ଦରୀ
ମନ୍ଥର ଗମନେ ନନ୍ଦ ଭୁବନକୁ ଗଲା
ଧାଈପଣେ କ୍ଷୀର ଦେବି କପଟେ ବୋଇଲା ।
ଶିଶୁ ଘାତିନୀ ପୁତନା ରାକ୍ଷସୀ ବଚନେ
ଯଶୋଦା ରଖିଲେ ତାକୁ ନିଜ ଧାଈପଣେ ।
ରାତ୍ରି କାଳେ ବିଷ ସ୍ତନ ଦ୍ୟନ୍ତେ ଶିଶୁମୁଖେ
କ୍ଷୀରପାନ ସଙ୍ଗେ ପ୍ରାଣ ଶୋଷିଲେ ପ୍ରତ୍ୟକ୍ଷେ
ଶିଶୁ ଶ୍ରୀହରି ବକାର ବକ୍ଷସ୍ଥଳେ ରହି
ଯେତେବେଳେ କ୍ଷୀରସଙ୍ଗେ ପ୍ରାଣଦେଲେ ପିଇ
ଘୋର ରଡ଼ି ଛାଡ଼ି ଦୁଷ୍ଟା ଲଭିଲା ମରଣ
ସକଳେ ଆଶ୍ଚର୍ଯ୍ୟ ହେଲେ ଦେଖି ସେ ଘଟଣ
ଏମନ୍ତ ପୁତନାବଧ କହିଲଇଁ ଠିକେ
ଶକଟ ଭଞ୍ଜନ ଗାଥା ଶୁଣ କଉତୁକେ ।
ଏକଦିନେ ଯଶୋବତୀ ଶିଶୁ ସନ୍ତାନକୁ
ଶୁଆଇ ଦେଇ ଚଳିଲା ଦଧି ମନ୍ଥିବାକୁ ।
ଏମନ୍ତ କାଳରେ ଶିଶୁ ରୂପୀ ନାରାୟଣ
କରିଲେ ଯେମନ୍ତ କୃତ୍ୟ ମନଦେଇ ଶୁଣ ।
ଜନନୀଙ୍କ ସ୍ତନ ପାନ କରିବାର ଛଳେ
କାନ୍ଦି୨ ହସ୍ତ ପାଦ ହଲାଇ ଲାଗିଲେ ।
ଶକଟରେ ବାଜନ୍ତେ ସେ କୋମଳ ଚରଣ
ଭାଙ୍ଗି ପଡ଼ିଲା ଶକଟ କରି ଗରଜନ ।

ଦୁଧ ଦଧି ଲବଣୀ ଯେତେକ ଶକଟରେ
ଲଦା ହୋଇଥିଲା ଭାଙ୍ଗି ଭାସିଲା ଗୃହରେ ।
ତରତରେ ଧାଇଁ ଆସି ନନ୍ଦର ଘରଣୀ
ଦେଖିଲେ ଭାସୁଛି ଘରେ ଗୋରସ ଲବଣୀ ।
ଶକଟଟା ସେଠାବରେ ଭାଙ୍ଗି ପଡ଼ିଅଛି
ପୁତ୍ରର ଶରୀରେ କ୍ଷତ ନ ହୋଇଛି କିଛି ।
ପର୍ବତ ଆକାରେ ତହିଁ ବିରାଟ ଅସୁର
ପ୍ରାଣହାର ପଡ଼ି ଅଛି ଦୁଷ୍ଟ ଦୁରାଚାର ।
ତା ଦେଖି ଚକିତ ହେଲେ ଗୋପାଳ ସମସ୍ତ
ଶକଟ ଭଞ୍ଜନ କଥା ଅଟଇ ଏମନ୍ତ ।
ଏଥୁଅନ୍ତେ ତୃଣାବର୍ତ୍ତ ବଧ କଥା ଶୁଣ
ଏକ ମନକର ଏକ ଆଶ୍ଚର୍ଯ୍ୟ ଘଟଣ ।
ପୁତନା ଶକଟାସୁର ମରଣ ବାରତା
ଶ୍ରବଣ କରି ସେ କଂସ କଲକ ଅହନ୍ତା ।
ତୃଣବର୍ତ୍ତ ନାମେ ଏକ ଦୈତ୍ୟଙ୍କୁ ପେଷିଲା
କଂସର ଆଜ୍ଞାରେ ଗୋପପୁରେ ଚଳିଗଲା ।
ଅଗଣା ମଧ୍ୟରେ କଳାକାହ୍ନୁକୁ ଶୁଆଇ
ଯାଇଥିଲେ ମାତା ପାଣି ଆଣିବାର ପାଇଁ ।
ଯଶୋବନ୍ତୀ ପ୍ରବେଶନ୍ତେ ଯମୁନା କୂଳେନେ
ଅକସ୍ମାତ ତୃଣାବର୍ତ୍ତ ମିଳେ ସେହି ସ୍ଥାନେ ।
ପବନ ରୂପେ ଭାଙ୍ଗିଲା ବୃକ୍ଷ ଲତାମାନ
ନାନା ଉତ୍ପାତ ସେ କଲା ଛାଡ଼ି ଗରଜନ ।
ଶିଶୁ ରୂପୀ ଶ୍ରୀକୃଷ୍ଣଙ୍କୁ ସେହି ଦୁରାଚାର
ଆକାଶ ମାର୍ଗେ ଉଡ଼ାଇ ନେଲାକ ପାମର ।
ଅନ୍ତର୍ଯ୍ୟାମୀ ନାରାୟଣ ଯଶୋଦା ଦୁଲାଳ
ଦାନବ ଗଳା ଧରି ମୋଡ଼ିଲେ ତତ୍କାଳ ।
ନିଜରୂପଧରି ଦୈତ୍ୟ ମହୀରେ ପଡ଼ିଲା
ଘୋର ଗରଜନ କରି ଜୀବନ ଛାଡ଼ିଲା ।
ସ୍କନ୍ଧ ଉପରେ ତାହାର ଥିଲେ ଶିଶୁ ହରି
କିଛିମାତ୍ର କ୍ଷତ ହୋଇ ନ ଥିଲା ତାଙ୍କରି ।
ଙ୍କ ଗୋପ ଗୋପୀ ଦେଖି ଆନନ୍ଦିତ ହେଲେ
ନନ୍ଦ ଯଶୋଦା ପୁତ୍ରକୁ କୋଳ କରି ନେଲେ
ଦ୍ୱାପର ତୃଣାବର୍ତ୍ତ ଅସୁର ଯେ ମଲା
ବ୍ୟ ଶରୀରରେ ସ୍ୱର୍ଗପୁରେ ଚଳିଗଲା ।
ଏଥୁଅନ୍ତେ ଶୁଣ ମୁନି ଅପୂର୍ବ କଥନ
ନନ୍ଦ ସୁତଙ୍କର ନାମକରଣ ବିଧାନ ।

ଯଦୁବଂଶର ଯେ ଅଟନ୍ତି କୁଳ ପୁରୋହିତ
ତାହାଙ୍କର ନାମ ଅଟେ ଗର୍ଗ ତପୋବନ୍ତ ।
ତାହାଙ୍କୁ ଡକାଇ ବସୁଦେବ ବନ୍ଦୀଘରେ
ପଠାଇଲେ ନନ୍ଦ ରାଜା ଗୃହେ ଗୋପପୁରେ ।
ଯଶୋଦା ରୋହିଣୀଙ୍କର ଦୁଇ କୁମରଙ୍କୁ
ନାମ ଦେଲେ ଗର୍ଗମୁନି ଦେଖିଣ ତାହାଙ୍କୁ
କୃଷ୍ଣବୋଲି ଯଶୋଦାର ପୁତ୍ର ନାମ ଦେଲେ
ରୋହିଣୀ ନନ୍ଦନ ବଳରାମ ଯେ ବୋଇଲେ ।
ଏମନ୍ତେ ନାମକରଣ ବିଧାନର ଅନ୍ତେ
ଅପୂର୍ବ ଘଟଣା ଯାହା ଶୁଣ ତପୋବନ୍ତେ ।
ମାୟାଧର ଶିଶୁପୁତ୍ର ସ୍ୱମାୟା ଭିଆଣେ
ବଢ଼ିଲେ ଗୋପରେ ଚନ୍ଦ୍ରସମ ଦିନୁଦିନେ ।
ବାତ୍ସଲ୍ୟମୟୀ ଜନନୀ ଯଶୋଦା ସୁନ୍ଦରୀ
ଦିନେ ବାନ୍ଧିବାର ପାଇଁ ମନରେ ବିଚାରି ।
ପଘା ଯୋତ ଦଉଡ଼ି ଯେତେକ ଥିଲା ଘରେ
କ୍ରମେ ସବୁ ଆଣି ବାନ୍ଧିଲେ କୃଷ୍ଣ ଅଣ୍ଟାରେ ।
ନ ଅଣ୍ଟିବାରୁ ଯଶୋଦା ହୋଇଲେ ଚକିତ
ଶେଷେ ଗୃହଖଣ୍ଡେ ଡୋରିରେ ବନ୍ଧା ଶ୍ରୀଅଚ୍ୟୁତ
ଏମନ୍ତେ ମାୟା ବନ୍ଧନ ଯଶୋବନ୍ତୀଙ୍କର
ଦାମେ ବାନ୍ଧିବାରୁ ନାମ ହେଲା ଦାମୋଦର
ବିଚିତ୍ର କଥନ ଶୁଣ ଏଥୁ ଅନନ୍ତରେ
ରାମକୃଷ୍ଣଙ୍କର ଅନ୍ନ ପ୍ରାଶନ ଚେଷ୍ଟାରେ ।
ଗର୍ଗ ମୁନିଙ୍କ ବଚନ କରିଣ ପାଳନ
ସ୍ଥିର କରି ଯେ ଅନ୍ନ ପ୍ରାଶନର ଦିନ ।
ଆନନ୍ଦ ମନରେ ନନ୍ଦରାଣୀ ଯଶୋମତୀ
ଆୟୋଜନ କରି ଦଧି ଦୁଗ୍ଧ ଘୃତ ଚିତ୍ତି ।
ନାନାବିଧ ଗୋରସ ଦ୍ରବ୍ୟ ଶର୍କରା ସହିତେ
ଖଣ୍ଡସର ଲଡ଼ୁ ଆଦି ମିଷ୍ଟାନ ଯା ଯେତେ ।
ବିବିଧ ପ୍ରକାର ଫୁଲ ଫଳ ଠୁଳକଲେ
ଗୋକୁଳରେ ମହା ମହୋତ୍ସବ ଭିଆଇଲେ ।
ରାମକୃଷ୍ଣଙ୍କର ଅନ୍ନ ପ୍ରାଶନର ବିଧି
ଯତନେ ଗୋପ ଗୋପିନୀ ମିଳିକଲେ ସିଦ୍ଧି ।
କେ ବର୍ଣ୍ଣି ପାରିବ ସେହି ଉତ୍ସବ ସମ୍ଭାର
ସଙ୍କେପି କହିଲି ମାତ୍ର ଆହେ ମୁନିବର ।
ଏଥୁଅନ୍ତେ ଶୁଣ କୃଷ୍ଣ ବାଲ୍ୟଲୀଳା କଥା
ଯାମଳାର୍ଜୁନ ଭଞ୍ଜନ ଆଦି ଯାହା ଯଥା ।

ଯେମନ୍ତେ ଯାମଳା ତରୁ ହୋଇଲ ମୁକତ
କୃଷ୍ଣର ମହିମା ବଳ ଅତି ଅଲୌକିତ ।
କୁବେର ତନୟ ଦୁଇ ଭକ୍ତ ଶିବଙ୍କର
ମଣିଗ୍ରୀବ ନଳକୁବେର ଯେ ବେନି ବୀର ।
ଅହଙ୍କାର ଦର୍ପେ ନାନା ଅତ୍ୟାଗୃହୀ ଥିଲେ
ନାରଦଙ୍କ ଅଭିଶାପେ ବୃକ୍ଷରୂପ ହେଲେ ।
ଶିଶୁ କୃଷ୍ଣଙ୍କୁ ଯଶୋଦା ଉଦୁଖଳେ ବାନ୍ଧି
ଗୃହକାର୍ଯ୍ୟେ ସେହିକାଳେ ହେଉଥିଲେ ଧନ୍ଦି
ଉଦୁଖଳ ସହିତରେ ଟାଣି ହୋଇକରି
ଯାମଳ ତରୁ ସନ୍ଧିରେ ପଶନ୍ତେ ଶ୍ରୀହରି ।
ଆକର୍ଷଣୁ ଦୁଇବୃକ୍ଷ ଉପୁଡ଼ି ପଡ଼ିଲା
ନାରଦଙ୍କ ଅଭିଶାପ ସମ୍ପୂର୍ଣ୍ଣ ହୋଇଲା ।
କୁବେର ନନ୍ଦନ ଦୁଇ ହୋଇଣ ମୁକତ
କରଯୋଡ଼ି ସ୍ତବକଲେ କୃଷ୍ଣଙ୍କୁ ବହୁତ ।
ଦୟାମୟ ହରିଙ୍କର ସୁଦୟାରୁ ଜାଣ
ଦିବ୍ୟ ଦେହେ ଗଲେ ସେହୁ ବୈକୁଣ୍ଠ ଭୁବନ
ଗୋପ ଶିଶୁମାନେ ଦେଖି ହୋଇଲେ ଚକିତ
ସ୍ୱର୍ଗପୁରେ ସର୍ବ ଦେବେ ହେଲେ ଆନନ୍ଦିତ
ଏମନ୍ତେ ଯାମଳାର୍ଜ୍ଜୁନ ଭଞ୍ଜନ କଥନ
ମୁନି ମେଳେ ପ୍ରକାଶିଲେ ସୁତ ମହାମୁନି ।
ଶ୍ରବଣକରି ଶୌନକ ଆଦି ମୁନିଗଣ
ଆନନ୍ଦ ସାଗରେ ସର୍ବେ ହେଲେ ନିମଗନ ।
ତଦନନ୍ତେଣ ପୁଚ୍ଛାକଲେ ଶୌନକ ସୁଧୀର
ଏ ଉତ୍ତାରୁ କି କି ଲୀଳା କଲେ ବିଶ୍ୱମ୍ଭର ।
କହ ଆହେ ପୌରାଣିକ ଠିକ ଠିକ କରି
ଶୁଣି କୃତାର୍ଥ ହୋଇବୁ ସର୍ବ ତପସ୍ୱୀ ।
ସୁତମୁନି ବୋଲନ୍ତି ହେ ଶୁନକର ସୁତ
ବିଚିତ୍ର ହୃନ୍ଦରିଆ ସେ ଯଶୋଦା ପୁତ୍ର ।
ଯେତେ ଯାହା ଗୋପପୁରେ ଖେଳାଲୀଳା କଲେ
ଗୋଟିଏ ମୁଖରେ ତାହା କହିନୁହେଁ ଭଲେ ।
ଦିନକର କଉତୁକ ରହସ୍ୟ ଘଟଣ
ଯାହା କଲେ ସେ ଅଚ୍ୟୁତ କହୁଛି ତା ଶୁଣ ।
ବାଲ୍ୟକ୍ରୀଡ଼ା ପ୍ରସଙ୍ଗରେ ଖାଆନ୍ତେ ସେ ମାଟି
ଜନନୀ ଗର୍ଜ୍ଜନ କରି କହେ ଦେଖା ପାଟି ।
ହାଇ ମାରିବା ଛଳରେ କୃଷ୍ଣ ମେଲୁଁ ତୁଣ୍ଡ
ସେ ଗର୍ଭେ ଦେଖିଲେ ମାତା ଅଶେଷ ବ୍ରହ୍ମାଣ୍ଡ

ଏମନ୍ତେ ଅନେକ ଅଦ୍ଭୁତ କ୍ରୀଡ଼ା କରି
ଗୋପ ଗୋପୀଙ୍କି ଭୁଲାନ୍ତି ପରବ୍ରହ୍ମ ହରି ।
କାହା ଘରେ ପଶି ଚୋରି କରନ୍ତି ଗୋରସ
କାହାର ଭାଙ୍ଗନ୍ତି ଦଧିଭାଣ୍ଡ ହୃଷୀକେଶ ।
କାହା ପୁଅକୁ କନ୍ଦାନ୍ତି ଗେଞ୍ଚରେ ଚିମୁଟି
କାହା ଅଗଣେ ନାଚନ୍ତି ଆନନ୍ଦେ କୁହାଟି ।
କାହା ପଣନ୍ତ ଓଟାରି ମାଗନ୍ତି ଲବଣୀ
କାହା କୋଳେଗେଲ ହୋନ୍ତି ଭକ୍ତ ଚିନ୍ତାମଣି
ଏହିରୂପେ ଖେଳିବୁଲି ଗୋପୀଙ୍କର ଘରେ
ବାଲ୍ୟଲୀଳା କରୁଥାନ୍ତି ଶିଶୁଙ୍କ ସଙ୍ଗରେ ।
କେବେ କେବେ ନାଚୁଥାନ୍ତି ତ୍ରିଭଙ୍ଗ ରଙ୍ଗରେ
କେବେ ବା ଗାଆନ୍ତି ଗୀତ ଗୋପୀଙ୍କ ସଙ୍ଗରେ
କେବେ ଗୋପ ନାରୀମାନେ ଦେଉଁ କରତାଳି
ତଳି ତଳି ନାଚନ୍ତି ରଙ୍ଗିଆ ବନମାଳୀ ।
କେବେ ଗୋପୀଙ୍କ ମଧ୍ୟରେ ନୀଳମଣି ଘୁଞ୍ଚି
ହାଣ୍ଡିଝୁଲି ଗୀତେ ରସି ରସେ ଝୁଲୁଥାନ୍ତି ।
ଦିନକର ଆଚମ୍ବିତ କଥା ଶୁଣ ମୁନି
କୋଳି ବିକିବାକୁ ଗୋପେ ଏକ ଶବରଣୀ ।
ପସରା କାଖରେ ଘେନି ଅଇଲା ଚତୁରୀ
କିଏ କୋଳି ନେବ ଆସ ଡାକେ ବୁଲିକରି ।
ଗୋପଦାଣ୍ଡେ ରୁଣ୍ଡହୋଇ ଗୋପ ଶିଶୁଗଣ
କୋଳି କିଣିବାକୁ ଧାଇଁ ଆସନ୍ତି ବହନ ।
ସେ ଗୋପ ଶିଶୁଙ୍କ ମେଳେ ଯଶୋଦା ସଙ୍ଗାଳି
ଧାନ୍ୟ ଅଞ୍ଜୁଳିଏ ଧରି ଅଇଲେକ ଚଳି ।
ଅଙ୍ଗୁଳି ଜଳାରେ ଧାନ୍ୟ ପଡ଼ି ଗଳି ଗଳି
ଶବରୀ ନିକଟେ ପହୁଞ୍ଚିଲେ ତଳି ତଳି ।
ହସି କହିଲେ ତାହାଙ୍କୁ ଛଇଳ କହ୍ନାଇ
କୋଳି ଦେଏ ଧାନ୍ୟଦେଇ ଖାଇବଇଁ ମୁହିଁ ।
ଦେଖିଲା ଶବରୀ କୃଷ୍ଣହାତେ ନାହିଁ ଧାନ
ସବୁ ଗଳି ପଡ଼ିଅଛି ଅଞ୍ଜୁଳି ଯେ ଶୂନ୍ୟ ।
ଅତି ମନୋହର ସୁକୋମଳ ପଦ୍ମକର
ଭକ୍ତ କୋକନଦ ସମ ଅତ୍ୟନ୍ତ ସୁନ୍ଦର ।
ଶବରଣୀ ସ୍ନେହଭରେ କହଇ ବଚନ
ମୋର କୋଳେ ବସି କୋଳି ଖାଅ ବାପଧନ
ତାହାଶୁଣି ଶିଶୁ ରୂପୀ ଜଗତ ଜୀବନ
ବସିଲେ ଶବରୀ କୋଳେ ଯାଇଣ ବହନ ।

ଶ୍ରୀହସ୍ତେଭୁଞ୍ଜିଲେ କୋଳି କୌତୁକରେନେଇ
ସବୁ କୋଳିଯାକ ପଶରାରୁ ଦେଲେ ଖାଇ ।
ଖାଲି ପଶରାକୁ ଦେଖି ସେହି ଶବରୁଣୀ
ନିଜ ଗୃହକୁ ଫେରିଲା ପସରା ସେ ଘେନି ।
ସେ ଯେତେବେଳେ ପସରା ତଳୁ ଉଠାଇଲା
ବିଶେଷ ଓଜନ ହେତୁ ଟେକି ନ ପାରିଲା ।
ତହୁଁ ସେ କୋଳି ବିକାଳୀ ବିଚାରଇ ମନେ
ଭୁଚ୍ଛ ପଶରାଟା ଭାରି ହୋଇଲା କେସନେ ।
ଏତେ ବୋଲି ପଶରାରୁ କାଢ଼ି ଦ୍ୟନ୍ତେ କନା
ଦେଖିଲା ପୂର୍ଣ୍ଣ ହୋଇଛି ତହୁଁ ବହୁ ସୁନା ।
ଅନୁମାନ କରି ଜାଣି ପାରିଲା ଶବରୀ
ଏ ନିଶ୍ଚୟ ପରବ୍ରହ୍ମ ଦୟାଳୁ ଶ୍ରୀହରି ।
ଏତେଭାବି ଶ୍ରୀଚରଣ ଧରି ଶବରଣୀ
ମୁକତି ବାଞ୍ଛା କରନ୍ତେ ଜାଣି ଚକ୍ରପାଣି ।
ପାଦପଦ୍ମ ଦ୍ୱୟ ତାର ମସ୍ତକେ ଲଗାଇ
ବୋଇଲେଦେହାନ୍ତେମୋତେ ପାଇବୁଯେତୁହି
କାହାକୁ ନ କହି ନିଜ ଗୃହେ ଚଳଯାଅ
ଏହି ସୁବର୍ଣ୍ଣକୁ ନେଇ ଆନନ୍ଦରେ ରୁହ ।
ଏତେ ବୋଲି ତାର ବାଞ୍ଛା ପୂର୍ଣ୍ଣକଲେ ହରି
ଫେରିଲା ଆନନ୍ଦେ ନିଜ ଗୃହକୁ ଶବରୀ ।
ଏଥୁଅନ୍ତେ ବାଲ୍ୟଲୀଳା କଲେ ଯାହା ସାଇଁ
ସକଳ ତାପସେ ଶୁଣ ଏକମନ ହୋଇ ।
ଏକଦିନେ କୃଷ୍ଣ ଆଉ ରୋହିଣୀ ନନ୍ଦନ
ଯମୁନା ତଟକୁ ପୁଣି କଲେକ ଗମନ ।
ଆଉ ଯେତେ ଗୋପବାଳ ତାଙ୍କ ସଙ୍ଗେଥିଲେ
ପରମ ଆନନ୍ଦେ ସର୍ବେ ଖେଳ ଆରମ୍ଭିଲେ ।
ଗୋପ ଶିଶୁଗଣ କ୍ରୀଡ଼ାରସେ ହେଲେ ମତ୍ତ
ହୋଇଲା ଅନେକ ବେଳ ମଧ୍ୟାହ୍ନ ଗତପ୍ରାୟ ।
ବହୁତ ସମୟ ହୋଇନ୍ତେ ଦେଖି ଯଶୋମତୀ
ପୁତ୍ରକୁ ନ ଦେଖି ହେଲେ ବ୍ୟାକୁଳିତା ଅତି ।
ବିଚାରନ୍ତେ ନନ୍ଦରାଣୀ ଆପଣା ମନର
କାହିଁ ନ ଆସେ ମୋ ସୁତ ହୋଇଲା ଉଚ୍ଛୁର
କିଛି ଖାଇନାହିଁ ମୋର ରୁକ୍ମୁଣୀର ଧନ
କାହାସଙ୍ଗେ ଖେଳୁଅଛି ଅଖିଳ ରତନ ।
ରୋହିଣୀଙ୍କ ସନ୍ନିକଟକୁ ବେଗ ହୋଇ ଯାଇ
ବୋଇଲେ କେଣିକି ଗଲେ ମୋ ରାମ କହ୍ନାଇ

ଦେଖ ଦୁଇ ପ୍ରହର ଯେ ସମୟ ହେଲାଣି
କିଛି ଭୁଞ୍ଜିନାହିଁ ମୋର ପୁଅ ନୀଳମଣି ।
କେଜାଣି କପାଳେ ଆଜ କି ଅଛି ମୋହର
ଭ୍ରମଣ କରନ୍ତି ଶତ୍ରୁ ପଣେ ପଦେ ତାର ।
ଏତେ ବୋଲି ନନ୍ଦରାଣୀ ଆକୁଳ ଚିତ୍ତରେ
ଖୋଜି ଖୋଜି ପ୍ରବେଶିଲେ ଯମୁନାର ତୀରେ
ଗୋପ ବାଳକ ମେଳରେ ରାମ ଶିଖିପିଚ୍ଛ
ଅତି ଉତ୍ସାହରେ ଲୁଚକାଳି ଖେଳୁଛନ୍ତି ।
ଧାଇଁ ଧାଇଁ କୃଷ୍ଣେ କୋଳ କଲେ ନନ୍ଦରାଣୀ
ବଳରାମଙ୍କୁ କାଖରେ ଧରିଲେ ରୋହିଣୀ ।
ସକଳ ଶିଶୁମାନଙ୍କୁ ସଙ୍ଗରେ ଆଣିଲେ
ଅପୂର୍ବ ପଦାର୍ଥମାନ ଯତ୍ନେ ଭୁଞ୍ଜାଇଲେ ।
ଏହିପରି ନନ୍ଦରାଣୀ ବାତ୍ସଲ୍ୟ ପ୍ରେମରେ;
କୃଷ୍ଣେ ଲାଳନ ପାଳନ କରନ୍ତି ସ୍ନେହରେ ।
ଏହାପରେ ଶୁଣ ମୁନି ଆନ ସମାଚାର
ଗୋଧନ ଚାରଣ ଲୀଳା ଅତି ଚମତ୍କାର ।
କୃଷ୍ଣ ବଳରାମ ବେନିଭାଇ ଆନନ୍ଦରେ
କରନ୍ତି ଯେ ବାଲ୍ୟଲୀଳା ଗୋକୁଳ ନଗରେ ।
ସାତବରଷର ହୋଇନ୍ତେ ଶ୍ରୀନନ୍ଦ ନନ୍ଦନ
ଧେନୁ ଚରାଇବା ପାଇଁ ବଳାଇଲେ ମନ ।
ଜନନୀଙ୍କୁ ଏକଦିନେ ବୋଇଲେ କହ୍ନାଇ
ଗୋରୁ ଚରାଇବି ମାତ ବନସ୍ତରେ ଯାଇ ।
ଭାଇ ବଳରାମ ମୋର ସଙ୍ଗତରେ ଥିବେ
ଆଉ ଯେତେ ଗୋପ ପୋଏ ସକଳେଚଳିବେ
ଏମନ୍ତ ଶୁଣି ଯଶୋଦା ନେତ୍ର ଥନ ଥନ
ପ୍ରବୋଧ କରି କହନ୍ତି ମଧୁର ବଚନ ।
ଆରେ ମୋ ଜୀବନ ଧନ ନୟନ ପିତୁଳି
ମୋର ରତ୍ନୁଣୀ ରତନ କାହ୍ନୁ ଗଳାମାଳି ।
କି କଥା କହୁଛ ମୋତେ ଆହାରେ କହ୍ନାଇ
ରାଜସୁତ ହୋଇ କମ୍ପା ଚରାଇବୁ ଗାଈ ।
କେତେ ରଖୁଆଳ ଅବା ନାହାନ୍ତି ମୋହର
ଏ ବୁଦ୍ଧି କେ ଶିଖାଇଲା ତୋତେ ଧନମୋର
ଧେନୁ ରଖିବାକୁ ବନେ ନ ବଳାଅ ମନ
ତୁହି ଏକୋଇର ବଳା ମୋ ବଂଶି କେତନ ।
ଏମନ୍ତ କୃଷ୍ଣଙ୍କୁ ପ୍ରବୋଧିଣ ଯଶୋମତୀ
ଗୋପରାଜ ନନ୍ଦଙ୍କୁ ସେ କହିଲେ ଭାରତୀ ।

ତାହା ଶୁଣି ନନ୍ଦ କରେ କୃଷ୍ଣଙ୍କୁ ବାରଣ
ସୁକୁମାର ସୁତ ଗୋଷ୍ଠେ ଯିବୁ କି କାରଣ ।
କିସ ଅବା ଊଣା ଅଛି ମୋ ରାଜ ଭଣ୍ଡାରେ
ଗୋରୁ ଚରାଇବୁ କିମ୍ପା ଇତର ପ୍ରକାରେ ।
ଏହା ଶୁଣି ପିତାଙ୍କୁ କହନ୍ତି ଦାମୋଦର
ଗୋ ଚାରଣ ଯେ ଆମ୍ଭର କୂଳ ବ୍ୟବହାର ।
ଯେତେ ଧନଦ୍ରବ୍ୟ ଥିଲେ ଅବା କିସ ହେବ
ନିଜ ବୃତ୍ତି ନ ଶିଖିଲେ ଅକାରଣ ସର୍ବ ।
ଗୋରୁ ଚରାଇବା ଅଟେ ଆମ୍ଭର ଜୀବିକା
ମନା ନ କର ହେ ପିତା ଛାଡ଼ ମନୁ ଦିକା ।
କୃଷ୍ଣଙ୍କ ବଚନେ ନନ୍ଦ ସନ୍ତୋଷ ହୋଇଲେ
ଗୋ ଚାରଣ କରିବାକୁ ଅନୁମତି ଦେଲେ ।
ଶୁଭବେଳେ ଯଶୋମତୀ ହୋଇଣ ହରଷ
କୃଷ୍ଣଙ୍କୁ ଯତନେ ପିନ୍ଧାଇଲେ ଗୋପ ବେଶ ।
ଶିରେ ଚୂଡ଼ା ବାନ୍ଧିଦେଲେ ଶିଖିପୁଚ୍ଛ ଦେଇ
ଗୁଞ୍ଜାରାପାଟି ଖଞ୍ଜିଲେ ତା ପାରୁଶେ ନେଇ ।
ଗୁଞ୍ଜମାଳା ଜାମୁଡ଼ାଳୀ କିଆପଣୀ ତହିଁ
ବକୁଳ ମାଳତୀ ମାଳ ବେଢ଼ାଇଲେ ସତି ।
ଅତି ଯତନେ ପୃଷ୍ଠରେ ସାଜି ଦେଲେ ବେଣୀ
ସୁମନୋହରେ ରଚିଲେ ଅଳକ ସାଜେଣି ।
ଭାଲେ ଗୋରୋଚନା ଚିତା କସ୍ତୁରୀ ତିଳକ
ଭ୍ରୂଲତାପରେ ଚନ୍ଦନ ପାଟି ଦିବ୍ୟରେଖ ।
ନୟନେ କଜ୍ଜ୍ୱଳ ଦେଲେ କରି ସୁମଞ୍ଜୁଳ
କର୍ଣ୍ଣ ଯୁଗଳେ ଖଞ୍ଜିଲେ ମକରକୁଣ୍ଡଳ ।
ନାସେ ଗଜମୋତି ପିନ୍ଧାଇଲେ ଯତ୍ନକରି
କଣ୍ଠେ ମୋତିମାଳ ଭୁଜେ ରତ୍ନ ରୂପସରୀ ।
ଅଜାନୁ ସରିକ ଗଳେ ଦେଲେ ବନମାଳା
ହସ୍ତେ ପିନ୍ଧାଇଲେ ମାତ ବାଜୁବନ୍ଧ ବଳା ।
କଟିରେ ରତ୍ନ ମେଖଳା ଯତନେ ଖଞ୍ଜିଲେ
ମନୋହରେ ପିତ ପାଟ କାଛି ପିନ୍ଧାଇଲେ ।
ସୁବର୍ଣ୍ଣ ଧଡ଼ି ଉତ୍ତରୀ କନ୍ଧରେ ଶୋଭିତ
ପଦ୍ମରେ ବାଜେଣୀ ନୂପୁରକୁ ଦେଲେ ମାତ
ଦୁଇଟି ରତ୍ନ କଟାଉ ଦେଲେ ତୋଷମନେ
ଯେହ୍ନେ ପୁତ୍ର କଣ୍ଟାଝଣ୍ଟା ନ ମାଡ଼ଇ ବନେ ।
ଏହିମତେ ସାଜିଦେଲେ ଗୋଚାରଣ ବେଶ
ଅପୂର୍ବ ଶୋଭା ଦିଶିଲେ ପ୍ରଭୁ ହୃଷୀକେଶ ।

ଯୋଗମାୟା ପୂର୍ଣ୍ଣମାସୀ ସେହିକାଳେ ମିଳି
ଯାଚିଦେଲେ କୃଷ୍ଣ ହସ୍ତେ ମୋହନ ମୁରଲୀ
ଗୋଚାରଣ ବେଶ ଲଉଡ଼ୀଟି ଯଶୋମତୀ
ପଦା ଛନ୍ଦଣୀ ସହିତେ କୃଷ୍ଣ କରେ ଦ୍ୟନ୍ତି ।
ଛତା ପାଞ୍ଚଣୀ ଶ୍ରୀହରି ଧରି ବାମ କରେ
ସୁମଞ୍ଜୁଳ ବେଣୁଗୋଟି ଯାକିଲେ କାଖରେ ।
ସହଜେ ତ ରୂପେ କୃଷ୍ଣ ଭୁବନ ମୋହନ
ନଟବର ଗୋପବେଶ ତହିଁକି ଶୋଭନ ।
ବଳରାମଙ୍କୁ ରୋହିଣୀ ସେହି ଅନୁ ରୂପେ
ଗୋଚାରଣ ବେଶଗୋଟି ସାଜିଦେଲେ ଆପେ
ବିଚିତ୍ର ଶୋଭା ଦିଶିଲେ କୃଷ୍ଣ ବଳରାମ
ଦେଖି ବିମୋହିତ ବ୍ରଜବାସୀଙ୍କର ମନ ।
ନବ ବ୍ରଜ ବଧୂମାନେ କୃଷ୍ଣରୂପ ଚାହିଁ
ପ୍ରେମ ତରଙ୍ଗେ ଭାସନ୍ତି ଆନନ୍ଦିତା ହୋଇ ।
ବାରୁଣୀ ମାଦବ ପାନେ ବଳରାମ ଭୋଳ
କୃଷ୍ଣଭାବେ ଗଦଗଦ ରୋହିଣୀ ଦୁଲାଳ ।
ସେହିକାଳେ ସୁଦାମାଦି ଗୋପ ଶିଶୁଗଣେ
କୃଷ୍ଣ ପ୍ରିୟା ସଖା ସର୍ବେ ମିଳିଲେ ବହନେ ।
ମାତାଙ୍କୁ ନମି ସକଳେ ଯାନ୍ତେ ଗୋଚାରଣେ
ବାହୁନନ୍ତି ନନ୍ଦରାଣୀ ଆକୁଳିତ ମନେ ।
ଶିଶୁମେଳେ ରଙ୍ଗେ ହରି କରନ୍ତି ଗମନ
ଦକ୍ଷିଣରେ ଶୋଭାପାନ୍ତି ରୋହିଣୀ ନନ୍ଦନ ।
ଦାମ ଶ୍ରୀଦାମ ସୁବଳ ବାମେ ଯାନ୍ତି ଚଳି
ଗୋପନାରୀମାନେ ଯେ ଦିଅନ୍ତି ହୁଳହୁଳି ।
ଶିଙ୍ଗା ବେଣୁ ମୁରଲୀ ଯେ ପତର କାହାଳୀ
ଆନନ୍ଦେ ବାଇ ଚଳନ୍ତି ସର୍ବେ ଢଳ ଢଳ ।
ହମ୍ବାରବ କରି ଧେନୁ ବତ୍ସା ସହିତରେ
ଆଗେ ଆଗେ ଚଳଯାନ୍ତି ଆନନ୍ଦ ମନରେ ।
ତାହାଙ୍କ ପଛରେ ସର୍ବ ଗୋପ ଶିଶୁଗଣ
ନାଚି ନାଚି ନାନାରଙ୍ଗେ କରନ୍ତି ଗମନ ।
କୃଷ୍ଣ ଆଉ ରାମଙ୍କର ରୂପ ଶୋଭା ଦେଖି
ସକଳ ଗୋପ ତରୁଣୀ ରହାନ୍ତି ନିରେଖି ।
ଢଗ ଢମାଳିଆ ଗୀତ ଗାଇ ଗୋପୀଗଣ
କୃଷ୍ଣ ବଳରାମ ଭୁଲେ କରନ୍ତି ଗମନ ।
ଗୋବର୍ଦ୍ଧନ ତଳେ ମିଳି ସର୍ବ ଗୋପବାଳେ
ଆନନ୍ଦ ମନରେ ଧେନୁ ବତ୍ସା ଚରାଇଲେ ।

ନବୀନ ତୃଣ ଯେ । ବନେ ଅପାର ଅଛଇ
ତେଣୁ ବତ୍ସା ଚରିଲେକ ଆନନ୍ଦିତ ହୋଇ ।
ଶୀତଳ ତରୁ ଛାୟାରେ ବସିଲେ ଗୋବିନ୍ଦ
ବେଢ଼ି କି ଣ ବସିଲେ ଚଉଦିଗେ ସଖା ବୃନ୍ଦ ।
ନବ ପଲ୍ଲବରେ ବେଦ୍ଧ ତାହାଙ୍କୁ ବାଞ୍ଛଇ
ନାଚ ନାଚ ଗୀତ ଗାଇ ଟେକ ମନ ମୋହଇ
ସେହି କାଳର ଆନନ୍ଦ କେ କହି ପାରିବ
ଗୋବିନ୍ଦ ପାଇ ସୁଖୀ ବାଳକ ସରବ ।
ସନ୍ଧ୍ୟା ହୋଇନ୍ତେ କୃଷ୍ଣ ରାମ ଗୋପ ଶିଶୁମେଳେ
ଗୋଧନବାହୁଡ଼ାଇ ସେ ଫେରିଲେଗୋ ଳେ
ଗୋପ ଦାଣ୍ଡେ ପ୍ରବେଶନ୍ତେ ଗୋପ ଶିଶୁଗଣ
କୃଷ୍ଣରୂପ ଗୃହଁ ଗୋପୀ ଆନନ୍ଦେ ମଗନ ।
ନିତ୍ୟ ଅନୁରାଗ ବଢ଼େ ରାଧାଙ୍କର ଚିତ୍ତେ
ଦିବସ ରଜନୀ କୃଷ୍ଣ ନାଚେ ହୃଦଗତେ ।
ସକଳ ସଖାମାନଙ୍କୁ ଦେଇଣ ମେଲାଣି
ବଳରାମ ସଙ୍ଗେ ପୁରେ ଗଲେ ଚକ୍ରପାଣି ।
ପୁତ୍ରକୁ ଦେଖି ରୋହିଣୀ ଯଶୋଦା ହରଷେ
କୋଳକରି ଘେନିଗଲେ ନନ୍ଦଙ୍କ ଉଆସେ ।
ଶ୍ରୀଅଙ୍ଗ ମାଜଣା ବିଧି ଯତନେ କରିଲେ
ଗୋରସ ମିଷ୍ଟାନ୍ନମାନ ନେଇ ଭୁଞ୍ଜାଇଲେ ।
ନନ୍ଦ ରଜା ବସିଲେ ସଭାମଧ୍ୟେ ତହିଁ
ବସିଥିଲେ ତାହାଙ୍କ କୋଳେ ଯାଇ ଦୁଇଭାଇ
ସଭା କାର୍ଯ୍ୟ ବନ୍ଦକରି ଗୋକୁଳ ନରେଶ
ପୁତ୍ର ଦୁହିଙ୍କୁ ଘେନିଣ ଗଲେ ନିଜବାସ ।
ଭୋଜନ ଶେଷେ ଶୟନ କଲେ ରାମ ହରି
ନିଶି ପାହାନ୍ତେ ଶ୍ରୀମୁଖ ପ୍ରକ୍ଷାଳନ କରି ।
ତହୁଁ ଗୋଦୋହନ କରିବାକୁ ବେନି ଭାଇ
ବାହାରିଲେ କରେ ଗୋଦୋହନ ଛନ୍ଦନେଇ
ସୁବଳ ସୁଦାମ ମଧୁ ମଙ୍ଗଳ ସହିତ
ନନ୍ଦ ଅଗଣାରେ ରୁଣ୍ଡ ହୋଇଲେ ସମସ୍ତ ।
ସବୁ ଗୋପବାଳେ ମିଳି ରାମକୃଷ୍ଣ ତୁଲେ
ଏକେ ଏକେ ଗୋଦୋହନ ସକଳ କରିଲେ
ସ୍ନାନ ଭୋଜନ ସାରିଣ ଗୋଷ୍ଠ ବେଶେ ପୁଣି
ଗୋଧନ ଚରାଇ ଗଲେ ରାମ ବେଣୁପାଣି ।
ଗୋପାଳ ପୋଏଙ୍କ ମେଳେ ଅନ୍ନପୁଡ଼ା ଘେନି
ଧେନୁ ପଲ୍ଲ ସଙ୍ଗେ ରଙ୍ଗେ ଯାନ୍ତି ଭାଇ ବେନି ।

ଭାଣ୍ଡିର ଛାୟାରୁ ଆଦି ବନରେ ବୁଲିଣ
ଆନନ୍ଦେ ଗୋରୁ ଚରାନ୍ତି ମିଳି ସଖାଗଣ ।
କଂସର ଏକଇ ଚର ବତ୍ସା ରୂପ ଧରି
ଗୋଷ୍ଠେ ପ୍ରବେଶିଲା ଯହିଁ ଚରନ୍ତି ବାଛୁରୀ ।
ଅସୁର ଜାଣି ଶ୍ରୀହରି ତାକୁ ବିନାଶିଲେ
ମହା ଆନନ୍ଦରେ ସଖାସଙ୍ଗେ ବିହରିଲେ ।
ଏହିରୂପେ ପ୍ରତି ଦିନ ଶ୍ରୀହରି କରନ୍ତି
ଯଥା ସମୟରେ ନନ୍ଦ ଗୃହକୁ ଫେରନ୍ତି ।
ଏକ ଦିନକର କଥା ଶୁଣ ମନ ଦେଇ
ସଖାସଙ୍ଗେ ଗୋରୁ ଚରାଉଣଥିଲେ ସାଇଁ ।
ବକାସୁର ନାମେ ଏକ ଦୁର୍ଦ୍ଦାନ୍ତ ଅସୁର
କୃଷ୍ଣଙ୍କୁ ଗିଳିବା ପାଇଁ ବିଚାରି ମନର ।
ଥଣ୍ଟ ମେଲାଇଣ ଧାଇଁ ଆସନ୍ତେ ପାଶକୁ
ଦୁଇ ପାଟି ଧରି ହରି ଫାଡ଼ିଦେଲେ ତାକୁ ।
ଘୋର ରଡ଼ି କରି ଦୈତ୍ୟ ହାରିଲା ଜୀବନ
ଯମୁନା ଜଳରେ ପ୍ରଭୁ ବଢ଼ାଇଲେ ସ୍ନାନ ।
ମିଳିଲେ ସଖାଙ୍କ ସଙ୍ଗେ ହରଷିତ ମନେ
ଧନ୍ୟ କୃଷ୍ଣ ବୋଲି ପ୍ରଶଂସିଲେ ସଖାଗଣେ ।
ସନ୍ଧ୍ୟାକାଳ ହୋଇନ୍ତେ ଅଡ଼ାଇଣ ଧେନୁପଲ
ଗୋପ ପୁରକୁ ଫେରିଲେ ସର୍ବେ ଗୋପବାଳ
ବକାସୁର ବଧ କଥା ଶୁଣି ଯଶୋମତୀ
କୃଷ୍ଣଙ୍କୁ ରକ୍ଷା କବଚ ବନ୍ଧନ କରନ୍ତି ।
ଗୋଗୋଷ୍ଠକୁ ଗଲେ ଆଉଦିନେ ଘନଶ୍ୟାମ
ଯାଇ ନଥିଲେ ସେଦିନ ଭାଇ ବଳରାମ ।
ଅଘାସୁର ନାମେ ଦୁଷ୍ଟ ଦଇତ ଯେ ମିଳି
ଗୋଧନ ସହିତେ ଦେଲା ଶିଶୁଙ୍କୁ ଯେ ଗିଳି ।
ତାର ଗର୍ଭେ ପଶି କୃଷ୍ଣ କାୟା ବିସ୍ତାରିଲେ
ପେଟ ଫଟାଇଣ ସେହି ଦୈତ୍ୟକୁ ମାରିଲେ
ଗୋଧନ ସଙ୍ଗେ ଗୋପାଳ ପୁଅଙ୍କୁ ଉଦ୍ଧାରି
ଅପରାହ୍ନ କାଳେ ଗଲେ ନନ୍ଦଗ୍ରାମ ଫେରି ।
ଆଉଦିନେ ଗୋଚାରଣେ ଯାଇ ବନମାଳୀ
ବନଭୋଜି କରୁଥିଲେ ସଖା ସଙ୍ଗେ ମିଳି ।
ସବୁ ଗୋପଶିଶୁ ତୁଲେ ଶ୍ରୀରାମ ଗୋବିନ୍ଦ
ଅନ୍ନ ଭୁଞ୍ଜୁଥିଲେ ହୋଇ ପରମ ଆନନ୍ଦ ।
ସେହିକାଳେ ବ୍ରହ୍ମା ଆସି ହଂସ ପୃଷ୍ଠେ ରହି
ଦେଖିଲେ ସେ ବନଭୋଜି ଆଚମ୍ବିତେ ତହିଁ

ମନରେ ବିକାର ପାଞ୍ଚ ଚତୁର ଆନନ
ହରି ନେଇଗଲେ ବତ୍ସ ସହିତେ ଗୋଧନ ।
ବ୍ରହ୍ମାର ଏ ଭାବ ଜାଣି ପ୍ରଭୁ ଜଗନ୍ନାଥ
ନିଜ ଅଙ୍ଗରୁ ଗୋପାଳଙ୍କୁ କଲେ ଜାତ
ତାହା ଦେଖି ବ୍ରହ୍ମା ଆସି ମାଗନ୍ତେ ଶରଣ
ଦୟାବନ୍ତ ଦୋଷ କ୍ଷମା କଲେ ଜନାର୍ଦ୍ଦନ ।
ପୂର୍ଣ୍ଣବ୍ରହ୍ମ ଜାଣି ବ୍ରହ୍ମା ନିଜ ସ୍ଥାନେ ଗଲେ
ଏଥୁଅନ୍ତେ ଶୁଣ କୃଷ୍ଣ ଯେଉଁ ଲୀଳା କଲେ ।
ତାଳବନେ ଧେନୁକାସୁରକୁ ରାମହରି
ସବଂଶେ ନିପାତ କଲେ ଦୁଷ୍ଟ ଜାଣିକରି ।
ଆଉ ଦିନେ ଗଲେ ହରି ଗୋଧନ ଗହଣେ
ସଖାଙ୍କ ସଙ୍ଗେ ମିଳିଲେ ଯାଇ ବୃନ୍ଦାବନେ ।
ସେଦିନ ସେ ବଳରାମ ରହିଥିଲେ ଘରେ
ଗୋଧନ ଚରାନ୍ତି କୃଷ୍ଣ ଯମୁନା କୂଳରେ ।
ତୃଷାରେ ଆତୁର ହୋଇ ଗୋପ ଶିଶୁଗଣ
କାଳନ୍ଦୀ ତୀରକୁ ଯାଇ କଲେ ଜଳପାନ ।
କାଳୀୟ ନାଗ ବିଷରେ ସେ ଜଳ ଉତ୍କଟ
ପାନ କରନ୍ତେ ଅଜ୍ଞାନ ହେଲେ ଶିଶୁଥାଟ ।
ମୂର୍ଚ୍ଛା ଯାଇଣ ସେ ତଳ ପଡ଼ିଲେ ସକଳେ
ଧେନୁ ଅଡ଼ାଇ ଅଇଲେ କୃଷ୍ଣ ସେହିକାଳେ ।
ଦେଖିଲେ ସଖା ସମସ୍ତେ ବିଷଜଳ ପାନେ
କାଳନ୍ଦୀ କୂଳରେ ପଡ଼ିଛନ୍ତି ଅଚେତନେ ।
ସବୁରି ଅଙ୍ଗରେ ହାତ ବୁଲାଇ ଶ୍ରୀହରି
ପ୍ରାଣ ଦାନ ଦେଲେ ତହିଁ ଜଣ ଜଣ କରି ।
ନିଦ୍ରାରୁ ଉଠିଲା ପରି ଗୋପ ଶିଶୁଗଣ
କୃଷ୍ଣଙ୍କୁ ଉଠିଣ କୋଳକଲେ ତତକ୍ଷଣ ।
ଯମୁନା ପୁଳିନେ ତହୁଁ ସଖା ସଙ୍ଗେ ହରି
ତରୁତଳେ କିଛିକ୍ଷଣ ବିଶ୍ରାମ ସେ କରି ।
କାଳନାଗକୁ ଦମନ କରିବାର ପାଇଁ
କଦମ୍ବ ବୃକ୍ଷେ ଉଠିଲେ ଶ୍ରୀନନ୍ଦ କହ୍ନାଇ ।
ସେ କାଳୀ-ହ୍ରଦକୁ ଡେଇଁ ପଡ଼ିଲେ ବହନ
ହାହାକାର କରି ସେ କାନ୍ଦିଲେ ସଖାଗଣ ।
ଧାଇଁଯାଇ ଗୋପପୁରେ ଏ ବାରତା ଦେଲେ
ଆକୁଳେ କାନ୍ଦି ରୋହିଣୀ ଯଶୋଦା ଅଇଲେ
ନନ୍ଦ ଉପନନ୍ଦ ଆଉ ସକଳ ଗୋପାଳେ
ଆଉଯେତେ ଗୋପୀମାନେ କାନ୍ଦିଲେ ବିକଳେ

କାଳନ୍ଦୀ କୂଳକୁ ଆସି କଲେ ହାହାକାର
ଦେଖିଲେ କଦମ୍ବ ମୂଳରେ ମିଳିଛି ଅମ୍ବର ।
ଦେଖିଲେ କାଳୀୟ ଶିରେ ନାଚନ୍ତି ଶ୍ରୀହରି
ଯାହାରୁ ସେ ସର୍ପ ରକ୍ତ ଧୋକାଏ ଉଦ୍‌ଗାରି
ଅଶାଆୟୁତ ହୋଇ ସେ କାଳୀନାଗ ତହିଁ
ପରମବ୍ରହ୍ମଙ୍କ ପାଦ ଦଂଶି ନ ପାରଇ ।
ସେହିକାଳେ କରଯୋଡ଼ି ନାଗବାଳୀମାନେ
ସ୍ତୁତି ଆରମ୍ଭିଲେ ସର୍ବେ କୃଷ୍ଣଙ୍କ ଚରଣେ ।
ସନ୍ତୋଷ ହୋଇ ଶ୍ରୀହରି ସେମାନଙ୍କ ପ୍ରତି
ପ୍ରାଣେ ନ ମାରି କାଳୀନାଗକୁ ସେ ତଥି ।
ପାଦପଦ୍ମ ଚିହ୍ନ ତାର ମସ୍ତକେ ରଖିଲେ
କାଳନ୍ଦୀହ୍ରଦରୁ ତାକୁ ଘଉଡ଼ାଇ ଦେଲେ ।
ସେ କାଳନ୍ଦୀ ଜଳ କରି ଅମୃତ ସମାନ
ତୀରକୁ ଆସିଲେ ପ୍ରଭୁ ଜଗତ ମୋହନ ।
ପିତା ମାତାଙ୍କ ଚରଣେ କଲେ ନମସ୍କାର
କୋଳ କଲେ ନନ୍ଦ ଯଶୋମତୀ ତାପର ।
ଗୋପୀ ଗୋପାଳ ଆଦି ସେ ବ୍ରଜବାସୀ ଜନ
କୃଷ୍ଣଙ୍କୁ ଦେଖି ସକଳେ ପାଇଲେ ଜୀବନ ।
ସଖୀଗଣ ସହିତରେ ରାଧିକା ସୁନ୍ଦରୀ
କୃଷ୍ଣଙ୍କୁ ଦେଖି ହରଷ ହୋଇଲେ ଚତୁରୀ ।
ଗୋପନାରୀମାନେ ଯେତେ ଆସିଥିଲେ ଧାଇଁ
ସକଳେ ଆନନ୍ଦ ହେଲେ କୃଷ୍ଣ ମୁଖ ଚାହିଁ ।
ଏହି ପରକାରେ ପରଂବ୍ରହ୍ମ ଚିନ୍ତାମଣି
କାଳୀୟ ଦଳନ ଲୀଳା କଲେ ଆହେ ମୁନି ।
ଏହାପରେ କଲେ କୃଷ୍ଣ ଦାବାନଳ ପାନ
ବଡ଼ ଆଚମ୍ବିତ ଗାଥା ଶୁଣ ତପୋଧନ ।
ଯେଉଁ ଦିନ କୃଷ୍ଣ କଲେ କାଳୀୟ ଦଳନ
ଭାଦ୍ରମାସ କୃଷ୍ଣପକ୍ଷ ଏକାଦଶୀ ଜାଣ ।
ପାଇଣ କୃଷ୍ଣଙ୍କୁ ସର୍ବେ ଆନନ୍ଦ ମନରେ
ଅବସ୍ଥାନ କଲେ ପୁଣି ସେଠାରେ ରାତ୍ରରେ ।
ଘୋର ଅନ୍ଧକାର ନିଶି ଦେଖିଣ ନୟନେ
ଗୃହେ ନଯାଇ ରହିଲେ ଯମୁନା ପୁଳିନେ ।
ରଜନୀ ଅର୍ଦ୍ଧରେ ଦାବାନଳ ଘୋଟି ଗଲା
ଉଲ୍କା ସମାନ ସେ ଦଶଦିଗକୁ ଘୋଟିଲା ।
ଭୟେ ଆକୁଳିତ ହୋଇ ବ୍ରଜବାସୀଗଣ
ଡାକିଲେ ହେ କୃଷ୍ଣ ରଖ ଆମ୍ଭର ପରାଣ ।

ଅଞ୍ଜନ ଦେଖାଇ କୃଷ୍ଣଅଙ୍ଗେ ଯଶୋମତୀ
ବୋଇଲେ ଆହାରେ ଧନ ପଡ଼ିଲୁ ବିପତ୍ତି ।
କୃଷ୍ଣ ବୋଲନ୍ତି ସକଳେ ଆଖି ବୁଜିରହ
ଲିଭିଯିବ ଦାବାନଳ ନ କର ସନ୍ଦେହ ।
ଏକଥା ଶୁଣି ସକଳେ ନୟନ ବୁଜିଲେ
ଅଞ୍ଜଳି ପା େଶ୍ରୀହରି ଅନଳ ଭକ୍ଷିଲେ ।
ପରିତ୍ରାଣ ପାଇ ସର୍ବ ବ୍ରଜବାସୀ ଗଣେ
କଲ୍ୟାଣ କଲେ ବିଷ୍ଣୁଙ୍କୁ ଆସି ଜଣେ ଜଣେ ।
ପ୍ରଭାତ ସମୟେ ଗୋପ ଗୋପୀଙ୍କ ସହିତେ
ନନ୍ଦଗ୍ରାମେ ଗଲେ କୃଷ୍ଣ ଅତି ହରଷିତେ ।
ଏମନ୍ତେ ଶ୍ରୀକୃଷ୍ଣ କଲେ ଦାବାନଳ ପାନ
ପ୍ରଲମ୍ବ ବଧ କଥନ ଶୁଣ ମୁନି ଜନ ।
ପରୀକ୍ଷିତ ଆଗେ ଶୁକ ଯାହା କହିଥିଲେ
ତାହା ମୁଁ ବଖାଣୁଅଛି ଶୁଣ ସର୍ବ ହେଲେ ।
ଗୋ ପାଳନ ଛଳ ମାତ୍ର ଅଟେ ବିଷ୍ଣୁଙ୍କର
ମାୟାରେ ସେ ନାନା ଲୀଳା କରନ୍ତି ପ୍ରଚୁର
ସଖାଙ୍କ ସଙ୍ଗେ ଶ୍ରୀହରି ଆନନ୍ଦିତ ମନେ
ପ୍ରତିଦିନ ଗୋଚାରଣ କରିଯାନ୍ତି ବନେ ।
ଏକଦିନେ ରାମକୃଷ୍ଣ ସଙ୍ଗେ ଶିଶୁଗଣ
ଯାଇଣ ବନେ କରନ୍ତି ଯେ ଗୋରୁ ଚାରଣ ।
ପ୍ରଲମ୍ବ ନାମେ ଅସୁର ମହା ଭୟଙ୍କର
ଗୋପଶିଶୁ ରୂପ ଧରି ମିଳିଲା ସେଠାରେ ।
ଖେଳ ପ୍ରସଙ୍ଗରେ ମାୟା ଭିଆଇଣ ତହିଁ
ବଳରାମେ ନେଇଗଲା ସ୍କନ୍ଧରେ ବସାଇ ।
ଅସୁର ଏ ବୋଲି ଜାଣିପାରି ହଳଧାରୀ
ଏକା ମୁଥାକରେ ପ୍ରାଣ ନେଇଲେ ତାହାରି
ଛଟ ପଟ ହୋଇଣ ସେ ଦାନବ ମରିଲା
ରାମକୃଷ୍ଣ ଶିରେ ଶୂନ୍ୟ ପୁଷ୍ପବୃଷ୍ଟି ହେଲା ।
ଏଥୁଅନ୍ତେ ଶୁଣ ମୁନି କୃଷ୍ଣ ପ୍ରେମଲୀଳା
କାତ୍ୟାୟନୀ ବ୍ରତ ଯେହ୍ନେ କଲେ ବ୍ରଜବାଳା
ବସ୍ତ୍ର ଯେପରି ହରଣ କଲେ ବନମାଳୀ
ସଂକ୍ଷେପେ କହୁଛି ଶୁଣ ହେ ଋଷି ମଣ୍ଡଳୀ ।
ପରବ୍ରହ୍ମ ହରି ପ୍ରଭୁ ଜଗତ ଜୀବନ
ନବ ନବ କଥା ନିତ କରନ୍ତି ଭିଆଣ ।
ଧନ୍ୟା ଆହା ଗୋପକନ୍ୟାମାନେ ହର୍ଷ ମନେ
କୃଷ୍ଣଙ୍କୁ ପାଇବା ପାଇଁ ବ୍ରତଚାରିଣ ମନେ ।

ଭକ୍ତି ଭରେ କାତ୍ୟାୟନୀ ପୂଜା କରୁଥାନ୍ତି
ଏହିରୂପେ ଅନୁରାଗ ବଢ଼େ ନିତି ପ୍ରତି ।
ନାନା ବ୍ରତ କାରିଣୀ ସେ ବ୍ରଜ ସୁନ୍ଦରୀ
ଦେବୀଙ୍କୁ ବର ମାଗନ୍ତି ବିନୟ ଆଚରି ।
ଭଗବତୀ ଗଉରୀ ଯେ ସୁପ୍ରସନ୍ନା ହୋଇ
ବର ଦେଇଗଲେ ତାଙ୍କ ମନେ ଦୟା ବହି ।
ଏକଦିନେ ପୂଜା ସାରି ଗୋପ କନ୍ୟାଗଣ
ଯମୁନା ତୀରେ ସକଳେ ରଖିଲେ ବସନ ।
ଜଳେ ପଶି ସ୍ନାନ କରୁଥିଲେ ଆନନ୍ଦରେ
ଶ୍ରୀକୃଷ୍ଣ ଚରିତମାନ ଗାଇ ପରସ୍ପରେ ।
ତାହାଙ୍କର ବୁଦ୍ଧି ମାନ ଜାଣି ପୀତବାସ
ସେହିଠାରେ ଧୀରେଧୀରେ ହୋଇଲେପ୍ରବେଶ
ରମଣୀମାନଙ୍କ ଶାଢ଼ୀ ନେଇ କୌତୁହଳେ
ଉଠି ବସିଲେ ଆପଣେ କଦମ୍ବର ଡାଳେ ।
ଦକ୍ଷିଣ ଚରଣ ରଖି ବାମ ପାଦପରେ
କୌତୁକ ଦେଖନ୍ତି ତହିଁ ଉତ୍ସୁକ ମନରେ ।
ଜଳ କେଳି ସାରି ସର୍ବ ଗୋପାଙ୍ଗନାମାନେ
ଦେଖିଲେ ବସନ ମାନ ନାହିଁ ରଖାସ୍ଥାନେ ।
ଲଜ୍ଜିତ ହୋଇଣ ଏଣେତେଣେ ସେ ଚାହାନ୍ତି
ଦେଖିଲେ କଦମ୍ବ ଡାଳେ କୃଷ୍ଣ ବସିଛନ୍ତି ।
ସଭିଙ୍କ ବସନମାନ ବାନ୍ଧିଣ ଡାଳରେ
ମୃଦୁ ମୃଦୁ ହସୁଛନ୍ତି ବଂଶୀଧରି କରେ ।
ଲଜ୍ୟାଭରେ ଗୋପୀମାନେ ବିନୟ ବଚନେ
ବସନ ମାଗନ୍ତି ସକଳେ ନେତ୍ର ଥନଥନେ ।
ତାହାଙ୍କର ମନୋଭାବ ଜାଣି ବନମାଳୀ
ସମସ୍ତଙ୍କୁ ବସ୍ତ୍ର ଦେଲେ ହୋଇ କୁତୁହଳୀ ।
ପ୍ରସନ୍ନେ ବୋଇଲେ ତାଙ୍କୁ ଯଶୋଦା ଦୁଲାଳ
ଯେ ଯାହା ପୁର ମଧ୍ୟକୁ ଆନନ୍ଦରେ ଚଳ ।
କିଛିଦିନେ ପୂରାଇବି ତୁମ୍ଭ ଅଭିଳାଷ
ବୃନ୍ଦାବନେ ଆରମ୍ଭିବି ପ୍ରେମଲୀଳା ରାସ ।
କୃଷ୍ଣଙ୍କ ମୁଖରୁ ଏସନ ଶୁଣି ଗୋପୀମାନେ
ଆନନ୍ଦରେ ଚଳିଗଲେ ଆପଣା ସଦନେ ।
ଏଥୁଅନ୍ତେ ଶୁଣ ମୁନି ଅପୂର୍ବ କଥନ
ପରଂବ୍ରହ୍ମ କୃଷ୍ଣଙ୍କର ଅନ୍ୟ ଲୀଳା ପୁଣ ।
ଯେଉଁପରି କଲେ ହରି ଯଜ୍ଞାନ୍ନ ଭୋଜନ
ଠିକେ ବଖାଣ କରୁଛି ଏବେ ସେ ବିଧାନ ।

ଏକଦିନେ ସଖାଗଣ ସଙ୍ଗେ ନନ୍ଦସୁତ
ଧେନୁ ଚରାଇଣ ଗଲେ ହୋଇଣ ଉଷତ ।
ବୃନ୍ଦାବନେ ମିଳି କଲେ ଗୋଧନ ଚାରଣ
ଯମୁନାପୁଳିନେ ବିହରନ୍ତି ହରଷେଣ ।
କଦମ୍ବ ତମାଳ ତରୁ ଛାୟା ସୁଶୀତଳେ
ଯମୁନା କଲ୍ଲୋଳ ଧ୍ୱନି ଶୁଣନ୍ତି ସକଳେ ।
ଖେଳନ୍ତି ଧୀର ସମୀରେ ହୋଇ ପୁଲକିତ
କୁସୁମ ମଧୁ ଗନ୍ଧରେ ମନ ଆମୋଦିତ ।
ଅଖିଳ ଜଗତପତି ବସି ନୀପ ମୂଳେ
ବଜାନ୍ତି ମୋହନ ବଂଶୀ ସଖାଗଣ ମେଳେ ।
ନୀଳମଣି ପୁଞ୍ଜ କିବା ଝଳକଇ କାନ୍ତି
ମୟୂର ଚନ୍ଦ୍ରିକା ଶିରେ ଚୂଡ଼ା ପୁଷ୍ପପନ୍ତି ।
ମାଳତୀ ବକୁଳ ମାଳେ ରୁଞ୍ଜ ଗୁଞ୍ଜ ବେଢ଼ା
ତହିପାଶେ ନିଶାଖିକା କେତକୀ ପାଖୁଡ଼ା ।
ଅଳକା ଆବୃତ୍ତ ମୁଖ ଯେହ୍ନେ ପୂର୍ଣ୍ଣଚନ୍ଦ୍ର
ଜଗତ ମୋହନ ଠାଣି ଶ୍ରୀଗୋକୁଳାନନ୍ଦ ।
ଦକ୍ଷିଣେ ବସି ଅଛନ୍ତି ଭାଇ ହଳପାଣି
ଧବଳ ବରନ କାନ୍ତି ମୁଖ ନିଶାମଣି ।
ନାସିକାରେ ମୃଗମଦ ଚନ୍ଦନର କଳି
ଭାଲେ କସ୍ତୁରୀ ତିଳକ ସ୍ୱେଦବିନ୍ଦୁ ଝଳି ।
ନୀଳ ଧବଳ ମୂରତି କୃଷ୍ଣ ବଳରାମ
ଚଉପାଶେ ବେଢ଼ିଛନ୍ତି ପ୍ରିୟ ସଖାଗଣ ।
ଦରହସିତ ବଦନ ସର୍ବ ଗୋପ ପୋଏ
ଗୋଷ୍ଠ ଲୀଳାରେ ଆନନ୍ଦ ପୂରିଛି ହୃଦୟେ ।
ରାମ କୃଷ୍ଣଙ୍କର ମୁଖ ଚାହିଁ ଶିଶୁଗଣେ
ବୋଇଲେ ଶ୍ରୀକୃଷ୍ଣ ଚନ୍ଦ୍ରେ ଚାହିଁଣ ତକ୍ଷଣେ ।
କ୍ଷୁଧା ଲାଗିଲାଣି ଆମ୍ଭେ ନ ପାରୁଛୁ ସହି
ଅନ୍ନ ବ୍ୟଞ୍ଜନ ଓ ଜଳ ଦିଅ ବେନି ଭାଇ ।
କୃଷ୍ଣ ବୋଲନ୍ତି ଯେ ଏଥି ନିକଟେ ବ୍ରାହ୍ମଣେ
ଯଜ୍ଞ କରୁଛନ୍ତି ତହିଁ ଯାଅ ତୁମ୍ଭେମାନେ ।
କହିବ ସେହି ବିପ୍ରଙ୍କୁ ଆମ୍ଭ ନାମ ଧରି
ଯଜ୍ଞ ଅନ୍ନ ଦିଅ କ୍ଷୁଧା ଲାଗୁଅଛି ଭାରି ।
ତହୁଁ ଗୋପଶିଶୁମାନେ ବେଗେ ଚଳିଗଲେ
ଯାଜ୍ଞିକ ଦ୍ୱିଜଙ୍କ ପାଶେ ବିନୟେ କହିଲେ ।
ରାମକୃଷ୍ଣ ବେନିଭାଇ କ୍ଷୁଧାରେ ଆତୁର
ଆମ୍ଭମାନଙ୍କୁ ପଠାଇଛନ୍ତି ସେ ଏଠାର ।
ଯଜ୍ଞ ଅନ୍ନ ଦିଅ ଆହେ ବ୍ରାହ୍ମଣ ଗୋସାଇଁ
ତାଙ୍କ ପାଶେ ନେଇଯିବୁଁ ଆମ୍ଭେ ବେଗ ହୋଇ ।
ଗୋପାଳ ବାଳକମାନେ କହନ୍ତେ ଏପରି
ଘଉଡ଼ିଲେ ତାଙ୍କୁ ବିପ୍ର ମନେ କ୍ରୋଧଭରି ।
ସେ ତିରସ୍କାର ବଚନେ ପାଇ ଅପମାନ
ଜଣାଇଲେ ପୋଏ ଯାଇ କୃଷ୍ଣ ସନ୍ନିଧାନ ।
ବିପ୍ରମାନେ ଯଜ୍ଞଅନ୍ନ ନ ଦେବାର ଜାଣି
ହସି ହସି ସଖାଙ୍କୁ କହିଲେ ବଂଶୀପାଣି ।
ଯଜ୍ଞପତ୍ନୀଙ୍କ ପାଶକୁ ଯାଅ ଅନ୍ତଃପୁରେ
ଆମ୍ଭ ସମ୍ବାଦ କହିବ ତାହାଙ୍କ ଆଗରେ ।
କୃଷ୍ଣ ଆଜ୍ଞା ଶିରେ ଧରି ଗୋପ ଶିଶୁଗଣ
ଯଜ୍ଞପତ୍ନୀଙ୍କ ନିକଟେ ଚଳିଲେ ବହନ ।
କୃଷ୍ଣ ସଖାଙ୍କୁ ଦେଖି ସେ ବିପ୍ରଙ୍କ ଘରଣୀ
ପ୍ରେମ ପରିପୂର୍ଣ୍ଣେ କହିଲେ ଯେ ମୃଦୁବାଣୀ ।
କି ପାଇଁ ଅଇଲ ପୋଏ କହ ବେଗକରି
ଶୁଣି ସକଳ ବାଳକେ କହିଲେ ବିସ୍ତରି ।
ଯଜ୍ଞ ଅନ୍ନ ପାଇଁ ପେଶିଛନ୍ତି ନନ୍ଦବଂଶି
ଭୋଜନ କରିବେ ତାଙ୍କୁ କ୍ଷୁଧା ଲାଗୁଅଛି ।
ତା ଶୁଣି ଆନନ୍ଦ ମନେ ବିପ୍ରନାରୀମାନେ
ଅନ୍ନନେଇ ସର୍ବେ ବାହାରିଲେ ତତକ୍ଷଣେ ।
ତା ଦେଖି ଜେ ବିପ୍ର ନିଜ ପତ୍ନୀକି ବାନ୍ଧିଲା
ଧ୍ୟାନମାର୍ଗେ ଆଗେ ସେହି କୃଷ୍ଣଙ୍କୁ ଭେଟିଲା ।
ଆନ ବିପ୍ର ନାରୀମାନେ ହରଷିତ ମନେ
ପ୍ରବେଶିଲେ ଅନ୍ନନେଇ କୃଷ୍ଣ ସନ୍ନିଧାନେ ।
ମନୋହର ଠାଣି କୃଷ୍ଣ ମଦନ ମୋହନ
ଦେଖି ମୋହିତ ହୋଇଲେ ବିପ୍ରନାରୀଗଣ ।
ଚିତ୍ର ପିତୁଳୀ ସମାନ ରହିଲେ ସେ ଚାହିଁ
କାହାର ତୁଣ୍ଡରୁ ମାତ୍ର ବାକ୍ୟ ନ ସ୍ଫୁରଇ ।
ତାଙ୍କୁ ଚାହିଁ ହସି ହସି କହନ୍ତି ଶ୍ରୀଧର
କାମନା ପୂରଣ ହେବ ତୁମ୍ଭ ମାନଙ୍କର ।
ଏବେ ଆପଣା ଆପଣା ଗୃହେ ଚଳିଯାଅ
ତୋଷ ହେବେ ତୁମ୍ଭ ପରେ ପତିଏ ନିଶ୍ଚୟ ।
ଆଣିଅଛ ଯେଉଁ ଅନ୍ନମାନ ମୋହପାଇଁ
ଅମୃତ ସମାନ ତାହା କରିଲି ମୁଁ ଖାଇ ।
ଏସନ ଶୁଣି ବୋଇଲେ ବିପ୍ର ବଧୂଗଣ
ଶୁଣ ନାଥ ଦୟାନିଧି ଆମ୍ଭର ବଚନ ।

ଅତ୍ୟନ୍ତ ଦୁର୍ଲ୍ଲଭ ଅଟେ ତୁମ୍ଭ ଦରଶନ
ଗୃହ ଯିବା ପାଇଁ ଗୃହେ ନ ବଳଇ ମନ ।
ଏହିଠାରେ ରହି ପାଦ ସେବି ଧନ ନେବୁ
ଭାଗ୍ୟବଳେ ପାଇଅଛୁ କେବେହେଁ ନ ଛାଡ଼ିବୁ ।
ଶ୍ରୀକୃଷ୍ଣ ବୋଲନ୍ତି ତୁମ୍ଭେ ଅଟ ନିଜଜନ
ଯହିଁ ତହିଁ ଥିଲେ ମୁହିଁ ତୁମ୍ଭର ପ୍ରମାଣ ।
ଆଶ୍ୱାସ ପାଇ ସକଳେ ବିଦା ହୋଇଗଲେ
କୃଷ୍ଣ ପ୍ରେମ କୃଷ୍ଣଲୀଳା ସେହୁ ନ ଭୁଲିଲେ ।
ଏକୁ ଏକ କୃଷ୍ଣଗୁଣ କରନ୍ତି ସେ ଗାନ
ନିଜଗୃହେ ରହି ସୁଖକଲେ ନିଶିଦିନ ।
ବିପ୍ରମାନେ ଧ୍ୟାନ ବଳେ ଏହା ଜାଣିପାରି
ପ୍ରଶଂସିଲେ ରମଣୀମାନଙ୍କୁ ସ୍ନେହକରି ।
ପତ୍ନୀଙ୍କ ସୁକୃତ ବଳୁଁ ବୁଝିଲେ ସେମାନେ
ପରଂବ୍ରହ୍ମ ହରି ଅବତୀର୍ଣ୍ଣ କୃଷ୍ଣ ନାମେ ।
ଯଜ୍ଞେଶ୍ୱର ପୂର୍ଣ୍ଣବ୍ରହ୍ମ ନନ୍ଦସୁତ ରୂପେ
ଜନମଗ୍ରହଣ କରିଛନ୍ତି ନଷ୍ଟେ ଗୋପେ ।
ବ୍ରହ୍ମତତ୍ତ୍ୱ ଅନୁମାନି ବ୍ରାହ୍ମଣ ସକଳେ
ନିଜମନକୁ ସେମାନେ ଧିକାରି ଲାଗିଲେ ।
ଧିକ ଆମ୍ଭେ ବେଦଶାସ୍ତ୍ର କରି ଅଧ୍ୟୟନ
ତତ୍ତ୍ୱ ନ ଜାଣି ପାଇଲେ ଏହି ନାରୀ ଗଣ ।
ବିଚାର କରନ୍ତି ଏହିପରି ପରସ୍ପରେ
ପ୍ରବେଶିଲେ ଯଜ୍ଞପତ୍ନୀମାନେ ସେକାଳରେ ।
ଦୂରୁ ଯେ ଯାହାର ପତ୍ନୀଙ୍କୁ ବ୍ରାହ୍ମଣେ
ଧନ୍ୟବାଦ ଦେଲେ ତାଙ୍କୁ ଉଲ୍ଲସିତ ମନେ ।
ପରମ ଆନନ୍ଦେ ନିଜ ନିଜ ଗୃହେ ନେଲେ
କୃଷ୍ଣଙ୍କର ଗୁଣ ଗୁଣି ଆନନ୍ଦେ ମଜ୍ଜିଲେ ।
ଏଥୁଅନ୍ତେ ଶୁଣ ମୁନି ଅପୂର୍ବ କଥନ
ଯେମନ୍ତେ ଧଇଲେ ହରି ଗିରି ଗୋବର୍ଦ୍ଧନ ।
ଏକ ଦିନେ ନନ୍ଦରାଜା ଗୋପାଳଙ୍କୁ ନେଇ
ଇନ୍ଦ୍ର ପୂଜା କରିବାକୁ ବଖାଣିଲେ ତହିଁ ।
ମିଷ୍ଟାନ୍ନ ଇତ୍ୟାଦି ପକ୍ୱଫଳ ସହିତରେ
ଆୟୋଜନ କରୁଥାନ୍ତି ଆପଣାମନରେ ।
ଅନ୍ୟାନ୍ୟ ଗୋପାଳମାନେ ସେହି ପରକାରେ
ଇନ୍ଦ୍ର ପୂଜାଦ୍ରବ୍ୟ ମାନ ରଖିଲେ ଯତ୍ନରେ ।
କୋମଳ ବଚନେ ତାଙ୍କୁ ପୁଚ୍ଛିଲେ ମାଧବ
କି ନିମନ୍ତେ ଏତେ ଦ୍ରବ୍ୟ ଆୟୋଜନ କର ।
ଗୋପାଳମାନେ କହିଲେ କୃଷ୍ଣଙ୍କୁ ବୁଝାଇ
ଆୟୋଜନ କରୁ ଆମ୍ଭେ ଇନ୍ଦ୍ର ପୂଜା ପାଇଁ
ବହୁକାଳୁ ଇନ୍ଦ୍ର ପୂଜା ଗୋପରେ ହୁଅଇ
ତେଣୁ ଯଥା ସମୟରେ ବାରି ବରଷଇ ।
ବହୁ ଶସ୍ୟ ତୃଣ ଜନ୍ମେ ଗୋପ ବୃନ୍ଦାବନେ
ତୃଣଚରି ହୃଷ୍ଟ ପୁଷ୍ଟ ହୁଅନ୍ତି ଧେଧାନେ ।
ଇନ୍ଦ୍ର ଦେବତାଙ୍କୁ ପୂଜା କରିଲେ କହ୍ନାଇ
ବହୁତ ପ୍ରମାଣ କ୍ଷୀରବନ୍ତୀ ହୁଅନ୍ତି ଗାଈ ।
ଏଣୁ ଗୋପପୁରେ ଏତେ ବାଦ୍ୟ କୋଳାହଳ
ଇନ୍ଦ୍ରଙ୍କ ପୂଜାରୁ ହୁଏ ସକଳ ମଙ୍ଗଳ ।
ହସିଣ କହନ୍ତି କୃଷ୍ଣ ତୁମ୍ଭେ ଯେ ଅବୋଧ
ଇନ୍ଦ୍ରର ପୂଜନ ଏ କେବଳ ଉପରୋଧ ।
ଯାହାଠାରୁ ଉପକାର ତାହାକୁ ବରଜି
କିବା ପ୍ରୟୋଜନ ଆନ ଦେବତାଙ୍କୁ ପୂଜି ।
ଶସ୍ୟ ତୃଣରେ ପୂରିତ ଅଟେ ଗୋବର୍ଦ୍ଧନ
ହିତବାଞ୍ଛା ଯଦି କରି ଏ ଗିରି ପୂଜନ ।
ଯାହାଯୋଗୁଁ କାର୍ଯ୍ୟ ମିଳେ ତାହାକୁ ସେବିବ
ଅକାରଣେ କିମ୍ପା ଆନଦେବଙ୍କୁ ପୂଜିବ ।
ଇନ୍ଦ୍ର କେବେ ନ ଆସଇ ଭୁଞ୍ଜିବାକୁ ଅନ୍ନ
ମୂର୍ତ୍ତିମନ୍ତ ହୋଇବ ଭୁଞ୍ଜିବେ ଗୋବର୍ଦ୍ଧନ ।
ନନ୍ଦ ବୋଲେ ସତେକି ପର୍ବତ ମୂର୍ତ୍ତିମାନ
ସଭିଙ୍କ ଅଗ୍ରତେ ବସି କରିବ ଭୋଜନ ।
ଶ୍ରୀକୃଷ୍ଣ ବୋଇଲେ ପିତା ମିଥ୍ୟା କହୁନାହିଁ
ଗୋବର୍ଦ୍ଧନ ସାକ୍ଷାତେ ଭୁଞ୍ଜିବ ମୂର୍ତ୍ତିହୋଇ
ପ୍ରଖ୍ୟାତ ହେଲା କୌତୁକ ଦେଖିବାର ଆଶେ
ଗୋବର୍ଦ୍ଧନ ପୂଜନ ଘୋଷଣା ଗୋପ ଦେଶେ
ପ୍ରଭାତେ ଉଠି ସକଳ ବ୍ରଜବାସୀଗଣେ
ଭାରକରି ନେଲେ ଯେତେ ଦ୍ରବ୍ୟ ଆୟୋଜନ
ପର୍ବତର ତଳେ ସର୍ବ ଦ୍ରବ୍ୟ ଠୁଳ କରେ
ସୁବେଶ ହୋଇ ସକଳଗୋପନାରୀ ଗଲେ ।
ପର୍ବତରାଜଙ୍କୁ କୃଷ୍ଣ କଲେ ଆବାହନ
ଆସ ଗୋବର୍ଦ୍ଧନ ବେଗେ କରି ହେ ଭୋଜନ
ମାୟାଧର କୃଷ୍ଣ ଡାକ ଦେଲେ ଏହିରୂପେ
ପର୍ବତ ରୂପ ଧଇଲେ ଦିବ୍ୟ ସ୍ୱରୂପେ ।
ଊର୍ଦ୍ଧ୍ୱକାୟ ଊର୍ଦ୍ଧ୍ୱ ଭୁଜ ଶ୍ୟାମଳ ବରନ
ପାଦଭରେ କମ୍ପେ ମହୀ ଗମ୍ଭୀର ଗର୍ଜ୍ଜନ ।

ଗୋବର୍ଦ୍ଧନ ଗୁହାରୁ ସେ ହୋଇଲେ ବାହାର
ଦେଖନ୍ତି ସର୍ବ ଗୋପାଳେ ନେତ୍ରକରି ସ୍ଥିର ।
କୃଷ୍ଣ ବୋଲନ୍ତି ଅଇଲେ ଗିରି ମହାଶୟ
ନନ୍ଦ ବୋଲେ ତା ସଙ୍ଗେ କରାଅ ପରିଚୟ ।
କୃଷ୍ଣ ବୋଇଲେ ହେ ପିତା ଭୟ ନ କରିବ
ମୋର ପ୍ରିୟ ସଖା ବୋଲି ଏହାକୁ ଜାଣିବ ।
ମୋର ଯେତେ ଗୁରୁଜନ ଅଛ ଏହି ସ୍ଥାନେ
ନମସ୍କାର କଲେ କ୍ରୋଧ କରିବ ସେ ମନେ ।
କହୁ କହୁ ସେହିକ୍ଷଣି ମାୟାଧାରୀ ହରି
ସବୁରି ଆଗେ ଆସିଲେ ଗିରିରୂପ ଧରି ।
ଆପଣେ ଶ୍ରୀହରି ପାଦ୍ୟ ଅର୍ଘ୍ୟ ସମର୍ପଣେ
ସଭିଙ୍କି ଆଶ୍ୱାସି ତହୁଁ ବସିଲେ ଭୋଜନେ ।
ପ୍ରୀତ ହୋଇଣ ଭୋଜନ କଲେ ମାୟାଧାରୀ
ବିସ୍ମୟ ମଣିଲେ ସର୍ବେ ନେତ୍ରେ ଦେଖିକରି ।
କଉତୁକ ଲୀଳା କଥା ଶୁଣ ମୁନିବୃନ୍ଦ
ଏହି ପ୍ରକାରେ ଭୋଜନ କଲେ କୃଷ୍ଣଚନ୍ଦ୍ର ।
କୃଷ୍ଣଙ୍କୁ ଚାହିଁ କହନ୍ତି ବଳରାମ ହସି
ଆଚ୍ଛା ଲୀଳା ଭିଆଉ ତୁ ଗୋପପୁରେ ଆସି ।
ଦୁଇ ଭାଇ ହାସ୍ୟରସେ ଠାରାଠାରି ହୋନ୍ତି
ଆନନ୍ଦ ତରଙ୍ଗେ ଗୋପ ଗୋପୀ ହେଲେ ତୃପ୍ତ
ତଦନ୍ତେ ଶ୍ରୀ ଗିରିରାଜ ବଢ଼ାଇ ଭୋଜନ
ପ୍ରୀତି ବହି ଯଶୋଦାଙ୍କୁ କହିଲେ ବଚନ ।
କୃଷ୍ଣ ମୋର ଅତି ପ୍ରିୟ ଜନନୀ ଗୋ ଶୁଣ
ଆପଣା ନନ୍ଦନ ବୋଲି ଏଣୁ ମୋତେ ଜାଣ
ବିନୟେ ନନ୍ଦରାଜାଙ୍କୁ କହନ୍ତି ସେ ପୁଣି
ତୁମ୍ଭେ ମୋର ପିତୃତୁଲ୍ୟ ହେ ଗୋପଅଗ୍ରଣୀ
ମୋହର ଆଶ୍ରିତ ଯେତେ ବ୍ରଜବାସୀ ଜନ
ଚିରଯୁଗେ କରେ ମୁହିଁ ସଭିଙ୍କି ରକ୍ଷଣ ।
ବ୍ରଜବାସୀମାନେ ମୋର ପ୍ରାଣସମ ସର୍ବ
କାହାର ଶକତି ତୁମ୍ଭମାନଙ୍କୁ ପୀଡ଼ିବ ।
ସମ୍ପ୍ରତି ଆପଣା ସ୍ଥାନେ କରସି ଗମନ
ତା ଶୁଣି କହନ୍ତି ନନ୍ଦ କରୁଣ ବଚନ ।
ଦୟା ରଖିଥିବୁ ବାପ ଗୋବର୍ଦ୍ଧନ ଗିରି
କୃଷ୍ଣଙ୍କୁ କରିବୁ ସ୍ନେହ ମୋ ବଚନ ଧରି ।
ଏହିରୂପେ ମାୟାଧର ବିଦାୟ ହୋଇଲେ
ସେଠାରୁ ଗୋପୀଗୋପାଳେ ନିଜପୁରେ ଗଲେ

ଏଣେ ସେ ନାରଦ ମୁନି କୌତୁକ କାରଣ
ସ୍ୱର୍ଗେ ଇନ୍ଦ୍ରକୁ କହିଲେ ଏ ସବୁ କଥନ ।
ତୁମ୍ଭଙ୍କୁ ନମାନି ଗୋପ ଗୋପୀ ଯେ ସମସ୍ତ
କୃଷ୍ଣ ବଚନକୁ ପାଳି ପୂଜିଲେ ପର୍ବତ ।
ତୁମ୍ଭ ପୂଜା ବନ୍ଦକଲେ ମନେ ଗର୍ବ ବହି
ସହି ନ ପାରି ଅଇଲି କହିବାର ପାଇଁ ।
ଏହା ଶୁଣି ଅପମାନ ମଣି ଦେବରାଜ
ମହା କ୍ରୋଧ ବହି ଡାକେ ସେ ମେଘ ସମାଜ
ଶୀଘ୍ର ବୃନ୍ଦାବନେ ସର୍ବେ କର ହେ ଗମନ
ଘୋର ବୃଷ୍ଟି କରି ସାତ ରାତି ସାତ ଦିନ ।
ସମଭୂମି କରି ବ୍ରଜ ଫେରିଣ ଆସିବ
ମୋହର ଏ ଆଜ୍ଞା ବାଣୀ ଭଙ୍ଗ ନ କରିବ ।
ତା ଶୁଣି ଗର୍ଜ୍ଜନ କରି ଗଲେ ମେଘଗଣ
ଗୋପପୁରେ ଯାଇ କଲେ ଘୋର ବରଷଣ
ମୂଷଳ ସମାନ ଧାରା ଘନ ଘନ କରି
ଚୁରି ମେଘ ବରଷିଲେ ଘୋରତର ବାରି ।
ଦେଖୁ ଦେଖୁ ଘୋଟିଗଲା ଘୋର ଅନ୍ଧକାର
ଘଡ଼ଘଡ଼ି ଚଡ଼ଚଡ଼ି ଅତି ଭୟଙ୍କର ।
ଚକମକ ହୋଇ ଉଠେ ଚୌଦିଗେ ବିଜୁଳି
ବଜ୍ର ପ୍ରହାରଇ ଇନ୍ଦ୍ର ରୋଷେ ମହାବଳୀ ।
ବହିଲା ପବନ ବିପରୀତ ବେଗଭରେ
ଗର୍ଜନ କରନ୍ତି ମେଘମାଳ ଆକାଶରେ ।
ଏହିପରି ଚୁରି ମେଘ ଗର୍ଜି ବରଷିଲେ
ବ୍ରଜପୁର ଯାକ ଘୋରଜଳମୟ କଲେ ।
ବହଇ ପ୍ରବଳ ଝଡ଼ ଭୟଙ୍କର ରାବ
ଭାଙ୍ଗି ପଡ଼ିଲା ଯେ ଗୃହ ବୃକ୍ଷ ଆଦି ସର୍ବ
ପ୍ରବଳ ବେଗରେ ବର୍ଷା କରି ଗରଜନ୍ତି
ଘୋର ନାଦେ ଚମକାଏ ମହୀକୁ ତକ୍ଷଣ ।
ବଜ୍ର ଘାତରେ ଯେ ମହୀ ହେଲା ଥରହର
ଘନ ଘନ ଶିଳା ବୃଷ୍ଟି ହୋଇଲା ସତ୍ୱର ।
ପୁଣି ଘୋର ନାଦେ ହେଲା ବାରି ବରଷଣ,
ତହିଁକି ପୁଣି ଭୀଷଣ ମେଘଙ୍କ ଗର୍ଜନ ।
ଘୋର ମେଘ ନାଦେ କେତେ ପଶୁପକ୍ଷୀ ମଲେ
ମହାଭୟ ପାଇ ମନେ ସନ୍ତ୍ରସ୍ତ ହୋଇଲେ ।
ବ୍ରଜରାଜ ଖିନ୍ନମନ ହେଲେ ତତକ୍ଷଣେ
ଗୋପୀ ଗୋପାଳ କଥିତ ଶୁଣିଣ ରାଜନ ।

ଏହିପରି ଗୋପପୁରେ ପ୍ରମାଦ ପଡ଼ିଲା
ସର୍ବ ଗୋପ ଗୋପୀଙ୍କର ସାହସ ଉଡ଼ିଲା ।
ଭାବିଲେ ସକଳେ ଏ କି ବିପତ୍ତି ଗତି
କମ୍ପା ଅକସ୍ମାତ କମ୍ପମାନ ହୁଏ ପୃଥ୍ୱୀ ।
ବାଳକର କଥା ମାନି ବିପଦେ ପଡ଼ିଲୁ
ଇନ୍ଦ୍ର ପୂଜା ଭଙ୍ଗକରି ମନ୍ଦକର୍ମ କଲୁ ।
କି କରିବୁ ଆମ୍ଭେମାନେ ନ ଦେଖୁ ଉପାୟ
ସକାତରେ ନନ୍ଦ ଆଗେ କହିଲେ ସଭିଏଁ ।
ଦେଖ ବିଷମ ବିପଦ ହୋଇଲା ଘଟଣ
କମ୍ପା ଏ ଝଡ଼ ବରଷା ନ ଜାଣୁ କାରଣ ।
ଶୀତରେ କମ୍ପିତ ତନୁ ପରାଣ ବିକଳ
ବଜ୍ରପାତ ଶୀଳା ବୃଷ୍ଟି ଅତି ଅମଙ୍ଗଳ ।
ନନ୍ଦ ବୋଇଲେ କରିବା କିସ ଯଶୋମତି
ରାମ କୃଷ୍ଣଙ୍କୁ ଘେନିଣ ଯିବା କାହାକତି ।
ଏଣେ ଯେ ଗୋକୁଳ ବାସୀ ଭୟରେ କାତର
ଉପାୟ ନ ପାଇ କମ୍ପେ ସଭିଙ୍କ ଶରୀର ।
ସକଳେ ଧାମନ୍ତି ଭୟେ କରି ଯେ କ୍ରନ୍ଦନ
ଆପଣା ଆପଣା ଶିଶୁ ପୁତ୍ରଙ୍କୁ ଘେନିଣ ।
ନନ୍ଦୀଶ୍ୱର ଶିଖେ ଯହିଁ ନନ୍ଦର ଭବନ
ଉର୍ଦ୍ଧ୍ୱଶ୍ୱାସେ କଲେ ସର୍ବେ ସେଠାକୁ ଗମନ ।
ବୋଇଲେ ହେ ନନ୍ଦ ଏ କି ଦୁର୍ଦ୍ଦଶା ଘଟଣ
ବିଷମ ବିପାକେ ଏବେ ଯାଉଛି ଜୀବନ ।
ତୁମ୍ଭବିନେ ଆମ୍ଭେମାନେ ନ ଜାଣୁ ଯେ ଆନ
ଏ ଘୋର ବିପଦୁ ବେଗେ କର ପରିତ୍ରାଣ ।
ଇନ୍ଦ୍ର ଯଜ୍ଞ ନଷ୍ଟ କଲେ ତୁମ୍ଭର କୁମର
ତେଣୁ କ୍ରୋଧ ହୋଇ ଇନ୍ଦ୍ର କଲେ ଏପ୍ରକାର
ଏହାଶୁଣି ନନ୍ଦରାଜା ଚକିତ ହୋଇଲେ
କରଯୋଡ଼ ବିନୟରେ ସ୍ତବ ଆରମ୍ଭିଲେ ।
ଆହେ ସୁରପତି ତୁମ୍ଭେ ଅଟ ଆମ୍ଭଗତି
କୃପାକର ଦେବରାଜ ଗୋପାଳଙ୍କ ପ୍ରତି ।
ନ ଜାଣି ତୁମ୍ଭଙ୍କୁ ନିନ୍ଦା କଲା ମୋ ନନ୍ଦନ
ମୋର ଦୋଷ କ୍ଷମାକର ହେ ଦେବ ରାଜନ ।
ଏହି ରୂପେ ନାନା ସ୍ତବ କରିବା କାଳରେ
ଶ୍ରୀକୃଷ୍ଣ ଆସି ପ୍ରବେଶ ହୋଇଲେ ସେଠାରେ
ବୋଇଲେ ଭୋ ପିତା କାରେ ସ୍ତବ କରୁଅଛ
ଅଜ୍ଞାନଙ୍କ ପରି କମ୍ପା କର ଯେ ଯୋଡ଼ୁଛ ।
କାହିଁପାଇଁ ତୁମ୍ଭେ ଏତେ ଭୟ କରୁଅଛ
ପୁଣି ଛାର ଇନ୍ଦ୍ରଟାକୁ ବିନୟ କରୁଛ ।
ମୋହର ଆଗରେ ସ୍ତୁତି କରୁଛ କାହାରେ
ଛାର ଇନ୍ଦ୍ର ପୁଣି କିସ କରିବ ଗୋପରେ ।
ସେ ନିମନ୍ତେ କିଛିମାତ୍ର ଭାବନା ନକର
କଟାକ୍ଷେ ସହସ୍ରେ ଇନ୍ଦ୍ର କରିବ ସଂହାର ।
ଗିରି ପୂଜା ହେତୁ ସେ ହୋଇଛି କ୍ରୋଧ ମତି
କହେ ପିତା ସେ ଇନ୍ଦ୍ରର ଅଟେ କି ଶକତି ।
ମୋ ବଚନ ଶୁଣି କିଛି ନକର ଗୋ ଭୟ
ଦେଖିବ କିସ କରିବ ସେହି ଦେବରାୟ ।
ଗୋପୀ ଗୋପାଳେନର୍ଭୟେ ମୋବଚନମାନ
ଗୋବର୍ଦ୍ଧନେ ସ୍ତୁତି କର ସକଳେ ବହନ ।
ଏମନ୍ତେ ପ୍ରବୋଧ ବାଣୀ କହି ଆନନ୍ଦକନ୍ଦ
ଇନ୍ଦ୍ର ପ୍ରତି ମନେ ମନେ କରିଲେ ସେ କ୍ରୋଧ
କୃଷ୍ଣ ବଚନେ ସକଳେ ଆଶ୍ୱାସ ପାଇଲେ
ଭୟ ଛାଡ଼ି ଗିରିବର ତଳରେ ରହିଲେ ।
ଗୃହପରି ମଣି ସର୍ବେ ଗୋବର୍ଦ୍ଧନ ତଳ
ଧେନୁବତ୍ସାଙ୍କୁ ସମ୍ଭାଳି ରହିଲେ ସକଳ ।
ବାମକର କନିଷ୍ଠ ଅଙ୍ଗୁଳି ଅଗ୍ରେ ହରି
ଟେକି ରଖିଛନ୍ତି ଛତାକାରେ ସେହି ଗିରି ।
ସାତଦିନ ସାତରାତ୍ରି ଇନ୍ଦ୍ର ବାଧା କଲା
ଗୋପ ଗୋପୀଙ୍କର କ୍ଷତି କରି ନ ପାରିଲା ।
ତହୁଁ ଇନ୍ଦ୍ର ଚଳିଗଲା ସେହି ବୃନ୍ଦାବନେ
ପୂର୍ବପରି ଦେଖେ ଭୟ ନାହିଁ କାହା ମନେ ।
ଆପଣା ମନରେ ଇନ୍ଦ୍ର ମହାଭୟ ପାଇ
ଚଉଦିଗେ ଚାହେଁ ନେତ୍ରୁ ଲୋତକ ବୁହାଇ ।
କିଛି କ୍ଷତି ନ ଦେଖିଲା ଏତେକ ପ୍ରମାଦେ
ନିଜ ଅପରାଧ ମାନି ଭାଳଇ ବିଷାଦେ ।
ଆହା ମୋର ପୂର୍ବ ପାପଫଳ ଗଲା ଫଳି
ତେଣୁ ପୂର୍ଣ୍ଣବ୍ରହ୍ମଙ୍କୁ ମୁଁ ଚିହ୍ନି ନ ପାରିଲି ।
ଗୋକୁଳେ ଉଦୟ ସର୍ବ ଜଗତର ପତି
ଗୋପବେଶେ ଗୋପବାଳ ସଙ୍ଗେ ବିହରନ୍ତି ।
ଅହଙ୍କାରେ ମତ୍ତ ମୁହିଁମୂଢ଼ ଦୁରାଚାର
ପରଂବ୍ରହ୍ମେ ଦ୍ରୋହ କଲି ଚିନ୍ତି ଅବିଚାର ।
ପ୍ରମାଦ ଘଟିଲା ମୋତେ ନାହିଁ ପ୍ରତିକାର
କୃଷ୍ଣବିନେ କେବାମୋତେ କରିବ ନିସ୍ତାର ।

କୃଷ୍ଣଙ୍କ ପାଶେ ଯିବାକୁ ସଙ୍କୋଚ ମଣିଲ
କରଯୋଡ଼ ତହୁଁ ସୁରଭିକି ସ୍ତବକଲା ।
ଇନ୍ଦ୍ରର ସ୍ତବେ ସୁରଭି ସନ୍ତୋଷ ହୋଇଲା
ଗୋଲକ ଭୁବନୁ ଇନ୍ଦ୍ର ନିକଟେ ଅଇଲା ।
ସୁରଭିକି ଦେଖି ଇନ୍ଦ୍ର ବିହିଲା ପ୍ରଣାମ
ବିନୟ ବଚନେ ଜଣାଇଲା ମନସ୍କାମ ।
ବୋଇଲା ମୁହିଁ ଅପରାଧୀ କୃଷ୍ଣଙ୍କ ଚରଣେ
ମୋ ଦୋଷ ମୋଚନ କର ଦେବୀ ନିଜଗୁଣେ
ଏହାଶୁଣି ସେ ସୁନ୍ଦରୀ କରିଣ ଆଶ୍ୱାସ
ଇନ୍ଦ୍ରଙ୍କୁ ସଙ୍ଗରେ ଘେନି ଗଲେ କୃଷ୍ଣପାଶ ।
ତାହାଙ୍କୁ ଦେଖିଣ ହରି ମୁଖ ବୁଲାଇଲେ
କ୍ରୋଧ ହେତୁରୁ ତାହାଙ୍କୁ କଥା ନ କହିଲେ
ମଥାରୁ ମୁକୁଟ ଆଗକରି ଦେବରାଜ
ସାଷ୍ଟାଙ୍ଗେ ପଡ଼ିଲା ପାଦେ ମନେ ପାଇ ଲାଜ ।
କୃଷ୍ଣ ପଦ୍ମପାଦ ତଳେ ଲୋଟି ପଡ଼ିଗଲା
କରଯୋଡ଼ ପୂର୍ଣ୍ଣବ୍ରହ୍ମେ ବହୁ ସ୍ତୁ କଲା ।
ଦାଇନ କରି ମାନିଲା ନିଜ ଅପରାଧ
ବୋଲେ ଜୟ ପୂର୍ଣ୍ଣବ୍ରହ୍ମ ମେଣ୍ଟାଅ ବିଷାଦ ।
କୃଷ୍ଣ ବୋଇଲେ ବାସବ ଶୁଣ ମୋ ବଚନ
ପ୍ରାଣର ସମାନ ମୋର ବ୍ରଜବାସୀ ଜନ ।
ମୋପ୍ରତିହିଂସାରେକ୍ରୋଧିନୁହେଁମୋରତୋତେ
ବ୍ରଜବାସୀଗଣେ ଅପରାଧ କଲ ଯେତେ ।
ସେକାଳେ ସୁରଭି କରି ଅନେକ ବିନ?
ଶ୍ରୀହରିଙ୍କ କ୍ରୋଧ ଶାନ୍ତ କରାଏ ସମ୍ପ୍ରତି ।
ନିଜ କ୍ଷୀରେ ସେ ସୁରଭି ହୋଇଣ ଉତ୍ସୁକ
ଇନ୍ଦ୍ର ଉପଇନ୍ଦ୍ରଙ୍କୁ କରାଏ ଅଭିଷେକ ।
ଇନ୍ଦ୍ର ସହିତ ଶ୍ରୀହରି ଅଭିଷେକ କାଳେ
ଜୟଜୟ ଗୋବିନ୍ଦ ବୋଲିଣ ଉଚ୍ଚେ ବୋଲେ
ଗୋବିନ୍ଦ ଗୋବିନ୍ଦ କହି କହି ସୁରପତି
ପ୍ରେମେ ପୂର୍ଣ୍ଣ କଳେବର ନିଷ୍ଠୁରେ ଭାରତୀ ।
ଧନ ଧନ ଗୋବିନ୍ଦ ରଟଇ ନିଜମୁଖେ
ପ୍ରଣାମ କରି ଆପଣା ପୁରେ ଚଳେ ସୁଖେ ।
ସୁରଭି ଯେ ଚଳିଗଲା ନିଜ ସ୍ଥାନେ ତୋଷେ
ମହାସୁଖେ କୃଷ୍ଣ ବିହରନ୍ତି ବ୍ରଜ ଦେଶେ ।
ଶ୍ରଦ୍ଧା ମନେ ଏହି ଲୀଳା ଯେଉଁଜନ ଶୁଣେ
ଦୃଢ଼ ଭକ୍ତି ହୁଏ ତାର ଗୋବିନ୍ଦ ଚରଣେ ।

ଇନ୍ଦ୍ରକୃତ କୃଷ୍ଣସ୍ତବ ଶୁଣେ ଯେଉଁ ଜନ
ଯା ବାଞ୍ଛି ତା ପାଏ ଏହା ବ୍ୟାସଙ୍କ ବଚନ
ପୂର୍ଣ୍ଣବ୍ରହ୍ମ କୃଷ୍ଣଙ୍କର ଏ ଲୀଳା ସାଗର
ବର୍ଣ୍ଣନ କଲଇଁ ସ୍ପର୍ଶି କଣିକାଏ ତାର ।
ବିସ୍ତାର ବର୍ଣ୍ଣନେ ସଦା ମାନସରେ ଆଶ
ଗ୍ରନ୍ଥ ବିସ୍ତାର ହେତୁରୁ ସଂକ୍ଷେପେ ପ୍ରକାଶ ।
ଶୁକ ଯାହା କହିଥିଲେ ରାଜା ପରୀକ୍ଷିତେ
ସୁତମହର୍ଷି ଭଣିଲେ ନୈମିଷ ବନସ୍ତେ ।
ତାହାଙ୍କ ଅଧରାମୃତେ ବଳାଇଲେ ଆଶା
ଅଧମ କ୍ଷେତ୍ରମୋହନ ଗୀତେ ଯୋଡ଼େ ଭାଷା

ଇତି ଶ୍ରୀ ବ୍ରହ୍ମପୁରାଣ ଉତ୍ତରଖଣ୍ଡେ ସୁତ
ଶୌନକ ସମ୍ବାଦେ ପୂର୍ଣ୍ଣବ୍ରହ୍ମ କୃଷ୍ଣଙ୍କର
ବାଲ୍ୟଲୀଳା ବର୍ଣ୍ଣନେ ନାମ
ସପ୍ତଚତ୍ୱାରିଂଶୋଽଧ୍ୟାୟ ।

—॰—

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

## କୃଷ୍ଣଙ୍କର ଚକ୍ରିଖେଳ ଲୀଳା ବର୍ଣ୍ଣନ

ଶୌନକ ଉବାଚ

ଏଥୁ ଅନନ୍ତରେ ଯେ ଶୌନକ ମୁନିବର
ପୌରାଣିକ ସୁତ ପ୍ରତି ବୋଇଲେ ଉତ୍ତର ।
ଗୋବର୍ଦ୍ଧନ ଗିରିବର ଧାରଣେ ଶ୍ରୀହରି,
ଦେବରାଜ ଇନ୍ଦ୍ର ଗର୍ବ ଦେଲେ ଚୂର୍ଣ୍ଣକରି ।
ତଦନ୍ତେ କି ଲୀଳା କଲେ ଗୋପରେ ଗୋବିନ୍ଦ
ଶ୍ରବଣ କରାଅ ର? ହୋଇବୁ ଆନନ୍ଦ ।

ସୁତ ଉବାଚ

ସୁତ ବୋଇଲେକ ଆହେ ଶୁଣ ତପୋଧନ
ଶ୍ରବଣେ ଆନନ୍ଦ ସିନ୍ଧୁ ହୋଇବ ବର୍ଦ୍ଧନ ।
ନାନା ରଙ୍ଗେ ଲୀଳାଖେଳା କରି ବ୍ରଜପୁରେ
ବିହରନ୍ତି ପୂର୍ଣ୍ଣବ୍ରହ୍ମ କୃଷ୍ଣ ଆନନ୍ଦରେ ।
ବ୍ରଜବାସୀମାନେ ଦେଖି ଲୀଳା ଚମତ୍କାର
ସବୁରି ନୟନୁ ବହେ ପ୍ରେମ ଅଶ୍ରୁଧାର ।
କୁହାକୁହି ହେଉଥାନ୍ତି ଏକୁ ଆନେ ତହୁଁ
ଧନ୍ୟ ଆମ୍ଭ ଜନ୍ମ ଧନ୍ୟ ଆମ୍ଭ ବ୍ରଜଭୂଇଁ ।
ଏହିପରି ପରସ୍ପରେ କୁହାକୁହି ହୋନ୍ତି
ଦିବସ ରଜନୀ କୃଷ୍ଣ ଗୁଣ ସେ ଗାବନ୍ତି ।

ଏକଦିନେ ଏକାଦଶୀ ବ୍ରତ କରି ନନ୍ଦ
ଯମୁନା ଜଳରେ ସ୍ନାନ କଲେ ବହୁ ମୋଦ
ଜଳରେ ପଶିଣ ନନ୍ଦ କରନ୍ତି ସ୍ନାହାନ
କୃଷ୍ଣ ଦର୍ଶନ ଇଚ୍ଛାରେ ବରୁଣ ରାଜନ ।
ଆପଣା ଯନ୍ତନେ ସେ ନନ୍ଦଙ୍କୁ ନେଇଗଲେ
ଜଳରେ ବୁଡ଼ିଲେ ବୋଲି ସକଳେ ଭାବିଲେ
ନଦେଖି ଗୋପରାଜଙ୍କୁ ବ୍ରଜପୁର ଲୋକ
ଅତି ବିକଳ ହୋଇଣ ଭାସିଲେ ଶୋକେ ।
କାରଣ ଜାଣି ସଭିଙ୍କୁ ଆଶ୍ୱାସି ଶ୍ରୀହରି
ସେହିକ୍ଷଣି ଚଳିଗଲେ ବରୁଣ ନଗରୀ ।
କୃଷ୍ଣଙ୍କୁ ଦେଖି ବରୁଣ ହେଲେ ଆନନ୍ଦିତ
ପାଦ୍ୟ ଅର୍ଘ୍ୟ ଦେଇ ପୂଜା କରିଲେ ତ୍ୱରିତ ।
ଶ୍ରୀମୁଖରେ କରଯୋଡ଼ି ବହୁ ସ୍ତବ କଲେ
ଅପରାଧ କ୍ଷମା କର ବୋଲିଣ ବୋଇଲେ ।
ପ୍ରସନ୍ନ ହୋଇ ବରୁଣ ଗୋବିନ୍ଦ ସ୍ତବନେ
ପିତାଙ୍କୁ ନେଇ ଚଳିଲେ ଗୋକୁଳ ଭୁବନେ ।
ନନ୍ଦଙ୍କୁ ଦେଖି ହରଷ ହେଲେ ସର୍ବଜନ
ଆନନ୍ଦେ ଗାଆନ୍ତି ଶ୍ରୀକୃଷ୍ଣଙ୍କ ଲୀଳାମାନ ।
ଅପୂର୍ବ କଥନ ଏହା ଆହେ ମୁନି ଶୁଣ
ଏହି ରୂପେ ବିହରନ୍ତି ବ୍ରଜେ ନାରାୟଣ ।
ତମାଳବରନ ଶ୍ୟାମ ନବୀନ କିଶୋର
ଦେଖିଲା ମାତ୍ରକେ ମନ ମୋହେ ସଭିଙ୍କର ।
ଯୁବତୀମାନେ ନିରେଖି ଶ୍ରୀକୃଷ୍ଣଙ୍କ କାନ୍ତି
ବିରହ ଜ୍ୱାଳାରେ ସଦା ସେ ଧୀରି ହୁଅନ୍ତି
ମନ ମଧ୍ୟରେ ସେମାନେ କରନ୍ତି ବିଚାର
ସତେକି ଆମ୍ଭର ପତି ହେବେ ଚକ୍ରଧର ।
ବିମ୍ବ ଅଧରେ ମିଳିତ ଅପୂର୍ବ ସୁନ୍ଦର
ମୋହନ ମୁରଲୀ କରେ ଅପୂର୍ବ ସୁନ୍ଦର ।
ଆଜାନୁ ଲମ୍ବିତ ବାହୁ ବନମାଳା ଗଳେ
ସୁଗନ୍ଧ ଲୋଭେ ବେଢ଼ନ୍ତି ମତ୍ତ ଅଳି କୁଳେ ।
ଅଳକା ଆବୃତ ମୁଖ ଅଧର ସୁରଙ୍ଗ
ଦଶନେ ରସନା ଯୁକ୍ତ ମୁରଲୀର ସଙ୍ଗ ।
ସେ ରୂପ ତୁଳନା ନାହିଁ ଏ ତିନି ଭୁବନେ
ଅନଙ୍ଗ ଅଧିର ରୂପ ସେ କାନ୍ତି ଦର୍ଶନେ ।
ନାସା ପୁଟେ ବିକାଶେ ଦୋଳିତ ମୁକ୍ତାଭଳି
ନୀଳମଣି ଦର୍ପଣ ଝଲକେ ଗଣ୍ଡସ୍ଥଳି ।

ଶ୍ରୀମୁଖ ଚନ୍ଦ୍ରର ରାଜ ମନ୍ତ୍ରୀ ଦୁଇ ନେତ୍ର
ବ୍ରଜଧାମି ମନ ଧନ ଲୁଟନ୍ତି ସମସ୍ତ ।
ଭାତିଲେ ବଦନର ବିନ୍ଦୁ ଦଶିଇ ରୁଚିର
ନଦେଖି ଉଛୁଳଇ ମନ ନାରୀମାନଙ୍କର ।
ମକର କୁଣ୍ଡଳ ଗଣ୍ଡ ମଣ୍ଡଳେ ଝୁଲାଇ
କାମିନୀମାନଙ୍କ କୁଳ ମାନକୁ ଗ୍ରାସଇ ।
କୁଞ୍ଚିତ ଚିକୁର ଚୂଡ଼ା ଶିଖିପୁଚ୍ଛେ ଶୋହେ
ନବଗୁଞ୍ଜା ବେଢ଼ାଇଥି କାମିନୀ ମତାଏ ।
ମଦନ ମୋହିତ ହୁଏ ଦେଖି ଶ୍ରୀ ଲପନ
ଆଉ କି କହିବି କୁଳନାରୀଙ୍କ କଥନ ।
ଯଥାଯୁକ୍ତ ଅଳଙ୍କାରେ ମଣ୍ଡିତ ଶ୍ରୀଅଙ୍ଗେ
ଢଳ ଢଳ ଚଳଯାନ୍ତି ଗୋପବାଳର ସଙ୍ଗେ ।
ନବ ବଧୂଗଣ ବୁଡ଼ି ରୂପ ସମୁଦ୍ରରେ
ମନ ମନ୍ତ୍ରାନ୍ତ ଦେଖିବା ମାତ୍ରେ ନୟନରେ ।
ପ୍ରେମ ଭୋଳେ ବ୍ରଜବଧୂ ହୋନ୍ତି ବିଭ୍ରାନ୍ତ
ଯତନରେ ନିଜ ଭାବ କରନ୍ତି ଗୋପିତ ।
ଗୋପନ କରିବା ପାଇଁ ସେ ଭାବ ଇଚ୍ଛନ୍ତି
କୌଣସି ମତେ ଗୋପନ କରି ନ ପାରନ୍ତି ।
ଲାଜ ଧୈର୍ଯ୍ୟକୁ ସମ୍ଭାଳି ନ ପାରନ୍ତି ଯେଣୁ
ଗୁରୁଜନଙ୍କ ଗଞ୍ଜଣା ସହୁଥାନ୍ତି ତେଣୁ ।
କୃଷ୍ଣର ଗୁଣ ସୁମରି ହୁନ୍ଦ ଜର ଜର
କୃଷ୍ଣମୟ ହେଲା ତାଙ୍କ ବାହାର ଅନ୍ତର ।
ନିତି ନିତି ଅନୁରାଗ ସାଗର ଉଛୁଳେ
ପ୍ରେମ-ସମୁଦ୍ର ସଳିଳେ କୃଷ୍ଣ ବୁଡ଼ାଇଲେ ।
ଗୋପୀଙ୍କ ପ୍ରେମରେ କୃଷ୍ଣ ହୋଇଲେ ବିହ୍ୱଳ
ଗୋପୀଙ୍କ ଭାବରେ ହେଲେ ନିରନ୍ତରେଭୋଳ
ଗୋପୀଙ୍କ ପ୍ରୀତି-ସମ୍ପତ୍ତି ଶ୍ରୀ ନନ୍ଦନନ୍ଦନ
ଗୋପୀଙ୍କ ସ୍ନେହ-ରଜ୍ଜୁରେହୋଇଲେ ବନ୍ଧନ
ବିଚିତ୍ର ଚରିତ୍ର ଶୁଣ ଆହେ ମୁନିଗଣ
ବରୁଣ ଭୁବନୁ କୃଷ୍ଣ ପିତାଙ୍କୁ ନେଇଣ ।
ଯେଉଁ ସମୟରେ ତହୁଁ ହୋଇଲେ ମେଲାଣି
ବରୁଣ କୃଷ୍ଣ ଚରଣେ ମଣ୍ଡି ଶିର ପାଣି ।
କେତେ ମଣିରତ୍ନମାନ ଉପହାର ଦେଇ
କୃଷ୍ଣଙ୍କ ମନ ତୋଷିଲା ସେହି ଜଳସାଇଁ ।
ନନ୍ଦ ମୁଖୁଁ ସବୁ ଶୁଣି ବ୍ରଜବାସୀ ଜନେ
କୃଷ୍ଣଙ୍କୁ ଈଶ୍ୱର ଜ୍ଞାନ କଲେ ଯେଝା ମନେ ।

ଅନ୍ତର୍ଯ୍ୟାମୀ ଏହା ସବୁ ଜାଣିଲେ ଅନ୍ତରେ
ଗୋପାଳଙ୍କ ବାଞ୍ଛା ପୂର୍ଣ୍ଣ କରିବା ଆଶାରେ ।
କୃପାକର କୃପାନିଧି କଲେକ ଚିନ୍ତନ
ସଂସାରି ସଂସାର କର୍ମେ ସଦା ନିମଗନ ।
ତତ୍ତ୍ୱଜ୍ଞାନ ଶୂନ୍ୟ ସର୍ବେ କାମନାରେ ମାତ୍ର
ଅନିତ୍ୟ ଦେହକୁ ଯେନ ମତ୍ତ ହୋଇଛନ୍ତି ।
ମାୟାରେ ମୋହିତ ସର୍ବେ ନ ଜାଣନ୍ତି ପଥ
କିନ୍ତୁ ନ ମଣନ୍ତି ସକଳେ ଯେ ଗୃହାସକ୍ତ ।
ଏମନ୍ତ ଚିନ୍ତି ଶ୍ରୀହରି କଉତୁକ କଲେ
ଗୋଲୋକବିହାରୀ ରୂପ ସେକ୍ଷଣି ଧଇଲେ ।
ସେ ଗୋଲୋକ ରୂପ ହରି କରନ୍ତି ଦର୍ଶନ
ସତ୍ୟରୂପୀ ପୂର୍ଣ୍ଣବ୍ରହ୍ମ ନିତ୍ୟ ନିରଞ୍ଜନ ।
ଅନନ୍ତ ଆକାର ଦେବ ସତ୍ୟ ଜ୍ଞାନମୟ
ପରଂବ୍ରହ୍ମ ପରାପର ଜ୍ୟୋତି ଅତିଶୟ ।
ମୁନିଗଣ ସଦା ଚିନ୍ତୁଥାନ୍ତି ଯେଉଁ ରୂପ
ଗୋପାଳମାନେ ସେ ମୂର୍ତ୍ତି ଦେଖିଲେ ସ୍ୱରୂପ
ତତ୍ତ୍ୱଜ୍ଞାନ ପାନ୍ତି ପରଂବ୍ରହ୍ମ ଭାବ ମନେ
ପ୍ରତ୍ୟକ୍ଷେ ଦେଖିଲେ ପୂର୍ଣ୍ଣବ୍ରହ୍ମ ସନାତନେ ।
ସମସ୍ତଙ୍କୁ ବ୍ରହ୍ମରୂପ କରାନ୍ତେ ଦର୍ଶନ
ସେହିରୂପେ ନୟନେ ଦେଖନ୍ତି ସର୍ବଜନ ।
ବ୍ରହ୍ମପଦ ଥିଲା ଯହିଁ ସେହି ଯେ ହ୍ରଦରେ
ସମସ୍ତଙ୍କୁ ନେଲେ ହରି ତହିଁ ସୁଦୟାରେ ।
ସେ ସ୍ଥାରେ ନିମଗ୍ନ ହୋଇ ବ୍ରଜବାସୀ ଜନ
ଅପୂର୍ବ ବୈକୁଣ୍ଠ ଧାମ କଲେ ଦରଶନ ।
ଭକତ ଅକ୍ରୂର ଏହି ହ୍ରଦେ ଏକଦିନ
କୃଷ୍ଣ ତହିଁ ଦେଖି ପାରିଲେ ଏ ପଦଚିହ୍ନ ।
ଏହି ଦୃଶ୍ୟ ଦେଖି ମୁଗ୍ଧ ଗୋପବାସୀଗଣ
ଆନନ୍ଦ ସାଗରେ ସର୍ବେ ହୋନ୍ତି ନିମଗନ ।
କୃତାଞ୍ଜଳି କରି ସର୍ବେ କରନ୍ତି ସ୍ତବନ
ବ୍ରହ୍ମ ସ୍ୱରୂପକୁ ଦେଖି ସର୍ବସ୍ତୁ ମନ ।
ନନ୍ଦହରଣ ପ୍ରସଙ୍ଗେ ହେ ତାପସଗଣ
ବ୍ରଜବାସୀମାନଙ୍କର ବୈକୁଣ୍ଠ ଦର୍ଶନ ।
ସଂକ୍ଷେପ ଭାବରେ ଭଲେ କଲି ତ ଶ୍ରବଣ
କୃଷ୍ଣଙ୍କ କିଶୋର ଲୀଳା ଅପୂର୍ବ କଥନ ।
ଏଥୁଅନ୍ତେ କହିବଇଁ ଯେ ପ୍ରେମ ବିଳାସ
ଯେମନ୍ତେ କଲେ ଗୋବିନ୍ଦ ଶାରଦୀୟ ରାସ ।

ସେହି ମହାରାସଲୀଳା ପୀୟୂଷ ମିଳନ
ଗୋପୀକେ ଗୋବିନ୍ଦ ଏକ ଯେପରି ବିଧାନ
ସୂକ୍ଷ୍ମ ଭାବରେ ତା ସବୁ କରିବ ବର୍ଣ୍ଣନ
ମନ କର୍ଣ୍ଣ ଦେଇ ଶୁଣ ସର୍ବ ତପିଜନ ।
ପ୍ରଫୁଲ୍ଲିତ ଚିତ୍ତେ ଶୁକଦେବ ଯୋଗୀଶ୍ୱର
ପରୀକ୍ଷିତେ କହିଥିଲେ ଲୀଳା ମନୋହର ।
ଏଥି ମୁହିଁ ତୁମ୍ଭ ଆଗେ କରିବ ପ୍ରକାଶ
ଲଭିବ ପରମାନନ୍ଦ ମାନସ ଉଲ୍ଲାସ ।
ନିର୍ମଳ ଶରତ କାଳ ହୁଅନ୍ତେ ଆଗତ
ବୃନ୍ଦାବନେ ତରୁଲତା ହେଲେ କୁସୁମିତ ।
ନାନା କୁସୁମ ସୁବାସ ଚହଟି ଉଠଇ
ମନରେ ବିଚାରି କଲେ ପ୍ରଭୁ ଭାବଗ୍ରାହୀ ।
ଗୋପୀମାନଙ୍କ ସଙ୍ଗରେ କରିବାକୁ ରାସ
ମଦନମୋହନ ବେଶ ହେଲେ ପୀତବାସ ।
ନବ ନଟବର ଠାଣି ଜନ ମନ ଲୋଭା
ଉପମା ଦେବାକୁ ତାଙ୍କୁ କ୍ଷମ କିଏ ଅବା ।
ଶ୍ରୀବୃନ୍ଦାବନକୁ ଗଲେ ହୋଇ ହର୍ଷମତ୍ତ
ଦେଖିଲେ କୁସୁମେ ଶୋଭା ତରୁ ଲତା ଅତ୍ତ
ମଲ୍ଲିକା ମାଳତୀ ଯୂଥୀ ଫୁଟେ ଅଗଣନ
ପାରିଜାତ କରବୀର ନାଗେଶ୍ୱର ପୁଣ ।
ପୁନଙ୍ଗ ଶେଫାଳୀ ଜାଇ ପାଟଳୀ ଟଗର
ଅଶୋକ ପଲାଶ ଜବା କୁଣିକା ନାଗେଶ୍ୱର ।
ଛଡ଼ ରଞ୍ଜୁର ସମସ୍ତ ଫୁଲ ଏକାବେଳେ
ଫୁଟି ବାସ ଚହଟଇଂ ବୃନ୍ଦାବନ ସ୍ଥଳେ ।
ଶ୍ୟାମଳ ଚିକଣ ଦିଶେ ଯମୁନାର ଜଳ
ଚନ୍ଦ୍ରମାର ଚନ୍ଦ୍ରିକାରେ ଶୋଭା ଝଳମଳ ।
ବନ ଶୋଭା ଦେଖି ଗୋପୀଙ୍କର ପ୍ରାଣଧନ
ଗୋପୀଙ୍କ ସଙ୍ଗରେ ବିହରିବେ କରି ମନ ।
ଟେଣୁକର ଉଦ୍ଦିପନ ହୋଇଲା ଉଦୟ
ପୂର୍ବ ଦିଗକୁ ନିରେଖି ପ୍ରଫୁଲ୍ଲ ହୃଦୟ ।
ଯେ ପୂର୍ବ ଦିଗ ନାୟିକା ସମାନ ଜ୍ଞାନରେ
ବସନ୍ତ ସମ ହୋଇ ବିଧୁ ତହିଁରେ ବିହରେ ।
ତା ଦେଖି ଗୋବିନ୍ଦ ହେଲେ ଅତ୍ୟନ୍ତ ଉଲ୍ଲାସ
ମନୋହର ଲୀଳା ଆଜ କରିବ ପ୍ରକାଶ ।
ଏସନ ଭାବ ଶ୍ରୀହରି ତ୍ରିଭଙ୍ଗୀରେ ରହି
ଶ୍ରଦ୍ଧାରେ ମୋହନ ବେଣୁ ଅଧରେ ଲଗାଇ ।

ଅତି ମଧୁର ସଙ୍ଗୀତ ଗାନେ ବଂଶୀପାଣି
ଗୋପିକା ନାମ ଧରି ଡାକନ୍ତି ତକ୍ଷଣି ।
ସୁସ୍ୱରେ ଡାକନ୍ତି ବନେ ଆସ ବେଗକରି
ମନତୃପ୍ତ କରି ଦେଖି ଏମନ ମାଧୁରୀ ।
ସେ ବଂଶୀର ସ୍ୱର ଶୁଣି ବ୍ରହ୍ମାଣ୍ଡ ମୋହିତ
ଗୋପିମାନେ ଯେ ସକଳ ଧାଇଁଲେ ତ୍ୱରିତ
ମୋହନ ବାଂଶରୀ ଶୁଣି ଗୋପିକା ଅସ୍ଥିର
ଯେବା ଯେଉଁରୂପେ ଥିଲେ ହୋଇଲେ ବାହାର
ଗୋଦୋହନ କରୁଥିଲା କେହ୍ନୁ ନିଜଘରେ
ଦୋହନ ଖଣ୍ଡିକୁ ଫିଙ୍ଗି ଧାଇଁଲା ସତ୍ୱରେ ।
ସ୍ୱାମୀ ପାଦ ସେବା କରୁଥିଲା କେଉଁନାରୀ
ବଂଶୀସ୍ୱନ ଶୁଣି ଧାଇଁଲା ସେ ଛାଡ଼ି କରି ।
ସ୍ତନ ପିଆଉଣ ଥିଲା ଶିଶୁକୁ କେ ବାଳୀ
ଧାଇଁଲା ତଳେ କରିଛାଡ଼ି ବନକୁ ଗୁଆଳୀ ।
ଅଞ୍ଜନ ରଞ୍ଜନ କରୁଥିଲା ନେତ୍ରେ କେହି
ବଂଶୀସ୍ୱନ ଶୁଣି ଗଲା ବହନ ପଳାଇ ।
ରନ୍ଧନ ଶାଳରେ ରହିଥିଲା କେ ତରୁଣୀ
କୃଷ୍ଣ ବଂଶୀ ସ୍ୱନ ଶୁଣି ପଳାଇଲା ପୁଣି ।
କାହା ପତି ଯିବା ଧାଇଁ ନ ଛାଡ଼ି ବାନ୍ଧିଲା
ବନ୍ଧନେ ଗୃହରେ ବନ୍ଦ କରି ସେ ରଖିଲା ।
ମୁଦ୍ରିତ ନୟନ ହୋଇ ବ୍ୟାକୁଳ ସେ ନାରୀ
କୃଷ୍ଣ ପାଦ ପଦ୍ମେ ମନ ସମପି ତାହାରି ।
ସେହି ପାଦ ଧ୍ୟାନରେ ଘୁଞ୍ଚିଲା ଅମଙ୍ଗଳ
ପାପ ପୁଣ୍ୟ ଫଳ ତାର ହଟିଲା ସକଳ ।
ପ୍ରେମମୟୀ ହୋଇ ସେହୁ କୃଷ୍ଣ ପାଶେ ଗଲା
କୃଷ୍ଣଙ୍କୁ ସେ ଧ୍ୟାନ ମାର୍ଗେ ଆଲିଙ୍ଗନ କଲା ।
ଆଉସବୁ ଗୋପୀ ଏକୁ ଏକ ଅଲକ୍ଷିତେ
ଉନ୍ମତ୍ତ ହୋଇ ଧାଇଁଲେ କୃଷ୍ଣର ସାକ୍ଷାତେ
ସାରି ସାରି ହେଲେ ଗଲେ ହରି ବିଦ୍ୟମାନେ
ସବୁରି ଆଡ଼ ଚାହାଣୀ ଗୋବିନ୍ଦ ବଦନେ ।
ଗୋପିନୀ ସମାଜେ ଦେଖି ଗୋପୀ ପ୍ରାଣଧନ
ମନ୍ଦେ ହସି ପଚାରିଲେ ମଙ୍ଗଳ କାରଣ ।
କୁହ ଭାଗ୍ୟବତୀମାନେ ଅଇଲ କୁଶଳେ
କାହିଁକି ଅବା ଆସିଲ ଏତେ ରାତ୍ରି କାଳେ ।
ବ୍ରଜେ କି ବିପଦ ହେଲା କହ ବେଗ କରି
ଅସୁରେ କି ପୀଡ଼ା ଦେଲେ ମିଳି ଗୋପପୁରୀ

ବ୍ରଜର ଅକାର୍ଯ୍ୟ ମୁହିଁ ଦେଖି ନ ପାରଇ
ବିପଦୁ କରିବି ମୁକ୍ତ କହ ସବୁ ଗୋଇ ।
କିବା ମୋତେ ଦେଖିବାକୁ ଆସିଲ ଏ ସ୍ଥାନେ
ଏବେ ତ ଦେଖିଲ ଗୃହେ ଯାଅ ଗୋ ବହନେ
ଏ ଘୋର ରଜନୀ ପୁଣି ତୁମ୍ଭେ ନାରୀ ଜାତି
ବିଳମ୍ବେ ଅଯଶ ହେବ ଚଳ ଶୀଘ୍ର ଗତି ।
ମାତା ପିତା ପୁତ୍ର ଭ୍ରାତା ପତି ବନ୍ଧୁଗଣ
ଖୋଜିଣ ଆକୁଳ ଘରେ ଯାଅ ଗୋ ବହନ ।
ଇଷ୍ଟଦେବ ସମ ନିଜ ପତିଙ୍କି ଜାଣିବ
ମୂର୍ଖରୀ ହେଲେହେଁ ତେବେ ଭକ୍ତିରେ ସେବିବ
ବନଶୋଭା ଦେଖିବାରେ ଯଦି ଆଗମନ
ଶୋଭା ତ ଦେଖିଲ ଏବେ କର ଗୋ ଗମନ
ଏପରି କୃଷ୍ଣଙ୍କ ନିଷ୍ଠୁର ବାଣୀ ଶୁଣି
ବିଷାଦ ବଦନ ସବୁ ବରଜ ତରୁଣୀ ।
ମଥାକୁ ନୁଆଇଁ ସବେ ମୁଖ ଶୁଖାଇଲେ
ପାଦ ଅଙ୍ଗୁଳି ନଖରେ ମହୀକି ଚିରିଲେ ।
କିଛିକ୍ଷଣ ଗୋପୀଗଣ ମଉନରେ ରହି
ସମ୍ବୋଧେ କହନ୍ତି ଦୀର୍ଘ ନିଃଶ୍ୱାସ ପକାଇ ।
ଶୁଣ ନାଥ ନିବେଦନ ଆମ୍ଭମାନଙ୍କର
ଯାହାର ନିମନ୍ତେ ତେଜି ଘରଦ୍ୱାର ବର ।
ଘୋରବନେ ଆମ୍ଭେମାନେ ଅଇଲୁଁ ହେ ଧାଇଁ
ଏ ନିଷ୍ଠୁର ବାକ୍ୟ ଆମ୍ଭଯୋଗ୍ୟ କି ମାଧୋଇ
ଆପଣା ମନେ ବିଚାର କର ଯୁକ୍ତି ଯାହା
ଅଧିକ କିବା କହିବୁଁ ହେ ମୁରଲୀ ବାହା ।
ସତ୍ୟ ସେ ପରମ ଧର୍ମ ପତିର ସେବନ
ସବୁଙ୍କର ପତି ତୁମ୍ଭେ ସବୁରି ଜୀବନ ।
ତୁମ୍ଭର ବିହୀନେ ପତି କେ ଅଛି ଆବର
ଅନ୍ୟ ଜନେ ପତିଜ୍ଞାନ ଧିକ ସେହି ଛାର ।
ଏହିପରି ଗୋପୀଙ୍କ କରୁଣ ବାଣୀ ଶୁଣି
ସନ୍ତୋଷ ହୋଇ ଆଶ୍ୱାସ କଲେ ବେଣୁପାଣି
ସମସ୍ତଙ୍କୁ ସଙ୍ଗେ ନେଇ ଯମୁନାକୁ ଗଲେ
ସଭିଙ୍କ କାମନାମାନ ପୂରିଲା ତକ୍ଷଣେ ।
ମଣ୍ଡଳୀ କରି ଶ୍ରୀ ହରି କଲେ ରାସ ଲୀଳା
ନାଚନ୍ତି ଶ୍ରୀକୃଷ୍ଣଙ୍କର ସଙ୍ଗେ ବ୍ରଜବାଳା ।
କୃଷ୍ଣଙ୍କୁ ପାଇ ବିହ୍ୱଳ ଗୋପ ନାରୀଗଣ
ମନେ ମନେ ନିଜ ଭାଗ୍ୟ କଲେ ପ୍ରଶଂସନ ।

ଜଗତ ମଧ୍ୟରେ ଆମ୍ଭେ କେବଳ ପ୍ରଧାନ
ଆମ୍ଭମାନଙ୍କର ବଶ ହେଲେ ଭଗବାନ ।
ଏହି ମତେ ଗର୍ବିତା ହୋଇଲେ ଗୋପୀଗଣ
ଅନ୍ତରେ ଜାଣିଲେ ଅନ୍ତର୍ଯ୍ୟାମୀ ନନ୍ଦକାହ୍ନ ।
ପ୍ରିୟଗଣେ ଅନୁଗ୍ରହ ଅଧିକ କାରଣେ
ଅନ୍ତର୍ଦ୍ଧାନ ହେଲେ ରାଧା ସଙ୍ଗେ ତତକ୍ଷଣେ
ମଣ୍ଡଳୀ ମଧ୍ୟରେ ଯହୁଁ ନ ଦେଖିଲେ ହରି
ଆକୁଳେ କାନ୍ଦିଲେ ଗୋପୀମାନେ ଗୁଣ ସ୍ମରି
କେଉଁ ଅପରାଧେ ନାଥ ନଦିଅ ଦର୍ଶନ
ତୁମ୍ଭବିନେ ବୃଥା ପ୍ରାଣ ଧରିବୁ କେସନ ।
ଦରଶନ ଦିଅ ବ୍ରଜ ରମଣୀଙ୍କ ବନ୍ଧୁ
ଏ ଦୁଃଖ ସିନ୍ଧୁରୁ ପାର କର ଗୋପଇନ୍ଦୁ ।
କରୁଣା କରି କାହିଁକି ନିଷ୍ଠୁର ହେ ଏତେ
ତୁମ୍ଭ ବିନେ ଗୋପୀମାନେ ମରିବୁଁ ସମସ୍ତେ ।
ଏତେ ବୋଲି କାନ୍ଦି କାନ୍ଦି ଆକୁଳେ ଧାଆନ୍ତି
ତରୁ ଲତାମାନଙ୍କୁ ସେ ଚାହିଁ ପଚାରନ୍ତି ।
ଶୁଣ ଗୋ ମାଳତୀ ମଲ୍ଲୀ ଆମ୍ଭର ବଚନ
ଏ ପଥେ ଯାଇଅଛନ୍ତି ଗୋପୀଙ୍କ ଜୀବନ ।
ଦେଖିଛ କି ଯୁଈ ଜାଇ ମାଧବୀ କାଞ୍ଚନ
ଗଲେ କି ଏ ପଥେ କୃଷ୍ଣ ନନ୍ଦର ନନ୍ଦନ ।
କହ ଗୋ ଅଶୋକ ଚମ୍ପା କଦମ୍ବ ଟଗର
ଏ ପଥେ ଗଲେ କି ନବ ଛଇଳ ନାଗର ।
କହ କହ ଦୟାବହି ଆଗୋ ଲୁଗ୍ରଅନା
ଯାଇଛନ୍ତି କି ଏ ପଥେ ବିନୋଦିଆ କହ୍ନା ।
କହ ଗୋ ନିଆଳୀ ସଖି ନ କରି କପଟ
ଏ ପଥେ ଯାଇଛନ୍ତି କି ହଟିଆ ଲମ୍ପଟ ।
ଦୟାକରି କହ ଆଗୋ ମରୁଆ ସେବତୀ
ମନ ମୋହନିଆ କି ଏ ପଥେ ଯାଇଛନ୍ତି ।
ଆଗୋ କୁରୁବେଲ୍ଲୀ କୁନ୍ଦ ପାଟଳୀ ଦୟଣା
କହିଦିଅ କାହିଁ ଗଲେ ସେ ରଙ୍ଗିଆ କହ୍ନା ।
ଏମନ୍ତ ବିକଳ ମନେ ଗୋପିମା ସକଳେ
କାନ୍ଦି କାନ୍ଦି ତରୁଲତାମାନଙ୍କୁ ପୁଚ୍ଛିଲେ ।
ଉତ୍ତର ନ ପାଇ ପାଗଳୀମା ପରି ହୋଇ
ତୁଳସୀ ବନେ ପ୍ରବେଶ ହୋଇଲେକ ଯାଇ ।
ଶୁଣ ଗୋ ତୁଳସୀ ଗୋବିନ୍ଦଙ୍କ ପ୍ରାଣପ୍ରିୟା
କୃଷ୍ଣଙ୍କୁ ନ ଦେଖି କଲବଲ ଆମ୍ଭ ହିଆ ।

ଦେଖିଥିଲେ କହ ସଖୀ କୃଷ୍ଣଙ୍କ ବାରତା
ଶୀତଳ ହେଉ ମାନସ ଶୁଣି ତବ କଥା ।
ତୁଳସୀଠାରୁ କୌଣସି ଉତ୍ତର ନ ପାଇ
ବୃନ୍ଦାବନେ ପ୍ରବେଶିଲେ ସଖିଗଣେ ଯାଇ ।
ବୋଇଲେ ହେ ଆମ୍ବ ଶାଳ ପଣସ ତମାଳ
ଏ ପଥେ ଗଲେ କି ଦେଖିଅଛ ଆଦିମୂଳ ।
କହ କହ ଦେବଦାରୁ ଅସନ ଚନ୍ଦନ
ଏ ପଥେ ଯାଇଛନ୍ତି କି ଶ୍ରୀମଧୁସୂଦନ ।
ଏମନ୍ତେ ସକଳ ତରୁ ଲତାଙ୍କୁ ପୁଚ୍ଛିଲେ
କାହାରଠାରୁ ଉତ୍ତର ପଦେ ନ ପାଇଲେ ।
ତହୁଁ ଗୋପୀମାନେ କୃଷ୍ଣ ବିଚ୍ଛେଦରେ ବୁଡ଼ି
କୃଷ୍ଣମୟ ହୋଇ ପାଶୋରିଲେ ଦେହ ଗୁଡ଼ି ।
କୃଷ୍ଣ ଲୀଳା ଗାନମାନ ଗାଇଲେ କାତରେ
ଏକ ଏକ ଗୋପୀ ଭାଷଇ ଯେ ଆରକରେ ।
ଯେ ଯାହାର ମନଭାବ କରନ୍ତି ପ୍ରକାଶ
କେହୁ ବୋଲେ ମୁହିଁ କୃଷ୍ଣ କରଗୋ ବିଶ୍ୱାସ
ଦେଖ ମୁଁ ଏ ପୁତନାର ହାରିଲି ଜୀବନ
ଦେଖ ମୁଁ ତୃଣାବର୍ତ୍ତକୁ ବଧକଲି ଜାଣ ।
କେ ବୋଲେ ଯାମଳାର୍ଜ୍ଜୁନ ଭଞ୍ଜନ କରିଲି
କେ ବୋଲେ କାଳୀ ମସ୍ତକେ ମୁହିଁ ପାଦଦେଲି
କେବୋଲେ ଦେଖମୋ ବାମକରେ ଗୋବର୍ଦ୍ଧନ
କେ ବୋଲେ ଦେଖ ମୁଁ କରି ବସନ ହରଣ
ଏହି ପରି ଗୋପୀମାନେ କୁହାକୁହି ହୋନ୍ତି
ବାଇ ପରାୟେ ସାରା ବନରେ ବୁଲନ୍ତି ।
କୌଣସିଠାରେ ନ ପାଇ କୃଷ୍ଣଙ୍କ ସନ୍ଧାନ
ହା ନାଥ ବୋଲି ଆକୁଳେ କରନ୍ତି କ୍ରନ୍ଦନ ।
ବନୁବନେ ଭ୍ରମନ୍ତି ସେ ପାଗଳୀମା ପରି
ନ ଦେଖି କୃଷ୍ଣ ଧୂଳିରେ ଲୋଟନ୍ତି ସୁନ୍ଦରୀ ।
ଏଣେ ରାଧାଙ୍କ ସଙ୍ଗରେ ପ୍ରଭୁ ବନମାଳୀ
ବିହରନ୍ତି ବୃନ୍ଦାବନେ କରି ନାନାକେଳି ।
ସୁବାସ କୁସୁମମାନ ତୋଳି ନିଜକରେ
ରାଧାଙ୍କୁ ବେଶ କରନ୍ତି ହରଷ ଅନ୍ତରେ ।
ଯତନେ କାବେରୀ ଭାର ତାଙ୍କର ସଜାଇ
କୁସୁମ ଗଜରା ଗୁନ୍ଥି ଦେଉଥାନ୍ତି ତହିଁ ।
ଏମନ୍ତ ଶ୍ରୀକୃଷ୍ଣଙ୍କର ପ୍ରୀତି ଦେଖି ସହି
ମନେ ମନେ ଗର୍ବକଲେ ସେ ସୁଚନ୍ଦ୍ରମୁହିଁ ।

ଭାବିଲେ ମୋପରି କେହି ନାହିଁ ଭାଗ୍ୟବନ୍ତୀ
ଯେଣୁ କୃଷ୍ଣଚନ୍ଦ୍ର ମୋର ଅଟନ୍ତି ଯେ ପତି ।
ଏହିପରି ଗର୍ବ ଯହୁଁ ଶ୍ରୀରାଧା କରିଲେ
ଶ୍ରୀକୃଷ୍ଣ ତାହାଙ୍କୁ ଛାଡ଼ି ଅନ୍ତର୍ଦ୍ଧାନ ହେଲେ ।
ତାହାଙ୍କୁ ନ ଦେଖି ରାଇ ବ୍ୟାକୁଳ ଅନ୍ତରେ
ବାହୁନି କାନ୍ଦନ୍ତି ପଡ଼ି ସେ ମହା ମଧ୍ୟରେ ।
ଏମନ୍ତ ସମୟେ କୃଷ୍ଣେ ଖୋଜି ସର୍ବଆଳୀ
ଦେଖିଲେ କାନ୍ଦନ୍ତି ରାଧା ହୋଇ ନଉଛୁଳି ।
ରାଧାଙ୍କ ଦୁର୍ଦ୍ଦଶା ନେତ୍ରେ ଦେଖିଣ ଲଳିତା
ଅଙ୍ଗୁ ଧୂଳି ଝାଡ଼ିଦେଇ ପୁଛିଲେ ବ୍ୟଥା ।
ତହୁଁ ରାଧା ସଙ୍ଗେ ସର୍ବେ ପୁଲିନେ ଆଇଲେ
କୃଷ୍ଣଙ୍କର ଗୁଣ ଗୁଣି ପୁଣି ବିଳପିଲେ ।
କୃଷ୍ଣ ଗୁଣ ପୁଣି ତହିଁ କରିଲେ କ୍ରନ୍ଦନ
ବୋଇଲେ ହେନାଥ ଥରେ ଦିଅ ଦରଶନ ।
ତୁମ୍ଭଙ୍କୁ ନପାଇ ଆମ୍ଭେ ସର୍ବ ଗୋପୀମାନେ
ପ୍ରାଣ ହରାଇବୁ ଏହି ଯମୁନା ପୁଳିନେ ।
ତବ ଅଧର ଅମୃତ ବେଗେ କର ପାନ
ଯହିଁରେଟି ହୁଅଇ ସୁରତ ଉପାଦାନ ।
କମଳ ସମାନ ସୁକୋମଳ ଶ୍ରୀଚରଣେ
କେମନ୍ତ ଭ୍ରମଣ କରୁଅଛ ଘୋରବଣେ ।
ଗୋପୀ କୁଚ ଅତିଶୟ କଠିନ ଭାବିଣ
ହୃଦୟେ ଥାପନ୍ତି ଭୟ ଅଧିକ ପାଇଣ ।
ସେ ମୃଦୁ ପଦରେ ପରା କର୍କେ।କୁଶ ବାଜେ
ଅକାର୍ଯ୍ୟ ଯା କରୁ ଆସି ଗୋପିନୀ ସମାଜେ ।
ଝାଡ଼ପଥେ ନାଥ ଆମ୍ଭମାନଙ୍କୁ ବନରେ
ଆଉ ଭ୍ରମଣ ନ କର ଶ୍ରୀରଙ୍ଗା ପଦ୍ମରେ ।
ତୁମ୍ଭର ଚରଣେ ବାଜେ ଯେତେ ତୃଣାଙ୍କୁର
ଆମ୍ଭମାନଙ୍କର ପ୍ରାଣେ ବାଜଇ ସତ୍ୱର ।
ଆହେ ନାଥ ପାରିକର ଘୋର ଦୁଃଖ ବାରେ
ଆଉ ବିନାଶ ନକର ପ୍ରାଣେକୁ ଆମ୍ଭରେ ।
ବୋଲନ୍ତି ଯେ ସୂତବର ଶୁଣ ମୁନିଗଣେ
ଏହିରୂପେ ବିଳାପ କରନ୍ତି ଗୋପୀମାନେ ।
ଲଜ୍ଜିତ ହୋଇଣ ସେ ରସିକ ଚୂଡ଼ାମଣି
ଗଳେ ପୀତାମ୍ବର ଦେଇ ମିଳିଲେ ସେକ୍ଷଣି ।
ମଦନ ମନ ମୋହଇ ବଦନ ସୁନ୍ଦର
ଶିରେ ଚୂଡ଼ା ହାସ୍ୟ ମୁଖ ରଙ୍ଗିମ ଅଧର ।

ମୋହନ ମୁରଲୀ ଗୋଟି ଧରି ବାମ ହାତେ
ଗୋପୀ ମଧ୍ୟେ ଉଭା ହେଲେ ଅବନତ ମାଥେ
ପ୍ରାଣନାଥେ ଦେଖି ସର୍ବେ ପାଇଲେ ଜୀବନ
କୁଞ୍ଚିତ କଟାକ୍ଷ ଚାହିଁ ଗୋବିନ୍ଦ ବଦନ ।
କେହୁ କୃଷ୍ଣକର ଧରେ କେହି ବା ଚରଣ
କେ ଏକ ଦୃଷ୍ଟିରେ କରେ ମୁଖ ନିରୀକ୍ଷଣ ।
ତାଙ୍କୁ ଘେନିଗଲେ କୃଷ୍ଣ କାଳିନ୍ଦୀ ପୁଳିନେ
ନାନାଜାତି କୁସୁମ ଶୋଭିତ ସେହି ସ୍ଥାନେ ।
ତହୁଁ ଗୋପୀଗଣ ବକ୍ଷ କାଞ୍ଚୁଳି-ବସନେ
ଥରେ ଥରେ ରଚି ଉଚ୍ଚ କଲେ ସୁଯତନେ ।
ତହିଁ କୃଷ୍ଣେ ବସାଇ କହନ୍ତି ନମ୍ର ବାଣୀ
ନିବେଦନ ଶୁଣ ହେ ରସିକ ଚୂଡ଼ାମଣି ।
ଭଜିଲେ ନ ଭଜେ ଆଉ ଭଜଇ ଭଜିଲେ
ନ ଭଜିଲେ ଭଜେ କେହୁ ଜଗତ ମଣ୍ଡଳେ ।
ଏହାର କାରଣ କିବା କହ ବିସ୍ତାରିଣ
ଶୁଣି ଗୋବିନ୍ଦ କହନ୍ତି ଅଳପ ହସିଣ ।
ଭଜିଲେ ଭଜଇ ଏହୁ ଲୋକ ବ୍ୟବହାର
ଏଥିରେ ସୌହୃଦ ନୋହେ ସ୍ୱାର୍ଥ ଆପଣାର
ନ ଭଜିଲେ ପୁତ୍ର ପିତା ଭଜେ କରୁଣାରେ
ଭଜିଲେ ନ ଭଜେ ତାହା କହି ଦେ ତୁମ୍ଭରେ
ଆତ୍ମାରାମଗଣ ନ ଭଜନ୍ତି ହେ ଭଜିଲେ
ମୁହିଁ କେବେ ନାହିଁ ପ୍ରିୟେ ଏସବୁ ମଧ୍ୟରେ ।
ମୋତେ ଯେ ଭଜଇ ତାରେ ପ୍ରସନ୍ନ କାରଣ
ତାର ଅନୁରାଗ ବୃଦ୍ଧି କରେ ଅନୁକ୍ଷଣ ।
ଧନ ପାଇଣ ଦରିଦ୍ର ଯଦ୍ୟପି ହରାଏ
ପୁଣି ତା ପାଇବେ ସେହୁ କେତେ ସୁଖୀ ହୁଏ ।
ଏହିରୂପେ ଯାରେ ମୋର ଦୟା ଅତିଶୟ
ତାକୁ ଏହି ପରକାରେ କରେ ଯେ ନିଶ୍ଚୟ ।
ଯେଉଁରୂପେ ମୋତେ ଭଜନା କଲେ ଗୋପୀଗଣ
ତୁମ୍ଭଠାରେ ଋଣୀ ହେଲି ଏ ସତ୍ୟ ବଚନ ।
ଦେବତା ସମାନେ ଯଦି ପରମାୟୁ ପାଏ
ତଥାପି ସୁଝିବା ପାଇଁ ମୋର ଶକ୍ତି ନୋହେ
ଏତେବୋଲି କୃଷ୍ଣ ତୋଷକଲେ ଗୋପୀଗଣେ
ପ୍ରେମେ ପରିପୂର୍ଣ୍ଣ ଗୋପୀ ଗୋବିନ୍ଦ ବଚନେ
ତହୁଁ ହର୍ଷମନେ କୃଷ୍ଣ ଯମୁନାର ତୀରେ
ଗୋପୀଗଣ ସଙ୍ଗେ ରାସ କଲେ ମନୋହରେ ।

କିବା ଯମୁନା ଶୋଭା ନ ଯାଏ କଥନେ
ଝଲମଲ କରେ ଜଳ ତାହାଙ୍କ କିରଣେ ।
ନାନା ଜାତି ଫୁଲ ବିକଶିତ ତାର ତୀରେ
ମଧୁ ଗନ୍ଧେ ମାତି ମତ୍ତ ଭ୍ରମର ଝଙ୍କାରେ ।
କୁହୁ କୁହୁ ନିନାଦେ ଡାକନ୍ତି ପିକଗଣ
ଶୁକ ସାରି ଆଦି ଯେ ଗାଆନ୍ତି ମନୋରମ ।
ପୂର୍ତ୍ତି କରିବାକୁ ଗୋପୀଙ୍କର ଅଭିଳାଷ
ଯେତେକାନ୍ତା ତେତେମୂର୍ତ୍ତି ହେଲେ ପୀତବାସ
ଏକ ଗୋପୀ ଏକ କୃଷ୍ଣଙ୍କର ଧରାଧରି
ମଣ୍ଡଳୀ ହୋଇ ନାଚନ୍ତି ବିନୋଦ ମାଧୁରୀ ।
ମଣ୍ଡଳୀ ମଧ୍ୟରେ ରାଧା କୃଷ୍ଣଙ୍କର ସଙ୍ଗେ
ଶ୍ରୀକରେ କରିକୁ ଧରି ନାଚନ୍ତି ଯେ ରଙ୍ଗେ ।
ଦୁଇପାଶେ ଦୁଇଗୋପୀ ମଧ୍ୟେ ଶ୍ରୀ ଗୋବିନ୍ଦ
ଦୁଇଦିଗେ କୃଷ୍ଣ ମଧ୍ୟେ ଗୋପିକା ଆନନ୍ଦ ।
ଏକ ଏକ କନକ କମଳ ମଧ୍ୟେ ଯେହ୍ନେ
ଏକ ଏକ ଇନ୍ଦୀବର ଶୋଭଇ ଯତନେ ।
ତାଳ ମାନ ଅଭିନୟେ ନାଚନ୍ତି ହରଷେ
ସୁଯନ୍ତ୍ର ମିଶାଇ ଗାନ୍ତି ପ୍ରତି ମନ ତୋଷେ ।
ପଦେ ତାଳ ବାଦ୍ୟ ନୂପୁରର ମୃଦୁଧ୍ୱନି
ତା ସଙ୍ଗରେ ମିଳି ବାଜେ ବଳୟ କିଙ୍କିଣୀ ।
ସ ରି ଗ ମ ପ ଧ ନି ଆଳାପେ ସପ୍ତସ୍ୱର
ପଞ୍ଚଦଶ ପ୍ରକାର ଗମକ ମନୋହର ।
ମହ୍ଲାର କର୍ଣ୍ଣାଟ ଗୌରୀ କାମୋଦ କେଦାର
ଦେଶାକ୍ଷ ବସନ୍ତ ବେଲାବଳୀ ଶ୍ରୀ ଗାନ୍ଧାର ।
ନାନା ପ୍ରକାରର ବାଦ୍ୟ ବଜାଇ ସଧୀରେ
ନର୍ତ୍ତନ କରନ୍ତି ଗୋପୀମାନେ ଆନନ୍ଦରେ ।
ନିଃସଙ୍ଗ ଶବଦ ଯୁକ୍ତ ଅତି ମନୋହର
ନାନାଦି ରାଗ ଗାଆନ୍ତି ମଧୁର ସୁସ୍ୱର ।
କନ୍ଦର୍ପ ରୂପକ ରଙ୍ଗ ଏକ ତାଳି ଯତି
ଏ ଆଦି ତାଳମାନଙ୍କେ ନୃତ୍ୟ କରୁଥାନ୍ତି ।
ବଂଶୀ ବୀଣା ଆଦି ବାଦ୍ୟ ଅତି ସୁମଧୁର
ତାଥେଇ ତାଥେଇ ନାଚେ ମହେଶ୍ୱର ହର ।
କନ୍ଦର୍ପର ଦର୍ପ ଚୂର୍ଣ୍ଣ ହୁଏ କଣ୍ଠ ସ୍ୱରେ
ତ୍ରିଦିବ ବାସୀ ମୋହିତ ଦର୍ଶନ ମାତ୍ରରେ ।
ସଙ୍ଗିତ ରଙ୍ଗିଣୀମାନ ରାଗର ମଣ୍ଡଳୀ
ନ୍ୟସ୍ତ ହୋଇଛନ୍ତି ସର୍ବେ କରି କୃତାଞ୍ଜଳି ।
ସ୍ୱର୍ଗ ରୁ ଦେଖନ୍ତି ମହାରାସ ଦେବଗଣ
ସ୍ଖଳିତ ହୋଇ ଦର୍ଶନେ ନ ଚଳେ ଚରଣ ।
ତାରା ମଣ୍ଡଳରେ ଶଶୀ ହୋଇଲା ମୋହିତ
ରଥ ରଖି ଶୋଭା ଦେଖି ହୋଇଣ ସ୍ତମ୍ଭିତ ।
କେତେ କାଳ ହେଲା ରାସ ନ ଯାଏ ଲିଖନ
ବ୍ରହ୍ମାଣ୍ଡ ଚକିତ ସ୍ତବ୍ଧ ଚରାଚରଗଣ ।
ଗୋପୀଙ୍କୁ ଘେନିଣ କୃଷ୍ଣ କଲେ ଜଳ କେଳି
ପ୍ରବେଶ କଲେ କୁଞ୍ଜରେ ହୋଇବୁ ଭୁ ହଳି
ଶ୍ରଦ୍ଧାରେ କୃଷ୍ଣଙ୍କୁ ଗୋପୀ କରାନ୍ତି ଭୋଜନ ।
ଅତି ହରଷିତ ହେଲେ ରାଧା ପ୍ରାଣଧନ ।
ବୋଲନ୍ତି ଶ୍ରୀକୃଷ୍ଣ ଗୋପୀମାନଙ୍କୁ ଅନାଇ
ଯେ ଯାର ଗୃହକୁ ଫେରି ହରଷିତ ହୋଇ ।
ଗୋବିନ୍ଦ ବଚନେ ସର୍ବେ ବ୍ୟଥିତ ଅନ୍ତରେ
ଆପଣା ପୁରେ ଚଳିଲେ ବିରସ ଚିତ୍ତରେ ।
ନ ଜାଣିଲେ କେହି କିଛି ମାୟାର କାରଣେ
କୃଷ୍ଣଙ୍କ ପ୍ରେମ ଜାଗଇ ସଭିଙ୍କର ମନେ ।
ବ୍ରହ୍ମରସୀ ବିଳସିଣ ପ୍ରଭୁ ଭଗବାନ
ଆପଣେ ପ୍ରୟାଣ କଲେ ନନ୍ଦର ଭବନ ।
ଏ ଲୀଳା ଶ୍ରବଣ ଉଚ୍ଛୁଳଇ ସୁଖ ସିନ୍ଧୁ
ଏଣୁ ଶ୍ରଦ୍ଧା ମନେ ଶୁଣ ଭକତଙ୍କ ଇନ୍ଦୁ ।
ଅତି ସୁବିସ୍ତାର ଲୀଳା କେବା ବର୍ଣ୍ଣିପାରେ
ପୂର୍ଣ୍ଣ ନୁହେଁ ମନସ୍କାର ସୁବିସ୍ତାର ତରେ ।
ସଂସାରେ ଆବଦ୍ଧ ନ ହୁଅନ୍ତି ପୂର୍ଣ୍ଣ ବ୍ରହ୍ମ
ସ୍ୱେଚ୍ଛାରେ କରନ୍ତି ଲୀଳା ପୁରୁଷ ଉତ୍ତମ ।
ସକଳ ଜନଙ୍କ ସାକ୍ଷୀ ସେହି ନାରାୟଣ
ଗୋପ ଗୋପୀଙ୍କ ଅନ୍ତରେ ଥାନ୍ତି ଅନୁକ୍ଷଣ ।
ଜଗତ ହିତରେ ଆପେ ନର ଦେହ ଧରି
ଆରମ୍ଭନ୍ତି ନାନା ଲୀଳା ନିକୁଞ୍ଜ ବିହାରୀ ।
ସବୁଠୁଁ ସାର ଅଟଇ ଏହି ରାସଲୀଳା
ଯାହା ଶ୍ରବଣରେ ଦ୍ରବଯାଏ ମହାଶୀଳା ।
ଟିକେ ଟିକେ ଏଥି ମୁହିଁ କଲଇଁ ବର୍ଣ୍ଣନ
ଶ୍ରବଣ କଲ ତ ଭଲେ ଆହେ ମୁନିଜନ ।
ଏମନ୍ତେ ମୁନିମାନଙ୍କୁ ବୁଝାଇଣ ସୂତ
ପ୍ରକାଶ କରିଲେ ରାସଲୀଳାର ଚରିତ ।
ଶ୍ରଦ୍ଧାମନେ ଶୁଣି ଶୌନକାଦି ମୁନିଗଣ
ଆନନ୍ଦ ଜଳେ ବୁଡ଼ିଣ ହୋଇଲେ ମଗନ

ଏଥିଅନ୍ତେ ପୁଚ୍ଛିଲେ ଶୌନକ ତପୋଧନ
ରାସଲୀଳା ଉତ୍ତାରୁ କି କଲେ ଭଗବାନ ।
ସଂପ୍ରତି ଆମ୍ଭ ଆଗରେ କହ ପୌରାଣିକ
ଶ୍ରବଣ ମାତ୍ରକେ ହଟି ଯାଉ ଭବ ଦୁଃଖ ।
ସୂତ ବୋଇଲେ ଶୁଣ ହେ ଶନକ ନନ୍ଦନ
କହିବି ଅପୂର୍ବ ଗାଥା ଶୁଣ ଦେଇ ମନ ।
ଦିନେକର ଦେବୀ ଯାତ୍ରା କରଣ ଗୋପାଳେ
ମହୋତ୍ସବ ଆୟୋଜନ କରିଲେ ସକଳେ ।
ଅମ୍ବିକା ଦର୍ଶନେ ସର୍ବେ କରନ୍ତି ଗମନ
ଧାଆନ୍ତି ଆନନ୍ଦେ ତାଙ୍କ ସଙ୍ଗେ ଶିଶୁଗଣ ।
ସର୍ବେ ଚଳିଗଲେ ଯହିଁ ଅମ୍ବିକା କାନନ
ସେହିଠାରେ ସରସ୍ୱତୀ ଜଳେ କଲେ ସ୍ନାନ ।
ସ୍ନାନ ସାରି ପଟ୍ଟବସ୍ତ୍ର ପରିଧାନ କରି
ଚଳିଲେ ପୂଜିବା ପାଇଁ ଶଙ୍କର ଗଉରୀ ।
ନାନା ଉପଚାରେ ଆଗେ ପୂଜି ପଶୁପତି
ତଦନ୍ତେଣ ପୂଜା କଲେ ଦେବୀ ଭଗବତୀ ।
ବାଜିଲା ବିବିଧ ବାଦ୍ୟ ମହା ମହୋତ୍ସବେ
ଆନନ୍ଦେ ମାତିଲେ ତହିଁ ବ୍ରଜ ଶିଶୁ ସର୍ବେ ।
ଗୋପାଳେ ମଜ୍ଜିଲେ ମହା ଆନନ୍ଦ ସାଗରେ
ବହୁତ ଦାନ ସେ ଦେଲେ ବିପ୍ରଙ୍କ କରରେ ।
ନାନାଦି ରତନ ସହ ଧେନୁ ଦାନ ଦେଲେ
ସେ ଦାନେ ମହା ସନ୍ତୋଷବିପ୍ରେଯେହୋଇଲେ
ଅନାଥ ଦରିଦ୍ରମାନଙ୍କୁ ସେ ଅକାତରେ
ସନ୍ତୋଷ କରିଲେ ବହୁ ଅନ୍ନ ବସନରେ ।
ଭୋଜନ କରନ୍ତି ଦ୍ୱିଜେ ମନର ହରଷେ
ଚର୍ବ୍ୟ ଚୂଷ୍ୟ ଲେହ୍ୟ ପେୟ ଚତୁର୍ବିଧ ରସେ
ହୃଷ୍ଟମନେ ବ୍ରାହ୍ମଣଙ୍କୁ ସକଳେ ପୂଜିଲେ
ଦେବୀ ସମ୍ମୁଖରେ ଗୋପାଳେ ପ୍ରାର୍ଥନା ଯେକଲେ
ଏହିରୂପେ ଗୋପ ଗୋପୀ ଅତ୍ୟନ୍ତ ଉଲ୍ଲାସେ
ଇଚ୍ଛାମତେ ବର ମାଗନ୍ତି ସେ ଦେବୀ ପାଶେ ।
ସରସ୍ୱତୀଜଳ ଆଣି ପିଇଲେ ଗୋପାଳେ
ଯେତେ ଜନ ବ୍ରତାଚାରୀ ଉପବାସୀ ଥିଲେ ।
ଦେବୀଙ୍କ ପ୍ରସାଦ ସର୍ବେ ଆନନ୍ଦେ ଭୁଞ୍ଜିଲେ
ସେହି ରାତ୍ରିରେ ସମସ୍ତେ ସେଠାରେ ରହିଲେ
ନନ୍ଦ ଆଦି ଯେତେ ଗୋପ ପ୍ରଫୁଲ୍ଲ ମାନସେ
ସୁଖରେ ରହିଲେ ବ୍ରତପାଳି ସେହି ଦେଶେ ।

ମହା ଆନନ୍ଦେ ଗୋପାଳେ କରନ୍ତେ ଶୟନ
ସେ କାଳେ ଭୀଷଣ ସର୍ପ ଆଇଲା ବହନ ।
ବିଷମ ଆକୃତି ସେହି ସର୍ପ ଅଜଗର
ନନ୍ଦଙ୍କୁ ଗିଳି ଲାଗିଲା ଧରଣ ପୟର ।
ତାଦେଖିକାନ୍ଦିଲେ ସର୍ବ ଗୋପିକା ଗୋପାଳେ
କୃଷ୍ଣ ରଖ ଆସି ନନ୍ଦ ଡାକନ୍ତି ବିକଳେ ।
ନନ୍ଦର ଦୁର୍ଦ୍ଦଶା ଦେଖି ମୁରଲୀ ବଦନ
ସର୍ପର ମଥାରେ କଚାଡ଼ିଲେ ଶ୍ରୀଚରଣ ।
ଯେଉଁପଦ ବାଞ୍ଛେ ବ୍ରହ୍ମା ଚତୁର ଆନନ
ଯୋଗୀମାନେ ଯୋଗେ ମଗ୍ନ ଯେପଦ କାରଣ
ଦେବଗଣ ଅବିରତ ଧିଆନ୍ତି ଯେ ପଦ
ସେହି ପଦ ସର୍ପଶିରେ ଲଦିଲେ ଗୋବିନ୍ଦ ।
କେଡ଼େ ଭାଗ୍ୟ ଅରଜିଲା ସେହି ଅଜଗର
ମୁକତି ଲଭିଲା ଲାଗି ଶ୍ରୀହରି ପୟର ।
କୃଷ୍ଣ ପାଦପଦ୍ମ ଲାଗି ପାପ ଗଲା ତାର
ଦିବ୍ୟ ମୂର୍ତ୍ତି ଧରି ଗଲା ବଇକୁଣ୍ଠ ପୁର ।
ଯେତେବେଳେ ସର୍ପ ଗୋଟା ତେଜିଲା ଜୀବନ
ପଚାରିଲେ କୃଷ୍ଣ ତାକୁ ଏସନ ବଚନ ।
ଏହି ସର୍ପ ଦେହ କିଏ ପାଇଥିଲୁ ତୁହି
ସତ୍ୟକରି ଅବିଳମ୍ବେ କହ ମୋତେ ଫେଇ ।
ଶ୍ରୀକୃଷ୍ଣ ବଚନ ଶୁଣି କହେ ଅଜଗର
ମୁଁ ଥିଲି ଗନ୍ଧର୍ବ ସୁଦର୍ଶନ ନାମ ମୋର ।
ମହା ଧନବନ୍ତ ପୂର୍ବେ ହୋଇଥିଲି ମୁହିଁ
ଶୁଣ ପ୍ରଭୁ ସେ ଆଖ୍ୟାନ ମନକର୍ଣ୍ଣ ଦେଇ ।
ଏକଦିନେ ବିଦ୍ୟାଧରୀମାନଙ୍କର ସଙ୍ଗେ
ନାନା ସ୍ଥାନରେ ଭ୍ରମଣ କରୁଥିଲି ରଙ୍ଗେ ।
ବିମାନରେ ବସି କରୁଥାଇଁ ମୁଁ ଭ୍ରମଣ
ଯହିଁ ଇଚ୍ଛା ତହିଁ ଯାଏ ନଥାଏ ବାରଣ ।
ଅଙ୍ଗିରା ଋଷିଙ୍କର ଯେ ବଂଶଧରଗଣ
ମହାତେଜଶାଳୀ ସେହୁ ବିରୂପ ଦର୍ଶନ ।
ମହାସୁଖେ ବିମାନେ ମୁଁ ଭ୍ରମିବା କାଳରେ
ସେ ମୁନିମାନଙ୍କୁ ଦେଖିଲଇଁ ନୟନରେ ।
କୌତୁହଳେ ଯାଇଣ ମୁଁ ସେମାନଙ୍କ ପାଶ
ବିରୂପ ଦେଖି ତାହାଙ୍କୁ କଲି ପରିହାସ ।
ତାଙ୍କୁ ଭୟ ଦେଖାଇବା ପାଇଁ କୌତୁକରେ
ସର୍ପରୂପ ଧରି ଗଲି ତାଙ୍କ ନିକଟରେ ।

ବିଶେଷ ଭୟାକୁ ହେଲେ ତହିଁ ମୁନିଗଣ
ବିକଟ ଆକୃତି ସର୍ପ ରୂପକୁ ଦେଖିଣ ।
ଧ୍ୟାନବଳେ ଜାଣି ସର୍ବେ ହେଲେ କ୍ରୋଧଭର
ମୋ ଉପରେ ଅଭିଶାପ ଦେଲେ ଗୁରୁତର ।
କ୍ରୋଧରେ କମ୍ପିଲେ ହୁତାଶନର ସମାନେ
ତହୁଁ ସେ କହିଲେ ମୋତେ ଆରକ୍ତ ନୟନେ
ଆରେ ଦୁରାତ୍ମାର ଭୟ ନାହିଁ ତୋର ମନେ
ସର୍ପରୂପ ଧରି ଭୟ ଦେଖାଉ ଏସନେ ।
କର୍ମ ଅନୁସାରେ ତୋର ଫଳ ଭୋଗକର
ସର୍ପର ଆକାର ତୁହି ଆଜଠାରୁ ଧର ।
ସର୍ପରୂପେ ବାସକରି ଥାଅ ଧରିତଳେ
ଉଚିତ ଦଣ୍ଡ ପାଅ ନିଜ କର୍ମ ଫଳେ ।
ସାହସ ଉଡ଼ିଲା ମୋର ମୁନିଙ୍କ ବଚନେ
ମଥା ଲୋଟାଇ ପଡ଼ିଲି ତାହାଙ୍କ ଚରଣେ ।
ମୁନିମାନଙ୍କ ପ୍ରତି ମୁଁ କହିଲି ବଚନ
ଅଧୀନର ଅପରାଧ କରନ୍ତୁ ମାର୍ଜନ ।
ଅବୋଧର ପ୍ରତି ରୋଷ ନୁହେଁ ଉପଯୁକ୍ତ
ଦୋଷ କ୍ଷମା କରି ଏବେ ରୋଷକର ତ୍ୟକ୍ତ ।
ଏମନ୍ତେ କେତେ ପ୍ରାର୍ଥନା କରି ମୁନିଗଣେ
ସଦୟ ହୋଇଣ ତହୁଁ କହିଲେ ସେମାନେ ।
ଅନ୍ୟଥା ନ ହେବ ଆମ୍ଭମାନଙ୍କ ବଚନ
ସର୍ପରୂପେ କିଛି କାଳ ଥାଅ ଏହିସ୍ଥାନ ।
ପରେ କୃଷ୍ଣଙ୍କ ଦୟାରୁ ତୁହି ହେବୁ ମୁକ୍ତ
ସେହି ଦିନୁଁ ମୁନିଶାପେ ମୁହିଁ ଅଭିଶପ୍ତ ।
ସର୍ପ ଆକାର ହୋଇଣ ଅଛି ଏ ବନରେ
ଅଭିଶାପ ନୁହେଁ ଆଶୀର୍ବାଦ ମୋ ପକ୍ଷରେ ।
ଆଜଠାରୁ ଭାଗ୍ୟ ଉଦେ ହୋଇଲା ମୋହର
ପାଇଲି ପରମ ପଦ ମୁନିଙ୍କ ଦୟାର ।
କେତେ ପୁଣ୍ୟେ ଦରଶନ କଲି ଏ ଚରଣ
ଧ୍ୟାନେ ନ ପାବନ୍ତି ଯାହା ବ୍ରହ୍ମା ଦେବଗଣ ।
ଇନ୍ଦ୍ର ଆଦି ବାଞ୍ଛୁଥାନ୍ତି ଯେ ପରମ ପଦ
ଭକ୍ତମାନଙ୍କର ଯାହା ଲୋଡିଏ ସମ୍ପଦ ।
କମଳା ସେବିତ ପାଦପଦ୍ମ ଅଟେ ଯାର
ମୋହଠାରୁ ଭାଗ୍ୟବାନ କିଏ ଏ ସଂସାର ।
ତବ ଶ୍ରୀପଦ ଦର୍ଶନେ ମୁହିଁ ଧନ୍ୟ ଅତି
ମୋ ମା ଅଶୁଭ ହେଲା ନାଶ ହେ ପ୍ରଭୋ ଶ୍ରୀପତି ।
ତୁମ୍ଭେ ସମସ୍ତଙ୍କ ଗୁରୁ ଆହେ ଦୟାମୟ
ତବ ଅଭୟ ଚରଣେ ଦିଅନ୍ତୁ ଆଶ୍ରୟ ।
ପୁଣି ତବ ପାଦପଦ୍ମେ ଯାର ମନ ଥାଏ
ସମନ ଦଣ୍ଡ ତାହାକୁ ନ ଲାଗେ କେବେହେଁ
ଆଜ ତବ ପାଦସ୍ପର୍ଶେ ମୋ ପାପ ଦହନ
ତୁମ୍ଭ ପାଦ ପଦ୍ମତଳେ ମାଗୁଛି ଶରଣ ।
ତୁମ୍ଭେ ସମସ୍ତଙ୍କ ଧାତା ଆହେ ସର୍ବ ଗତି
ଜଗତ ବିସ୍ତାରକାରୀ ସମସ୍ତଙ୍କ ପତି ।
ବ୍ରହ୍ମ ଅଭିଶାପରୁ ହେ କରିଲ ନିସ୍ତାର
ଆହେ ମହାଯୋଗୀ ହରି ସର୍ବ ମୂଳାଧାର ।
ହେ ଦେବ ଅଚ୍ୟୁତ କୃଷ୍ଣ କେଶବଙ୍କ ସାକ୍ଷୀ
ମୋହର ଉପରେ କୃପାକର ଦୟାକରି ।
କେ ଜାଣେ ତୁମ୍ଭ ମହିମା ଅନନ୍ତ ଅପାର
ଗୋଲକ ବିହାରୀ ପୂର୍ଣ୍ଣବ୍ରହ୍ମ ସର୍ବେଶ୍ୱର ।
ନମୋ ନମୋ ରାଧାକାନ୍ତ ଗୋପିକା ଜୀବନ
ଅଖିଳ ଜଗତ ପତି ଭକ୍ତ ପ୍ରାଣଧନ ।
ଜପ ତପେ ତୁମ୍ଭ ନାମ ଯେଉଁ ନର ଧ୍ୟାଏ
ସକଳ ଦୁଃଖରୁ ମୁକ୍ତ ଜାଣ ସେହୁ ହୁଏ ।
ଯେଉଁଜନ ତୁମ୍ଭ ନାମ ରଟଇ ମୁଖରେ
ସର୍ବ ପାପରୁ ମୁକତ ଲଭେ ଜଗତରେ ।
ତୁମ୍ଭ ଶ୍ରୀପାଦ ପଦ୍ମକୁ ସ୍ପର୍ଶ କରେ ଯେହୁ
ମହା ଭାଗ୍ୟବନ୍ତ ଅଟେ ଏ ସଂସାରେ ସେହୁ ।
ଏହିପରି ବହୁସ୍ତୁତି କରି ପୂର୍ଣ୍ଣବ୍ରହ୍ମେ
ବାରମ୍ବାର ପ୍ରଦକ୍ଷିଣ କଲେ ସେହି ଧାମେ ।
ଭକ୍ତିପୂର୍ଣ୍ଣ ମନେ ଲୋଟି ସେ ବସୁଧାପରେ
ସାଷ୍ଟାଙ୍ଗରେ ପ୍ରଣିପାତ କରେ ଶ୍ରୀପୟରେ ।
ତଦନ୍ତେ ସେ ବିଦ୍ୟାଧର ଦିବ୍ୟ ସ୍ଥାନେ ଗଲା
ନନ୍ଦଙ୍କ ମନରେ ମହା ଆନନ୍ଦ ଜନ୍ମିଲା ।
ଦେଖିଣ ଗୋପୀ ଗୋପାଳେ ବିସ୍ମୟ ହୋଇଲେ
କୃଷ୍ଣଙ୍କ ପ୍ରଭାବ ଯୋଗୁଁ ସକଳ ଜାଣିଲେ ।
ମନେ ମନେ କେତେ ରୂପ କରନ୍ତି ଚିନ୍ତନ
ପରେ ଦେବୀ ପୂଜା ଅନ୍ତେ ସର୍ବ ଗୋପୀଗଣ
ବୃନ୍ଦାବନ ମାର୍ଗେ ସର୍ବେ ଚଳିଲେ ସଙ୍ଗରେ
ସଦନକୁ ଯାନ୍ତି ଅତି ପ୍ରଫୁଲ୍ଲ ଚିତ୍ତରେ ।
କୃଷ୍ଣ ଗୁଣ ଗାନେ ରତ ଯେତେ ବ୍ରଜବାସୀ
ଗୃହରେ ମିଳିଲେ ସୁଖ ସିନ୍ଧୁ ଜଳେ ଭାସି ।

ଏଥୁଅନ୍ତେ ଆ ।କଥା ଶୁଣ ମନଦେଇ
ଏଥୁଅନ୍ତେ ରାମ ଆଉ କୃଷ୍ଣ ବେନଭାଇ ।
ନାନାରଙ୍ଗେ ବିହରନ୍ତି ଶ୍ରୀ ବୃନ୍ଦା କାନନେ
କେତେ ଖେଳ ଖେଳନ୍ତି ସେ ବେନ ଗୋପୀଗଣେ
ସର୍ବ ଗୋପବାଳୀମାନେ ମନୋହର ବେଶେ
ପରିଧାନ ନୀଳାମ୍ବର ଶାଢ଼ୀ ମନ ତୋଷେ ।
କଣ୍ଠ ଦେଶେ ମାଲ୍ୟହାର ଗନ୍ଧେ ଆମୋଦିତ
ସୁମଧୁର ବଂଶୀ ସ୍ୱର୍ଗ ସର୍ବେ ପ୍ରଫୁଲିତ ।
ମନ୍ଦ ମଳୟ ପବନ ବହେ ଘନ ଘନ
ତହିଁ ବହେ ମକରନ୍ଦ ଗନ୍ଧ ଅନୁକ୍ଷଣ ।
ରାମ କୃଷ୍ଣ ଆନନ୍ଦିତ କାନନ ମଧ୍ୟରେ
ସବୁରି ଅନ୍ତର ମୁଖେ ମୁରଲୀ ଗୀତରେ ।
ବ୍ରଜାଙ୍ଗନାଙ୍କର ମନ ବଂଶୀ ସ୍ୱନେ ମତ୍ତ
ଜ୍ଞାନ ହରାଇଲେ ସର୍ବେ ହୋଇଣ ମୋହିତ ।
ଅସମ୍ଭାଳ କେଶ ବାସ ପାଗଳଙ୍କ ପରି
ସଭିଙ୍କ ବସନ ଖସି ପଡ଼େ ବସୁନ୍ଧରୀ ।
ପୂର୍ଣ୍ଣିମା ନିଶୀରେ ହସେ ଚନ୍ଦ୍ର ଯେ ଆକାଶେ
ଖେଳରେ ମଜ୍ଜିଲେ ରାମ ଗୋବିନ୍ଦ ହରଷେ ।
ସେ କାଳେ ତହିଁ ଅଇଲା କୁବେର କିଙ୍କର
ଶଙ୍ଖଚୂଡ଼ ନାମେ ଦୈତ୍ୟ ମହାବଳୀୟାର ।
ଦେଖିଲା ଗୋପୀଙ୍କ ସଙ୍ଗେ ରାମକୃଷ୍ଣ ବେନି
ଅପୂର୍ବ ଖେଳ ଖେଳନ୍ତି ମନେ ପ୍ରୀତି ଘେନି ।
ମନେ ମନେ ଦୈତ୍ୟବର ଭାବି ଯେ ଲାଗିଲା
ଗୋପୀକାମାନଙ୍କୁ ଦେଖି ଭୁରିତେ ଚଳିଲା ।
ତତ୍ପରେ ଗୋପୀଗଣ ନେଇ ତତକ୍ଷଣେ
ନିଃଶଙ୍କ ହୃଦୟେ ଧାଏଁ ଆନନ୍ଦିତ ମନେ ।
ବିସ୍ମୟ ମଣିଲେ ଯେତେ ବ୍ରଜାଙ୍ଗନା-କୁଳ
ଉଚ୍ଚେ କାନ୍ଦିଲେ ସକଳ ହୋଇଣ ବ୍ୟାକୁଳ ।
ଗୋପୀମାନେ ମହାଭୟ ପାଇ ସେହିକ୍ଷଣ
ବୋଇଲେ ରଖ ହେ କୃଷ୍ଣ ଯଶୋଦାନନ୍ଦନ ।
ଗୋପୀଙ୍କ ରୋଦନ ଶୁଣି କୃଷ୍ଣ ବଳରାମ
ସେହି ରୋଦନ ସ୍ଥାନକୁ ଧାଇଁଲେ ବହନ ।
ଶଙ୍ଖଚୂଡ଼େ ବେନିଭାଇ ଦେଖନ୍ତେ ନୟନେ
କୋପରେ କମ୍ପିତ ଅଙ୍ଗ ହେଲା ତତକ୍ଷଣେ ।
ଭୟ ନ କର ଗୋପିଏ ଡାକନ୍ତି ଉଚ୍ଚରେ
କ୍ରୋଧେ ମତ୍ତହସ୍ତୀ ପ୍ରାୟ ଗଲେ ଖରତରେ ।

ମହାଶାଳ ବୃକ୍ଷ ତହିଁ ଉପାଡ଼ି ବହନ
ବୋଇଲେ ତୁ କାହିଁ ଯିବୁ ରେ ଦୁଷ୍ଟ ଅଧମ ।
ସ୍ଥିର ହୁଅ ପାପିଷ୍ଠ ପାଇବୁ ପ୍ରତିଫଳ
ଆଉ ଯେ ନ ଦେଖେ ତୋର କଞ୍ଚିତ ମଙ୍ଗଳ
କାହା ସଙ୍ଗେ ବାଦ କରୁ ତୁ ଜାଣି ନ ପାରି
କାହାବଳେ ଗୋପୀଗଣେ ନେଇଯାଉ ହରି
ଏମନ୍ତ କହିଲେ ଯହୁଁ କୃଷ୍ଣ ବଳରାମ
ପଛକୁ ଅନାଇଁ ଦୈତ୍ୟ ହେଲା ଛନ ଛନ ।
ଦେଖିଲା ପଛରେ ଆସୁଛନ୍ତି କାଳମୂର୍ତ୍ତି
ବ୍ରଜବଧୂମାନଙ୍କୁ ସେ ଛାଡ଼ି ଦୁଷ୍ଟ ମତି ।
ମହାଭୟେ ସେହିଠାରୁ ପଳାଏ ବହନ
କ୍ରୋଧଭରେ ବେନିଭାଇ ଲୋହିତ ଲୋଚନ ।
ବୋଇଲେ ଶ୍ରୀକୃଷ୍ଣ ଭାଇ ବଳରାମେ ରହିଁ
ଗୋପୀମାନଙ୍କୁ ଯତନେ ରକ୍ଷାକର ଭାଇ ।
ଅତି ସାବଧାନ କରି ସମ୍ଭାଳ ଯତ୍ନରେ
ଏତେ କହି କୃଷ୍ଣଚନ୍ଦ୍ର ନିଭୟ ଚିତ୍ତରେ ।
ଶଙ୍ଖଚୂଡ଼ର ପଛରେ ଧାମନ୍ତି ଚଞ୍ଚଳେ
ଆଗେ ଆଗେ ଧାଏ ଶଙ୍ଖଚୂଡ଼ ଯେ ବିକଳେ ।
ସେ ଦୈତ୍ୟର ପଛେ ଧାଇଛନ୍ତି ଜନାର୍ଦ୍ଦନ
ଏମନ୍ତେ ଅନେକ ଦୂର କରନ୍ତେ ଗମନ ।
ଧାଇଁ ନପାରି ସେ ଦୈତ୍ୟ ନିସ୍ତେଜ ହୋଇଲା
ବଳେ ତା କେଶ ଧଇଲେ ପ୍ରଭୁ ନନ୍ଦବଳା
ମୁଷ୍ଟି ଆଘାତ କରନ୍ତେ ତାହାକୁ ଶ୍ରୀହରି
ମୁଣ୍ଡ ଛିଡ଼ି ପଡ଼ିଗଲା ଅବନୀ ଉପରି ।
ଶଙ୍ଖଚୂଡ଼କୁ ବିନାଶି କୃଷ୍ଣ ଆନନ୍ଦରେ
ପ୍ରବେଶ ହୋଇଲେ ତହୁଁ ଶ୍ରୀବୃନ୍ଦାବନରେ ।
ଦୈତ୍ୟର ମସ୍ତକେ ଥିଲା ମନୋହର ମଣି
ବଳରାମଙ୍କୁ ସେ ମଣି ଦେଲେ ବଂଶୀପାଣି ।
କୃଷ୍ଣଙ୍କୁ ଯେ ବଳରାମ କଲେ ଆଲିଙ୍ଗନ
ଗୋପୀ ଗୋପାଳେ ସକଳେ ଆନନ୍ଦେ ଗମନ
କୃଷ୍ଣ ବଳରାମଙ୍କର ମହିମା ଅପାର
ସର୍ବଦା ନିଜ ଭକ୍ତଙ୍କୁ କରନ୍ତି ଉଦ୍ଧାର ।
ଏଥୁଅନ୍ତେ ଶୁଣ ମୁନି ଦିବ୍ୟ ସମାଚାର
ସଙ୍କ୍ଷେପି କହୁଛି ତୁମ୍ଭେ ବୁଝ ସାରୋଦ୍ଧାର ।
ଭକତବତ୍ସଳ ହରି ଶରଣ ରକ୍ଷଣ
ଭକତ କମନ୍ତେ ଯିନା ହୋନ୍ତି ଅବତୀର୍ଣ୍ଣ ।

ଭକ୍ତଙ୍କୁ ଭୂଲନ୍ତି ନାହିଁ କେବେହେଁ ଶ୍ରୀହରି
ଭକ୍ତଭାବେ ଭୋଳ ସଦା ହୃଦୟ ଶର୍ବରୀ ।
ଯେବେ ଗୋପୀନାଥ ଗୋଷ୍ଠେ କରନ୍ତି ଗମନ
ତାଙ୍କ ପଛେ ଧାଇଁଥାଏ ଗୋପୀଙ୍କର ମନ ।
କୃଷ୍ଣ ବିରହରେ ସର୍ବେ ହୃଦୟ ହରନ୍ତି
ନିରନ୍ତରେ କୃଷ୍ଣଲୀଳା ଗୁଣ ଗାଉଥାନ୍ତି ।
ନିତ୍ୟ ଯଦି ନ ପାଆନ୍ତି କୃଷ୍ଣଙ୍କ ଦର୍ଶନ
ପଲକେ ପ୍ରଳୟ ମଣୁଥାନ୍ତି ଗୋପୀଗଣ ।
ସେହିକ୍ଷୋଭେ ଗୋପୀମାନେ ବସି ଏକାନ୍ତେଣ
କୁହାକୁହି ହେଉଥାନ୍ତି କୃଷ୍ଣ କଥାମାନ ।
ଦେଖ ସଖି ! ନିଜ ହସ୍ତେ ରଖି ଗଣ୍ଡସ୍ଥଳ
କେମନ୍ତେ ନଚାନ୍ତି କୃଷ୍ଣ ନୟନ ଅଞ୍ଚଳ ।
ମୁରଲୀ ଦେଇ ଅଧରେ ମଦନ ମୋହନ
କେମନ୍ତେ ବଜାନ୍ତି ରଙ୍ଗେ କରି ବିମୋହନ ।
ସୁସ୍ୱରେ ବେଣୁ ବଜାନ୍ତି ସେହୁଁ ଯେ କାଳରେ
ମୋହିତ ହୁଅନ୍ତି ନାରୀ ଗଣ ଜଗତରେ ।
ସୁମଧୁର ବେଣୁ ସ୍ୱନ କରିଣ ଶ୍ରବଣ
ତ୍ରିଭୁବନେ ମୋହିତ ନ ହେବ କେଉଁଜନ ।
ଦେଖ ସଖି ! ଦେବଗଣ ଶୁଣି ବେଣୁରବ
ଆପଣା ପତ୍ନୀମାନଙ୍କ ସଙ୍ଗେ ଶୂନ୍ୟେ ସର୍ବ ।
ବେଣୁଗୀତ ଶୁଣି ପୁଣି ଆନନ୍ଦିତ ମନ
ମଦନ ପୀଡ଼ାରେ ହେଉ ଅଛନ୍ତି ଦହନ ।
ଦେବଙ୍କ ରମଣୀ ମାନେ ଲଜ୍ଜିତ ଅନ୍ତରେ
କୃଷ୍ଣ ପାଦେ ନିଜଚିତ୍ତ ସମର୍ପନ୍ତି ଖରେ ।
ଶିଥିଳ କାବେରୀ ଅଙ୍ଗେ ସେ ବଶ ହୁଅଇ
କଟିର ବସନ ଆଦି ସକଳ ଖସଇ ।
ମହାମୋହେ ମୁଗ୍ଧ ଦେବ ବଧୂଗଣ ଭାବେ
ପତି ସ୍କନ୍ଧେ ମୁଖ ଦେଇ ନିରେଖନ୍ତି ସର୍ବେ ।
ଗୃହକୁ ଯିବାକୁ କାହା ମନ ନ ହୁଅଇ
ଗୋବିନ୍ଦ ବିରହ ବ୍ୟଥା ସୁହାଯାଏ ନାହିଁ ।
ଅସହ୍ୟ ଯନ୍ତ୍ରଣା ବଡ଼ କୃଷ୍ଣ ଅଦର୍ଶନ
କିବା ମନୋହର ବେଶ ଜଳଦ ବରନ ।
କୌସ୍ତୁଭ ମଣ୍ଡିତ ବକ୍ଷ ଆଭାସୁ ମଞ୍ଜୁଳ
ମେଘକୋଳେ ସୌଦାମିନୀ ଖେଳେକି ଚଞ୍ଚଳ
କମନୀୟ ରୂପ ମୋହେ ରମଣୀଙ୍କ ମନ
ସୁରଙ୍ଗ ଅଧରେ ବେଣୁ କରନ୍ତି ବାଦନ ।

ଯେ କାଳେ ସୁସ୍ୱରେ ବଂଶୀ ବଜାନ୍ତି ମୁରାରି
ଅଚେତନରେ ପଡ଼ନ୍ତି ତ୍ରିଜଗତ ନାରୀ ।
ସେ ବଂଶୀ ସ୍ୱନ ଶ୍ରବଣେ ଯେ ଦଶା ଘଟଇ
ସେ ଦୁଃଖର କଥା ସଖି କି କହିବି ମୁହିଁ ।
ଅଳ୍ପ ମତି ନାରୀମାନେ ଶୁଣି ବଂଶୀ ରବ
ଜ୍ଞାନ ହାରି ବିମୋହିତ ସ୍ଥିର ନୋହେ ସର୍ବ ।
ମଧୁର ବେଣୁ ନିସ୍ୱନେ ଗୋପ ଶିଶୁଗଣ
ମୃଗ ଧେନୁବତ୍ସା ଆଦି ହୋନ୍ତି ଅଚେତନ ।
ଯଦ୍ୟପି ବଜାନ୍ତି ବଂଶୀ ଯଶୋଦା କୁମର
ଧେନୁମାନେ ଊର୍ଦ୍ଧ୍ୱ ମୁଖେ ଦେଖନ୍ତି ସତ୍ୱର
ଚରିବା ବୁଲିବା ଛାଡ଼ି ଦେଇ ପୁଚ୍ଛଟୋଳ
ହମ୍ବାରବ ଦେଇ ଯାନ୍ତି ହମ୍ବାଳ ହମ୍ବାଳ ।
ମୁଖେ ତୃଣ ଧରି ସେହୁ ଭକ୍ଷି ନ ପାରନ୍ତି
ଶିଳ ପିତୁଳା ପରାୟେ ଚେତା ନ ରଖନ୍ତି ।
ଚକିତ କୁରଙ୍ଗେ ସ୍ଥିର ନୟନେ ନିରେଖି
ଧାଆନ୍ତି ଊର୍ଦ୍ଧ୍ୱଶ୍ୱାସରେ ଊର୍ଦ୍ଧ୍ୱେ ମୁଖ ରଖି ।
ନବ ଦୂର୍ବା ମୁଧା କରି ନ ପାରି ଚର୍ବଣ
ଆକୁଳ ଅନ୍ତର ସର୍ବେ ଚେତନା ବିହୀନ ।
ନିମିଳିତ ନୟନରେ ଯେହ୍ନ ନିଦ୍ରାଯାନ୍ତି
କାଷ୍ଠ ପିତୁଳା ପରାୟେ ସ୍ଥିରଦୃଷ୍ଟା ହୋନ୍ତି ।
ପୁଣି ମୟୂର ମୟୂରୀ ଶୁଣି ବେଣୁସ୍ୱନ
ପୁଲକ ନେଠକଣ ପ୍ରେମେ କରନ୍ତି ନର୍ତ୍ତନ ।
ପୁଣି ଯମୁନା ନଦୀର ଯେପରି କୌତୁକ
ବେଣୁସ୍ୱନ ଶୁଣି ସେ ଯେ ପରମ ଉତ୍ସୁକ ।
ବିପରୀତ ଗତି କରେ ଆନନ୍ଦ ଅନ୍ତରେ
ଧୀର ଗତି ଶାନ୍ତଭାବ ସେ ମୁରଲୀ ସ୍ୱରେ ।
ଆନନ୍ଦ ହୁଅଇ କୃଷ୍ଣ ରୂପ ଦରଶନେ
କୃଷ୍ଣ ପଦରଜ ଆଶା କରେ ମନେ ମନେ ।
କୃଷ୍ଣେ ଚିତ୍ତ ସ୍ଥିରତା ହୋନ୍ତି ସ୍ରୋତସ୍ୱଣି
କୃଷ୍ଣ ମୁଖ ଦରଶନେ ହୁଏ ହର୍ଷ ଅତି ।
ପୁଲକେ ପୂରିତ ନଦୀ କୃଷ୍ଣ ପଦ ଆଶ୍ଳେଷି
ଆଗୋ ସଖୀ କି କହିବି ତାହା ମୁଁ ବିଶେଷେ
ବନପଶୁ ସ୍ତବ୍ଧ ହୋନ୍ତି ସେହି ସ୍ୱନ ଶ୍ରବଣେ
ଚଞ୍ଚଳେ ଧାଆନ୍ତି ସର୍ବେ କୃଷ୍ଣ ଦରଶନେ ।
ତାହାଙ୍କ ନିକଟେ ସ୍ଥିର ନୟନେ ଚାହାନ୍ତି
କୃଷ୍ଣ ବଂଶୀର ଯେତେ ଗୁଣ ଅଟେ ଅସରନ୍ତି ।

ରାଜହଂସ କୂଳ ଜଳମଧ୍ୟେ ଖେଳୁଥିଲେ
ବେଣୁ ଶୁଣି ହଂସୀ ସଙ୍ଗେ କ୍ରୀଡ଼ାରେ ମାତିଲେ
ଏହି ପରକାରେ କୃଷ୍ଣଙ୍କର ବଂଶୀଗୁଣ
କହିବଇଁ କେସ ତାହା ନହୁଏ ବର୍ଣ୍ଣନ ।
ବୃନ୍ଦାବନ ମଧ୍ୟେ ଯେତେ ତରୁ ଲତା ଥିଲେ
କୃଷ୍ଣଙ୍କର ବଂଶୀ ସ୍ୱନେ ମୋହିତ ହୋଇଲେ
ପୁଷ୍ପେ ସୁଶୋଭିତ ପୁଣି ଫଳ ଭରେ ନତ
ଧରନ୍ତି ନବ ପଲ୍ଲବେ ପୁଣି ବେଣୁଗୀତ ।
ମାଧବୀ ଲତିକା ବେଢ଼ି ନୀପତରୁ ଦେଶ
ଆଲିଙ୍ଗନ କରେ ପୁଷ୍ପ ପଲ୍ଲବେ ବିଶେଷେ ।
ଯେତେ ପଲ୍ଲବିତ ଶାଖା କେତେ ଶୋଭା ତାର
ପୁଷ୍ପ ଦାନ କରି ଶ୍ୟାମେ ତୋଷେ ନିରନ୍ତର ।
ବେଣୁସ୍ୱନେ ହୋନ୍ତି ସର୍ବେ ଚଞ୍ଚଳ ଅନ୍ତର
ସ୍ଥିର ଭାବରେ ଦେଖନ୍ତି ଶ୍ୟାମ କଳେବର ।
ଅଗଣନ ତରୁଗଣ ପୁଲକେ ପୂରିତ
ବେଣୁସ୍ୱନେ ହୋନ୍ତି ସର୍ବେ ଆନନ୍ଦେ ମୋହିତ
ଦେଖି ସଖି ଅଳିକୁଳ ମତ୍ତ ମଧୁପାନେ
ଶ୍ରବଣ ମୋହର ଯାର ସୁମଧୁର ଗାନେ ।
ଗୁଣୁ ଗୁଣୁ ସ୍ୱରେ କରନ୍ତି ସେ ମନ୍ଦ ଗତି
ବେଣୁ ସ୍ୱନରେ ଆପଣା ସ୍ୱରକୁ ମିଳାନ୍ତି ।
କି କହିବି ସଜନୀ ଗୋ ଶ୍ୟାମ ରୂପ ଛଟା
ଲଲାଟେ ତିଳକ ଶୋଭେ ଅତି ଘନ ଘଟା ।
ତୁଳସୀ ମଞ୍ଜରୀ କଣ୍ଠେ ଶୋହେ ମନୋହର
ସେହି ଗନ୍ଧେ ମହାନନ୍ଦେ କେତେ ମଧୁକର ।
ନିରତେ ଧାମନ୍ତି ଯହିଁ ଯଶୋଦା ନନ୍ଦନ
ବେଣୁ ସ୍ୱନେ ମତ୍ତ ସର୍ବେ ହୋନ୍ତି ଅନୁକ୍ଷଣ ।
କୃଷ୍ଣଙ୍କୁ ସେ ଅନୁସରି କରନ୍ତି ଗମନ
କୃଷ୍ଣ ରୂପେ ବିମୋହିତ କରଣ ଗୁଞ୍ଜନ ।
ଯେଉଁ ବେଣୁସ୍ୱନ କୃଷ୍ଣ କରନ୍ତି ଶ୍ରୀମୁଖେ
ସେହି ସ୍ୱରେ ଅଳିମାନେ ଗାଆନ୍ତି ଯେ ସୁଖେ
କି କହିବି ସଖି ସେହି ଅଦଭୁତ କଥା
କହୁଥିଲେ କୃଷ୍ଣଗୁଣ ଘୁଚଇ ମନ ବ୍ୟଥା ।
ହେ ସଖି ବ୍ରଜ ମଣ୍ଡଳେ ଗିରି ଗୋବର୍ଦ୍ଧନ
ବେଣୁସ୍ୱନେ ମତ୍ତ ରହି ଅଛି ଅନୁକ୍ଷଣ ।
କେତେ ଯେ ଆନନ୍ଦ ସମ୍ଭାଳୁଛି ଗିରିବର
ଶାନ୍ତ ଭାବ ଉଚ୍ଛସିତ ପୁଲକ ଅନ୍ତର ।

ଦେଖ ସଖି ନବଘନ ହୋଇ ମାଳ ମାଳ
ବେଣୁସ୍ୱନେ ସ୍ତବ୍ଧ ସର୍ବେ ଚକିତ ଚଞ୍ଚଳ ।
ସଶଙ୍କିତ ଧୀରଗତି ସେହି ବଂଶୀ ରବେ
ଅନୁକ୍ଷଣ ଶାନ୍ତମନେ ଅଛନ୍ତି ନୀରବେ ।
ଦେଖା ନ ଯାଏ ଆଉ ସେ ଘୋର ଗରଜନ
ଭୟଙ୍କର ଶବ୍ଦ ଆଉ ନ ଶୁଣେ ଶ୍ରବଣ ।
ବିଜୁଳି ଚମକ ଆଉ ଦେଖା ନ ହୁଅଇ
ଅଶନି ପତନ ବସୁଧାରେ ନ ହୁଅଇ ।
ତପ୍ତ ନ ହୁଅନ୍ତି ରବିକରେ ଦ୍ୱିଜଗଣ
ଛାୟାଦାନେ ତାପରାଶି କରେ ନିବାରଣ ।
ଦେଖ ମନ୍ଦ ମନ୍ଦ ଜଳ ହୁଏ ବରଷଣ
ସୁଶୀତଳ ହୁଏ ଭବେ ପ୍ରାଣୀଙ୍କ ପରାଣ ।
ଏହିରୂପେ ଗୋପୀମାନେ କୃଷ୍ଣ ଗୁଣ ଗାନ୍ତି
କେଉଁ ଗୋପୀ ଯଶୋଦାଙ୍କୁ ଡାକଣ କହନ୍ତି ।
ତୁମ୍ଭ ଭାଗ୍ୟ କଥା ମାଏ କି କହିବୁଁ ଆଉ
ଭଲ ଲୀଳା କରନ୍ତି ଗୋପରେ ବଂଶୀବାହୁ ।
ବଜାନ୍ତି ବିନୋଦ ବଂଶୀ ମନୋହରେ ଅତି
କେବା ତାଙ୍କୁ ଶିଖାଇଲା ଏତେ ଭଙ୍ଗୀରୀତି ।
ନିଶ୍ଚୟ ଜାଣିଲୁଁ ଅନ୍ୟ କାହା ଶିକ୍ଷା ନୁହେଁ
ଅନ୍ୟଥା ନୁହଇ ଯାହା ଶିଖାଇଛ ମାଏ ।
ଅଧରେ ବଂଶୀଟି ରଖି ବଜାଇବା କାଳେ
ସବୁ ଗୋପୀଙ୍କର ମନ ତକ୍ଷଣେ ତରଳେ ।
ଜଗତର ଯେତେ ପ୍ରାଣୀ ସର୍ବେ ମୁଗ୍ଧ ହୋନ୍ତି
ବଂଶୀସ୍ୱନେ ତ୍ରିଭୁବନେ ସ୍ଥିର କେ ନୁହନ୍ତି ।
କି କହିବୁ ଧେନୁମାନେ ସର୍ବେ ମୁଗ୍ଧ ତହିଁ
ଯୋଗୀ ମୁନିମାନଙ୍କର ଚେତନ ହରଇ ।
ତତ୍ତ୍ୱଜ୍ଞାନ ହରାଇଣ ସକଳେ ମୂର୍ଚ୍ଛିତ
ପଡ଼ନ୍ତି ଧରଣୀ ପରେ ହୋଇ ବିମୋହିତ ।
ବଂଶୀସ୍ୱନେ ବିଚଳିତ ଅମରଙ୍କ ପ୍ରାଣ
ମହା ମୋହ ପାନ୍ତି ସର୍ବେ ହରାଇଣ ଜ୍ଞାନ ।
କେ ଜାଣେ ସେ ବଂଶୀସ୍ୱନ କି ହୁଏ କେସନ
ଆମ୍ଭେମାନେ କିବା ଛାର ମୁଗ୍ଧ ଦେବଗଣ
ଆମ୍ଭେ କିବା ଜାଣୁ ଅଛୁଁ କୁଳର କାମିନୀ
ବଂଶୀସ୍ୱନେ ହୋଇଯାଉଁ ସର୍ବେ ପାଗଳିନୀ ।
ପାଦପଦ୍ମ କି ସୁନ୍ଦର ଅତି ଶୋଭା ମାନେ
ଧ୍ୱଜ ବଜ୍ରାଙ୍କୁଶ ଚିହ୍ନ ଅଛି ସେ ଚରଣେ ।

ରାଜହଂସ ଜିଣି ଗତି କେତେ ଶୋଭା ଧରେ
ମୃଦୁ ମୃଦୁ ଗମନ ଯେ ଧରଣୀ ଉପରେ ।
କି ଶୋଭା ମଧୁରହାସ ସୁରଙ୍ଗ ଅଧରେ
ଯେହୁ ଦେଖେ ସେ ମୋହିତହୁଏ ସେକାଳରେ
ଶ୍ରୀରଙ୍ଗାଚରଣ ପଦ୍ମେ ଦାସୀ ହେବା ପାଇଁ
ଗୋପ ଅବଳାଙ୍କ ମନ ଅସ୍ଥିର ହୁଅଇ ।
ସବୁ ଛାଡ଼ି ସେହି ପଦେ ରତ ହୁଏ ମନ
ବିନାମୂଲେ ବିକୁ ଆମ୍ଭେ ମାନସ ଜୀବନ ।
କି ସୁନ୍ଦର ହାସ୍ୟ କି ସୁନ୍ଦର ସେହି ମୁଖ
ଚେଉଛି ଚାହାଣୀ ଭୂରୁଯୁଗ ଜକଜକ ।
ସେ ମୁଖ ଦର୍ଶନେ ଆଖି ନ ପାରୁଁ ଫେରାଇ
ମଦନ ପୀଡ଼ନ ଜ୍ୱାଳା ସହି ଯେ ନୁହଁଇ ।
ଅବଳା ଏକେତ ତହିଁ କନ୍ଦର୍ପ ପୀଡ଼ନ
କିରୂପେ ପାଶୋରି ହେବ ସେ ଚନ୍ଦ୍ର ବଦନ
ଅନଙ୍ଗ ଜ୍ୱରେ ସକଳେ ଆକୁଳ ଅନ୍ତର
ବିମୋହିତ ଗୋପାଙ୍ଗନାମାନେ ନିରନ୍ତର ।
ଆଉ କି କହିବୁ ମାଏ ଅସ୍ଥିର ଚରଣ
ଜାଣନ୍ତି କିବା ମୋହିନୀ ସେ ନନ୍ଦ ନନ୍ଦନ ।
କଟିର ବସନ ଯେ ସମ୍ଭାଳି ନ ହୁଅଇ
ବସନ ଭୂଷଣ ମାନ ଖସି ପଡ଼ୁଛଇଁ ।
ସହି ନ ହୁଅଇ କ୍ଷଣେ କୃଷ୍ଣଙ୍କ ବିଚ୍ଛେଦ
କୃଷ୍ଣ ଅଦର୍ଶନେ ମନେ ଜାତ ହୁଏ ଖେଦ ।
ଆଉ କି କହିବୁ ମାତ ତୁମ୍ଭ ସୁତ ଗୁଣ
ଶକତି ନ ହୁଏ କରିବାରେ ତା ବର୍ଣ୍ଣନ ।
ସଖା ସ୍କନ୍ଧେ ଏକହସ୍ତ ଆର ହସ୍ତେ ବେଣୁ
ଯେକାଳେ ଚଳନ୍ତି ଚରାଇବା ପାଇଁ ଧେନୁ ।
ସେ କଳା ମାଣିକ ବଂଶୀ ଯେକାଳେ ବଜାନ୍ତି
ଗୃହକର୍ମେ ତିଳେ ମନ ନ ହୁଅଇ ଶାନ୍ତି ।
ଜ୍ଞାନ ହରାଇ ପ୍ରେମରେ ଯେଉଁ ଉନ୍ମାଦିନୀ
ଛାଡ଼ି ଦେଇ ଗୃହ ଆଶା ସକଳ ଗୋପିନୀ ।
ବଂଶୀସ୍ୱନେ ବିହ୍ୱଳତା ହୋଇ ଆଗୋ ରାଣୀ
କୃଷ୍ଣପାଦେ ଧ୍ୟାନ ରଖି ଆହେ ଦାଇଆଣୀ ।
ବେଣୁସ୍ୱରେ ଉନ୍ମାଦିନୀ ସକଳ କାମିନୀ
ଆମ୍ଭର ଭଳି ଗୋ ଯେତେ ବନର ହରିଣୀ ।
ବେଣୁ ନିସ୍ୱନ ଶ୍ରବଣେ ଚକିତ ଅନ୍ତର
ସ୍ଥିର ନେତ୍ରେ ସର୍ବପ୍ରାଣୀ ସ୍ତବ୍‌ଧ ନିରନ୍ତର ।

ଆଗୋ ଯଶୋମତୀ ହେବେ ତୁମ୍ଭର ନନ୍ଦନ
ଯମୁନା ତୀରକୁ ଯାନ୍ତି ନେଇଣ ଗୋଧନ ।
ହୁଅନ୍ତି ମୋହନ ବେଶେ ଭୂଷେ କୁସୁମରେ
ସଖାଙ୍କ ସଙ୍ଗେ ଖେଳନ୍ତି ବିବିଧ ରଙ୍ଗରେ ।
ସେହି ମନୋହର ବେଶ କରି ଦରଶନ
ବିମୋହିତ ହୁଏ ନବ ଅବଳାଙ୍କ ମନ ।
ମୃଦୁମନ୍ଦ ଗନ୍ଧବହ ବହେ ସେ ସମୟେ
ଚନ୍ଦନ ସୁଗନ୍ଧେ ତହିଁ ମନମୁଗ୍‌ଧ ହୁଏ ।
ଉପଦେବତାମାନେ ଯେ ଜଟି ସେହିକାଳେ
ଗୀତ ବାଦ୍ୟ ସ୍ତବ କରୁଥାନ୍ତି କୁତୁହଳେ ।
ଭକ୍ତି ସହକାରେ ଆଣି ପୂଜା ଉପଚାର
ଆନନ୍ଦରେ କରୁଥାନ୍ତି କୃଷ୍ଣ ଉପଚାର ।
ପୁଣି ପରସ୍ପରେ ହୋନ୍ତି କଥୋପକଥନ
ଏହି ଦେଖ ହେଲା ସଖି ଦିବା ଅବସାନ ।
ଗୋଧନ ବାହୁଡ଼ା କରି ଶ୍ରୀ ବଂଶୀ ବଦନ
ସଖାସଙ୍ଗେ ଗୃହେ ଫେରୁଛନ୍ତି କି ଶୋଭନ ।
କି ସୁନ୍ଦର ନଟବର ଠାଣିରେ ସେ ରଙ୍ଗେ
ନାଚ ନାଚ ସଖାସଙ୍ଗେ ଆସୁଛନ୍ତି ଢଙ୍ଗେ ।
ଧେନୁଙ୍କ ପଛରେ ଧୂଳି ଉଡ଼େ ଅମ୍ବରତେ
ତାର ବଦନେ ଆଖିର ଆନନ୍ଦ ଯେ କେତେ
ଅଳକା ଆବୃତ ମୁଖ ଗୋଧୂଳି ଧୂସର
ନୀଳ କଳେବର ଖାଲି ବିକୁ ଯେ ବାହାର ।
ତାରାଗଣ ମଧ୍ୟେ ଯେସନେ ପୂର୍ଣ୍ଣିମାର ଜହ୍ନ
ତେସନେ ଶୋଭା ଦିଶନ୍ତି ନନ୍ଦର ନନ୍ଦନ ।
ଆଜାନୁଲମ୍ବିତ ଗଳେ ଅଛେ ବନମାଳା
କର୍ଣ୍ଣେ ମକର କୁଣ୍ଡଳ ଗଣ୍ଡେକରେ ଖେଳା ।
ଅଧରେ ମଧୁର ବଂଶୀ ବଙ୍କିମ ନୟନ
ମତ୍ତ ଗଜରାଜ ଜିଣି ମନ୍ଥର ଗମନ ।
କେତେ ଶୋଭା କେତେ ଆଭା କହି ନ ହୁଅଇ
କୁମୁଦିନୀ ପତି ଦେଖି ରହେ ଲଜ୍ୟାପାଇ ।
ପ୍ରଭାତୁ ଉଠିଣ ପୁଣି ସଖାଗଣ ସଙ୍ଗେ
ଗୋଚାରଣେ ଯାନ୍ତି କୃଷ୍ଣ ନାଚ ନାଚି ରଙ୍ଗେ
ଦିନସାରା ନ ଦେଖିବା ସେ ଚନ୍ଦ୍ର ବଦନ
ବିରହ ଅନଳେ ହିବା ଏକାନ୍ତ ଦହନ ।
ପୁଣି ସନ୍ଧ୍ୟାକାଳେ ଗୋଷ୍ଠୁ ବାହୁଡ଼ିବେ ହରି
ଚନ୍ଦ୍ରମୁଖ ନିରେଖିବା ଆମ୍ଭେ ନେତ୍ର ଭରି ।

ସେତେବେଳେ ନିଭାଇବା ବିରହ ଅନଳ
କୃଷ୍ଣ ଦରଶନେ ହୃଦ ହୋଇବ ଶୀତଳ ।
ସେହିରୂପେ ସେ ସକଳ ବ୍ରଜାଙ୍ଗନାମାନେ
କୃଷ୍ଣ ଗୁଣ ସୁମରି ହୋନ୍ତି ସ୍ଥାନେ ସ୍ଥାନେ ।
ହୋଇବ ବିରହ ବ୍ୟଥା ଯେହ୍ନେ ନିବାରଣ
ସେହି ଭାବନା ସବୁରି ମନେ ଉଦ୍ଦୀପନ ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ଲୀଳାମାନ ଗାନକରି
ଆନନ୍ଦ ହୁଅନ୍ତି ସର୍ବ ବରଜ ସୁନ୍ଦରୀ ।
କୃଷ୍ଣ ଦର୍ଶନ ବିହୁନେ ଗୋପୀଙ୍କ ବିରହ
ତାଙ୍କ ଦରଶନେ ଉଠେ ଆନନ୍ଦ ପ୍ରବାହ ।
କୃଷ୍ଣ ବିନୁ ଅନ୍ୟ ନ ଜାଣନ୍ତି ଗୋପନାରୀ
କୃଷ୍ଣ ଏକା ଗଣି ଧନ ଅଟନ୍ତି ସବୁରି ।
ନବୀନ କିଶୋର ରୂପ ଗୋପୀଙ୍କ ଜୀବନ
ଗୋପୀଭାବେ ନନ୍ଦ ସୁତ ମଦନ ମୋହନ ।
ପୂର୍ଣ୍ଣବ୍ରହ୍ମ ଲୀଳାମୟ ଗୋଲୋକ ବିହାରୀ
ଗୋପୀମାନଙ୍କର ସଦା ପ୍ରେମଲୀଳାକାରୀ ।
ଶୁଣିଲତ ମୁନିମାନେ ଦେଇ ମନ କର୍ଣ୍ଣ
କୃଷ୍ଣଙ୍କ କିଶୋର ଲୀଳା ଅପୂର୍ବ କଥନ ।
ରାସକେଳି ସହିତରେ ବିରହ ସମ୍ବାଦ
ଶୁଣାଇଲି ତୁମ୍ଭ ଆଗେ ଶଙ୍ଖଚୂଡ଼ ବଧ ।
ଯେପରି ସେ ସୁଦର୍ଶନ ଗନ୍ଧର୍ବ ତରିଲା
ସର୍ପରୂପ ଛାଡ଼ି ସୁଖେ ନିଜ ସ୍ଥାନେ ଗଲା ।
ଗୋପୀମାନଙ୍କର ଯାହା କୃଷ୍ଣ ଗୁଣମାନ
ଶ୍ରବଣ କଲତ ସର୍ବେ ହୋଇ ସାବଧାନ ।
ଏଣିକି ମଥୁରାଲୀଳା କରିବି ପ୍ରକାଶ
ଯାହା ବର୍ଣ୍ଣିଛନ୍ତି ଏ ପୁରାଣେ ବେଦବ୍ୟାସ ।
ଏମନ୍ତେ ସେ ସୂତ ମହାଋଷିଙ୍କ ଆଭାଷ
ଗୁରୁବ୍ରହ୍ମା ପଦେ ସଦା କ୍ଷେତ୍ରବାସୀ ଆଶ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
କୃଷ୍ଣକୈଶୋର ଲୀଳା ବର୍ଣ୍ଣନଂ ନାମ
ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

—*—

## ଊନପଞ୍ଚାଶ ଅଧ୍ୟାୟ
## କଂସର ସ୍ୱପ୍ନ ଦର୍ଶନ ଓ ମନ୍ତ୍ରଣା କଥନ

### ସୂତ ଉବାଚ

ସୂତ ମହର୍ଷି କହନ୍ତି ଏଥୁ ଅନନ୍ତରେ
ଶୁଣ ହେ ସକଳ ମୁନି ସୃଷ୍ଟିର ଉତ୍ତରେ ।
ଗୋପୀଙ୍କ ଜୀବନ ଧନ ଶ୍ରୀ ନନ୍ଦ ନନ୍ଦନ
କେତେ ଲୀଳା କରନ୍ତି ହେ ପ୍ରଭୁ ଭଗବାନ ।
ଦିନେକ ଅରିଷ୍ଟାସୁର ବୃଷରୂପ ଧରି
ପ୍ରବେଶିଲା ଗୋରୁପଲ୍ଲେ ମହାଦର୍ପ ଭରି ।
କ୍ଷତ ବିକ୍ଷତ ସେ କଲା ମହୀକୁ ଖୁରରେ
ଗର୍ଜନ ଛାଡ଼ିଲା ପୁଚ୍ଛ ଟେକିଣ ଉପରେ ।
ଗୋଷ୍ଠ ମଧ୍ୟେ ପଶିଲା ସେ ଦାରୁଣ ଦାନବ
ତାଙ୍କୁ ଦେଖି ଭୟ କଲେ ବ୍ରଜବାସୀ ସର୍ବ ।
ତା ବିକଟ ଗରଜନ ଶୁଣି ଅକସ୍ମାତ
ଗର୍ଭିଣୀ ଗାଭୀ ନାରୀଙ୍କ ହେଲା ଗର୍ଭପାତ ।
ଭୟରେ ଅତର୍କ ହୋଇ ଗୋପ ଗୋପୀଗଣ
ସଂକଳେ କୃଷ୍ଣ ଚରଣେ ଘେନଲେ ଶରଣ ।
କୃଷ୍ଣଙ୍କୁ ଦେଖି ଅସୁର ଆସିଲା ଧସାଇ
ସର୍ବାଙ୍ଗ ଯାକରେ ତାର ଜ୍ୱାଳ ଯାଏ ବହି ।
କ୍ରୋଧେ ଘନ ଘନ କମ୍ପେ ତାହା କଳେବର
ଅଗ୍ନି ସମାନ ନିଃଶ୍ୱାସ ଛାଡ଼େ ଖରତର ।
ତାର ଦର୍ପ ଦେଖି ପ୍ରଭୁ କୃଷ୍ଣ ପୂର୍ଣ୍ଣବ୍ରହ୍ମ
ଅବହେଳେ କଲେ ବେନି ଶୃଙ୍ଗ ଉତ୍ପାଟନ ।
ଝଲକି ତା ମୁଖୁ ରକ୍ତ ଟୋକାଏ ଉଦ୍‌ଗାରି
ପ୍ରାଣ ଛାଡ଼ି ଷଣ୍ଢାସୁର ଗଲା ଯମପୁରୀ ।
ଏହା ଦେଖି ସର୍ବେ ହେଲେ ଆନନ୍ଦ ଅପାର
ସ୍ୱର୍ଗପୁରୁ ପୁଷ୍ପ ବୃଷ୍ଟି କଲେ ଯେ ଅମର ।
ଏ ଉତ୍ତାରୁ ସମାଚାର ଶୁଣ ମୁନିଗଣ
ମଥୁରାଲୀଳା ଟିକେ ମୁଁ କରିବି ବର୍ଣ୍ଣନ ।
ନିଶାକାଳେ ଅକସ୍ମାତେ ସେ କଂସ ରାଜନ
ଘୋର ନିଦ୍ରାରେ ଯେକ୍ଷଣି ହେଲା ନିମଗନ ।
ସେହିକାଳେ ଅକସ୍ମାତେ ଦେଖେ କୁସ୍ୱପନ
ମସ୍ତକେ ହୋଇଲା ସତେ ବଜ୍ର ନିପତନ ।

ନିଦ୍ରା ଭଙ୍ଗେ କଂସାସୁର ପାଇଲା ଚେତନ
ମହାଭୟେ ତାର ଦେହ ହେଲା କମ୍ପମାନ ।
ସଚେତ ହୋଇ ମନରେ କାତର ହୋଇଲା
ଶଯ୍ୟାର ଉପରେ ବସି ଭାବିଲେଣି ଯେ କଲା ।
ଭାବି ଭାବି କଳେବର ହେଲା ଥର ହର
ଗୃହଆଡ଼େ ଦେଖେ କାଳମୂର୍ତ୍ତି ଭୟଙ୍କର ।
ଏ କି ଦୁର୍ଦ୍ଦଶା ବୋଲିଣ ମନେ ମନେ ଭାଳେ
କାନ୍ଦି କାନ୍ଦି ବସି ପଡ଼ିଲା ସେ ଭୂମି ତଳେ ।
ରାତ୍ରିପାହି ଯେତେବେଳେ ପ୍ରଭାତ ହୋଇଲା
ମଜ୍ଜନ ହୋଇ ବାହାର ମେଲାକୁ ସେ ଗଲା ।
ସିଂହାସନ ପରେ ବସି ଡାକି ସର୍ବ ଜନେ
କହି ଲାଗିଲା ଅତ୍ୟନ୍ତ ବିନୟ ବଚନେ ।
ବୋଲେ ଭୟରେ ଆକୁଳ ହୁଏ ମୋ ଅନ୍ତର
ସ୍ୱପନ ଦେଖିଲି ମୁହିଁ ବଡ଼ ଭୟଙ୍କର ।
ରାତ୍ରି ବେଳଘଡ଼ିକାଳେ ଦେଖିଲି ସ୍ୱପନ
ଭୀଷଣ କାଳ ମୂରତି କରାଳ ବଦନ ।
ତେମନ୍ତ ରୂପ କେବେ ମୋ ନେତ୍ର ଦେଖିନାହିଁ
ସେତେବେଳୁଁ ମହାଭୀତ ହୋଇଅଛି ମୁହିଁ ।
ଏହିରୂପେ କଂସାସୁର ଅତି ବିଷାଦରେ
ସ୍ୱପ୍ନଗାଥା କହେ ପାତ୍ର ମନ୍ତ୍ରୀଙ୍କ ଆଗରେ ।
ସେକାଳେ ନାରଦ ଆସି କଂସ ସଭାଠାରେ
କହିଲେ ନିଗୂଢ଼ ବାର୍ତ୍ତା ବଶେ ଦୈତ୍ୟବର
ଦୈତ୍ୟବଂଶେ ଯେତେବୀର ଥିଲେ ଅଗଣନ
ବୃଷାସୁର ଆଦି ସର୍ବେ ହେଲେଣି ନିଧନ ।
ଶୃଙ୍ଗ ଉପାଡ଼ି ଗଣ୍ଡାକୁ ମାରି ପକାଇଲା
କ୍ଷଣକ ପାଇଁ କି ସେହୁ କିଛି ନ ଭାବିଲା ।
ଆସିଛି ମୁଁ ସେହିଠାରୁ କରି ବିଲୋକନ
କହିବା ପାଇଁକି ତାହା ମୋହର ଆଗମନ ।
ତୋର ଅମଙ୍ଗଳ ମୁହିଁ ଦେଖିବି ନୟନେ
ତେଣୁ ଧାଇଁ ଆସିଅଛି ବ୍ୟାକୁଳିତ ମନେ ।
ଏରୂପେ କହିଲେ ଯହୁଁ ସେ ନାରଦ ମୁନି
ମହାଭୟ କଲା କଂସ ତାଙ୍କକଥା ଶୁଣି ।
ନାରଦଙ୍କୁ ପଚାରଇ ଯୋଡ଼ି ବେନିକର
ସତେକି ସେହି ଷଣ୍ଢାକୁ ମାରିଲା ମୋହର ।
ବୋଇଲେ ଦେବର୍ଷି ମିଥ୍ୟା ନ ମଣ ରାଜନ
ଦେଖିଛି ମୁଁ ବେନି ନେତ୍ରେ ଷଣ୍ଢାର ମରଣ ।

ତହିଁ କଂସରାଜା ଶୋକେ ହୋଇଣ ଆତୁର
ଭାବିଲା କେଉଁ ବାଳକ କଲା ଏ ବେଭାର ।
ଯେଉଁ ଷଣ୍ଢ ମହାଯୁଦ୍ଧେ ଅଟଇ ପ୍ରଧାନ
ଏକା ଗ୍ୱାର ଶିଶୁ କେଉଁ ନେଲା ତା ଜୀବନ ।
ଯାହାର ପ୍ରତାପେ ରାଜ୍ୟ ଅଟଇ ମୋହର
ହରି କପଟ ତାହାକୁ କରିଲା ସଂହାର ।
ବୋଲେ ହେ ଦେବର୍ଷି ଶୁଣମୋର ନିବେଦନ
ତୁମ୍ଭ ବିନୁଁ ମୋର ଆନ ଗତି ନାହିଁ ଜାଣ ।
ତୁମ୍ଭ ବ୍ୟତୀତ ସାହା ମୋ କେ ଅଛି ଜଗତେ
ଏବେ ସେ ଉପାୟ କୁହ ବଞ୍ଚିବି କେମନ୍ତେ ।
ସକଳେ ଜାଣନ୍ତି ତୁମ୍ଭେ ମୋର ହିତକାରୀ
ତୁମ୍ଭ ଆଜ୍ଞାକୁ ନଲଙ୍ଘେ ଶିରେ ବହେ ମୋର ।
ମୁହିଁ କଂସରାଜା ତୁମ୍ଭ ଆଦେଶ ପାଳିଣ
ଦେବକୀର ଷଡ଼ପୁତ୍ର କରିଲି ନିଧନ ।
ବ୍ରହ୍ମ ଶିଳାରେ କଚାଡ଼ି କଲି ମୁଁ ସଂହାର
ତୁମ୍ଭ ଆଜ୍ଞା ଅନୁସାରେ ସବୁ କାର୍ଯ୍ୟ ମୋର ।
ଏବେ ମୋତେ ଭଲ ଯୁକ୍ତି ଦିଅ ତପୋଧନ
ଯହିଁରେ ହୋଇବ ମୋର ମଙ୍ଗଳ ବିଧାନ ।
ହେ ଦେବର୍ଷିବର ମୋତେ ମନ୍ତ୍ରଣା ବତାଇ
କହିଦିଅ ମାରିବଇଁ କେଉଁ ଦୁଇଭାଇ ।
କଂସବାଣୀ ଶୁଣି କହନ୍ତି ଯେ ବ୍ରହ୍ମମୁନି
ମନ ଦେଇ ମୋର କଥା ଶୁଣ ନୃପମଣି ।
ତୋର ଅମଙ୍ଗଳେ ମୋର ମନେ ବ୍ୟଥାହୁଏ
ତୋର ହିତ ବାଞ୍ଛା ମୁଁ ସର୍ବଦା କରୁଥାଏ ।
ତେଣୁ କହୁଅଛି ଶୁଣ ପୂର୍ବ ବିବରଣ
ଦେବକୀ ଗର୍ଭୁ ଜନ୍ମିଛି ଯେବଣ ନନ୍ଦନଙ୍କୁ ।
ଅଷ୍ଟମ ଗର୍ଭରେ ଜାଣ ସେହି ଯେ କୁମର
ନନ୍ଦଘରେ ବସୁଦେବ ରଖିଛି ଗୁପ୍ତର ।
ନନ୍ଦର କୁମାରୀ ଆଣି ରଖିଲା ଏଠାରେ
ଦେବକୀଯେ ତୋତେଦେଖାଇଲାସେକନ୍ୟାରେ
ତୁହି ଶିଳାପରେ ତାକୁ ଯେକାଳେ ଛେଚିଲୁ
ଶୂନ୍ୟମାର୍ଗେ ଗଲା କନ୍ୟା ଆରେରେ ଦେଖିଲୁ
ପୂର୍ବକଥା ଶୁଣି ଭଲକରି ଜାଣେ ମୁହିଁ
ସପ୍ତମ ଗର୍ଭେ ଯେ ପୁତ୍ର ଦେବକୀର ହୋଇ
ସେହି ପୁତ୍ର ଚାଲିଗଲା ରୋହିଣୀ ଗର୍ଭେଣ
ଯୋଗମାୟା ନେଲା ତାକୁ କରି ଆକର୍ଷଣ ।

ଦେବକୀ ସପ୍ତମ ଗର୍ଭ ପାତ ହେବ ବୋଲି
ସକଳେ ଜାଣିଲେ ତୋତେ ମର୍ମ କହିଲି ।
ସେ ସପ୍ତମ ଗର୍ଭ ସୁତ ନାମ ସଙ୍କର୍ଷଣ
ତାହାର ଯେ ଆନ ନାମ ବଳରାମ ଜାଣ ।
ଅଷ୍ଟମ ଗର୍ଭରେ ଯେଉଁ ପୁତ୍ରଟି ଉତ୍ପନ୍ନ
ନନ୍ଦର ଆଳୟେ ବଢ଼େ କୃଷ୍ଣ ଭଗବାନ ।
ବହୁ ଦୁଧ ଦହିମାନ ଖାଇ ଦୁଇଭାଇ
ମହାବଳବନ୍ତ ସେହୁ ଗୋପେ ଛନ୍ତି ହୋଇ ।
ଯେପରି ବିନାଶ ହେବେ ସେ ଦୁଇ କୁମର
ତାହାର ଉପାୟ ଏବେ ଶୁଣ କଂସାସୁର ।
ଆବର ଶୁଣନ୍ତୁ ମୋର ବିହିତ ବଚନ
ପ୍ରଲମ୍ବ ଆଦି ଦୈତ୍ୟଙ୍କୁ ଯେ କଲା ନିଧନ ।
ସେହି କୃଷ୍ଣ ବଳରାମେ ନ କଲେ ବିନାଶ
ସହଜେ ପୂରିବ ନାହିଁ ତୋର ଅଭିଳାଷ ।
ନନ୍ଦ ବସୁଦେବ ଦୋହେଁ ମିତ୍ରତା ବିଶେଷ
କଥାଏ ମୁଁ ତୋତେ ଜଣାଉଛି ମଥୁରେଶ ।
ଉତ୍ତମ ମନ୍ତ୍ରଣା କହେ ଶୁଣ ସେ କଥାକୁ
ନନ୍ଦ ସହିତ ଏଠାକୁ ଅଣାଅ ପୁତ୍ରଙ୍କୁ ।
କଉଶଳି ଛଳେ ଆଣ କୃଷ୍ଣ ବଳରାମେ
ବିଶେଷ ଉପାୟ ଅଛି ଭାବ ନିଜ ମନେ ।
ସେ ଯେ ଶିଶୁ ଅଳ୍ପବୁଦ୍ଧି ବୁଝି ନ ପାରିବେ
ମାମୁଁଙ୍କ ଡାକରା ବୋଲି ଅବଶ୍ୟ ଆସିବେ ।
ଯୁବା ବୟସ ତାଙ୍କର ପହୁଞ୍ଚିବ ଯେବେ
କେ ତାଙ୍କୁ ବଳେ ପାରିବ ତରକ ରହିବେ ।
ଏହି ଯୁକ୍ତି ବୁଝି କାର୍ଯ୍ୟ କର ନରପତି
ଉତ୍ତମ ଉପାୟ କହିଲଇ ମୁଁ ସମ୍ପ୍ରତି ।
ନାରଦଙ୍କ ବାଣୀ ଶୁଣି ଦୁଷ୍ଟ କଂସାସୁର
ଆରକ୍ତ ନୟନେ ହେଲା କ୍ରୋଧେ ଜରଜର ।
କୋପାନଳେ ପ୍ରଜ୍ୱଳିତ ଯେହ୍ନେ ହୁତାଶନ
ଖଡ୍‌ଗ ହସ୍ତେ ଅତିବ୍ୟସ୍ତ ହୋଇଲେ ତକ୍ଷଣ
ଦେବକୀ ବସୁଦେବଙ୍କୁ କରିବାକୁ ନାଶ
ଚଳନ୍ତେ ସେ କଂସ ଦେଖି ସୁରାସୁରେ ତ୍ରାସ ।
ତା ଦେଖି ନାରଦ ମୁନି କଲେ ନିବାରଣ
କି କାରଣେ ସେ ଦୁହିଁଙ୍କି କରିବୁ ନିଧନ ।
ଭଉଣୀ ଭିଣୋଇ ବଧ ହେବ ଅକାରଣ
ଏଥି ସଫଳ ନୋହିବ ତୋର କାର୍ଯ୍ୟ ଜାଣ

ଯହିଁରେ ତୋ ମୃତ୍ୟୁଭୟ ଶୁଣ ହୋ ରାଜନ
ଯା ଯୋଗୁଁ ଚୌଦିଗେ ଦେଖୁଅଛୁ କୁଲକ୍ଷଣ
ଯାହା ଯୋଗୁଁ ତୋର ଅମଙ୍ଗଳ ନୃପବର
ତାକୁ ଅଣାଇ ବିନାଶ କର ତୁ ସତ୍ୱର ।
ନିରାପଦ ହେବା ପାଇଁ ଯଦି ବାଞ୍ଛୁ ମନେ
ରାମ କୃଷ୍ଣ ବଧ କର ମୋହର ବଚନେ ।
ନାରଦଙ୍କ ଉପଦେଶ ଶୁଣି ଦୈତ୍ୟପତି
ବାନ୍ଧିଲା ଆଣରେ ବେନି ଜନଙ୍କୁ ତଡ଼ିତ ।
ଲୌହ ଶିକୁଳୀରେ ସେ ଦେବକୀ ବସୁଦେବ
କାରାଗାରେ ବନ୍ଦହେଲେ ମନେ ପାଇ କ୍ଷୋଭ
ମନ୍ତ୍ରଣା ଦେଇ ଚଳନ୍ତେ ଧାତାଙ୍କ ସଦନ
ଅପାର ଚିନ୍ତାର୍ଥୀ ହେଲା କଂସାସୁର ଜାଣ ।
ଭାଳି ଭାଳି ଆଉ କିଛି ଉପାୟ ନ ଦେଖି
କେଶୀ ନାମେ ଦୈତ୍ୟଙ୍କୁ ସେ କହିଲା ଯେଡାକି
ପୁଣ କେଶୀ ବୀର ମୁହିଁ ଆଉ କି କରିବ
ଜାଣି ପାରୁଅଛି କୃଷ୍ଣ ହାତରେ ମରିବ ।
ମୋହର ବିଷମ ଶତ୍ରୁ ସେହି ବେନି ଭାଇ
ନିଶ୍ଚୟ ମାରିବେ ମୋତେ ଜାଣ ବୀର ତୁହି ।
ଏଣୁ କେଶୀବୀର କର ମୋର ଉପକାର
ତୋ ବିନୁ ଭରସା ଆଉ ନାହିଁ କେ ମୋହର
ଶୀଘ୍ର ହୋଇ ଚଳିଯାଅ ସେ ଗୋପ ଭୁବନେ
କଳେ ବଳେ ମାର ବସୁଦେବର ନନ୍ଦନେ ।
ରାମ କୃଷ୍ଣ ଦୁଇ ଭାଇ ଛନ୍ତି ନନ୍ଦଘରେ
କଉଶଳ କରି ମାର ସେ ବେନି କୁମରେ ।
ଉପାୟେ ଶତ୍ରୁ ବିନାଶ କର ତୁ ବହନେ
ମୋରକାର୍ଯ୍ୟ କେ ସାଧିବ ଆଉ ତୋରବିନେ
କଂସର ବଚନ ଶୁଣି କେଶୀ ଦୈତ୍ୟ ଖରେ
ଅବିଳମ୍ବେ ଚଳିଗଲା ରୋଷେ ଗୋପପୁରେ ।
ଆଜ୍ଞା ମାତ୍ରେ କେଶୀ ବ୍ରଜେ କରନ୍ତେ ଗମନ
ଚାଣୁର ମୁଷ୍ଟିକେ କଂସ ଡାକିଲା ବହନ ।
ଶାଲ୍ୱ ମହାବଳ ଆଦି ଅମାତ୍ୟ ସକଳେ
ହସ୍ତୀପାଳ ଆଦି ସର୍ବେ ଆଇଲେ ସେ ସ୍ଥଳେ
ଏକତ୍ରେ ସେ ସମସ୍ତଙ୍କୁ ଡକାଇ ରାଜନ
ନାରଦଙ୍କ କଥା ସବୁ କହିଲା ବହନ ।
ବୋଇଲା ହେ ବୀରମାନେ ଶୁଣ ମୋ ବଚନ
ନାରଦଙ୍କ ମୁଖୁଁ ଯାହା କରିଛି ଶ୍ରବଣ ।

ବସୁଦେବ ପୁତ୍ର ଦୁହେଁ ନନ୍ଦର ଭୁବନେ
ଗୋପଶିଶୁ ସଙ୍ଗେ ଛନ୍ତି ରାମ କୃଷ୍ଣ ନାମେ ।
ସେ ଦୁହିଙ୍କ ହସ୍ତେ ମୋର ମରଣ ନିଶ୍ଚୟେ
ସକଳେ ଜାଣନ୍ତି ଏହା ଦୈବ ବାଣୀ ହୁଏ ।
ଏବେ ତୁମ୍ଭେମାନେ ତାର ଉପାୟ କରିବ
କୌଶଳେ ମୋ ମଥୁରାକୁ ତାହାଙ୍କୁ ଆଣିବ ।
ଯେମନ୍ତ ପାର ତାହାଙ୍କୁ ଆଣ ମୋର ପାଶ
କଉଣସି ମତେ କର ତାହାଙ୍କୁ ବିନାଶ ।
ତୁମ୍ଭେ ଯେତେ ମଲ୍ଲଗଣ ମଲ୍ଲକ୍ରୀଡ଼ା ଛଳେ
ନିଧନ କର ସେ ଦୁଇ ଭାଇଙ୍କୁ କୌଶଳେ ।
ଅ ଉଚ୍ଚକରି ମଞ୍ଚା କରିବ ନିର୍ମାଣ
ବିଧାନେ କରିବ ମଲ୍ଲ କ୍ରୀଡ଼ା ସେହି ସ୍ଥାନ ।
ଠାବେ ଠାବେ ଥିବେ ସର୍ବ ପୁରବାସୀ ଜନେ
ଆଉ ଏକ ମଞ୍ଚକର ମୋହର କାରଣେ ।
ଏକ ଏକ ମଞ୍ଚକର ବିଚିତ୍ର ବିଧାନେ
ନଗର ଲୋକ ରହିବେ ସର୍ବ ସ୍ଥାନେ ସ୍ଥାନେ
ଆରେ ହସ୍ତୀପାଳ ସାବଧାନେ କାର୍ଯ୍ୟକର
କୁବଳୟା ହାତୀକୁ ଯେ ରଖ ତୁ ଦ୍ୱାରର ।
ଯେତେବେଳେ ଆସିବେ ସେ ନନ୍ଦସୁତ ଦୁଇ
ତାଙ୍କୁ ବିନାଶିବୁ ହାତୀ ପାଦରେ ମଡ଼ାଇ ।
ମୋର ଆଜ୍ଞା ପାଳି ଜଗିଥାଅ ଦ୍ୱାରି ଦ୍ୱାର
ନ କର ଅପେକ୍ଷା ତାଙ୍କୁ କରିବୁ ସଂହାର ।
ଦୁହିଙ୍କୁ ହସ୍ତୀ ପାଦରେ କଲେ ତୁହି ନାଶ
ମୋହର ପୂର୍ଣ୍ଣ ହୋଇବ ମନ ଅଭିଳାଷ ।
ଜରାସନ୍ଧ ମୋ ଶ୍ୱଶୁର ମୁହିଁ ତାର ଜ୍ୱାଇଁ
ପ୍ରିୟ ବାନ୍ଧବ ଦ୍ୱିବିଦ ମୋହର ଅଛଇ ।
ବାଣା ସମ୍ବର ନରକ ଆଦି ଯେତେ ବୀର
ବିଶେଷେ ବାନ୍ଧବ ଜାଣ ଅଛନ୍ତି ମୋହର ।
ସେମାନେ ମୋତେ ସାହାଯ୍ୟ କରିବେସକଳେ
ବିନାଶ କରିବ ଶତ୍ରୁ ମୁହିଁ ଏକାବେଳେ ।
ଏହିରୂପେ କଂସାସୁର ଦେଇଣ ଆଶିଷ
ଅନ୍ତଃପୁରେ ଚଳିଗଲା ହୋଇଣ ହରଷ ।
ଏଥୁଅନ୍ତେ ସମାଚାର ଶୁଣ ମୁନିଗଣେ
କଂସ କର୍ତ୍ତୃକ ଯେ ଧନୁ ଯଜ୍ଞ ଆୟୋଜନ ।
ସଞ୍ଚପି କହିବ ତୁମ୍ଭମାନଙ୍କର ଆଗେ
ହୃଦବୋଧ କରିବ ହେ ସକଳ ସରାଗେ ।

ଶୌନକ ବୋଲନ୍ତି ତହୁଁ ଅତି ଶ୍ରଦ୍ଧାଭରେ
କହ କହ ପୌରାଣିକ ଯଥାର୍ଥ ଭାବରେ ।
କି କି କାର୍ଯ୍ୟ କଲା କଂସ କେମନ୍ତ ପ୍ରକାରେ
ବିସ୍ତାର କରି ସେ କଥା କୁହ ଏ ସମ୍ପରେ ।
ବୋଲନ୍ତି ଯେ ସୂତମୁନି ଶୁଣ ମହାମତି
ଯାହା ଯାହା କଲା ସେହି କଂସ ମୂଢ଼ମତି ।
ନାରଦଙ୍କର ମନ୍ତ୍ରଣା ଅନୁସାରେ ଜାଣ
ସଭାସଦ ଡାକି କୁହେ କାତରେ ବଚନ ।
ଆହେ ସଭାସଦମାନେ ଶୁଣ ମୋର ଗୀର
ସର୍ବେ ପରାମର୍ଶ କର ବସି ଏକଠାର ।
କଂସର ବଚନେ ତହୁଁ କୁହେ ପୁରୋହିତ
କି ଭୟ ତୁମ୍ଭର ରାଜା ଶୁଣ ଯାହା ହିତ ।
ହେ ମଥୁରା ଅଧୀଶ୍ୱର ଭୟ କି କାରଣ
ଯେ ପର୍ଯ୍ୟନ୍ତ ଥିବ ମମ ଶରୀରେ ଜୀବନ ।
ହିତବାଣୀ କହିବ ମୁଁ ତୁମ୍ଭଙ୍କୁ ରାଜନ
ମନେ ନ କରିବ ଭୟ କେବେ ଦୈତ୍ୟରାଣ ।
ସୁଯୁକ୍ତି ଶୁଣନ୍ତୁ ଅଛି ଏକଇ ଉପାୟ
ତହିଁରେ ତବ ମଙ୍ଗଳ ହୋଇବ ନିଶ୍ଚୟ ।
ଅବଲମ୍ବି କର ଧନୁ ଯଜ୍ଞ ଅନୁଷ୍ଠାନ,
ଶିବ ସୁପ୍ରସନ୍ନେ ହେବ ବୈରୀ ବିନାଶନ ।
ଏମନ୍ତେ ସାଧନା କଲେ ଶତ୍ରୁ ବିନାଶିତ
କହିଲି ନିଗୂଢ଼ ତତ୍ତ୍ୱ ହେ ମଥୁରା ନାଥ ।
ବିଶେଷ କାରଣ ଶୁଣ ଆହେ ମହୀପତି
ଶିବଙ୍କ କୃପାରେ ଭୟ ହଟିବ ତଡ଼ିତି ।
ଏହି ଯଜ୍ଞ କଲେ ପ୍ରାପ୍ତ ହୁଏ ମହାଫଳ
ଏଥିରେ ହୋଇବ ଜାଣ ଅଶେଷ ମଙ୍ଗଳ ।
ପୂର୍ବେ ବାଣାସୁର ରାଜା ସେ ଧନୁ ପୂଜିଲା
ତେଣୁ ତାର ସର୍ବ ବୈରୀ ବିନାଶ ହୋଇଲା ।
ତଦନ୍ତେ ପରଶୁରାମ ସେହି ଧନୁ ଧରି
ଶ୍ରେଷ୍ଠ ବୀର ବୋଲାଇଲା ଶିବ ଭଜକରି ।
ଶିବ ମହାତୋଷ ହୋଇ ନନ୍ଦୀ କରେଦେଲେ
ସେହି ଧନୁ ପୂଜି ଶିବ ପ୍ରିୟ ସେ ହୋଇଲେ ।
ଧନୁ ଯଜ୍ଞରେ ତୁମ୍ଭର ହୋଇବ ମଙ୍ଗଳ
ଧନୁର ଗୁଣ ତୁମ୍ଭଙ୍କୁ କହୁଛି ସକଳ ।
ସେ ଧନୁ କୁ ଯେଉଁ ଜନ କରଇ ପୂଜନ
ତହିଁରେ ସନ୍ତୋଷହୋନ୍ତି ଦେବ ତ୍ରିଲୋଚନ

ଯେ କରେ ଅର୍ଚ୍ଚନ ସଦା ବିଜୟୀ ହୁଅଇ
ତେଣୁ ଧନୁଯାତ୍ରା ଆୟୋଜନ କର ସାଇଁ ।
ସବୁ ଗୋପାଳମାନଙ୍କୁ ନିମନ୍ତ୍ରଣ କର
ମୁନି ରାଜାଙ୍କୁ ସାଦରେ ଆଣାଅ ଏଠାର ।
ଅକ୍ରୂରଙ୍କୁ ପଠାଇ ସେ ନନ୍ଦର ଭବନ
ରାମ କୃଷ୍ଣ ଆଣିବାକୁ କର ନିମନ୍ତ୍ରଣ ।
ନିମନ୍ତ୍ରଣ କରି ସର୍ବ ନୃପତିମାନଙ୍କୁ
ତେବେ ଅଚିରେ ସାଧନ କରିବ କାର୍ଯ୍ୟକୁ ।
ଶୁଣ ଆହେ ମହାରାଜ ବଚନ ମୋହର
ଅବଶ୍ୟ ହୋଇବ ତୁମ୍ଭେ ବିପଦୁଁ ଉଦ୍ଧାର ।
ତୁମ୍ଭର ମଙ୍ଗଳ ମୁଁ ଚିନ୍ତଇ ଅନୁକ୍ଷଣ
ଯହିଁରେ ନ ହୁଏ ତବ ବିପଦ ଘଟନ ।
ଯେଉଁ କାର୍ଯ୍ୟେ ବ୍ରତୀ ମୁହିଁ ଶୁଣ ମହୀପତି
ମୋର କଥାମତେ କାର୍ଯ୍ୟ କର ଶୀଘ୍ର ଗତି ।
ପୁରୋହିତ ବାକ୍ୟେ ତହୁଁ କଂସ ନୃପବର
ଦୂତମାନଙ୍କୁ ଚାହାର ଡକାଇ ସତ୍ୱର ।
ଦିନ ସ୍ଥିର କରି ଧନୁଯଜ୍ଞେ ବ୍ରତୀ ହେଲା
ଦେଶେ ଦେଶେ ଦୂତମାନଙ୍କୁ ସେ ପଠାଇଲା ।
ଏହିରୂପେ ଆଜ୍ଞାଦେଇ ସର୍ବ ଦୂତଗଣେ
ଅକ୍ରୂରଙ୍କୁ ଡାକି କହେ କୋମଳ ବଚନେ ।
ଅକ୍ରୂର ହାତକୁ ଧରି କହେ କଂସାସୁର
ବୈଷ୍ଣବ ଭାବେ କପଟେ କଲା ସମାଦର ।
ବୋଲେ ଶୁଣ ମହାମତି ମୋହର ବଚନ
ତୁମ୍ଭେ ମୋର ହିତଚିନ୍ତା କର ଅନୁକ୍ଷଣ ।
ତୁମ୍ଭ ସମ ମିତ୍ର ଆଉ କେ ଅଛି ମୋହର
ଧନୁଯଜ୍ଞ ଅନୁଷ୍ଠାନେ ନିଅ ଏକ ଭାର ।
ତୁମ୍ଭ ହାତେ ଅନ୍ୟ କିନ୍ତୁ ନ ହେବ ସାଧିତ
ବିଷମ ବିପଦେ ମୁହିଁ ହୋଇଛି ପତିତ ।
ତୁମ୍ଭଭଳି ହିତକାରୀ କେ ନାହିଁ ଆବର
ତୁମ୍ଭ ସମ ବନ୍ଧୁଜନ କେବା ଅଛି ମୋର ।
ରାଜ୍ୟ ଐଶ୍ୱର୍ଯ୍ୟ ସବୁ ତୁମ୍ଭର କାରଣ
ଏ ଘୋର ବିପଦୁଁ ତୁମ୍ଭେ କର ପରିତ୍ରାଣ ।
ତୁମ୍ଭର ମୋହର ଦେହ ଭିନ୍ନ ଆତ୍ମା ଏକ
ତୁମ୍ଭର କାରଣେ ମୁହିଁ ହୁଅଇ ନିନ୍ଦକ ।
ଏବେ ରକ୍ଷାକର ଯେବେ ମୋହର ଜୀବନ
ତେବେ ଶୀଘ୍ର ହୋଇଯାଅ ଗୋପ ବୃନ୍ଦାବନ
ବସୁଦେବର ଯେ ଦୁଇ ପୁତ୍ର ନନ୍ଦଘରେ
ଗୁପତେ ରହି ଅଛନ୍ତି ଶୁଣିଛି କର୍ଣ୍ଣରେ ।
ନାରଦଙ୍କ ମୁଖୁଁ ସବୁ ଜାଣିଲି ନିଶ୍ଚୟେ
ଏଣୁ ତୁମ୍ଭଙ୍କୁ ମୁଁ ଡାକି କହେ ଏ ସମୟେ ।
ଏ କଠିନ କାର୍ଯ୍ୟ କହ କେବା କରିପାରେ
ତୁମ୍ଭ ବିନୁ କାର ସାଧ୍ୟ ତାଙ୍କୁ ଆଣିପାରେ ।
ଅବିଳମ୍ବେ ରଥେ ବସି ଯାଅ ଏହିକ୍ଷଣେ
ବସୁଦେବର ପୁତ୍ରଙ୍କୁ ଆଣିବ ଯତନେ ।
ଆକାଶ ବାଣୀକୁ ମୁହିଁ ଶୁଣିଲି ସାକ୍ଷାତେ
ନିଶ୍ଚୟ ମୋହର ମୃତ୍ୟୁ ରାମକୃଷ୍ଣ ହାତେ ।
ଏଣୁ ଶୁଣ ମହାମତି ବଚନ ମୋହର
ଛଳେ ସେ ଦୁହିଁଙ୍କି ଆଣ ହେ ମଥୁରା ପୁର ।
ଗୋପାଳଙ୍କୁ ନିମନ୍ତ୍ରଣ କରି ସାବଧାନେ
ଧନୁଯଜ୍ଞ କରେ ରାଜା କହ ସେହି ସ୍ଥାନେ ।
ଆସିବେ ସେ ରାମ କୃଷ୍ଣ ମଥୁରାପୁରକୁ
କାଳାନ୍ତକ ହସ୍ତୀ ପାଦେ ଦଳାଇବ ତାଙ୍କୁ ।
ଯଦ୍ୟପି ହସ୍ତୀ ପାଦରେ ନ ହେବେ ସଂହାର
ଚାଣୁର ମୁଷ୍ଟିକ ହସ୍ତୁ ନାହିଁଟି ନିସ୍ତାର ।
ସେହି ମହାମଲ୍ଲ ଦୁହେଁ ବଧିବେ ଜୀବନେ
ସେହି ଶୋକେ ବସୁଦେବ ମରିବ ସଘନେ ।
ମଲ୍ଲହାତେ ଯେବେ ନ ମରିବେ କୃଷ୍ଣ ରାମ
ନିଜ ହାତେ ଆସି ଘାତେ କରିବ ନିଧନ ।
ଶୁଣ ହେ ଅକ୍ରୂର ସତ୍ୟ କଥା କହୁଛଇଁ
ଉଗ୍ରସେନ ଆଦି ଯେତେ ଅଛନ୍ତି ବିଦ୍ରୋହୀ ।
ସେହି ସମସ୍ତଙ୍କୁ ମୁହିଁ କରିବି ସଂହାର
ମୋ ପରମ ଗୁରୁ ଜରାସନ୍ଧ ନୃପ ବୀର ।
ସର୍ବଦା ତାଙ୍କ ସହାୟ ଦ୍ୱିବିଦ ବାନର
ଶମ୍ବର ଆଦି ନୃପତି ସୁହୃଦ ମୋହର ।
ମୋ କୁଶଳ ବାଞ୍ଛା ସେ କରନ୍ତି ନିରନ୍ତର
ମହାବଳବନ୍ତ ପୁଣି ରାଜା ବାଣାସୁର ।
ବନ୍ଧୁବର୍ଗ ସଙ୍ଗେ ଯେବେ କଲେ ମୁଁ ସଂହାର
ନିଷ୍କଣ୍ଟକ ରାଜ୍ୟ ଭୋଗ କରିବି ଏଥର ।
ଶତ୍ରୁମାନଙ୍କୁ ଜୀବିତ ଆଉ ନ ରଖିବି
ମମ ଦ୍ୱେଷୀ ସମସ୍ତଙ୍କୁ ସଂହାର କରିବି ।
ମହାବୀରମାନଙ୍କର ସହାୟ ଯେଉଣ
ଅମର କିନ୍ନରଗଣ ପରାସ୍ତ କାରଣ ।

ଅନାୟାସେ ରାଜ୍ୟ ଭୋଗ କରିବ ନିଶ୍ଚିନ୍ତେ
ମୋହର ଉଦ୍ଦେଶ୍ୟ ଯାହା କହିଲ ଏକାନ୍ତେ ।
କଂସର ବଚନ ଶୁଣି ଅକ୍ରୂର ସୁମ
ତାହାଙ୍କୁ କହିଲେ ଧୀରେ ମଧୁର ଭାରତୀ ।
ଶୁଣ ଆହେ ମହାରାଜ ମୋହର ବଚନ
ତୁମ୍ଭ ମୁଖରୁଁ ଶୁଣି ମୁହିଁ ହେଲି ତୋଷ ମନ ।
ଯିଏ ଯେଉଁ ଆଶାକରେ ନିଶ୍ଚୟ ଫଳଇ
ଏଥିରେ ଜନେ ମାନଙ୍କ ସଂଶୟ ଯେ ନାହିଁ ।
ଦୁଃଖ ସୁଖ ସବୁ ଅଟେ ଦୈବର ଭିଆଣ
ଦୈବଠାରୁ ବଡ଼ ଜଣେ ନାହିଁ କେହି ଜାଣ
ନିଜ ଇଚ୍ଛାମତେ କେଉଁ କାର୍ଯ୍ୟ ନ ହୁଅଇ
ଏ ପାଦ ଟେକିଲେ ଆର ପାଦ ନ ଚଳଇ ।
ଯାହା କହିଲ ସେକଥା ମୁହିଁ ମାନୁଅଛି
ଦୈବ ବିନା ଜାଣ ତାହା ନ ଘଟିବ କିଛି ।
ଏଣୁ ହେ ମଥୁରାପତି ଆଉ କି କରିବ
ତବ ଆଜ୍ଞାଧୀନ ମୁହିଁ ସଦା ଥାଏଁ ଭାବ ।
ଅବଶ୍ୟ ତୁମ୍ଭ ଆଦେଶ କରିବି ପାଳନ
ତବ ଆଜ୍ଞା ଅନୁସାରେ ଯିବି ବୃନ୍ଦାବନ ।
ତବ ଆଜ୍ଞାମତେ କାର୍ଯ୍ୟ ସାଧନ କରିବି
ପ୍ରାଣ ଯାଉ ପଛେ କେବେଁ ମୁହିଁ ନ ହଟିବି ।
ଏମନ୍ତ କହି ଅକ୍ରୂର କରଇ ଗମନ
ଯଜ୍ଞ ହେତୁ କହେ କଂସ ଡାକି ମନ୍ତ୍ରୀଗଣ ।
ମନ୍ତ୍ରୀମାନେ ରାଜା ଆଜ୍ଞା ପାଳିଣ ତକ୍ଷଣେ
ବହନ ଚଳିଲେ ସର୍ବେ ଯଜ୍ଞର କାରଣେ ।
କଂସ ରାଜା ପ୍ରବେଶିଲେ ନିଜ ଅନ୍ତଃପୁରେ
ଏଥୁଅନ୍ତେ ସମାଚାର ଶୁଣ ମୁନିବରେ ।
କେଶୀ ଦୈତ୍ୟ କଂସ ଆଜ୍ଞା ମସ୍ତକରେ ବହି
ଦେଖାଇଲା ଦମ୍ଭପଣ ଗର୍ବେ ମତ୍ତ ହୋଇ ।
କଂସର ବଚନେ ସେହି ଆସ୍ଫାଳନ କରି
ଶୀଘ୍ର ବାହାରିଲା ବଧିବାକୁ ରାମହରି ।
ବେଗଗାମୀ କୃଷ୍ଣବର୍ଣ୍ଣ ଅଶ୍ୱ ରୂପ ଧରେ
ଖୁର କ୍ଷେପାରେ ଧରଣୀ ବିଦାରଣ କରେ ।
ମହାଭୟଙ୍କର ରବେ କରିଣ ଗର୍ଜନ
ସ୍ୱର୍ଗ ମର୍ତ୍ତ୍ୟ ରସାତଳେ ସର୍ବେ ଭୀତମନ ।
ତାର ରଡ଼ି ଶୁଣି ସର୍ବେ ଥରହର ହେଲେ
ବିଶାଳ ନେତ୍ର ତାହାର ଦେଖିଣ ଡରିଲେ ।

ମହାଭୀଷଣ ତା କାୟ ବିକଟ ଦଶନ
କାଳିଆ ବରନ ତାର ଯେହ୍ନେ ନବଘନ ।
ନନ୍ଦ ଆଳୟକୁ ଧାଏଁ କଂସର ଆଜ୍ଞାରେ
ସକଳେ ତ୍ରାସିତ ହେଲେ ତାହାର ଭୟରେ ।
ବିକଟ ଗର୍ଜନ ଶୁଣି ସର୍ବେ ହୋନ୍ତି ଭୀତ
ତାର ଆକୃତିକୁ ଦେଖି ବ୍ରଜରେ ସମସ୍ତ ।
ଭୟଙ୍କର ଅଶ୍ୱରୂପ ଦେଖିଣ ନୟନେ
ପୁଚ୍ଛକୁ ଟେକି ଧାମନ୍ତି ଭୟେ ଧେନୁମାନେ ।
ସେ ଭୀଷଣ ଅଶ୍ୱ ଦେଖି ବ୍ରଜ ଶିଶୁଗଣ
ଧରଣୀ ଉପରେ ପଡ଼ି ହରାନ୍ତି ଚେତନ ।
ଭୟରେ ଆକୁଳ ଯେତେ ବ୍ରଜର ଗୋପିନୀ
ଅସମ୍ଭାଳେ ଧାମନ୍ତି ଯେ ଯେହ୍ନେ ପାଗଳିନୀ ।
ଶୋକାକୁଳ ହୋଇ ସର୍ବେ କରନ୍ତି କ୍ରନ୍ଦନ
ଯଶୋମତୀ ଏକାବେଳେ ହାରିଲେ ଚେତନ
ନନ୍ଦ ଆଦି ଗୋପାଳ ଯେ ଅତି ବ୍ୟାକୁଳରେ
କ୍ରନ୍ଦନ କରିଲେ କେହ୍ନେ ରହିବେ ରାଜ୍ୟରେ
ତାହା ଦେଖି କୃଷ୍ଣଚନ୍ଦ୍ର ସଭିଙ୍କୁ ରାଇଣ
ପ୍ରବୋଧ କରିଣ ତାଙ୍କୁ ବୋଇଲେ ବଚନ ।
ବୃଥାଭୟ ତେଜ ତୁମ୍ଭେ ବ୍ରଜବାସୀ ଗଣ
ଅକାରଣଠାରେ କିମ୍ପା କରୁଛ କ୍ରନ୍ଦନ ।
ଶାନ୍ତ ହୋଇ ମନୁଁ ସର୍ବେ ତେଜ ତୁମ୍ଭେ ଭୟ
ଏହିକ୍ଷଣି ନାଶ ହେବ ସେହି ଦୁରାଶୟ ।
ଏତେ ବୋଲି ମହା କ୍ରୋଧଭରେ ଦାମୋଦର
କେଶୀର ଆଗେ ମିଳିଲେ ହୋଇ କ୍ରୋଧଭର
ବୋଇଲେ କିଏରେ ଦୈତ୍ୟ ଏଠାକୁ ଆସିଛୁ
ମାୟାରୂପି ଅପ୍ରକାର ଶରୀର ଦିଶୁଛୁ ।
ମୁହିଁ ଅନୁମାନେ ଜାଣେ ତୁହି କଂସର
କିମ୍ପା ଏଡ଼େ ଗର୍ବ କରୁ ଆଗରେ ମୋହର
ଏ ବୃଥା ଗୁମାନ ଦେଖାଉଛୁ କାହିଁପାଇଁ
ବଳ ଅଛି ଯଦି ମୋର ସଙ୍ଗେ ଯୁଦ୍ଧ ତୁହି ।
ମୋର ସନ୍ନିଧେ ପ୍ରକାଶ କର ତୋର ବଳ
ତେବେ ତ ଜାଣିବୁ ତୋର ନିଶ୍ଚୟ ମଙ୍ଗଳ ।
ନତୁବା ତୋ ବୃଥା ଗର୍ବ ଜାଣିଲି ପାମର
ବାଳକ ନିକଟେ ଆସି ବୃଥା ଗର୍ବ କର ।
ନାରୀଗଣ ଭୟେ ଦେଖାଇଲେ କିସ ହେବ
ମୋର ନିକଟକୁ ଦୁଷ୍ଟ ଆସ ଦେଖାଯିବ ।

ନିଷ୍ଣୟ ଜାଣିଲି ତୋର ମରଣ ନିକଟ
ଯମନ ପୁରକୁ ତୋର ଫିଟିଲାଣି ବାଟ ।
ବୃଥାଟାରେ ଗର୍ବ କରୁଥିଲୁ ଆରେ କ୍ରୁର
ମୋହର ହସ୍ତରେ ଆଜ ଯିବ ପ୍ରାଣ ତୋର ।
ଏହାଶୁଣି କ୍ରୋଧେ ଜର ଜର କେଶୀଦୈତ୍ୟ
ଜ୍ୱଳନ୍ତ ଅନଳେ ଯଥା ନିକ୍ଷେପିଲେ ଘୃତ ।
ସେହିପ୍ରକାରେ ଦୈତ୍ୟରକ୍ରୋଧେକମ୍ପେକାୟେ
ବିଷମ ଗର୍ଜ୍ଜନ ଛାଡ଼ି କୃଷ୍ଣ ଆଡ଼େ ଧାଏଁ ।
ଭୟଙ୍କର କ୍ରୋଧେ ଦୈତ୍ୟ ବେଗେ ଚଳିଗଲା
ଅତି ଉତ୍ତେଜିତ ହୋଇ ନାଚଣ ଲଗିଲା ।
ବିଷମ ଶବ୍ଦରେ ପଦ କରି ଆସ୍ଫାଳନ
କୃଷ୍ଣଙ୍କ ପାଖକୁ କଲା ନିର୍ଭୟେ ଗମନ ।
ଖୁରାରେ ମାଟିକି ତାଡ଼ି ଧାଆନ୍ତେ ଚଞ୍ଚଳେ
ସେ ଦୁରାତ୍ମାରକୁ କୃଷ୍ଣ ତାଡ଼ନା ଯେ କଲେ ।
ପଛୁଁ ଦୁଇ ଗୋଡ଼େ ଦୁଷ୍ଟ କଂସକୁ ପ୍ରହାରେ
ତାହାବ୍ୟର୍ଥ ହୋନ୍ତେ ଦୈତ୍ୟ ଜାଣିଲାଅନ୍ତରେ
ପଦାଘାତ ବ୍ୟର୍ଥ ହେଲା ଦେଖି ସେ ଦୁର୍ଜ୍ଜନ
ମହା କ୍ରୋଧଭରେ ତହୁଁ ହେଲା କମ୍ପମାନ ।
ପୁଣି ଦୁଷ୍ଟ ଦୁରାତ୍ମାର କେଶୀ ଦୈତ୍ୟବର
ପାଦ ପ୍ରହାର ଲଗିଲା ଅତି ଖର ତର ।
ପୂର୍ଣ୍ଣବ୍ରହ୍ମ କୃଷ୍ଣଚନ୍ଦ୍ର ଦୁଇ ବାହୁ ତୋଳି
ଦୁଇ ପାଦ ଧରି ତାର ଫିଙ୍ଗି ଦେଲେ ଭାଳି ।
ଦୂରେ ପଡ଼ି କେଶୀ ଦୈତ୍ୟ ଗଡ଼ି ଗଡ଼ି ଗଲା
ତା ଦେଖି ମୁରୁକି ହସୁଛନ୍ତି ନନ୍ଦବଳା ।
ଯେସନେ ମହାସର୍ପକୁ ଧରି ଖଗେଶ୍ୱର
ନିକ୍ଷେପ କରଇ ଦୂରେ ହୋଇ କ୍ରୋଧଭର ।
ସେହିରୂପେ କେଶୀ ଦୈତ୍ୟ ପଡ଼ିଣ ଆକୁଳେ
ଚେତନ ହରାଇ ପଡ଼ି ରହେ ସେହି ସ୍ଥଳେ ।
କ୍ଷଣକ ଉତ୍ତାରେ ଦୈତ୍ୟ ପାଇଲା ଚେତନ
ପୁନରପି ଯୁଦ୍ଧ ଆଶେ ଧାଇଁଲା ବହନ ।
କ୍ରୋଧଭରେ କଲା କୃଷ୍ଣ ନିକଟେ ଗମନ
ଭୀଷଣ ଗର୍ଜ୍ଜନ ତାର ଆରକ୍ତ ନୟନ ।
ଖୁରାରେ ତାଡ଼ଇ ମହୀ ଶବ୍ଦ ଭୟଙ୍କର
କୃଷ୍ଣଆଡ଼କୁ ଧାଇଁଲା ମହା କ୍ରୋଧେ ଘୋର ।
ପ୍ରବେଶି କୃଷ୍ଣଙ୍କ ପାଶେ କଲା ପଦାଘାତ
ଘନ ଘୋର ଗର୍ଜ୍ଜନ ଛାଡ଼ଇ ସେ ଦୈତ୍ୟ ।
ଯେ ମୂଢ଼ ପାଦ ପ୍ରହାର କଲା ଯେତେବେଳେ
ତାର ସମ୍ମୁଖେ ଗୋବିନ୍ଦ ହସୁଥାନ୍ତି ଗେଲେ ।
ଆଗରେ କୃଷ୍ଣଙ୍କୁ ଦେଖି କେଶୀ ଦୈତ୍ୟପୁଣ
ଗିଳି ପକାଇବ ବୋଲି ମେଲଏ ବଦନ ।
ମାୟାଧର ମାୟା ପ୍ରକାଶିଣ ସେହିକାଳେ
ଏକହସ୍ତ ଦୈତ୍ୟ ମୁଖେ ପୂରାଇଣ ଦେଲେ ।
ବଜ୍ରସମ ସେହି ହସ୍ତ ତା ବଦନେ ଭରି
ଭାଙ୍ଗି ପକାଇଲେ ଦନ୍ତ ଗୋଟି ଗୋଟି କରି
ମସ୍ତକେ ବଜ୍ର ପତନ ହୁଅଇ ଯେସନ
ତେସନେ ହେଲା ଦୈତ୍ୟର ଅନର୍ଥ ଘଟନ ।
ତା ଶରୀର କ୍ରମେ ଅବସନ୍ନ ହୋଇଗଲା
ଅସ୍ଥିର ମାନସେ ଦୁଷ୍ଟ କେତେ ଭାଳି ହେଲା ।
କୃଷ୍ଣ ହସ୍ତ ଉଦ୍‌ଗାରଣେ କରଇ ବିଚାର
ଉଦ୍‌ଗାରି ନ ପାରେ ଦୈତ୍ୟ କେଶୀଦୁରାଚାର
ଆକୁଳେ ଭାବଇ ମନେ ଏ କି ଚମତ୍କାର
ଆସିଲି ମୁଁ ନାଶିବାକୁ ନନ୍ଦର କୁମର ।
ତାହାଦୂରେ ଥାଉ ଏବେ ଯାଉଛି ମୋ ପ୍ରାଣ
ଏ ମହା ବିପଦୁଁ ଅଛି କିବା ପରିତ୍ରାଣ ।
କି ଉପାୟେ ପ୍ରାଣ ରକ୍ଷା ହୋଇବ ମୋହର
ବୁଦ୍ଧି ବିଶୁନାହିଁ ଚଉଦିଗ ଅନ୍ଧକାର ।
ଯଦି କେଉଁ ରୂପେ ରଖି ପାରଇ ଜୀବନ
ତେବେ କଂସେ ଜଣାଇବି ସବୁ ବିବରଣ ।
କୃଷ୍ଣ ହସ୍ତକୁ ଛଡ଼ାଇ ଗଲେ ମୁଁ ପଳାଇ
ତେବେ ସାର୍ଥକ ମୋ ଜନ୍ମ ମନେ ବିଚାରଇ ।
ଏଥରକ ଯଦି ରହେ ମୋହର ଜୀବନ
ଆଉ ଏ କାର୍ଯ୍ୟ ମୁଁ ନ କରିବି କଦାଚନ ।
ବିଷମ କଠିନ ହସ୍ତ ବଜ୍ରର ସମାନ
ସ୍ପର୍ଶ ମାତ୍ରେ ଦନ୍ତ ଯାକ ମୋର ହେଲା ଚୂର୍ଣ୍ଣ ।
କୃଷ୍ଣ ହସ୍ତୁ ରକ୍ଷା ପାଇବାକୁ ଦୈତ୍ୟବର
ବହୁ ଯତ୍ନ କଲା ସାଧ୍ୟ ମତେ ଦୁରାଚାର ।
କାଢ଼ି ନ ପାରଇ ହସ୍ତ ମହାଭୟ ମଧ୍ୟେ
ଜ୍ୱଳନ୍ତ ଅନଳେ ଯେସନ୍ତେ କାଷ୍ଠ ଦଗ୍ଧ ହୁଏ
ଉକ୍ତରୂପେ ଦୈତ୍ୟର ଅଙ୍ଗ ଅସ୍ଥିର ହୋଇଲା
ନେତ୍ର ସ୍ଥିର ହୋଇ ତା ନିଃଶ୍ୱାସ ନ ବହିଲା ।
ଜ୍ଞାନ ହରାଇ ତକ୍ଷଣେ ଭୂମିରେ ପଡ଼ିଲା
ଛଟପଟ ହୋଇ ତହିଁ ପାଦ ସିଞ୍ଚଡ଼ିଲା ।

ଅବସାନରେ ଗୋଟି ଦୈତ୍ୟ ହୁଏ ଜଲବଲ
ଦୀର୍ଘ ଶ୍ୱାସ ଘନ ଘନ ବହଇ କେବଳ ।
ଅତ୍ୟନ୍ତ କଷ୍ଟରେ ତାର ଗ୍ରୁଡ଼ିଲା ଜୀବନ
ତହୁଁ କୃଷ୍ଣ ନିଜ କରେ ଟାଣିଲେ ବହନ ।
ଗୋପୀ ଗୋପାଳ ସକଳେ ମଣିଲେ ବିସ୍ମୟ
ସ୍ୱର୍ଗରେ ଦେଖନ୍ତି ସୁଖେ ଅମର ନିଚୟ ।
ପୁଷ୍ପ ବରଷଣ କରି ଶ୍ରୀକୃଷ୍ଣଙ୍କ ପରେ
କରଂଯୋଡ଼ି ସ୍ତୁତି କଲେ ସକଳ ଅମରେ ।
ମୁନି ଋଷିମାନେ ଧନ୍ୟ ଧନ୍ୟ ପ୍ରଶଂସିଲେ
ବ୍ରହ୍ମର୍ଷି ନାରଦ ଆସି ସ୍ତବ ଆରମ୍ଭିଲେ ।
ହେ କୃଷ୍ଣ ହେ ଦୟାମୟ ଜଗତ ତାରଣ
ଦୁଃଖ ଦୁଃଖୀ ନିବାରଣ ଅଣାନ୍ଧ ଭଞ୍ଜନ ।
ଆହେ ପରମ ପୁରୁଷ ପରମ ଈଶ୍ୱର
ସବୁର କରତା ତୁମେ ଅଟ ବିଶ୍ୱମ୍ଭର ।
କାଷ୍ଠର ମଧ୍ୟରେ ଜ୍ୟୋତି ବିରାଜେ ଯେସନ
ପ୍ରାଣୀଙ୍କ ମଧ୍ୟରେ ତୁମ୍ଭେ ରହିଛ ତେସନ ।
ତୁମ୍ଭେ ସାକ୍ଷୀ ତୁମ୍ଭେ ଗୂଢ଼ ବୁଦ୍ଧିର ଆଶ୍ରୟ
ସ୍ୱତନ୍ତ୍ର ଅଜ୍ଞେୟ ତୁମ୍ଭେ ଅଟ ଦୟାମୟ ।
ତୁମ୍ଭେ ସିନାକର ସବୁ ସୃଜନ ପାଳନ
ତୁମ୍ଭର ଇଚ୍ଛାରେ ହୁଏ ସବୁରି ନିଧନ ।
ଅଚ୍ୟୁତ ଅନନ୍ତ ହରି ଦେବ ନାରାୟଣ
ଜୀବରୂପେ ପ୍ରାଣୀ ଦେହେ ବିହର ଆପଣ ।
ଗୋବର୍ଦ୍ଧନ ଗିରିବର କଲ ଯେ ଧାରଣ
ଗୋପ ଗୋପୀଙ୍କର ଭୟ ହେଲା ନିବାରଣ ।
ଅନାୟାସେ ବିନାଶିଲ ସକଳ ଅସୁର
ସୃଷ୍ଟି ରକ୍ଷା କରିବାକୁ ତୁମ୍ଭ ଅବତାର ।
ମହୀଭାର ନାଶିବାକୁ ଅଛ ଜନ୍ମ ହୋଇ
ସାଧୁଜନଙ୍କର ତ୍ରାଣ କର ହେ ଗୋସାଇଁ ।
ଯେଉଁ କେଶୀ ଦୈତ୍ୟ ଭୟେ ସର୍ବେ ଜର୍ଜରିତ
ଅବଲମ୍ବେ କଲ ପ୍ରଭୁ ତାହାଙ୍କୁ ନିହତ ।
ବିଶେଷ ଶଙ୍କିତ ଥିଲେ ସର୍ବ ଦେବଗଣ
ଏବେ ଅତି ଆନନ୍ଦରେ ରହିବେ ସ୍ୱର୍ଗେଣ ।
ଏଣିକି ଅତି ଅଦ୍ଭୁତ କର୍ମମାନ କରି
ଧରଣୀ ଭାର ଉଶ୍ୱାସ କରିଲ ହେ ହରି ।
ଚାଣୁର ମୁଷ୍ଟିକ ଆଦି ଦୈତ୍ୟଙ୍କୁ ନାଶିବ
କୁବଳୟା ହାତୀକୁ ଯେ ବିନାଶ କରିବ ।

ମହାବଳବନ୍ତ ଦୁଷ୍ଟ କଂସ ଦୁରାଚାର
ନିଷ୍ଟୟ ତାହାକୁ ତୁମ୍ଭେ କରିବ ସଂହାର ।
ତୁମ୍ଭ ହସ୍ତେ କେତେଦୈତ୍ୟ ବିନାଶହୋଇବେ
ଦେଖିବ ଅଦ୍ଭୁତ କାର୍ଯ୍ୟ କୌତୁକରେ ସର୍ବେ
ଦୁଷ୍ଟ ଦାନବ ଯେ କାଳ ବଶରେ ମରିବେ
ମୁର ଆଦି ଦୈତ୍ୟଗଣ ବିନାଶ ହୋଇବେ ।
ମୁରକୁ ମାରି ମୁରାରି ନାମକୁ ବହିବ
ରଜକକୁ ମାରି ଭବେ ଯଶ ରୁହାଇବ ।
ଇନ୍ଦ୍ର ଭୁବନରୁ ଆହେ ଭୁବନ ମୋହନ
ପାରିଜାତ ପୁଷ୍ପ ରଙ୍ଗେ କରିବ ହରଣ ।
ବିପ୍ର ସଦନରୁ ପୁଷ୍ପ କରିବ ଉଦ୍ଧାର
ବୀର କନ୍ୟାଙ୍କ ସଙ୍ଗରେ ହୋଇବ ବିହାର ।
ସିଦ୍ଧ ସାଧୁମାନେ ଏହା ଜାଣନ୍ତି ଜଗତେ
ପାତାଳରେ ସ୍ୟମନ୍ତକ ରହିଛି ଗୁପତେ ।
ସେହି ମହାମଣି ତୁମ୍ଭେ ଉଦ୍ଧାର କରିବ
ବ୍ରାହ୍ମଣର ମୃତ ପୁତ୍ରମାନ ବଞ୍ଚାଇବ ।
କାଶୀପୁର ବିନାଶିବ ଯେ ଚକ୍ରବାଣରେ
ନାଶିବ ଯେ ପୌଣ୍ଡ୍ରକ ଦନ୍ତବକ୍ର ବୀରେ ।
ଆମ୍ଭେ ଯେ ସର୍ବେ ଆନନ୍ଦେ ହୋଇବୁ ମଗନ
ତୁମ୍ଭର ଏ ଲୀଳା ସବୁ କରି ଦରଶନ ।
ଦ୍ୱାରକା ନିବାସ କାଳେ ତୁମ୍ଭର ବିକ୍ରମ
ଦେଖିବୁ ଆନନ୍ଦେ ସେହି ଲୀଳା ମନୋରମ ।
ଅର୍ଜ୍ଜୁନ ସାରଥି ପୁଣି ହୋଇବ ସମରେ
କେତେ ଦୁଷ୍ଟଙ୍କୁ ବିନାଶ କରିବ ସେଠାରେ ।
ତଦନ୍ତରେ ନିଜମାୟା ପ୍ରକାଶ କରିବ
ଅତି ଆଶ୍ଚର୍ଯ୍ୟ ସେ ଲୀଳା ସର୍ବେ ଦେଖାଇବ ।
ଅବହେଳେ ନିଜବଂଶ କରିବ ନିଧନ
ପୃଥିବୀ ରକ୍ଷଣେ ତବ ଜନମ ଗ୍ରହଣ ।
ଜ୍ଞାନହିଁ ତୁମ୍ଭର ମୂର୍ତ୍ତି ଜାଣନ୍ତି ସୁଜନ
ତୁମ୍ଭେ ପୂର୍ଣ୍ଣବ୍ରହ୍ମ କୃଷ୍ଣ ସର୍ବଦା ସ୍ୱାଧୀନ ।
ମାୟାରେ ବହିଛ ସିନା ମାନବ ଶରୀର
ଅସଂଖ୍ୟ ପ୍ରଣାମ ପଦ୍ମ ପୟରେ ତୁମ୍ଭର ।
ଯଦୁକୃଷ୍ଣ ବଂଶ ମଧ୍ୟେ ତୁମ୍ଭେ ଧୁରନ୍ଧର
ତୁମ୍ଭ ଅଭୟ ଚରଣ ତଳେ ନମସ୍କାର ।
ଏମନ୍ତ କହି ନାରଦ ଗଲେ ସନ୍ନିଧାନେ
ଦଣ୍ଡବତ ପ୍ରଣିପାତ କଲେ ଭଗବାନେ ।

କୃଷ୍ଣଙ୍କ ଗୁଣ ସୁମରି ହେଲେ ଅନ୍ତର୍ଦ୍ଧାନ
ଅପାର ଆନନ୍ଦ ମୁନି ପ୍ରଫୁଲ୍ଲିତ ମନ ।
ଏଥିଅନ୍ତେ ଗୋପୀନାଥ ସଖାଙ୍କର ସଙ୍ଗେ
ଗୋଚାରଣ ଲୀଳା ଖେଳା କଲେ ଅତିରଙ୍ଗେ
ଦାରୁଣ କେଶୀ ଦୈତ୍ୟଙ୍କୁ କରିଣ ନିଧନ
ଗୋପାଳ ପୁଅଙ୍କ ସଙ୍ଗେ ଚରାନ୍ତି ଗୋଧନ ।
ଦିବା ଅବସାନେ ସୁଖେ ଘେନି ଧେନୁଗଣ
ଆନନ୍ଦମନେ ଫେରିଲେ ଶ୍ରୀବ୍ରଜ ମୋହନ ।
ରାଣୀ ଯଶୋମତୀ ସ୍ନେହେ କୃଷ୍ଣେ ଘେନି କୋଳେ
କ୍ଷୀର ସର ଭୁଞ୍ଜାଇଲେ ବଦନ କମଳେ ।
କେଶୀ ଦୈତ୍ୟ ବଧ କଥା କଲି ତ ଶ୍ରବଣ
ବ୍ୟୋମାସୁର ମଲା ଯେହ୍ନେ ଶୁଣ ମୁନିଗଣ ।
ଏକଦିନେ ବେଣୁଧାରୀ ହଳପାଣି ସଙ୍ଗେ
ବ୍ରଜବାଳକଙ୍କ ତୁଲେ ଭ୍ରମୁଥିଲେ ରଙ୍ଗେ ।
ଆନନ୍ଦ ମନରେ କରୁଥିଲେ ଗୋଚାରଣ
ସେହିକାଳେ ଏକ ଦୈତ୍ୟ ଅଇଲା ବହନ ।
ବ୍ୟୋମ ବୋଲି ନାମ ତାର ମହାବଳୀୟାର
ଗୋରୁ ଚରାଇବା ସ୍ଥାନେ ମିଳିଲା ଅସୁର ।
କଂସ ପଠାଇବା ଚର ସେ ଯେ ମହାକାୟ
ବେଶ ଧରିଲା ସେ ଗୋପବାଳକ ପରାୟ ।
ଗୋପାଳ ପୁଅମାନଙ୍କୁ କରିଣ ହରଣ
ଏକ ଏକ ନେଇ ଦୁଷ୍ଟ କରଇ ଗମନ ।
ସଭିଙ୍କି ରଖେ ପର୍ବତ ଗୁହାର ଭିତର
ରଖି ସାରି ଦୁଆରରେ ଘୋଡ଼ାଏ ପଥର ।
ପାଷାଣରେ ଗିରି ଗୁହା କରି ଆଚ୍ଛାଦନ
ଆଉ ଶିଶୁ ଆଣିବାକୁ କରଇ ଗମନ ।
ଅନ୍ତର୍ଯ୍ୟାମୀ କୃଷ୍ଣ ତା ଜାଣିଲେ ସେ ସମୟେ
ଗୁପ୍ତବେଶେ ବ୍ୟୋମାସୁର ଶିଶୁ ହରି ନିଏ ।
ତହୁଁ ପୂର୍ଣ୍ଣବ୍ରହ୍ମ କଲେ ମନରେ ବିଚାର
ଦୁଷ୍ଟ ପାପିଷ୍ଠ ଦୈତ୍ୟଙ୍କୁ କରିବି ସଂହାର ।
ଏମନ୍ତେଣ ଚିନ୍ତାମଣି କରନ୍ତି ଚିନ୍ତନ
ସେହିକାଳେ ଦୁଷ୍ଟ ଦୈତ୍ୟ କଲା ଆଗମନ ।
ପୁଣି ଏକ ଶିଶୁ ଘେନି ଯାଆନ୍ତେ ପଳାଇ
କେଶକୁ ଧଇଲେ ତାର କୃଷ୍ଣ ଧାଇଁ ଧାଇଁ ।
ସେତେବେଳେ ବ୍ୟୋମାସୁର ମାୟା ତ୍ୟାଗ କଲା
ଅତିଶୟ ଭୟଙ୍କର ରୂପକୁ ଧରିଲା ।
ପର୍ବତ ପ୍ରମାଣେ ବଢ଼ାଇଲା କଳେବର
ଘୋର ଯୁଦ୍ଧ ଆରମ୍ଭିଲା କୃଷ୍ଣଙ୍କ ସଙ୍ଗର ।
ମଲ୍ଲଯୁଦ୍ଧେ କ୍ରମେ ଦୈତ୍ୟ ହୋଇଲେ ବଳହୀନ
ଟେକିଣ କଚାଡ଼ିଦେଲେ ଶ୍ରୀକୃଷ୍ଣ ବହନ ।
ବୋଇଲେ ରେ ଦୁରାଚାର ମରିବୁ ଏକ୍ଷଣ
ଗୁପ୍ତ ବେଶେ ଶିଶୁଗଣେ କରୁଛୁ ହରଣ ।
ଏତେ କହି କୃଷ୍ଣ ଦୈତ୍ୟ ଗ୍ରୀବରେ ବସିଲେ
ତତକ୍ଷଣେ କ୍ରୋଧେ ବିଶ୍ୱରୂପକୁ ଧଇଲେ ।
ସର୍ପକୁ ଲୋକେ ପ୍ରହାର କରନ୍ତି ଯେସନେ
ଯନ୍ତ୍ରଣା ଦେଇ ତାହାକୁ ମାଇଲେ ତେସନେ
ପର୍ବତ କନ୍ଦରୁ ଶିଳା କାଢ଼ିଲେ ଶ୍ରୀହରି
ବାହାରିଲେ ଗୋପବାଳେ ଜଣ ଜଣ କରି ।
ଆନନ୍ଦେ ସଖାମାନଙ୍କୁ କୃଷ୍ଣ ଘେନି ସଙ୍ଗେ
ଗୋପପୁରେ ପ୍ରବେଶିଲେ କଉତୁକ ରଙ୍ଗେ ।
ଏମନ୍ତେ ସୁତ ମହର୍ଷି ପୁରାଣ ବକତା
ସଂକ୍ଷେପି କହିଲେ ବ୍ୟୋମାସୁର ବଧ କଥା ।
ପାତକ ନାଶକ ଏ ଯେ ଶ୍ରୀବ୍ରହ୍ମ ପୁରାଣେ
ଭଣେ ସଦା କ୍ଷେତ୍ରବାସୀ ଚିନ୍ତି ନାରାୟଣେ ।

ଇତି ଶ୍ରୀବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ପୂର୍ଣ୍ଣବ୍ରହ୍ମ
କୃଷ୍ଣ କୈଶୋର ଲୀଳା ବର୍ଣ୍ଣନଂ
ନାମ ଊନପଞ୍ଚାଶୋଽଧ୍ୟାୟଃ ।

—ଃ0ଃ—

## ପଞ୍ଚାଶ ଅଧ୍ୟାୟ
## ପୂର୍ଣ୍ଣବ୍ରହ୍ମଙ୍କ
## ମଥୁରା ବିହାର ଲୀଳା ବର୍ଣ୍ଣନ

ଶୌନକ ଉବାଚ

ଶୌନକ ମୁନି ପୁଚ୍ଛନ୍ତି ଏଥୁଅନ୍ତେ ଶୁଣ
କହ ଆହେ ପୌରାଣିକ କୃଷ୍ଣ ଲୀଳାଗୁଣ ।
କେଶୀ ବ୍ୟୋମାସୁର ବଧି ପୂର୍ଣ୍ଣବ୍ରହ୍ମ ହରି
ଆଉ କି କି ଲୀଳା କଲେ ବୁଝାଅ ବିସ୍ତାରି ।
କହନ୍ତି ସେ ସୂତ ମୁନି ଶୁଣ ତପୋଧନ
ମଥୁ ବିହାର ଲୀଳା କରିବା ଗାୟନ ।
କଂସ ଆଦେଶେ ଅକ୍ରୁର ଚିତ୍ରରଥ ସାଜି
କୃଷ୍ଣ ଦରଶନ ଲାଗି ତନୁ ପ୍ରେମ ରାଜି ।

ଆନନ୍ଦ ମନରେ ସେଠୁ ହୋଇଲା ବାହାର
ସନ୍ଧ୍ୟାକାଳେ ପ୍ରବେଶିଲା ସେ ନନ୍ଦ ମନ୍ଦର ।
କଂସ ନିମନ୍ତ୍ରଣ ବ୍ରଜରାଜେ ଜଣାଇଲା
ଶୁଣି ନନ୍ଦ ମନେ ମହା ଆନନ୍ଦ ହୋଇଲା ।
ଅକ୍ରୂର କହଇ ନନ୍ଦ ରାମ କୃଷ୍ଣ ସାଥେ
ମଥୁରା ପୁରକୁ ଚାଲ ରାଜା ଆଜ୍ଞାମତେ ।
ଧନୁଯାତ୍ରା ମହୋତ୍ସବ କରୁଛନ୍ତି କଂସ
ନିମନ୍ତ୍ରଣ ହୋଇଛନ୍ତି ଅନେକ ନରେଶ ।
ଦେଇଛନ୍ତି ତୁମ୍ଭ ପାଇଁ ନିମନ୍ତ୍ରଣ ପତ୍ର
ଚଳିବା ଏଠାରୁ କାଲି ହୋଇଲେ ପ୍ରଭାତ ।
ଏ ଗୋପପୁରେ ଗୋପାଳେ ରହିଛନ୍ତି ଯେତେ
ଗୋରସ ଭାର ଘେନିଣ ଚଳିବେ ସମସ୍ତେ ।
କଂସରାଜାଙ୍କ ଭଣଜା ରାମ କୃଷ୍ଣ ଦ୍ୱିଇ
ରଥେ ବସାଇ ତାହାଙ୍କୁ ଘେନିଯିବି ମୁହିଁ ।
ଶୁଣି ନନ୍ଦ ଗୋପପୁରେ ଘୋଷଣା କରିଲେ
କାଲି ମଥୁରାକୁ ଯିବେ ସର୍ବେ କୃଷ୍ଣ ତୁଲେ ।
ଦହି ଦୁଧ ଯେ ଯାହାର ସ୍କନ୍ଧେ କରି ଭାର
ଚଳିବ ଧୀରାଗେ ରାମ କୃଷ୍ଣ ସଙ୍ଗତର ।
କୃଷ୍ଣ ବଳରାମ ଏହା କରନ୍ତେ ଶ୍ରବଣ
ପ୍ରଭାତୁ ଯିବା ପାଇଁକି ବଳାଇଲେ ମନ ।
ଶୁଣି ଯଶୋଦା ରାଣୀଙ୍କ ମନ ଯେ ବିରସ
ସତେକି ମୋ ସୁତେ ଯିବେ କଂସରାଜା ପାଶ
କୃଷ୍ଣଙ୍କୁ ବୋଇଲେ କାଲି ଯିବୁକିରେ ଧନ
କହ କହ ସ୍ଥିର ହେଉ ନାହିଁ ମୋର ମନ ।
ତହୁଁ ମଉନେ ଗୋବିନ୍ଦ ନଦେଲେ ଉତ୍ତର
ଯଶୋଦା କାନ୍ଦନ୍ତି ଦୁଃଖେ ହୋଇଣ କାତର
ଆହା ଧନମାଳୀ ଏ କି ଦୁର୍ଦ୍ଦଶା ଘଟନ
ଜାଣୁଛି ଅତି ଅବୋଧ ଗୋକୁଳ ରାଜନ ।
ନିମିଷେ ମୋ ଚିତ୍ତ ସ୍ଥିର ନୁହେଁ ଯାହାପାଇଁ
ସେ ଯିବ ମଥୁରା କେହ୍ନେ ବଞ୍ଚିବଇଁ ମୁହିଁ ।
ରାମ କୃଷ୍ଣଙ୍କୁ ମୁଁ କେଭେ ନ ପାଶୁ ନ ଛାଡ଼ିବି
ଯେବେ ନ ଶୁଣିବେ ମୁହିଁ ଜୀବନ ହାରିବି ।
ମାତାଙ୍କ କ୍ରନ୍ଦନ କୃଷ୍ଣ ସମ୍ଭାଳି ନ ପାରି
ତାଙ୍କୁ ଶାନ୍ତ କରାଇଲେ ପ୍ରବୋଧନା କରି ।
ଏଣେ ରାଧା ସଖିଗଣ ସହିତରେ ବସି
କୃଷ୍ଣ ଗୁଣ ଗାଉଥିଲେ ଆନନ୍ଦରେ ହସି ।

ସେହିକାଳେ ଶୁଣନ୍ତେ ଏମନ୍ତ ଖବର
ସତେକି କୋଟିଏ ବଜ୍ର ପଡ଼ିଲା ଶିରର ।
ଆହା କି ଶୁଣିଲି ବୋଲି ମୂର୍ଚ୍ଛା ଗତ ହେଲେ
ପ୍ରାଣହୀନ ପରି ସ୍ତମ୍ଭୀଭୂତେ ସେ ରହିଲେ ।
ନାସାରୁ ତାଙ୍କର ଶ୍ୱାସ ଆଉ ନ ବହଇ
ଦେଖି ହାହାକାର କଲେ ସର୍ବ ସଖୀ ତହିଁ ।
ତହୁଁ କର୍ଣ୍ଣେ ଶୁଣାଇଲେ ଉଚ୍ଚେ କୃଷ୍ଣନାମ
କିଛିକ୍ଷଣେ ସେ ନାମ ଶ୍ରବଣେ ହେଲା ଜ୍ଞାନ ।
ଜ୍ଞାନ ପାଇ ରାଧା ଖେଦେ କରନ୍ତି କାରୁଣ୍ୟ
ଆହାରେ ଦଇବ କିମ୍ପା ଦେଲୁ ଏ କଷଣ ।
ଆହେ ବିଧି ତବ ଦୟା ନାହିଁ କଦାଚନ
ମୋତେ ବିନାଶିବା ପାଇଁ କରୁଛ ଏସନ ।
ବାଳକର ଚେଷ୍ଟାପରି ତୁମ୍ଭର ଚରିତ
ବିଚ୍ଛେଦ କରି ଯା ଆଶା ନ ହେଉ ପୂରିତ ।
ଏହିରୂପେ ରାଧା ଆଦି ସର୍ବ ଗୋପୀଗଣ
ଅନେକ ବିଳପି ଦୁଃଖେ କରନ୍ତି କ୍ରନ୍ଦନ ।
ମୋହର ଶକତି ନାହିଁ ତାହା ବର୍ଣ୍ଣିବାକୁ
ପାଷାଣ ତରଳି ଯିବ ଶୁଣି ସେ କାନ୍ଦକୁ ।
ପ୍ରାତଃକାଳେ ଉଠି କୃଷ୍ଣ ଭାବନ୍ତି ମନରେ
ଅଙ୍ଗୀକାର କରିଅଛି ଗୋପୀଙ୍କ ଆଗରେ ।
କେବେ ନ ଛାଡ଼ିବି କରିଅଛି ସୀଉକାର
ମଥୁରା ପୁରୀକୁ ଯିବି କେମନ୍ତ ପ୍ରକାର ।
ମୋର ଅଦର୍ଶନେ ଗୋପୀ ପରାଣ ହାରିବେ
ଜନନୀ ନ ଦେଖି ମୋତେ ଜୀବନ ତେଜିବେ
ଗତି ମୋର ଅଟେ ବ୍ରଜବାସୀଙ୍କର ପ୍ରାଣ
ମୁହିଁ ଗଲାମାନେ ସର୍ବେ ହେବେ ହତଜ୍ଞାନ ।
ଛିନନ୍ଦନ ମାନ କଷ୍ଟ ଦେଇ ଦୟାନିଧି
କହିଲେ କୋମଳ ବାକ୍ୟେ ସଭିଙ୍କୁ ପ୍ରବୋଧି
ଜ୍ୟେଷ୍ଠ ଭ୍ରାତ ବଳରାମଙ୍କର ହାତଧରି
ଶୀଘ୍ରରଥେ ବିଜେକଲେ ସେ ମୁରଲୀଧାରୀ ।
ରୋହିଣୀ ଯଶୋଦା ଦୁଇ କରନ୍ତି କ୍ରନ୍ଦନ
ଠିକା ବୋବାଳି ଛାଡ଼ନ୍ତି ଗୋପନାରୀଗଣ ।
ଲୋତକରେ ଜର ଜର ସବୁରି ନୟନ
ପଶୁ ପକ୍ଷୀ ଗଛ ପତ୍ର କରନ୍ତି ରୋଦନ ।
ଅକ୍ରୂର ସହିତ ରାମକୃଷ୍ଣ ରଥେ ଯାନ୍ତି
ନନ୍ଦ ଆଦି ଯେ ଗୋପାଳେ ପଛରେ ଚଳନ୍ତି ।

ଅକ୍ରୂରଙ୍କୁ ବହୁ ଲୀଳା ଦେଖାଇ ପଥରେ
ସାୟଂକାଳେ ରାମ କୃଷ୍ଣ ମିଳି ମଥୁରାରେ ।
ରଥରୁ ଓହ୍ଲାଇ ହରଷରେ ଭାଇ ବେନି
ପ୍ରିୟ ସଖାମାନଙ୍କୁ ସେ ସଙ୍ଗେ ସଙ୍ଗେ ଘେନି ।
ମଥୁରା ନଗରୀ ଶୋଭା ଦେଖିବାର ପାଇଁ
ରାଜଦାଣ୍ଡେ ବିଜେକଲେ ଶ୍ରୀରାମ କହ୍ନାଇ ।
ଯାଉଁ ଯାଉଁ କଉତୁକେ ନାନା ଲୀଳା କଲେ
ଦୁଷ୍ଟ ରଜକର ଶିର ସ୍ୱହସ୍ତେ ମୋଡ଼ିଲେ ।
ବସନମାନ ପିନ୍ଧିଲେ ସର୍ବେ ବାଛି ବାଛି
ତନ୍ତୁବାୟକୁ କରୁଣା କଲେ ନନ୍ଦ ବଚ୍ଛି ।
ମାଳାକାର ଘରଠାରୁ ଯାଇ କଉତୁକେ
ଫୁଲମାଳାମାନ ଆଣି ଲମ୍ବାଇଲେ ବୁକେ ।
ତହୁଁ ସଖାଙ୍କ ସଙ୍ଗରେ ସେ ମଥୁରା ଦାଣ୍ଡେ
ବେନିଭାଇ ଚଳିଗଲେ ହରଷରେ ଗୃଣ୍ଡେ ।
କୁବୁଜା ଚନ୍ଦନ ଲଗିକରି ଶ୍ରୀଅଙ୍ଗରେ
ଦିବ୍ୟ ସୁନ୍ଦରୀ ପାଲଟି ଗଲା ସତ୍ୱରରେ ।
ତହୁଁ ନଗର ମଧ୍ୟରେ ଶଖାଙ୍କ ସଙ୍ଗରେ
କୃଷ୍ଣ ବଳରାମ ବିଜେ କୌତୁକ ରଙ୍ଗରେ ।
ମଧୁପୁର ନର ନାରୀ ଦେଖି ତାଙ୍କ ଶୋଭା
ସକଳେ ହୋଇଲେ ଅତିଶୟ ମନଲୋଭା ।
କୃଷ୍ଣ ଦରଶନ ଆଶେ ଆନନ୍ଦିତ ମନେ
ଧାଇଁଲେ ସକଳ ଲୋକେ ପ୍ରଫୁଲ୍ଲ ବଦନେ ।
ପଙ୍ଗୁ କୁ କାନ୍ଧେଇ ଅନ୍ଧ ଯାନ୍ତେ ଦରଶନେ
ପାଦ ନୟନେ ପାଇଲେ ସେହି ଦୁଇ ଜନେ ।
କୃଷ୍ଣଙ୍କୁ ନିରେଖି ମଧୁପୁର କୁଳନାରୀ
ରୂପ ଅମୃତକୁ ପାନ କଲେ ମୋଦଭରି ।
ଗୋପୀଙ୍କ ସୌଭାଗ୍ୟ ପ୍ରଶଂସିଲେ କହି ଧନ୍ୟ
ଆନନ୍ଦ ଅଶ୍ରୁରେ ପୂର୍ଣ୍ଣ ସଭିଙ୍କ ନୟନ ।
ବୋଲନ୍ତି ସୁକୃତବନ୍ତି ବ୍ରଜନାରୀମାନେ
ଏ ରୂପକୁ ଯାହା ସଦା ଦେଖନ୍ତି ନୟନେ ।
ସେ ଗୋପୀଙ୍କ ଭାଗ୍ୟ ସୀମା କହି ହେବନାହିଁ
ତାହାଙ୍କର ଭାଗ୍ୟ ଧନ୍ୟ ପୁଣ୍ୟବନ୍ତି ସେହି ।
ଏମନ୍ତେ ଅନେକ ପ୍ରଶଂସନ୍ତି କୁଳନାରୀ
ରାଜପଥେ ଧୀରେ ଧୀରେ ଯାନ୍ତି ରାମ ହରି ।
କ୍ରମେ ରାଜସିଂହଦ୍ୱାରେ ପ୍ରବେଶ ହୋଇଲେ
କଂସର ଧନୁ ଘରକୁ ଦେଖିବାକୁ ଗଲେ ।

ଅତି ଆନନ୍ଦ ମନରେ ରାମ ବନମାଳୀ
ଧନୁଯଜ୍ଞ ଘରଠାରେ ଶୀଘ୍ର ଗଲେ ମିଳି ।
ହସି ହସି ବାମ ହାତେ ତୋଳି ଶରାସନ
ଭାଙ୍ଗିବାକୁ ବିଚାରିଲେ ଯଶୋଦା ନନ୍ଦନ ।
ଧରି ସେ ଧନୁକୁ କରି ଦେଲେ ଦୁଇଖଣ୍ଡ
ମତ୍ତଗଜ ଭାଙ୍ଗଇ ଯେସନେ ଆଖୁଦଣ୍ଡ ।
ଘୋର ଶବଦ କରି ସେ ଧନୁ ଭାଙ୍ଗି ଯାନ୍ତେ
କୁତୂହଳେ ଫିଙ୍ଗିଦେଲେ କୃଷ୍ଣ ଯେ ଅଭ୍ରାନ୍ତେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ଶବ୍ଦେ ପୂର୍ଣ୍ଣ ହେଲା
ଶବ୍ଦ ଶୁଣି କଂସ ଭୟେ କମ୍ପିଣ ଲାଗିଲା ।
ରକ୍ଷକମାନେ ସେ ନିକଟରେ ଯେତେ ଥିଲେ
ନିଜ ନିଜ ପ୍ରାଣ ଘେନି ଡରି ପଳାଇଲେ ।
ଯେବଣ ରକ୍ଷକେ କୋପେ ହେଲେ ଶିରଝୁଣି
ତାହାଙ୍କୁ ନାଶିଲେ କୃଷ୍ଣ ଭଗ୍ନଧନୁ ଘେନି ।
ଥୋକାଏ ବଳରାମଙ୍କ ହସ୍ତେ ଗଲେ ମରି
ବେନିଭାଇଙ୍କ ଆଗୁ କେ ନ ପାରେ ଉବୁରି ।
ତହୁଁ ନନ୍ଦ ଆଦି ସାଥେ ମିଳି ରାମ ହରି
ଉତ୍ତମ ଭବନେ ଗଲେ ସୁଖେ ବେଗକରି ।
ପାଦ ପ୍ରକ୍ଷାଳନ କରି ଶୀତଳ ହୋଇଲେ
ନିଶିରେ ଦିବ୍ୟ ପଦାର୍ଥ ମଣୋହି ସେ କଲେ
ସୁଖେ ନିଦ୍ରାଗଲେ ଦୋହେଁ ଗୋପାଳଙ୍କସଙ୍ଗେ
ମଥୁରା ନିବାସୀ ଗୁଣ ବାହୁନନ୍ତି ରଙ୍ଗେ ।
ଏଣେ କଂସ ଧନୁଭଙ୍ଗ ସମ୍ବାଦ ପାଇଲା
ବିପରୀତ କଥା ଶୁଣି ତା ଛାତି ଥରିଲା ।
ଆପଣା ମନ୍ଦିରେ ଦୁଷ୍ଟ ରହିଲା ଶୟନେ
ବହୁ ଅମଙ୍ଗଳ ସ୍ୱପ୍ନେ ଦେଖିଲା ନୟନେ ।
ଅନ୍ତରେ ଜାଣି ପାରିଲା ମରଣ ମୋହର
ତଥାପି ସାହସ କଲା କାଳର ବଶର ।
ପ୍ରଭାତୁ ଉଠିଣ ସର୍ବ ମଲ୍ଲଙ୍କୁ ଡକାଇ
ବୋଇଲା ରାମ କୃଷ୍ଣଙ୍କୁ ମାର ବେଗେ ଯାଇ ।
ରାଜ୍ୟରେ ଘୋଷଣା କଲା ମଲ୍ଲ ଯୁଦ୍ଧ ପାଇଁ
ପୁର ନର ନାରୀ ଦେଖିବାକୁ ଗଲେ ଧାଇଁ ।
ବସିଲେକ ଶତ ଶତ ରାଜା ମଣ୍ଡପରେ
କଂସ ବିଜେକଲା ଯାଇଁ ତାହାଙ୍କ ମଧ୍ୟରେ ।
ସୁବର୍ଣ୍ଣ ପର୍ବତେ ଯେହ୍ନେ ଉଦିତ ଅଙ୍ଗାର
ତେସନେ କ୍ଷୁଦ୍ଧିତ ସଭା ମଧ୍ୟେ ଦୁରାଚାର ।

ପ୍ରାତଃ କାଳେ ରାମ କୃଷ୍ଣ ଉଠିଣ ବହନ
ପ୍ରାତଃ କୃତ୍ୟ ବଢ଼ାଇଣ କଲେ ଆଗମନ ।
ନନ୍ଦ ଆଦି ଗୋପାଳ ଯେ ଆନନ୍ଦେ ଚଳିଲେ
ତାହାଙ୍କ ପଛରେ ରାମକୃଷ୍ଣ ବିଜେ କଲେ ।
ବେନି ଭାଇ ରାଜଦ୍ୱାରେ ହେଲେ ଉପସ୍ଥିତ
ତାଙ୍କ ମନୋହର ବେଶ ମୋହିଲା ଜଗତ ।
ମତ୍ତ କୁବଳୟ ହାତୀ ଥିଲା ସେହି ଦ୍ୱାରେ
ଗମ୍ଭୀର ସ୍ୱରେ ଗୋବିନ୍ଦ ଡାକିଲେ ତାହାରେ
ଆଉକର ତୋ ହାତୀକୁ ରଖରେ ମାହୁନ୍ତ
ନୋହିଲେ ଶମନ ପୁର ଯିବୁରେ ତୁରନ୍ତ ।
କୃଷ୍ଣଙ୍କ ବଚନ ଶୁଣି ମାହୁନ୍ତ କୋପିଲା
ହାତୀଙ୍କୁ ଉପରେ କୁଦାଇବ ବିଚାରିଲା ।
କାଳାନ୍ତକ ଯମ ପରି ଆସୁଁ କରିବର
ହସି ହସି ଶୁଣ୍ଢ ତାର ଧରିଲେ ଶ୍ରୀଧର ।
ଗରୁଡ଼ ଯେସନେ ଅବହେଳେ ସର୍ପ ଧରେ
କୃଷ୍ଣ ସେ ହସ୍ତୀ କି ଧରି ଟେକିଲେ ଶୂନ୍ୟରେ
ଦ୍ୱି ତିନଥର ବୁଲାଇ ଦିଅନ୍ତେ କଚାଡ଼
ପ୍ରାଣେ ହତ ହେଲା ହସ୍ତୀ ଚୂର୍ଣ୍ଣ ହେଲା ହାଡ଼
ତହୁଁ ତାର ଦନ୍ତ ଉପାଡ଼ିଣ ବେନି ଭାଇ
ମାହୁନ୍ତକୁ ପ୍ରହାରିଣ ଲାଗିଲେ କଠାଇ ।
ଏକ ପ୍ରହାରେ ସେ ମୂଢ଼ ଜୀବନ ହାରିଲା
ଏକେ ଏକେ ଦ୍ୱାରୀମାନଙ୍କର ପ୍ରାଣ ଗଲା ।
ତହୁଁ ବେନି ଭାଇ ହସ୍ତୀ ଦନ୍ତ ଧରିକନ୍ଧେ
ପ୍ରବେଶିଲେ ସଭା ମଧ୍ୟେ ଅପାର ଆନନ୍ଦେ ।
ଯେଉଁ ଭାବ ଯାର କୃଷ୍ଣେ ସେ ରୂପ ଦେଖଇ
ବଜ୍ରପରି ମଲ୍ଲଙ୍କର ନେତ୍ରକୁ ଦିଶଇ ।
ନରମାନେ ଦେଖନ୍ତି ନୃପତି ଶିରୋମଣି
ମଦନ ମୋହନ ରୂପ ଦେଖନ୍ତି ରମଣୀ ।
ଗୋପକୁଳ ପୂର୍ଣ୍ଣଚନ୍ଦ୍ର ସୁଜନେ ଦେଖନ୍ତି
ଦୁଷ୍ଟ ଗଣକୁ ସେ ଯମପରି ଦେଖାଯାନ୍ତି ।
ସନ୍ତାନ ଜ୍ଞାନ କରନ୍ତି ନନ୍ଦରାଜା ତାଙ୍କୁ
କାଳ ପରାୟେ ଦିଶନ୍ତି ସେ ଭୋଜ ନୃପଙ୍କୁ ।
କଂସପକ୍ଷ ବିପ୍ରେ ଦୃଶ୍ୟ ବିରାଟ ସ୍ୱରୂପ
ଯୋଗୀମାନେ ଦେଖୁଥାନ୍ତି ପରଂବ୍ରହ୍ମ ରୂପ ।
ଆପଣା ପରିଜନଙ୍କୁ ଶାନ୍ତ ସୌମ୍ୟମୂର୍ତ୍ତି
ଦେଖା ଯାନ୍ତି କୃଷ୍ଣ ବଳରାମ ଦୁଇ ସେଥି ।

ବେନିଭାଇ ଯହୁଁ ତହୁଁ ପ୍ରବେଶ ହୋଇଲେ
ରାମକୃଷ୍ଣଙ୍କୁ ଅନାଇଁ ସେ ଚାଣୁର ବୋଲେ ।
ଶୁଣ ଶୁଣ ରାମ କୃଷ୍ଣ ମୋହର ବଚନ
ତୁମ୍ଭେ ଯାଇ ବୃନ୍ଦାବନେ ଚରାଅ ଗୋଧନ ।
ମଲ୍ଲ ଯୁଦ୍ଧରେ କୁଶଳ ବୋଲି ବେନିଭାଇ
ଶୁଣି ଅଛୁ ଆମ୍ଭ କର୍ଣ୍ଣ ଆଜ ଏହିଠାଇଁ ।
କରିବା ଯେ ମଲ୍ଲ ଯୁଦ୍ଧ ଦେଖିବେ ରାଜନ
ଶୁଣି କୃଷ୍ଣ ବୋଇଲେ ଯ୍ୟା କହୁଛ କେସନ ।
ସମାନ ଜନରେ ସିନା ମଲ୍ଲ ଯୁଦ୍ଧ ହୁଏ
ତୁମ୍ଭ ସଙ୍ଗରେ କି ଯୁଦ୍ଧ କହୁଛ ଅନ୍ୟାୟେ ।
ଚାଣୁର ବୋଇଲା ତୁମ୍ଭେ ଗୁପ୍ତ ବେଶଧାରୀ
ମାରିଲ କୁବଳୟାକୁ ଶିଶୁ ହୋଇକରି ।
କପଟ ତେଜ ସମର କର ଆମ୍ଭ ସାଥେ
ସମର କଲେ ଶ୍ରୀହରି ତା ବାକ୍ୟେ ତୁରିତେ
ଯେତେ ଯେତେ ବୀରଗଣ ସେ ସଭାରେ ଥିଲେ
ଦେଖିଣ ଏସନ ରୀତି ପୁଲକିତ ହେଲେ ।
ରାମକୃଷ୍ଣ ସାଥେ ରଣ କରିବେ ଅସୁରେ
ଚମକିତ ନନ୍ଦରାଜା ଭାବି ମାନସରେ ।
ଆହେ ପ୍ରଭୁ ଜଗନ୍ନାଥ ଆସି ରକ୍ଷାକର
ବିପଦୁ ଉଦ୍ଧାର ଶିଶୁ କୁମର ମୋହର ।
ଏମନ୍ତେ କାତରେ ନନ୍ଦ ଶନ୍ତେ ଭଗବାନେ
ଦେଖିବା ପାଇଁକି ରୁଣ୍ଡ ହୋନ୍ତି ବହୁଜନେ ।
ବେନି ଭାଇ ରଣ ସ୍ଥଳେ କରନ୍ତେ ବିହାର
ଦେଖି ସଭାଜନ ମଣୁଥାନ୍ତି ଚମତ୍କାର ।
ଚାଣୁର ମୁଷ୍ଟିକ ରଣ କଲେ ଆସିକରି
ଘୋର ଗର୍ଜ୍ଜନ ଛାଡ଼ନ୍ତେ ସଭା ଗଲା ଥରି ।
ଚାଣୁର ସଙ୍ଗରେ ଯୁଦ୍ଧ ଆରମ୍ଭିଲେ ହରି
ଦେଖନ୍ତି ସକଳ ଲୋକେ ରୁଣ୍ଡ ହୋଇକରି ।
ବାହୁ ବାହୁ ଛନ୍ଦା ଛନ୍ଦି ଚରଣେ ଚରଣ
ଘନ ମାଲସାଟ ମାରି କରନ୍ତି ଗର୍ଜ୍ଜନ ।
କ୍ଷଣେ କ୍ଷଣେ ଲମ୍ଫ କେବେ କେବେ ଆସ୍ଫାଳନ
ଲୀଳାରେ କ୍ଷଣକେ ରଙ୍ଗ କଲେ ଜନାର୍ଦ୍ଦନ ।
ତହୁଁ କ୍ରୋଧମନେ ହରି କହନ୍ତି ଚାଣୁରେ
ଆରେ ଦୁଷ୍ଟ ଆସିଛୁ ତୁ ଯୁଦ୍ଧ କରିବାରେ ।
ଏହିକ୍ଷଣି ପଠାଇବି ଶମନ ଆଳୟେ
ଘରକୁ ଫେରି ନ ଯିବୁ ଆଉ ଦୁରାଶୟେ ।

ଏମନ୍ତ କହି ଚୂଡ଼ିକ ଧରିଲେ ତାହାର
ଟେକଣ ବୁଲାଇ ଶୂନ୍ୟେ ଚକର ଆକାର ।
କେତେକ୍ଷଣ ବୁଲାଇଣ ଦେଲେ ସେ କଚାଡ଼ି
ଭାଙ୍ଗି ଗଲା ତାକୁ ତାର ଚୂର୍ଣ୍ଣ ହେଲା ହାଡ଼ ।
ପ୍ରାଣ ଛାଡ଼ି ସେ ଚାଣୁର ମୁକ୍ତ ହୋଇଗଲା
ମୁଷ୍ଟିକ ରାମଙ୍କ ସଙ୍ଗେ ଯୁଦ୍ଧ ଆରମ୍ଭିଲା ।
ବାହୁକୁ ବାହୁ ଜଡ଼ି ସେ କଲେ ମହାରଣ
ମୁଣ୍ଡେ ମୁଣ୍ଡ ଠେଲାଠେଲି ଗମ୍ଭୀର ଗର୍ଜନ ।
ଦୁହିଁଙ୍କର ମାଲଯୁଦ୍ଧ ହୁଂକାର ଗର୍ଜନେ
ଘୋର ଶବ୍ଦ ହେଲା ଯାହା ଶୁଣାନାହିଁ କାନେ
ଉଡ଼ିଆଁ ମାରି ଉଠନ୍ତି ଶୂନ୍ୟରେ ଚମତ୍କାର
ଦେବତାମାନେ ହସିତ ଦେଖି ସେ ସମର ।
କେତେକ୍ଷଣ ରଙ୍ଗ ଯୁଦ୍ଧ କରି ବଳରାମ
ଉଦ୍ୟମ କଲେ ତାହାର ଘେନିବାରେ ପ୍ରାଣ
କଲେ ସେ ମୁଷ୍ଟି ଆଘାତ ମୁଷ୍ଟିକ ଉପରେ
ଜୀବନ ଛାଡ଼ିଲା ଦୁଷ୍ଟ ସେ ବଧା ପ୍ରହାରେ ।
ତହୁଁ କୁଟଶଳ ତୋଶଳାଦି ମଲ୍ଲଗଣେ
ନିଧନ କଲେ ସେ ରାମ କୃଷ୍ଣ ମଲ୍ଲ-ରଣେ ।
ଦେଖି ମହାଭୟ କଲା କଂସ ଭୋଜପତି
ନ ଜାଣେ ଏମନ୍ତ ହେବ ଆପଣା ଦୁର୍ଗତି ।
ଅତି କ୍ରୋଧେ ଗାଳିଦିଏ ଯାହା ଆସେ ମନେ
ସେ ବସୁଦେବ ଦେବକୀ ରାଜା ଉଗ୍ରସେନେ ।
ମହାକ୍ରୋଧ ହୋଇତହିଁ ପ୍ରଭୁ ଯଦୁବୀର
ଲମ୍ଫ ଦେଇଣ ଉଠିଲେ ମଞ୍ଚାର ଉପର ।
ଖଡ୍ଗ ଉଞ୍ଚାଇଲା କଂସ କୃଷ୍ଣେ ହାଣିବାରେ
କୃଷ୍ଣ ତାର କେଶ ଧରି ଠେଲିଲେ ଧରାରେ ।
ଛାତି ଉପରେ ତାହାର ବସୁଁ ବଂଶୀଧର
ସେ ଭାର ସହି ନ ପାରି ହୋଇଲା ଅସ୍ଥିର ।
ବିଶ୍ୱମ୍ଭର ମୂରତି ଧଇଲେ ଯଦୁବୀର
ପର୍ବତ ଉପରେ ଯେହ୍ନେ ଶୃଙ୍ଗ ମନୋହର ।
ଯାହାର ଶକତି ସହିବାରେ ସେହି ଭାର
ଜୀବନ ହାରିଲା କଂସ କରିଣ ଚିତ୍କାର ।
କଂସ ତେଜ ମିଶିଗଲା ଗୋବିନ୍ଦ ଚରଣେ
ସ୍ୱର୍ଗରୁ ଯେ ପୁଷ୍ପବୃଷ୍ଟି କଲେ ଦେବଗଣେ ।
ତହୁଁ ଟାଣି ଘୋଷାଡ଼ି ସେ କଂସର ଶରୀର
କେତେ ଦୂରେ ପକାଇଲେ ନେଇ ଯଦୁବୀର ।

ଧରଣୀ କମ୍ପିତା ହେଲା କଂସର ନିଧନେ
ଗୋପକୁଳ ଯଦୁକୁଳ ଆନନ୍ଦ ସଘନେ ।
କଂସର ନିଧନେ ଦେବପୁରେ କୋଳାହଳ
ଜୟ ଜୟ ଦୁନ୍ଦୁଭି ବାଜଇ ସୁମଙ୍ଗଳ ।
କଂସ ପରିବାର ସର୍ବେ କାନ୍ଦଣ ବ୍ୟାକୁଳ
ଆଶ୍ୱାସିଣ ପ୍ରବୋଧିଲେ ତାଙ୍କୁ ନନ୍ଦବାଳ ।
ସେଠାରୁ ରାମ ଗୋବିନ୍ଦ ହରଷେ ଚଳିଲେ
ପିତା ମାତାଙ୍କୁ ବନ୍ଧନୁ ମୁକୁଳାଇ ଦେଲେ ।
ପ୍ରଥମେ ଈଶ୍ୱର ଭାବ ହେଲା ଦୁହିଙ୍କର
ଶେଷେ ମାୟା ମୋହେ ପୁତ୍ରବୁଦ୍ଧି କରିବାର
ବସୁଦେବ ଦେବକୀ ପୁତ୍ରଙ୍କୁ ଘେନି କୋଳେ
ସିଞ୍ଚିଲେ ଦୁହିଙ୍କ ଅଙ୍ଗ ନୟନର ଜଳେ ।
ପିତା ମାତାଙ୍କୁ ସେ ପ୍ରବୋଧିଲେ ଯଦୁପତି
ଉଗ୍ରସେନଙ୍କୁ ବନ୍ଧନୁ ମୁକୁଳାଇ ଦ୍ୟନ୍ତି ।
ଯଯାତିଙ୍କ ଶାପ ହେତୁ ସେ ରାଜା ନୋହିଲେ
ରାଜସିଂହାସନେ ଉଗ୍ରସେନେ ବସାଇଲେ ।
ସର୍ବ ଜନ ଆନନ୍ଦିତ ନିରେଖି ବଦନ
ମହାନନ୍ଦ ତରଙ୍ଗେ ବୁଡ଼ିଲେ ଯଦୁଗଣ ।
ରାମକୃଷ୍ଣ ବେନିଭାଇ ଏକ ଦିନକରେ
ପ୍ରବେଶ ହୋଇଲେ ଯାଇ ନନ୍ଦଙ୍କ ପାଶରେ ।
ପାଦତଳେ ପଡ଼ି ସହୁଁ ପ୍ରଣିପାତ କଲେ
ସ୍ନେହଭରେ ନନ୍ଦରାଜା ତାହାଙ୍କୁ ବୋଇଲେ
ଚାଲ ଚାଲ ବାପ ଆଉ ବିଳମ୍ବ ନକର
ଅନେକ ଦିନ ହେଲାଣି ଆସିବା ଆମ୍ଭର ।
ତେଣେ ତୁମ୍ଭ ଦୁଇଭାଇ ନ ଦେଖି ନୟନେ
କାନ୍ଦୁଥିବେ ତବମାତା ସଦା ରାତ୍ର ଦିନେ ।
ଏପରି କହନ୍ତେ ନନ୍ଦ କୃଷ୍ଣଙ୍କ ମୁଖରୁ
ବଚନ ନ ଆସେ ଫେରେ ସେ କଣ୍ଠ ତଟରୁ ।
ତାହା ଦେଖି ହଳଧର ବୋଇଲେ ପିତାଙ୍କୁ
ଆପଣ ସାଗରେ ଯାନ୍ତୁ ଭୋ ପିତା ଗୃହକୁ ।
ଆମ୍ଭେ ଏହି ମଧୁପୁରେ ଅଳ୍ପ ଦିନ ରହି
ଦୁଷ୍ଟ ଦାନବଙ୍କୁ ନାଶି ଯିବୁ ସେ ପଳାଇ ।
ଏହାଶୁଣି ନନ୍ଦ ମୁଣ୍ଡେ ପଡ଼ିଲା କି ବଜ୍ର
ତେମନ୍ତ ମଣିଲେ ମନ ଗୋପ ପୁରରାଜ ।
ଅତ୍ୟନ୍ତ ଆକୁଳ ଚିତ୍ତେ ଗୋପାଳଙ୍କ ସାଥେ
ପୁରକୁ ଫେରିଲେ ନନ୍ଦ ମାରି ଡ଼ାକ ନେତ୍ରେ ।

ପ୍ରବେଶ ହୁଅନ୍ତେ ପୁରେ ଦେଖି ଯଶୋମତୀ
ବୋଇଲେ ମୋହର ରାମ କୃଷ୍ଣ କାହିଁ ଛନ୍ତି ।
ସମସ୍ତ ଘଟଣା ନନ୍ଦ କୁହନ୍ତେ ବୁଝାଇ
ହା କୃଷ୍ଣ ବୋଲି ପଡ଼ିଲେ ରାଣୀ ମୂର୍ଚ୍ଛା ହୋଇ
ସୁଦାମ ସୁବଳ ଆଦି ସଖାଗଣ ଯେତେ
କୃଷ୍ଣଙ୍କୁ ନ ଦେଖି କାନ୍ଦିଲେକ ଦୁଃଖଚିତ୍ତେ ।
ଧେନୁ ବତ୍ସା କୃଷ୍ଣ ବିନେ ତୃଣ ନ ଭକ୍ଷିଲେ
କେବଳ ଦିବସ ନିଶି ଲୋତକ ଢାଳିଲେ ।
ଗୋପର ଗୋପୀଏ ଶୁଣି ହେଲେ ଅଚେତନ
ସତେକି ପିଣ୍ଡରୁ କିଏ ନେଇଛି ଜୀବନ ।
ମାୟାଧର ମାୟାବଶେ ହୋଇ ସୁପ୍ରସନ୍ନ
ବ୍ରଜର ସର୍ବ ପ୍ରାଣୀଙ୍କୁ ଦେଲେ ଦରଶନ ।
ନିଜ ନିଜ ଭାବେ ଭେଳ ଯେତେ ବ୍ରଜବାସୀ
ସୁଖେ ଦିନ ନେଲେ ସର୍ବେ ଦୁଃଖ ତାପ ନାଶି
ବୃନ୍ଦାବନ ପରିତେଜ୍ୟା ପାଦେ ମାତ୍ର ନାହିଁ
ବ୍ରଜେନ୍ଦ୍ର ନନ୍ଦନ ବ୍ରଜେ ଜାଣନ୍ତି ସର୍ବେହିଁ ।
ଏମନ୍ତେ ବିଚିତ୍ର ଲୀଳା କରନ୍ତି ମାଧବ
ବ୍ରଜେ ନନ୍ଦସୁତ ମଥୁରାରେ ବାସୁଦେବ ।
ଏହା କହି ସୂତ ମୁନି ହୋଇଲେ ମଉନ
ଗୀତଛନ୍ଦେ ଭାବି ଲେଖେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ପୂର୍ଣ୍ଣ ବ୍ରହ୍ମ ମଥୁରାଲୀଳା ବର୍ଣ୍ଣନେ ନାମ
ପଞ୍ଚାଶ ଅଧ୍ୟାୟ

—:o:—

## ଏକପଞ୍ଚାଶତ୍ ଅଧ୍ୟାୟ
## ରୁକ୍ମିଣୀଙ୍କ ବିବାହ ବର୍ଣ୍ଣନ

ଶୌନକ ଉବାଚ

ପୌରାଣିକ ସୂତେ ପୁଣ ପୁଚ୍ଛନ୍ତି ଶୌନକ
କଂସ ନିଧନ କଥା ଯା କହିଲ ହେ ଠିକ ।
ତଦନ୍ତେ କି ଲୀଳା କଲେ କୃଷ୍ଣ ମଧୁପୁରେ
ପ୍ରକାଶ କର ସେ କଥା ସଞ୍ଚପି ଆମ୍ଭରେ ।

ସୂତ ଉବାଚ

କହନ୍ତି ଯେ ସୂତ ମୁନି ଶୁଣ ମନଦେଇ
ସାବଧାନେ ଶୁଣ ତୁମ୍ଭେ ମନ କର୍ଣ୍ଣ ଦେଇ ।

କୃଷ୍ଣଚନ୍ଦ୍ର ମଥୁରାରେ ବଳରାମ ସଙ୍ଗେ
ବିହରନ୍ତି ନିଶିଦିନ ନାନା ଲୀଳା ରଙ୍ଗେ ।
ତହୁଁ କେତେ ଦିନପରେ ମଥୁରା ବିହାରୀ
ଅବନ୍ତୀ ନଗରେ ଗଲେ ପ୍ରଭୁ ରାମ ହରି ।
ସାନ୍ଦିପନୀ ନାମରେ ଯେ ଅବନ୍ତୀ ନିବାସୀ
ତହୁଁ କୃଷ୍ଣ ବଳରାମ ଶିକ୍ଷା ଦେଲେ ଆସି ।
ତାଙ୍କ ମୃତପୁତ୍ର ଯମ ଭୁବନରୁ ଆଣି
ଗୁରୁଙ୍କୁ ଦକ୍ଷିଣା ଦେଲେ ଯଦୁକୁଳମଣି ।
ତାହାଙ୍କ ପାଶୁ ମେଲାଣି ଘେନି ବେନିଭାଇ
ବାହୁଡ଼ିଲେ ମଥୁରାକୁ ମହା ସୁଖୀ ହୋଇ ।
ତଦନ୍ତେ ଉଦ୍ଧବ ପଠାଇଲେ ବୃନ୍ଦାବନେ
ଯେଯାଇସାନ୍ତ୍ୱନାଦେଲେଗୋପଗୋପୀମାନେ
ଶ୍ରୀକୃଷ୍ଣଙ୍କ ପ୍ରିୟ ଗାଥା ସମସ୍ତଙ୍କୁ କହି
ଫେରିଲେ କୃଷ୍ଣଙ୍କ ପାଶେ ସେ ପ୍ରବୋଧଦେଇ
ବ୍ରଜବାସୀଙ୍କ ନିମନ୍ତେ କୃଷ୍ଣ ଉତ୍କଣ୍ଠିତ
ସେହି ପ୍ରସଙ୍ଗ ସର୍ବଦା ଉଦ୍ଧବ ସହିତ ।
ପୂର୍ବେ ଯେ କୃଷ୍ଣ ସୁନ୍ଦରୀ କଲେ କୁବୁଜାରେ
ବାଞ୍ଛା ପୂର୍ଣ୍ଣ କଲେ ତାର ହରଷ ଅନ୍ତରେ ।
କଂସର ଶ୍ୱଶୁର ଯେହୁ ଜରାସନ୍ଧ ରାଜା
ମଗଧେ ତାର ନିବାସ ବଳେ ମହାତେଜା ।
ଶୁଣିଲା କଂସକୁ କୃଷ୍ଣ କଲେଣି ନିଧନ
ଯୁଦ୍ଧ କରିବାକୁ ସେହୁ ହେଲା ଧାବମାନ ।
ତ୍ରୟୋବିଂଶ ଅକ୍ଷୌହିଣୀ ସେନା ସଙ୍ଗେ ଧରି
ଆସିଣ ବେଢ଼ିଲା ଦୁଷ୍ଟ ମଥୁରା ନଗରୀ ।
ଦେଖି ତା ଏମନ୍ତ କାର୍ଯ୍ୟ ପ୍ରଭୁ ଜନାର୍ଦ୍ଦନ
ପୃଥ୍ୱୀଭାର ଉଶ୍ୱାସିବେ କଲେ ଅନୁମାନ ।
ଦିବ୍ୟ ଦୁଇରଥ ଉପସ୍ଥିତ ସେହିକ୍ଷଣେ
ଦାରୁକ ସାରଥି ଅଛି କୃଷ୍ଣଙ୍କ ବିମାନେ ।
ତହୁଁ ଅତି କ୍ରୋଧଭରେ ହରି ସଙ୍କର୍ଷଣ
ସଂଗ୍ରାମ ସ୍ଥଳକୁ ଦୁହେଁ ଚଳିଲେ ବହନ ।
ଗଦାଘାତେ ଗଦାଧର ଶୀଘ୍ର ଗତି କଲେ
ବଳରାମ ହାତେ ହଳ ମୂଷଳ ଧଇଲେ ।
ବେନିଭାଇ ଗଦା ହଳ ମୂଷଳର ଘାତେ
ବିପକ୍ଷ ସେନାଙ୍କୁ ନିପାତିଲେ ଆଚମ୍ବିତେ ।

ଭଗ୍ନ ସୈନ୍ୟ ଜରାସନ୍ଧ ଯାଆନ୍ତେ ପଳାଇ
ପଛେ ପଛେ ବଳରାମ ତଡ଼ନ୍ତି ଗୋଡ଼ାଇ ।
ନିବୃତ୍ତ କଲେ ଶ୍ରୀହରି ବିନୟ ବଚନେ
ଦୁଇଭାଇ ଗଲେ ତହୁଁ ନିଜ ନିକେତନେ ।
ଏହିମତେ ଜରାସନ୍ଧ ସପ୍ତଦଶବାର
ସେନାଗଣ ସଙ୍ଗେ ଧାଡ଼ିଦେଲା ଦୁରାଚାର ।
ସେହିପରି ବେନିଭାଇ ସୈନ୍ୟ ବିନାଶିଲେ
ପୃଥିବୀର ଭାର ବିଶେଷରେ ଉଶ୍ୱାସିଲେ ।
ଇଚ୍ଛାମୟଙ୍କର ଇଚ୍ଛା କେବା ବୁଝିପାରେ
ଆଉଥରେ ଜରାସନ୍ଧ ଆସେ ଯୁଝିବାରେ ।
କାଳଯବନର ସଙ୍ଗେ ମୈତ୍ରତା ସେ କଲା
ତିନିକୋଟି ମ୍ଳେଚ୍ଛ ଆଣି ମଥୁରା ଘେରିଲା ।
ବେଢ଼ିଗଲେ ମ୍ଳେଚ୍ଛଥାଟ ଦେଖିଣ ଶ୍ରୀହରି
ବଳରାମଙ୍କ ସଙ୍ଗରେ ଯୁକ୍ତି ସେ କରି ।
ସ୍ଥିରକଲେ ସମୁଦ୍ରରେ ନିର୍ମାଣିବି ପୁର
ବିଶ୍ୱକର୍ମାଙ୍କୁ ସ୍ମରଣ କଲେ ଚକ୍ରଧର ।
କରଯୋଡ଼ି ବିଶ୍ୱକର୍ମା ଆସି ଉଭାହୋନ୍ତେ
ତାହାଙ୍କୁ ଆଦେଶ ଦେଲେ ପ୍ରଭୁ ଜଗନ୍ନାଥେ
ସମୁଦ୍ର ମଧ୍ୟରେ କରି ପୁରେକ ନିର୍ମାଣ
ଦ୍ୱାରବତୀ ନାମେ ପୁର ହୋଇବ ଗଠନ ।
ଚକ୍ର ବିଚକ୍ରରେ ସ୍ଥାନ କରି ମନୋହର
ଶତ କୋଟି ଅଟ୍ଟାଳିକା ଦିଶିବ ସୁନ୍ଦର ।
ଆଜ୍ଞାମାତ୍ରେ ବିଶ୍ୱକର୍ମା ନିର୍ମାଣି ନଗର
ନିବେଦନ କଲା ଆସି କୃଷ୍ଣଙ୍କ ଛାମୁର ।
ଶୁଣି ହରଷିତ ହେଲେ ଶ୍ରୀ ମଧୁସୂଦନ
ଯୋଗବଳ ପରକାଶ କଲେ ତତକ୍ଷଣ ।
ଜ୍ଞାତି ବନ୍ଧୁ ପରିବାର ସକୁଟୁମ୍ବଗଣେ
ମୁହୂର୍ତ୍ତକେ ଅଣାଇଲେ ଦ୍ୱାରକା ଭୁବନେ ।
ସମସ୍ତଙ୍କୁ ରଖି କୃଷ୍ଣ ଦ୍ୱାରକା ଦେଶରେ
ରାମଙ୍କ ସାଥେ ଆସିଲେ ମଥୁରା ନଗରେ ।
ଶୂନ୍ୟ ରଥ ଅସ୍ତ୍ର ପ୍ରଭୁ ଚତୁର୍ଭୁଜ ହୋଇ
ଗରୁଡ଼ ପିଠିରେ ବିଜେ କଲେ ବେନିଭାଇ ।
ଦେଖିଣ ଯବନ ରାଜା ତାହାଙ୍କୁ ଜାଣିଲା
ଏ ଯେ ବସୁଦେବ ସୁତ ଚତୁର୍ଭୁଜ ହେଲା ।
କୃଷ୍ଣ ମାରିବାକୁ ଧାଏଁ ଯବନ ରାଜନ
ତା ଦେଖି ରଡ଼ିଏ ଦେଲେ ଦେବକୀ ନନ୍ଦନ ।

ପଛୁଁ ଖେପାମାରି ଧାଏଁ ମ୍ଳେଚ୍ଛ ଅଧିକାରୀ
ପର୍ବତ ଉପରେ ଯେ ଉଠିଲେ ଚକ୍ରଧାରୀ ।
ପର୍ବତେ ଚଢ଼ିଲା କାଳଯବନ ପଛରେ
ଦେଖିପ୍ରବେଶିଲେ କୃଷ୍ଣ ପର୍ବତ ଗୁହାରେ ।
ଗୁହାରେ ପଶିଲା କାଳଯବନ ତକ୍ଷଣ
ମୁଚୁକୁନ୍ଦ ରାଜା ତହିଁ କରିଛି ଶୟନ ।
ପଦାଘାତ କଲା ତାକୁ ବଜ୍ରର ସମାନ
ନିଦ୍ରାଭଙ୍ଗି ଚକ୍ଷୁ ମେଲି ଚାହେଁ ନରରାଣ ।
ଦୃଷ୍ଟିମାତ୍ରେ ଭସ୍ମ ରାଶି ହେଲା ଦୁରାଶୟ
ମୁଚୁକୁନ୍ଦେ ଦୟାକଲେ ପ୍ରଭୁ ଲୀଳାମୟ ।
କୃଷ୍ଣଙ୍କୁ ବହୁତ ସ୍ତବ କଲା ସେ ରାଜନ
ତହିଁରେ ପ୍ରସନ୍ନ ହେଲେ ପ୍ରଭୁ ଜନାର୍ଦ୍ଦନ ।
ପ୍ରଣାମ କରି ରାଜନ ବିଦାୟ ଘେନିଲା
ବହୁତୀର୍ଥ ଭ୍ରମି ବଦରିକାଶ୍ରମେ ଗଲା ।
ପୁଣି କୃଷ୍ଣ ଆଉଥରେ ଆସି ମଧୁପୁରୀ
ତିନିକୋଟି ମ୍ଳେଚ୍ଛଙ୍କୁ ଜୀବନେ ଦେଲେ ମାରି
ଘେନିଗଲେ ଧନଦ୍ରବ୍ୟ ଦ୍ୱାରକା ନଗରେ
ପଥେ ଜରାସନ୍ଧ ପୁଣି ସେନା ସହ ଘେରେ ।
କେତେକେ କି ଲୀଳା କରନ୍ତି କୃଷ୍ଣ କେ ଜାଣଇ
ବ୍ରହ୍ମାଦିଙ୍କୁ ଅଗୋଚର ଅନ୍ୟଜାଣେ ନାହିଁ ।
ପୁଣି ତ୍ରୟୋଦଶ ଅକ୍ଷୌହିଣୀ ବେଢ଼ିଗଲେ
ଭୟ ବିନାଶନ ଭୟେ ଭୀତ ପ୍ରାପ୍ତ ହେଲେ ।
ଧନଆଦି ଫିଙ୍ଗି ପଳାଇଲେ ଦୁଇଜଣ
ପଛେ ଧାଏଁ ଜରାସନ୍ଧ କରିଣ ଗର୍ଜନ ।
ଅତି ଉଚ୍ଚ ପର୍ବତେ ଉଠିଲେ ଦୁଇଜନେ
ଦେଖି ଜରାସନ୍ଧ ରାଜା ଚିନ୍ତେ ମନେ ମନେ ।
ଅଗ୍ନି ବେଢ଼ା ଦେଇ ଆଜ ମାରିବି ଦୁର୍ଜ୍ଜନ
ତେବେ ଦୁଃଖ ଦୂରହେବ ଯାଙ୍କର ନିଧନ ।
ଏତେଭାଷି ଅଗ୍ନି ଘେରି ଦେଲା ସେ ପର୍ବତେ
ଚଉଦିଗ ଅଗ୍ନି ଉଠେ ଅତି ଆଚମ୍ବିତେ ।
ଚଡ଼ ଚଡ଼ ଶବ୍ଦରେ ଗିରିର କାଷ୍ଠ ଜଳେ
ନାନାଜାତି ପଶୁପକ୍ଷୀ ତହିଁ ପୋଡ଼ିମଲେ ।
ତହୁଁ ରାମକୃଷ୍ଣ ସେହି ପର୍ବତରୁ ଖରେ
ଲମ୍ଫଦେଇ ମାଲସାଟେ ପଡ଼ିଲେ ଭୂମିରେ ।
ଏଗାର ଯୋଜନ ଯାଏ ଉଚ୍ଚରୁ ପଡ଼ିଲେ
ଆପଣା ଜନଙ୍କ ପାଶେ ଯାଇଣ ମିଳିଲେ ।

ଦ୍ୱାରକାକୁ ଗଲେ ଦୁହେଁ ଧନ ଜନ ନେଇ
ମନେକରେ ଜରାସନ୍ଧ ମଲେ ଦୁଇ ଭାଇ ।
ନିଷ୍କଣ୍ଟକ ବୋଲି ସେହୁ ମନେ ବିଚାରିଲା
ସେନାସଙ୍ଗେ ମଗଧକୁ ଗମନ ସେ କଲା ।
ଏଣେ ହରି ଦ୍ୱାରକାରେ କଲେ ଯେ ନିବାସ
ନିତି ନିତି ନବ ଲୀଳା କରନ୍ତି ପ୍ରକାଶ ।
ଦ୍ୱାରକାରେ ଶୋଭା କରି ନ ହୁଏ ବର୍ଣ୍ଣନ
ଶୋଭଇ ସେ ସ୍ଥାନେ ସ୍ଥାନେ ଯେ ବିଚିତ୍ରବର୍ଣ୍ଣ
ସ୍ଥାନେ ସ୍ଥାନେ ନିର୍ମାଣ ସୁନ୍ଦର ସରୋବର
ଅମୃତ ସମାନ ଜଳ ସ୍ୱାଦୁ ମନୋହର ।
କୁମୁଦ କହ୍ଲାର ପଦ୍ମ ସରୋବର ଜଳେ
ହଂସ ସାରସାଦି ସନ୍ତରନ୍ତି କୁତୁହଳେ ।
ନଗର ଦୁଇ ପାରୁଶେ ବନ୍ଧୁଳର ଶ୍ରେଣୀ
ସ୍ଥାନେ ସ୍ଥାନେ ଉଦ୍ୟାନ ପକ୍ଷୀଙ୍କର ଧ୍ୱନି ।
କେତେରମ୍ୟ ଅଟ୍ଟାଳିକା କନକେ ନିର୍ମାଣ
ପ୍ରତିସ୍ଥାନେ ଏକ ଏକ କୁସୁମ ଉଦ୍ୟାନ ।
ନଗର ମଧ୍ୟେ ଶ୍ରୀପୁରୀ ମଣିରେ ନିର୍ମିତ
ତହିଁ ପରିବାର ସଙ୍ଗେ ଥାନ୍ତି ଜଗନ୍ନାଥ ।
ଅଷ୍ଟାଦଶ ମାତ ଥାନ୍ତି ଅଷ୍ଟାଦଶ ପୁରେ
ଶତ କୋଟି ଅଟ୍ଟାଳି ଯେ ପୁରୀର ଭିତରେ ।
ନୀଳମଣି ରକ୍ତମଣି ଶ୍ୱେତ ପୀତମଣି
ସ୍ଫଟିକ ହୀରକ ସଙ୍ଗେ ମୁକ୍ତାର ଶ୍ରେଣୀ ।
ଚନ୍ଦ୍ରକାନ୍ତ ସୂର୍ଯ୍ୟକାନ୍ତ ମଣି ପଦ୍ମରାଗେ
ପ୍ରତିଗୃହେ ଶୋଭିତ ନୟନେ ଛଟା ଲାଗେ ।
ଦ୍ୱିତୀୟେ ବୈକୁଣ୍ଠ ଅଟେ ଦ୍ୱାରକା ନଗର
ସୁଖେ ବିହରନ୍ତି ତହିଁ ରାମ ହଳଧର ।
ଯେମନ୍ତ ରାମକୃଷ୍ଣଙ୍କ ବିବାହ ଘଟଣ
ସଂକ୍ଷେପି କହୁଛି ଏବେ ମନ ଦେଇ ଶୁଣ ।
ରୈବତ ରାଜାର କନ୍ୟା ରେବତୀ ନାମରେ
ବଳରାମ ବିଭାହେଲେ ଅତି ହରଷରେ ।
ଭୀଷ୍ମକରାଜ ନନ୍ଦିନୀ ରୁକ୍ମିଣୀ ସୁନ୍ଦରୀ
ତାହାଙ୍କୁ ବିଭା ହୋଇଲେ ପ୍ରଭୁ ଚକ୍ରଧାରୀ ।
ଶୌନକ ପୁଚ୍ଛିଲେ ପୁଣି ଆହେ ପୌରାଣିକ
କି ରୂପେ ବିବାହ କଲେ ଜଗତ ନାୟକ ।
ଆମ୍ଭ ଆଗେ ଠିକେ ୨ କରି ପରକାଶ
ଶ୍ରବଣ କରିବୁ ସର୍ବେ ସେ ବିଭା ରହସ୍ୟ ।
ସୂତ ମୁନି ବୋଲନ୍ତି ଶୁଣ ତପୋଧନ
ରୁକ୍ମିଣୀ ବିଭାଚରିତ ଅପୂର୍ବ କଥନ ।
ଭୀଷ୍ମକ ନାମେଣ ରାଜା ବିଦର୍ଭ ନଗରେ
ମହାସାଧୁ ଧର୍ମଶୀଳ ବିଖ୍ୟାତ ସଂସାରେ ।
ସେ ରାଜାର ପାଞ୍ଚପୁତ୍ର ମହାବଳବନ୍ତ
ରୁକ୍ମ ନାମରେ ଅଟଇ ଯେହୁ ଜ୍ୟେଷ୍ଠସୁତ ।
ରୁକ୍ମରଥ ରୁକ୍ମବାହୁ ରୁକ୍ମକେଶ ବୀର
ରୁକ୍ମମାଳୀ ନାମେଣ ଯେ କନିଷ୍ଠ କୁମର ।
ରୁକ୍ମିଣୀ ନାମରେ ସତୀ ଅପୂର୍ବ ସୁନ୍ଦରୀ
ଲକ୍ଷ୍ମୀ ଅଂଶରେ ଜନମ ସେହି ସୁକୁମାରୀ ।
ଅବନୀ ମଣ୍ଡଳେ ଛନ୍ତି ଯେତେକ ସୁନ୍ଦରୀ
ସଭିଙ୍କ ଉପରେ ରୂପବତୀ ସେ ଚତୁରୀ ।
ତପତ କାଞ୍ଚନ ଜିଣି ଅଙ୍ଗ ପାଏ ଶୋଭା
ଗୋଟିଏ ଅନଙ୍ଗ ଦେଖି ହୋଇବ ଯେ ଲୋଭା
କୃଷ୍ଣଙ୍କୁ ପତି ରୂପରେ ପାଇବା ନିମନ୍ତେ
ଦୁର୍ଗା ଦେବୀଙ୍କର ପୂଜା କରେ ଦିବାରାତ୍ରେ
ରୁକ୍ମ ଦୁରାଚାର ତହିଁ ପାଷାଣ୍ଡ ହୋଇଲା
ଦମଘୋଷ ପୁତ୍ର ସଙ୍ଗେ ସମ୍ବନ୍ଧ ସେ କଲା ।
ପିତୃଦତ୍ତ କନ୍ୟାବୋଲି ରହିଛି ଶାସ୍ତ୍ରରେ
ମୂଢ଼ ପଣେ ରୁକ୍ମ ଦୁଷ୍ଟ ଅବିଚାର କରେ ।
ବିବାହର ଦିନ ସର୍ବ ଶୁଭେ ହେଲା ସ୍ଥିର
ସକଳେ ଜାଣିଲେ ରୁକ୍ମିଣୀଙ୍କ ବିଭାଘର ।
ରାଜାଗଣେ ରୁକ୍ମ ପେଠାଇଲା ନିମନ୍ତ୍ରଣ
ବିବାହ ହେଉଛି ଶିଶୁପାଳ ହୃଷ୍ଟମନ ।
ଭୀଷ୍ମକ ନୃପତି ହେଲା ଅତି ବିଷାଦିତ
ଦୁଷ୍ଟ ପୁତ୍ର ଜାଣି ମନେ ଭୟାକ୍ରାନ୍ତ ବହୁତ ।
ଆହା ମୁଁ ସତେ ଏଡ଼େ ଭାଗ୍ୟ ପାଇବି କେମନ୍ତେ
କନ୍ୟାଦାନ ଦେବି ଜଗନ୍ନାଥଙ୍କର ହସ୍ତେ ।
ପରଂବ୍ରହ୍ମ ହରି ତିନି ଜଗତର ଗୁରୁ
ମହା ମହିମାରୁ ସେ ବାଞ୍ଛା କଳ୍ପତରୁ ।
ତାଙ୍କର ଚରଣ ତଳେ କନ୍ୟା ସମର୍ପିବି
ଏ ସୁଭାଗ୍ୟ ସତେ କି ମୁହିଁ ଅରଜିବି ।
ସନ୍ତାପିତ ହୋଇ ରାଜା କରଇ ରୋଦନ
ରୁକ୍ମିଣୀ ଏ ସବୁ କଥା କଲେ ଯେ ଶ୍ରବଣ ।

କାନ୍ଦି କାନ୍ଦି ଦେବୀ କହନ୍ତି ସେ ସଖୀଗଣେ
ମୁଁ ତ ଅଭାଗିନୀ ଭାଗ୍ୟ ପାଇବି କେସନେ ।
ଏସବୁ କର୍ମର ଦୋଷ କାହାରେ କହିବି
କୃଷ୍ଣେ ପତି ନ ପାଇଲେ ନିଶ୍ଚୟ ମରିବି ।
ଆହା କାହିଁ ଅଛ କୃଷ୍ଣ ବିପଦ ଭଞ୍ଜନ
ନିଜ ଦାସୀକି ଆପଣେ କର ହେ ରକ୍ଷଣ ।
ଏତେ ବୋଲିଣ ସାଧବୀ ଚିନ୍ତି ମନେ ମନ
ପୁରୋହିତଙ୍କୁ ଅଣାଇଁ କହିଲେ ବଚନ ।
ତୁରନ୍ତେ ଗମନ କର ଦ୍ୱାରକା ନଗରେ
ମୋର ନିବେଦନ କହ କୃଷ୍ଣଙ୍କ ଛାମୁରେ ।
ଶୋକ ଜଳେ ଭାସୁଛି ରୁକ୍ମିଣୀ ତୁମ୍ଭ ଦାସ
ରକ୍ଷାକର ପ୍ରାଣନାଥ ବିଦର୍ଭକୁ ଆସି ।
ଦୀନବନ୍ଧୁ ନାମ ତୁମ୍ଭେ କରିଛ ଧାରଣ
ସେ ନାମ ହଜିବ ହେଲେ ରୁକ୍ମିଣୀ ମରଣ ।
ଭୁବନ ସୁନ୍ଦର କୃଷ୍ଣ ତୁମ୍ଭ ନାମ ଶୁଣି
ପ୍ରାଣମନ ଶ୍ରୀଚରଣେ ଅର୍ପିଛି ରୁକ୍ମିଣୀ ।
ଏହି ଭାବରେ ଅନେକ କରିଣ ମିନତି
ଦ୍ୱାରକାକୁ ବ୍ରାହ୍ମଣକୁ ପଠାଇଲେ ସତୀ ।
ଅପୂର୍ବ ଘଟଣ କଥା ଶୁଣ ମୁନିଗଣ
ଦ୍ୱାରକା ନଗର ଠାକୁ ଚଳିଲା ବ୍ରାହ୍ମଣ ।
ବ୍ରାହ୍ମଣ ଚକିତ ଦ୍ୱାରକାର ଶୋଭା ଚାହିଁ
ମନେ ଭାଳେ ମନୁଷ୍ୟର ସାଧ୍ୟ ଏ ନୁହଇଁ ।
ସାକ୍ଷାତ ଈଶ୍ୱର କୃଷ୍ଣ ଜଗତର ପତି
ଦରଶନ କରି ଆଜ ଶୁଦ୍ଧ ହେବ ମତି ।
ମନେ ମନେ ଏତେ ଚିନ୍ତି ଗଲା ସଭାଠାରେ
ବ୍ରାହ୍ମଣକୁ ଦେଖି କୃଷ୍ଣ ଉଠିଲେ ସତ୍ୱରେ ।
ପାଦ୍ୟ ଅର୍ଘ୍ୟ ଦେଇ କଲେ ବ୍ରାହ୍ମଣେ ପୂଜନ
ସୁଧାସ୍ୱାଦୁ ଦ୍ରବ୍ୟ କରାଇଲେ ସେ ଭୋଜନ ।
ଉତ୍ତମ ଶଯ୍ୟାରେ ବିପ୍ର କଲାକ ଶୟନ
ଆପଣେ ଶ୍ରୀହରି କଲେ ପାଦ ସମୋହନ ।
ବ୍ରାହ୍ମଣର ପ୍ରିୟ ସେ ବ୍ରାହ୍ମଣ୍ୟ ଦେବ ହରି
ବ୍ରାହ୍ମଣ ମହିମା ଅନ୍ୟେ ଜାଣିବେ କିପରି ।
ବିନୟ କରିଣ କୃଷ୍ଣ ପୁଚ୍ଛନ୍ତି ବ୍ରାହ୍ମଣେ
ଏଦେଶ ପବିତ୍ର ତୁମ୍ଭ ଆସିବା କାରଣେ ।
କି ନିମନ୍ତେ କାହୁଁ କରିଅଛ ଆଗମନ
କହ କହ ମୋ ଆଗରେ ହେ ବିପ୍ର ବଚନ ।

ହେ ନରହରି କହେ ନିବେଦନ ଶୁଣ ହରି
ଭୀଷ୍ମକ କନ୍ୟା ରୁକ୍ମିଣୀ ଭୁବନ ସୁନ୍ଦରୀ ।
ଶିଶୁକାଳରୁ ସେ ଧଡପଣେ ହେ ତୁମ୍ଭଙ୍କୁ
ବରିଣ କରି ସେବିଲେ ଦେବୀ ଗଉରୀଙ୍କୁ ।
ତାଙ୍କ ପିତା ତୁମ୍ଭଙ୍କୁ ଦୁହିତା ଦେବାପାଇଁ
ସେ ଭୀଷ୍ମକ ରାଜା ଚିନ୍ତା କରନ୍ତି ଗୋସାଇଁ ।
ବଡ଼ ପୁତ୍ର ରୁକ୍ମ ନାମେ ଅତି ଦୁରାଚାର
ପାଷାଣ୍ଡ ଭାବରେ ସେହୁ କରେ ଅବିଚାର ।
ଦମଘୋଷ ପୁତ୍ର ଶିଶୁପାଳ ଚେଦିପତି
ରୁକ୍ମିଣୀରେ ସମ୍ବନ୍ଧ ସେ କଲା ତା ସଙ୍ଗତି ।
ଏକଥା ଶୁଣି ରୁକ୍ମିଣୀ ଅତି ଦୁଃଖମନେ
ପତ୍ର ଦେଇ ମୋତେ ପେଷିଛନ୍ତି ଏ ଭୁବନେ ।
ବିଳମ୍ବ କରିବ ଯଦି ସେଠାକୁ ଯିବାରେ
ରୁକ୍ମିଣୀ ତେଜିବେ ପ୍ରାଣ ଜାଣ ନିଶ୍ଚୟରେ ।
ଯାହା ଲେଖିଛନ୍ତି ସେହି ରୁକ୍ମିଣୀ ସୁନ୍ଦରୀ
ହେ ଶ୍ରୀହରି ତାହା ପଢ଼ି ବୁଝ ଭଲ କରି ।
ତାଙ୍କର ଶ୍ରୀହସ୍ତାକ୍ଷର ଅଟେ ଏ ପତ୍ରିକା
ଭାଷାରୁ ସବୁ ଜାଣିବ ଆହେ ଗିରଟେକା ।
ଭୁବନ ସୁନ୍ଦର କୃଷ୍ଣ ଘେନ ନିବେଦନ
ତୁମ୍ଭର ମହିମା ଗୁଣ କରିବା ଶ୍ରବଣ ।
ହୃଦୟେ ପ୍ରବେଶି ସେହି ଗୁଣ କର୍ଣ୍ଣଦ୍ୱାରେ
ଶୀତଳ ହୋଇଲା ଅଙ୍ଗ ତାପ ଗଲା ଦୂରେ ।
ଅଖିଳ ମୋହନ ରୂପ ନୟନ ଆରତି
ଶୁଣି ଦେଖିବାକୁ ଇଚ୍ଛା ହୁଏ ପ୍ରାଣପତି ।
ସେହି ମନପ୍ରାଣ ସମର୍ପିଲେ ଶ୍ରୀ ଚରଣେ
ଦାସୀରେ କରନ୍ତୁ ଦୟା ପ୍ରଭୁ ନିଜଗୁଣେ ।
ହେ ପୁରୁଷ ସିଂହ ବାରେ କରେ ନିବେଦନ
ସିଂହର ଭାଗ ନେବାକୁ ଶୃଗାଳର ପଣ ।
ଧ୍ୟାନେ ତବ ପାଦପଦ୍ମ ଯୋଗୀ ନ ପାଆନ୍ତି
ସେ ପାଦ ସେବାକୁ ଶିବ ସର୍ବଦା ଇଚ୍ଛନ୍ତି ।
ମୋହର ଭାଗ୍ୟରେ ଯଦି ଥାଏ ସେ ଚରଣ
ତେବେ ମୁଁ ଜାଣିବି ଭାଗ୍ୟ ଉଦେ ହେଲା ଜାଣ
ଏହିମତେ ବହୁବିଧ ରୁକ୍ମିଣୀ ବଚନ
ପତ୍ରିକାରେ ସତୀ କରି ଅଛନ୍ତି ରଚନ ।
ବ୍ରାହ୍ମଣ ମୁଖରୁ ପୁଣି ସବୁ କଥା ଯାକ
ଶ୍ରବଣ କଲେ ଲୁଣଲେ ବ୍ରହ୍ମାଣ୍ଡ ନାୟକ ।

ବ୍ରାହ୍ମଣ ବୋଲଇ କୃଷ୍ଣ ଶ୍ରୀମୁଖରେ ଆଉର
ରୁକ୍ମଣୀଙ୍କ ନିବେଦନ କହିଲାଟି ହରି ।
ଯାହାଲେଖା ହୋଇଅଛି ପଢ଼ିଲତ ପୁଣି
ଯାହା ଇଚ୍ଛା ତାହା ଏବେ କର ଯଦୁମଣି ।
ରୁକ୍ମଣୀଙ୍କ ସନ୍ଦେହ ଶୁଣନ୍ତେ ଯଦୁବୀର
ଅତି ଉତ୍କଣ୍ଠିତ ମନେ ହୋଇଲେ ଅଧୀର ।
ହସି ବୋଇଲେ ହେ ବିପ୍ର ବିଦର୍ଭକୁ ଯିବ
ଶୋକ ସାଗରରୁ ରୁକ୍ମଣୀଙ୍କୁ ଉଦ୍ଧାରିବ ।
ଏତେ ବୋଲି ଉତ୍କଣ୍ଠାରେ ରାତ୍ର ଶେଷକର
ପ୍ରଭାତେ ଦାରୁକେ ଆଜ୍ଞା କହିଲେ ଶ୍ରୀହରି ।
ବେଗେ ରଥ ସଜକର ବିଦର୍ଭକୁ ଯିବି
ଆଉ କ୍ଷଣେମାତ୍ର ବିଳମ୍ବ ମୁଁ ନ ସହିବି ।
ଆଜ୍ଞା ମାତ୍ରକେ ଦାରୁକ ଆଣିଲା ସେ ରଥ
ବସିଲେ ବିପ୍ରଙ୍କ ସାଥେ ପ୍ରଭୁ ଜଗନ୍ନାଥ ।
ଏକଇ ରାତ୍ରେ ବିଦର୍ଭେ ହୋଇଲେ ପ୍ରବେଶ
ରୁକ୍ମଣୀଙ୍କ ଅନୁରୋଧ ରଖି ପୀତବାସ ।
ପଡ଼ିଛି ଚହଳ ଶିଶୁପାଳ ବିଭାପାଇଁ
ହଜାର ହଜାର ରାଜା ଆସିଛନ୍ତି ତହିଁ ।
ସେହିରାତ୍ରେ ସୁମଙ୍ଗଳ ବିଦର୍ଭ ନଗରେ
କୃଷ୍ଣଚନ୍ଦ୍ର ପ୍ରବେଶିଲେ ଆନନ୍ଦ ମନରେ ।
ବିଦର୍ଭ ନଗର ମଣ୍ଡି ହୋଇଛି ଯତନେ
ସାରି ସାରି ରୋପଣ ଯେ ରମ୍ଭା ତରୁମାନେ
ତୋରଣ କେତେ ଯେ ତାର କଳନା ନ ଯାଏ
ଚିତ୍ର ବିଚିତ୍ର ପତାକା ତହିଁ ରାଜୁଥାଏ ।
ପ୍ରତ୍ୟେକ ତୋରଣ ପାଶେ ବସି ଭାଟମାନେ
ମଙ୍ଗଳ ଗୀତିକା ପଢ଼ୁଥାଆନ୍ତି ବିଧାନେ ।
ଜେମାକୁ ମଙ୍ଗଳ ସ୍ନାନ କରାଇ ରାଜନ
ଦାସୀମାନେ ଆଜ୍ଞାଦେଲେ ସୁବେଶ କାରଣ ।
ଆଦେଶ ମାତ୍ରକେ ଦାସୀ ପିଠିରେ ବସାଇ
ବେଶ ରଚନା କରିଲେ କି କହିବି ମୁହିଁ ।
ଏତେକ ସୁନ୍ଦରୀ ହୀର ଯେ ବାଳୀ ରତନ
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ମଧ୍ୟେ ଯେହୁ ଗଣ୍ୟ ।
ନାନାରତ୍ନ ଅଳଙ୍କାର ଖଞ୍ଜନ୍ତେ ଅଙ୍ଗରେ
ଖଞ୍ଜନାକ୍ଷି ଶୋଭା କେହୁ ବର୍ଣ୍ଣିତ ନ ପାରେ ।
ସ୍ୱୟଂ ମହାଲକ୍ଷ୍ମୀ ଯେହୁ ମର୍ତ୍ତ୍ୟେ ଜନ୍ମିଛନ୍ତି
ସକଳ ଗୁଣରେ ସେହୁ ସମ୍ପୂର୍ଣ୍ଣା ଅଟନ୍ତି ।

ଶିଶୁପାଳର ଯେତେକ ସହାୟ ନୃପତି
କନ୍ୟାର ରୂପକୁ ଦେଖି ତୋଷ ହେଲେ ଅତି
ଜରାସନ୍ଧ ସଭାମଧ୍ୟେ ବୋଇଲା ବଚନ
ଶୁଣିଛି କୃଷ୍ଣଟା ଅଟେ ଗୋପାଳ ନନ୍ଦନ ।
କ୍ଷତ୍ରିୟମାନଙ୍କ ସଙ୍ଗେ ମିଳନ ହେବାକୁ
ଅପାର ଚେଷ୍ଟା କରୁଛି ସଦା ସେ ମନକୁ ।
ମହାରାଜା ଶିଶୁପାଳ କ୍ଷତ୍ରୀୟ ନନ୍ଦନ
କୃଷ୍ଣଟା କାହୁଁବା ହେବ ଏହାଙ୍କ ସମାନ ।
ଏହିମତେ ଗର୍ବରେ କହନ୍ତି ବାରମ୍ବାର
ସାଧୁ ନରପତି ଶୁଣି ଦୁଃଖିତ ଅପାର ।
ଏଣେ ଯେ ରୁକ୍ମଣୀ ଦେବୀ ଧରି ସଖୀକର
ଅତ୍ୟନ୍ତ ଦୁଃଖିତ ମନେ ବୋଇଲେକ ଗୀର ।
କହ ସଖୀ ଆଉ ପ୍ରାଣେ କିସ ପ୍ରୟୋଜନ
ନ ଆସିଲେ ଯଦୁବୀର ମୋ ଜୀବ ଜୀବନ ।
ସେହି ଦ୍ୱିଜ ନ ଆସିଲେ ବାରତା ଘେନଣ
ମରିବି ନିଶ୍ଚୟ ସଖୀ ଗରଳ ଭକ୍ଷଣ ।
ଅତି ବିକଳେ ଏମନ୍ତେ କାନ୍ଦନ୍ତି ରୁକ୍ମଣୀ
ବୋଲନ୍ତି ସଂସାରେ ମୁହିଁ ବଡ଼ ଅଭାଗିନୀ ।
ଦ୍ୱାରକା ବିହାରୀ ମୋର ଜୀବନ ଠାକୁର
କେତେ ଆଉ ଚାହିଁବି ଗୋ ପଥ ତାହାଙ୍କର ।
ଜହର ମହୁରୀ ଖାଇ ମରିବି ମିତଣୀ
ନିଶ୍ଚୟ ଜାଣ ଗୋ ସତ୍ୟ ମୋର ଦୃଢ଼ବାଣୀ
କାହାରି ମନା ଶୁଣିବି ନାହିଁ ଆଉ ସଖି
ଏ ଦେହ ଛାଡ଼ିବି ହଳାହଳ ବିଷ ଭକ୍ଷି ।
ଯେଉଁ ଦ୍ୱିଜଙ୍କୁ ପଠାଇ ଥିଲି ଦ୍ୱାରକାକୁ
ବାହୁଡ଼ି ନଇଲେ ସେହୁ ବିଦର୍ଭ ପୁରକୁ ।
ଜାଣି ନ ପାରୁଛି ହେଲା କିବା ସମାଚାର
ବିବାହ ରଜନୀ ଆଜି କଲେ କି ବିଚାର ।
କୃଷ୍ଣଚନ୍ଦ୍ରଙ୍କ ଚରଣ ପଙ୍କଜ ବିହୀନେ
କିସ ପ୍ରୟୋଜନ ଆଉ ଏ ଛାର ଜୀବନେ ।
ବୃଥାରେ କି କାର୍ଯ୍ୟ ସଖି ଏ ଦେହ ଜୀବନେ
ମରିବାର ଭଲ ସିନା କୃଷ୍ଣ ଅଦର୍ଶନେ ।
ଶିବା କାହିଁପାଇଁ ନ ହୋଇଲେ ଅନୁକୂଳ
କେଉଁ ଅପରାଧ ଦେଖି ହେଲେ ପ୍ରତିକୂଳ ।
କି ଅବା ଏ ପାପିନୀକି ଦେଖି ମହେଶାନୀ
ବିମୁଖ ହୋଇଲେ କି ଗୋ ପରାଣ ସଜନୀ ।

ଯେଣୁ ପୂରାଇଲେ ନାହିଁ ମୋର ମନସାଧ
ତାଙ୍କ ଚରଣେ ମୁଁ କଲି କେଉଁ ଅପରାଧ ।
ଏସନ ବିଳାପ ବାଣୀ ଶୁଣି ସଖିଗଣ
ପ୍ରବୋଧି କହିଲେ କିମ୍ପା କାନ୍ଦ ଅକାରଣ ।
ଭକତ ବତ୍ସଳ ସେହୁ ଦୀନଜନ ବନ୍ଧୁ
ଆସିବେ ଅବଶ୍ୟ ଧନ ! ଯଦୁକୁଳ ଇନ୍ଦୁ ।
ତୁମ୍ଭ ହୃଦୟ ସମ୍ପତ୍ତି ସେ ଶ୍ୟାମସୁନ୍ଦର
ନିଶ୍ଚୟ ଆସିବେ ଜେମା ନହୁଅ କାତର ।
ଏ ତୁମ୍ଭ ବାମ ନୟନ ହେଉଛି ସ୍ଫୁରଣ
ବିଫଳ ନୋହିବ କେବେ ଏ ଶୁଭ ଲକ୍ଷଣ ।
ଆଉ ବିଳାପ ନକର ରୁହ ଧୈର୍ଯ୍ୟ ଧର
ତୁମ୍ଭର କ୍ରନ୍ଦନେ କୋହ ଉଠୁଛି ଆମ୍ଭର ।
ଅନ୍ତଃପୁରେ ରାଜଜେମା ଏପରି କାନ୍ଦନ୍ତି
ସେହିକାଳେ ଏକ ସଖୀ ମିଳିଲା ଝଟତି ।
ନକାନ୍ଦ ନକାନ୍ଦ ଆଉ ଆଗୋ ଜେମାମଣି
ବାହାରୁ ଦେଖି ଆସିଲି ଅପୂରୁବ ଠାଣି ।
ନନ୍ଦୀଘୋଷ ନାମେ ରଥ ଉପରେ ଅଛନ୍ତି
ଲାବଣ୍ୟ ସୁନ୍ଦର ନବ ଜଳଧର କାନ୍ତି ।
କି କହିବ ତାହାଙ୍କର ରୂପଛଟା ଶିରୀ
କୋଟି କନ୍ଦର୍ପ ମୂରତି ବଚନ ମାଧୁରୀ ।
ତେଣୁ ଗୋ ବିଳାପ ଏବେ ଆଜନମ ସୁଖୀ
ସେହି ଶ୍ୟାମଚନ୍ଦ୍ର ଆସିଛନ୍ତି ଗୋ ସୁମୁଖୀ ।
ଘୁଞ୍ଚିଲା ଏଣିକି ଧନ ତୁମ୍ଭର ଦୁର୍ଦ୍ଦଶା
ଯଦୁକୁଳଚନ୍ଦ୍ର ପୂର୍ଣ୍ଣ କରିବେ ଗୋ ଆଶା ।
ଏମନ୍ତେଣ ହସି ହସି କହନ୍ତି ସେ ସଖୀ
ତାହାଶୁଣି ହରଷ ହୋଇଲେ ଇନ୍ଦୁମୁଖୀ ।
ପୁଲକେ ପୂରିଲା ତନୁ ଆନନ୍ଦାଶ୍ରୁ ଝରେ
ଚନ୍ଦ୍ର ବଦନୁ ତାଙ୍କର ବଚନେ ନସ୍ଫୁରେ ।
ଦରହାସେ ସଖୀ ମୁଖ ଚାହିଁଲେ ରୁକ୍ମିଣୀ
ଜାଣିଲେ ଦଶା ଫେରିଲା ଆଉ କି ଭାଳେଣି ।
ପିତାଙ୍କ ଆଦେଶେ ସଖୀମାନଙ୍କର ସଙ୍ଗେ
ଅମ୍ବିକା ଦେବୀ ମନ୍ଦିରେ ଚଳିଲେ ସରାଗେ ।
ଅତି ଆନନ୍ଦ ମନରେ ଅମ୍ବିକା ପୂଜିଲେ
ଦୁଇକର ଯୋଡ଼ି ମନକଥା ଜଣାଇଲେ ।
ଆଗୋ ଶିବେ ! ତୁମ୍ଭ ପାଦେ ମାଗୁଛି ଏତିକି
ମୋତେ ପତି ଦାନ କର ଶ୍ରୀଯଦୁପତିଙ୍କି ।
ଏମନ୍ତ ଜଣାଇଁ ନମସ୍କାର କଲେ ସତୀ
ସଖୀଙ୍କ ସଙ୍ଗରେ ତହୁଁ ଧୀରେ କଲେ ଗତି ।
ଚଳନ୍ତେ ପାଦ ମଞ୍ଜୀର ବାଜେ ସୁମଧୁର
ନିତମ୍ବେ କିଙ୍କିଣୀ ଦାମ ଅତି ମନୋହର ।
ଶ୍ରୀମୁଖ ଶଶୀକି ଦେଖି ଚନ୍ଦ୍ର ପାଏ ଲାଜ
କୁଟିଳ କୁନ୍ତଳେ ବେଣୀ ଝୁଲେ ପୁଷ୍ପେ ସାଜ
ପ୍ରିୟସଖୀ କରଧରି ଆନନ୍ଦେ ରୁକ୍ମିଣୀ
ମନ୍ଥର ଗମନେ ଶୋଭା ସର୍ବ ସୁଲକ୍ଷଣୀ ।
ହୃଦେ କୃଷ୍ଣଙ୍କୁ ଭାବନା କରି ସୁକୁମାରୀ
ଧୀରେ ଧୀରେ ବାହୁଡ଼ିଲେ ଦେବୀ ପୂଜାସାରି
ଘନ ଘନ ଚାହିଁଛନ୍ତି ଗଗନ ପଥକୁ
ନ ଦେଖି କୃଷ୍ଣ କାନ୍ଦଣ କହନ୍ତି ସଖୀଙ୍କୁ ।
କାହାନ୍ତି ମୋ ପ୍ରାଣନାଥ ଦେଖାଅ ସିଙ୍ଗଣୀ
ତାଙ୍କ ବିନେ ପିଣ୍ଡେ ପ୍ରାଣ ଧରିବି କି ଘେନି
ଏହିପରି କହୁ କହୁ ସଖୀକର ଧରି
ଭକତ ବତ୍ସଳ ପ୍ରଭୁ ଶୂନ୍ୟେ ରହିକରି ।
ବୋଇଲେ ନକାନ୍ଦ ପ୍ରିୟେ ଆସ ପ୍ରାଣଧନ
ଏତେବୋଲି କରଧରି ନେଲେ ଜନାର୍ଦ୍ଦନ ।
ନନ୍ଦିଘୋଷ ରଥପରେ ବସାଇ ସତ୍ୱରେ
ବାହୁଡ଼ା ବିଜୟ କଲେ ପ୍ରଭୁ ଚକ୍ରଧରେ ।
ଶ୍ୟାମ ସୁନ୍ଦର ବାମରେ ରୁକ୍ମିଣୀ ସୁନ୍ଦରୀ
ରଥ ଉପରେ ଶୋଭନ୍ତି ଘନେ ବିଦ୍ୟୁତ୍ ପରି
ଅସତ ନୃପ ଯେତେକ ଚମକିତ ହୋଇ
କିଏ ନେଲା ୨ ବୋଲି ଶୂନ୍ୟେ ଦେଲେ ଚାହିଁ
ତହୁଁ ଦୁଷ୍ଟ ରାଜାମାନେ ଦେଖି ଏହି କାର୍ଯ୍ୟ
ଅପମାନ ପାଇ ସେ ବୋଲନ୍ତି ଯୁଦ୍ଧ ସାଜ ।
ସମୁଦ୍ର ସମାନ ସୈନ୍ୟ କୃଷ୍ଣଙ୍କୁ ବେଢ଼ିଲେ
ଅସ୍ତ୍ର ଶସ୍ତ୍ର ଚଉଆଡ଼ୁ ବରଷଣ କଲେ ।
ଶକ୍ତି ଭଲ୍ଲ ମୂଷଳ ମୁଦ୍ଗର ଶେଲବାର
ଇନ୍ଦ୍ରଜାଲ ବ୍ରହ୍ମଜାଲ ଖର ଶାଣ ଧାର ।
ଅର୍ଦ୍ଧଚନ୍ଦ୍ର ଅଗ୍ନିବାଣ ତ୍ରିଶୂଳ ତୋମର
ବାୟୁ ଅସ୍ତ୍ର ବରୁଣାସ୍ତ୍ର ପେଶିଲେ ସତ୍ୱର ।
ଶରଜାଳେ ଅନ୍ଧକାର ହୋଇଲା ଅମ୍ବର
ଚକିତ ରୁକ୍ମିଣୀ ଦେବୀ ରଥର ଉପର ।
ଆଶ୍ୱାସୀ କହନ୍ତି କୃଷ୍ଣ ମଧୁର ବଚନ
ଭୟ ଦୂରେ ତେଜ ପ୍ରିୟେ ସୁସ୍ଥ କର ମନ ।

ବିନାଶିବି ଏହି ସବୁ ପତଙ୍ଗ ମାନଙ୍କୁ
ଏତେବୋଲି ଅସ୍ତ୍ରଧରି ବିନ୍ଧିଲେ ତାହାଙ୍କୁ ।
ଆପଣା ଅସ୍ତ୍ର ପ୍ରହାରେ ଶ୍ରୀମଧୁସୂଦନ
ବିପକ୍ଷ ସେନାଙ୍କୁ କରିଦେଲେ ଛିନ୍ନ ଭିନ୍ନ ।
କେତେହାତୀ କେତେଘୋଡ଼ା ପଡ଼ିଲେ ସମରେ
ରକତ ନଦୀ ବହିଲା ଅତି ଖରତରେ ।
ଏହିପରି ନାରାୟଣ କରନ୍ତି ସଂଗ୍ରାମ
ସେହିକାଳେ ତହିଁ ପ୍ରବେଶିଲେ ବଳରାମ ।
ନୀଳପାଟ କଟି ଭିଡ଼ି ମତ୍ତ ହଳଧର
ସୁଢ଼ଳ ଗତି ଭାବରେ କମ୍ପେ ଧରାଧର ।
ଲଙ୍ଗଳ ମୂଷଳ ହସ୍ତେ ମିଳି ରଣ ସ୍ଥଳେ
ବିପକ୍ଷମାନଙ୍କୁ ଦେଖି ହଲି କୋପାନଳେ ।
ବିପକ୍ଷ ସୈନ୍ୟମାନଙ୍କୁ କଲେ ମରଦନ
ଦଳି ଦଳି ନାଦେ ମହୀ ହେଲା କମ୍ପମାନ ।
ପଳାଇଲେ ରାଜାମାନେ ଛତ୍ରଭଙ୍ଗ ଦେଇ
ଜରାସନ୍ଧ ଦନ୍ତବକ୍ର ଗଲେକ ପଳାଇ ।
ଭଗ୍ନସୈନ୍ୟ ଧାଆନ୍ତି ସେ ଆଉ କାଶୀଶ୍ୱର
ଆନ ସର୍ବ ଦୁଷ୍ଟମାନେ ଧାଆନ୍ତି ସତ୍ୱର ।
ଜରାସନ୍ଧ ଆଗେ ଶିଶୁପାଳ କାନ୍ଦି କହେ
କି ଗତି ହେବ ମୋହର କହ ମହାଶୟେ ।
ଜରାସନ୍ଧ ବୋଲେ ତୁମ୍ଭେ ସ୍ଥିରକର ମନ
ଜୟ ପରାଜୟ ସବୁ ଅଟଇ ସମାନ ।
ଜରାସନ୍ଧ ଏହିରୂପେ ତାଙ୍କୁ ପ୍ରବୋଧିଲା
ତହୁଁ ରାଜାମାନେ ନିଜ ସ୍ଥାନେ ଗଲେ ଭଲା ।
ରୁକ୍ମିଣୀଙ୍କ ଜ୍ୟେଷ୍ଠଭ୍ରାତ ଯେହୁ ରୁକ୍ମୀବୀର
ଅପମାନ ନ ସହିଣ ସେନାଙ୍କ ସଙ୍ଗର ।
ବୋଇଲା ରହରେ ତୁହି ଗଉଡ଼ ବାଉଡ଼
ଏହିକ୍ଷଣି ରଣେ ଭାଙ୍ଗିଦେବି ତୋର ହାଡ଼ ।
ଏତେ ବୋଲି ବାଣ ସହୁଁ କଲା ବରଷଣ
ଦେଖିଣ ଶ୍ରୀହରି କରେ ଧରି ଧନୁର୍ବାଣ ।
ରୁକ୍ମଣ ସମସ୍ତ ଧନୁ କାଟି ପକାଇଲେ
ସକଳ ସୈନ୍ୟଙ୍କୁ ତାର କ୍ଷଣକେ ବଧିଲେ ।
ପୁଣି ମହାକ୍ରୋଧ ହୋଇ ପ୍ରଭୁ ଭଗବାନ
ଅସ୍ତ୍ର କରେ ବଧିବାକୁ ଇଚ୍ଛିଲେ ତା ପ୍ରାଣ ।
ଭ୍ରାତୃବଧ ହେବ ଦେଖି ରୁକ୍ମିଣୀ ସୁନ୍ଦରୀ
କୃଷ୍ଣଙ୍କ ପୟର ତଳେ ପଡ଼ି ବୋଲେ ଗୋରୀ ।
ଶାଳକଙ୍କୁ ବଧିବାର ନୁହଁଇ ଉଚିତ
ଭିକ୍ଷା ମୋର ଭ୍ରାତୃଦାନ ଦିଅ ପ୍ରାଣନାଥ ।
ଅଳପ ହସି ରଥରୁ ରଖିଣ ଶ୍ରୀହରି
ବସନେ ବାନ୍ଧିଲେ ଖମ୍ବେ ତାକୁ ବେଗକରି ।
ଏହିରୂପେ ଯତନେ କୃଷ୍ଣ ରୁକ୍ମୀକି ବାନ୍ଧିଲେ
ବଳରାମ ସେହିକାଳେ ସେଠାରେ ମିଳିଲେ ।
ତାହା ଦୁର୍ଦ୍ଦଶା ଦେଖିଣ କୃଷ୍ଣଙ୍କୁ କହନ୍ତି
ଶଳାକୁ ଶାସ୍ତି ଦେବାଟା ନୁହେଁ ଶାସ୍ତ୍ରମତି ।
ମୋହରି ବଚନେ କୃଷ୍ଣ ଫିଟାଅ ବନ୍ଧନ
ନୋହିଲେ ଅକୀର୍ତ୍ତି ହେବ ସାରାଦେଶେ ଜାଣ
ଏମନ୍ତ କହି ରୁକ୍ମୀକୁ ମୁକୁଳାଇ ଦେଲେ
ଦୁଷ୍ଟ ଅପମାନ ପାଇ ଆନସ୍ଥାନେ ଚଳେ ।
ରାମକୃଷ୍ଣ ଶୁଭେ ବିଜେ କଲେ ଦ୍ୱାରକାକୁ
ସକଳ ଜନେ ଆସିଲେ ଧାଇଁ ଦେଖିବାକୁ ।
ବସୁଦେବ ଦେବକୀ ବଧୂର ମୁଖ ଦେଖି
ଆନନ୍ଦ ସାଗରେ ମଜ୍ଜି ହେଲେ ମହାସୁଖୀ ।
ଆସିଲେ ଯାଦବମାନେ ବଧୂ ଦେଖିବାରେ
ରୂପ ଦେଖି ପ୍ରଶଂସିଲେ ସର୍ବ ନାରୀ ନରେ ।
ହରଷ ଦ୍ୱାରକାବାସୀ ସବୁରି ଆନନ୍ଦ
ନୟନ ଭରି ଦେଖନ୍ତି ରୁକ୍ମିଣୀ ଗୋବିନ୍ଦ ।
ତହୁଁ ଶୁଭ ଦିବସରେ କହେ ସୁମଙ୍ଗଳ
ବିବାହ ଘୋଷଣା ହେଲା ଦ୍ୱାରକା ମଣ୍ଡଳ ।
ଆରୋପଣ କଲେ ସର୍ବ ମଙ୍ଗଳ ଆଗୁର
ଅହ୍ୟନାରୀ ହୁଳାହୁଳି ଦେଲେ ବାରମ୍ବାର ।
ରତନେ ଖଚିତ ଦିବ୍ୟ ସୁବର୍ଣ୍ଣ ପୀଠରେ
ବସିଲେ ରୁକ୍ମିଣୀ କୃଷ୍ଣ ଅତି ହରଷରେ ।
ରାବେ ଗଦ ଗଦ ଦୁହେଁ ଦୁହିଁଙ୍କ ନିରେଖି
ମଙ୍ଗଳ ଗାଇଲେ କୂଳ-ନାରୀମାନେ ଯୋଖି ।
ମଙ୍ଗଳ ବିଧାନ ସାରି ସଧବା ସକଳେ
ନାରୀ ଆଗୁର ବିଧାନ କଲେ କୁତୁହଳେ ।
ହୁଳି ହୁଳି ସଙ୍ଗେ ବାଜା ନାନା ବାଦ୍ୟମାନ
ଶଙ୍ଖ ମହୁରୀ ବାଜଇ ରଙ୍ଗେ ଧରି ତାନ ।
ଶତାଇଶ କାଠି ଜଳେ ଗୋଘୃତ ସହିତେ
ବର କନ୍ୟା ରୂପ ଦେଖି ଆନନ୍ଦ ସମସ୍ତେ ।
ବର କନ୍ୟା ପ୍ରଦକ୍ଷିଣ କରି ସାତଥର
ମଙ୍ଗଳ ବିଧି ବଢ଼ାନ୍ତି ଆନନ୍ଦେ ଅପାର ।

ଗଗ ଆଗୃର୍ଯ୍ୟ ବିବାହ ଦେଲେ ଶୁଭକ୍ଷଣେ
ବାସର ଗୃହେ ଚଳିଲେ ଦମ୍ପତ୍ତି ନଖାନେ ।
କୁଳ-ନାରୀମାନେ ସର୍ବେ ଗାଆନ୍ତି ମଙ୍ଗଳ
ମଧୁର ମଞ୍ଜୁଳ ଘନ ବାଦ୍ୟ କୋଳାହଳ ।
ନାଚନ୍ତି ନର୍ତ୍ତକୀଗଣ ଅଙ୍ଗ ଭଙ୍ଗୀ ଠାର
ସ୍ଵର୍ଗରୁ ପୁଷ୍ପ ବର୍ଷନ୍ତି ଦେବେ ଦେବର୍ଷି ଶ ।
ନିଜ ନିଜ ଘରକୁ ସକଳେ ଚଳିଗଲେ
ପ୍ରସନ୍ନ ମନେ ଶ୍ରୀହରି ସୁଖେ ବିଳସିଲେ ।
ରୁକ୍ମ ବାକ୍ୟ ଅନଳେ ତାପିତ ଥିଲା ମନ
କୃଷ୍ଣଙ୍କୁ ପାଇ ହୋଇଲା ଅମୃତେ ସିଞ୍ଚନ ।
ରୁକ୍ମଣୀ ବିବାହ ଯେବା ଶ୍ରଦ୍ଧାଭରେ ଶୁଣେ
କୃଷ୍ଣଙ୍କ ଚରଣ ଲାଭ ହୁଏ ସେହି ଜନେ ।
କହନ୍ତି ଯେ ସୁତମୁନି ଶୁଣ ତପୀଗଣ
କୃଷ୍ଣଙ୍କର ଦାରବତୀ କେଳି ବିବରଣ ।
କିଛି ଦିନେ ରୁକ୍ମଣୀ ହୋଇଲେ ଗର୍ଭବତୀ
ସେହି ଗର୍ଭେ ଜନମ ଲଭିଲା ରତିପତି ।
ପ୍ରସବ କାଳେ ଶିଶୁକୁ ହରିଲା ସମ୍ବର
ସମୁଦ୍ରରେ ଫିଙ୍ଗି ଚଳିଗଲା ନିଜ ପୁର ।
ଗିଳିଲା ବୃହତ୍ ମତ୍ସ୍ୟ କୃଷ୍ଣଙ୍କ ନନ୍ଦନେ
ଧୀବର ଧରିଲା ଜାଲେ ଦୈବର ଘଟନେ ।
ଧୀବର ବିକିଲା ମତ୍ସ୍ୟ ସେ ସମ୍ବରାସୁରେ
ମତ୍ସ୍ୟ ଗର୍ଭରୁ ପାଇଲା ସୁନ୍ଦର କୁମରେ ।
ସମ୍ବର ଗୃହରେ ମାୟାରୂପେ ଥିଲା ରତି
ନାରଦଙ୍କ ବଚନେ ଜାଣିଲା ନିଜପତି ।
ଅତି ସ୍ନେହରେ ପାଳିଲା ସେହି କାମ ଦେବେ
ନାନା ଶାସ୍ତ୍ର ଯୁଦ୍ଧ ମାୟା ଶିଖାଇଲା ସର୍ବେ ।
ସମୟେ ସକଳ କଥା କହିଲା ସୁନ୍ଦରୀ
ମର୍ମ ଜାଣି କାମ ଦେବ ସମ୍ବରକୁ ମାରି ।
ରତି ସଙ୍ଗେ ଚଳିଗଲା ଦ୍ୱାରକା ଭୁବନେ
ନମସ୍କାର କଲା ଯାଇ ରୁକ୍ମଣୀ ଚରଣେ ।
ପୁତ୍ର ଶୋକେ ଥିଲେ ସତୀ ବ୍ୟାକୁଳା ହୋଇଣ
ପୁତ୍ର ଅନୁମାନ କଲେ ପ୍ରଦ୍ୟୁମ୍ନେ ଦେଖିଣ ।
କାମଦେବ କହିଲା ସକଳ ବିବରଣ
ତତ୍ତ୍ୱ ଜାଣି ସତୀଙ୍କର ଆନନ୍ଦିତ ମନ ।
ତହୁଁ କାମଦେବ ବନ୍ଦି ସବୁ ଗୁରୁଜନେ
ପୁନରପି ବାହୁଡ଼ିଲା ମାତା ସନ୍ନିଧାନେ ।
ପୁତ୍ର ପୁତ୍ରବଧୂ ଗୃହେ ସାଦରେ ରହିଲେ
ସୁଖ-ସମୁଦ୍ରରେ ପୁରବାସୀ ବୁଡ଼ିଗଲେ ।
ହରଷିତ ହେଲେ ହରି ପାଇଣ ସନ୍ତତି
ଏହିରୂପେ ନିତି ନରଲୀଳା ପ୍ରକାଶନ୍ତି ।
ସତ୍ରାଜିତେ ମଣି ହରଣର ଅପଯଶେ
ଜାମ୍ବବାନେ ଜିଣି ମଣି ଆଣିଲେ ହରଷେ ।
ଜାମ୍ବବତୀ କନ୍ୟା ସହ ପାଇଲେ ସେ ମଣି
ବିଭା ହୋଇଲେ ତାହାଙ୍କୁ ଦ୍ୱାରକାକୁ ଆଣି ।
ସତ୍ରାଜିତେ ମଣି ଦେଲେ ଦେବକୀ ନନ୍ଦନ
ଲଜ୍ଜିତ ହୋଇଲା ରାଜା ଶୁଖାଇ ବଦନ ।
ମଣିସହ ସତ୍ୟଭାମା କନ୍ୟା କଲା ଦାନ
ତହୁଁ ଇନ୍ଦ୍ରପ୍ରସ୍ଥେ ଗଲେ ଦେବକୀ ନନ୍ଦନ ।
ଯୁଧିଷ୍ଠିର ଭୀମଙ୍କୁ ନମି ସ୍ନେହ ମନେ
କୋଳକଲେ ପାର୍ଥେ ପୁଣି ମାଦ୍ରୀଙ୍କ ନନ୍ଦନେ
ତାପରେ ଅର୍ଜୁନ ସଙ୍ଗେ ବସି ରଥପରେ
ଆନନ୍ଦ ମନେ ଚଳିଲେ ଯମୁନାର ତୀରେ ।
ମହାଆନନ୍ଦରେ ପାର୍ଥ ମୃଗୟା କରନ୍ତି
ବହୁ ମୃଗମାରି ଠୁଳ କଲେ ସବ୍ୟସାଚି ।
ଦେଖିଲେ ସେଠାରେ ତହିଁ ଯଦୁକୁଳ ସାଇଁ
କାଳନ୍ଦୀନାମେ ସୁନ୍ଦରୀ ଜଗତ ମୋହିଇ ।
ତପକରେ କୃଷ୍ଣଚନ୍ଦ୍ରେ ବାଞ୍ଛାକରି ପତି
ତାକୁ ସ୍ନେହେ ଆଣି ବିଭା ହେଲେ ଯଦୁପତି
ଇନ୍ଦ୍ରପ୍ରସ୍ଥେ କିଛିଦିନ ରହି ଭଗବାନ
କାଳନ୍ଦୀଙ୍କୁ ସଙ୍ଗେ ଘେନି ଚଳିଲେ ବହନ ।
ତହୁଁ ମିତ୍ରବୃନ୍ଦା ନଗ୍ନଜିତା କନ୍ୟା ଦୁଇ
ବିଭାହେଲେ ବାସୁଦେବ କଉତୁକୀ ହୋଇ ।
ଭଦ୍ରାନାମେ ରୂପବତୀ କାନ୍ତିର ନିଧିନୀ
ତାକୁ ବିଭାହେଲେ ଯଦୁବଂଶ ଚୂଡ଼ାମଣି ।
ତଦନ୍ତେ ଲକ୍ଷଣା ନାମେ କନ୍ୟା ସୁକୁମାରୀ
ତାକୁ ବିଭାହେଲେ ଶୁଭେ ଶଙ୍ଖ ଚକ୍ରଧାରୀ ।
ରୁକ୍ମଣୀ ଆଦି ଏ ଅଷ୍ଟ କନ୍ୟା ବିଭା ହୋଇ
ସତ୍ୟଭାମା ସହିତରେ ଗରୁଡ଼ ଆରୋହି ।
ନରକ ନୃପଙ୍କ ଦେଶେ ଗଲେ ଗଦାଧର
ସେନା ସହିତ ତାହାଙ୍କୁ ମାରିଲେ ସତ୍ୱର ।
ଷୋଳ ସହସ୍ର ଯୁବତୀ ସେଠାରେ ପାଇଲେ
ଦ୍ୱାରକା ପୁରକୁ ଆଣି ତୋଷେ ବିଭା ହେଲେ

ଇନ୍ଦ୍ର ରାଜାଙ୍କର ଅଭିମାନ ଚୂର୍ଣ୍ଣ କରି
ପାରିଜାତ ପୁଷ୍ପେ ତୋଳି ଆଣିଲେ ଶ୍ରୀହରି ।
ତାହାପରେ ବ୍ରତ ଏକ କଲେ ସତ୍ୟଭାମା
ଯହିଁରେ ପ୍ରକାଶ ହରି ନାମର ମହିମା ।
ତହୁଁ ଯଦୁବଂଶ କ୍ରମେ ବର୍ଦ୍ଧିତ ହୋଇଲେ
ପ୍ରତ୍ୟେକ ରାଣୀଙ୍କ ଦଶ ଦଶ ପୁତ୍ର ହେଲେ ।
ଏଥୁଅନ୍ତେ ମନ ଦେଇ ଶୁଣ ମୁନିଗଣ
ଅନିରୁଦ୍ଧ ହେଲା କାମଦେବର ନନ୍ଦନ ।
ଉଷାବତୀଙ୍କ ସଙ୍ଗରେ ମିଳନ ହୋଇଲା
ଏହାପରେ କଉତୁକ ଶୁଣ ଯାହା ହେଲା ।
ପ୍ରହ୍ଲାଦର ପୁତ୍ର ବିରୋଚନ ଦୈତ୍ୟେଶ୍ୱର
ତାହାର ନନ୍ଦନ ବଳି ମହା ଦାନୀବର ।
ଶହେ ଯଜ୍ଞ ପୃଥ୍ୱୀରେ ରଚି ସେ ରାଜନ
ବିଷ୍ଣୁ ଦାନ ଛଳେ ଗଲା ପାତାଳ ଭୁବନ ।
ସର୍ବଶ୍ରେଷ୍ଠ ବାଣାସୁର ମହା ବଳବନ୍ତ
ସକଳ ଦୈତ୍ୟଙ୍କ ମଧ୍ୟେ ଅଟଇ ସେ ଶ୍ରେଷ୍ଠ ।
ଶୋଣିତ ପୁରେ ବସଇ ବାଣା ମହୀପତି
ସୁର ପୁରେ ସୁର ମଧ୍ୟେ ଯେହ୍ନେ ସୁରପତି ।
ମହାରୁଦ୍ର ତପ କରି ହରେ ଆରାଧିଲା
ସମସ୍ତ ଶିବଙ୍କ ଠାରୁ ବରପ୍ରାପ୍ତ ହେଲା ।
ତାହାଙ୍କୁ ଦୟା ବହିଣ ବର ଦେଲେ ହର
ସହସ୍ର ବାହୁ ନିଶ୍ଚୟ ହୋଇବ ତୋହର ।
ତାହାର ଭକ୍ତିରେ ତୋଷ ହୋଇ ପଞ୍ଚାନନ
ରହନ୍ତି ସର୍ବଦା ତାହା ପୁରକୁ ଜଗିଣ ।
ଏକଦିନେ ଶଙ୍କରଙ୍କୁ ବୋଇଲା ଦଇତ
ମହାରଣ କରିବାକୁ ବଳେ ମୋର ଚିତ୍ତ ।
ଦୟା ବହି ମହାଯୋଦ୍ଧା ଦିଅନ୍ତୁ ଭେଟାଇ
ଶଙ୍କର ବୋଇଲେ ଅଳ୍ପଦିନେ ଭେଟିବଇଁ ।
ଏତେ ବୋଲି ଅନ୍ତର୍ଦ୍ଧାନ ହୋଇଲେ ଶଙ୍କର
ଶୁଣ ଏହାପରେ ଯାହା ହେଲା ସମାଚାର ।
ଉଷାବତୀ ନାମେ କନ୍ୟା ସେ ବାଣାସୁରର
ତା ସମାନ ରୂପବତୀ ନାହିଁ କେ ତ୍ରିପୁର ।
ପାର୍ବତୀଙ୍କୁ ଆରାଧନା କରି ସେ ଯୁବତୀ
ବୋଇଲା କେହ୍ନେ ପାଇବି ମୁଁ ସୁନ୍ଦର ପତି ।
ସାକ୍ଷାତ ଦେଇଣ ଗୌରୀ ବରଦେଲେ ତାରେ
ଉତ୍ତମ ସ୍ୱାମୀ ଲଭିବୁ ଅଳପ ଦିନରେ ।

ସ୍ୱପ୍ନରେ ଯାହା ସଙ୍ଗରେ ହୋଇବୁ ମିଳନ
ସେହିତୋର ପତି ହେବ ମନ ମଧ୍ୟେ ଘେନ ।
ଅତି ଶ୍ରଦ୍ଧାଭରେ ପୂଜି ଦେବୀ ଭଗବତୀ
କରଯୋଡ଼ି ଉଷାବତୀ ଆରମ୍ଭିଲା ସ୍ତୁତି ।
ଏ ଦାସୀରେ ଦୟାକର ଦୟାମୟୀ ଉମା
ବାରେକ ଦେଖାଅ ଦେବୀ ତୋହର ମହିମା
ତାର ଶୁଦ୍ଧମତି ଭକ୍ତି ଦେଖି ମହାମାୟା
ପ୍ରସନ୍ନ ହୋଇଣ ତାହାପ୍ରତି କଲେ ଦୟା ।
ଏକଦିନେ ନିଶାକାଳେ ସେ ଉଷା ଅବଳା
ବିଚିତ୍ର ପଲଙ୍କ ପରେ ନିଦ୍ରା ଯାଇଥିଲା ।
ଅଚେତନ ସ୍ୱପନେ ସେ କଲା ଦରଶନ
ତା ପାଶେ ମିଳିଲା ଏକ ପୁରୁଷ ରତନ ।
ନୀଳ ଘନ ଜିଣି ତନୁ କାନ୍ତି ମନୋହର
ତା ଲାବଣ୍ୟ ଅଙ୍ଗେ ଯଥା ଯୋଗ୍ୟ ଅଳଙ୍କାର
ଆସି ଗୃହେ ଆଚମ୍ବିତେ ଅତ୍ୟନ୍ତ ହରଷେ
ବାଞ୍ଛା ପୂର୍ଣ୍ଣେ ଉଷା ସଙ୍ଗେ ବିଳସିଲା ରସେ
ଶୀତଳ ଅଙ୍ଗ ସ୍ପରଶି ମହା ଆନନ୍ଦରେ
କୁତୁହଳେ ମଜ୍ଜି ସେହୁ ରତିରଙ୍ଗ କରେ ।
ସେ ରସିକ ପୁଂସେ ଦେହ ଦେଇ ଉଷାବତୀ
ସୁଖ ସମ୍ଭୋଗ ରସରେ ମଜ୍ଜିଲା ଯୁବତୀ ।
ରତି ଶେଷେ ପୁରୁଷ ହୋଇଲା ଅନ୍ତର୍ଦ୍ଧାନ
ଉଷାର ନିଦ୍ରା ଭଙ୍ଗନ୍ତେ ଲଭିଲା ଚେତନ ।
ଚମକି ଚକିତ ମନେ ଚଉଦିଗେ ଗୃହେଁ
ସେ ପୁରୁଷ ରତନର ଦର୍ଶନ ନ ପାଏ ।
ବିରହ ସମୁଦ୍ର ଜଳେ ଭାସିଲା ସୁନ୍ଦରୀ
ଊର୍ଦ୍ଧ୍ୱ ନିଃଶ୍ୱାସ ଛାଡ଼ଇ ଘନ ଘନ କରି ।
ଆହା ପ୍ରାଣନାଥ ବୋଲି କାନ୍ଦଇ ବିକଳେ
ପଲଙ୍କେ ହାତ ଖୁଲାଇ ପଡ଼େ ଭୂମିତଳେ ।
ସଖୀମାନେ ତାର ସେତେବେଳେ ଧାଇଁଆସି
ଦେଖିଲେ ଜ୍ଞାନ ହରାଇ ପଡ଼ିଛି ସୁକେଶୀ ।
ମୁଖେ ବାସନାର ସିଞ୍ଚି କଲେ ସଚେତନ
ପଚାରିଲେ ଏକି ଦଶା କହ ଜୀବଧନ ।
ଚେତାପାଇ ଉଷାବତୀ କାନ୍ଦି କାନ୍ଦି କହେ
ପ୍ରାଣନାଥ ବିନେ ଦୁଃଖେ ଏବେ ପ୍ରାଣ ଯାଏ
ଯଦି ବଞ୍ଚାଇବା ପାଇଁ ତୁମ୍ଭେମାନେ ଇଚ୍ଛ
ହୃଦୟ ବିହାରୀଙ୍କି ମୋ ଆଣିଦିଅ ସ୍ୱଚ୍ଛ ।

ନୋଇଲେ ମରିବି ସଖି ! ବିଷ ପାନ କରି
ଏ ଜୀବନେ ଆଉ ଆଶା ନାହିଁଟି ମୋହରି ।
ଏତେ କହି ଉଷାବତୀ କରଇ ରୋଦନ
ନାନା କଥାରେ ବୋଧନ୍ତି ପ୍ରିୟ ସଖୀମାନ ।
ଚିତ୍ରରେଖା ନାମେ ଏକ ସଖୀ ପଚାରଇ
ମୋ ଆଗରେ ମନ କଥା ଫେଡ଼ି କହ ସହି ।
ଜଗତେ ଅସାଧ୍ୟ କିଛି ନାହିଁ ଯେ ମୋହର
କି ବେଦନା କହ କରିବଇଁ ପ୍ରତିକାର ।
ଉଷା କହେ ଅତି ଗୋପନ ମୋ ମନ କଥା
କହିବାକୁ ତୋତେ ଲାଜମାଡ଼େ ଗୋ ସର୍ବଥା
ଚିତ୍ରରେଖା ବୋଲେ ସଖି ସତକହ ମୋରେ
ଉପାୟ କରି ବହନ ତୋ[illegible]ବଇଁ ତୋରେ ।
ତହୁଁ ଉଷା ବିରଲେ କହିଲି ସବୁ ତାକୁ
ସ୍ୱପନ ବୃତ୍ତାନ୍ତ ଯାହା କରିଣ ଖେଦକୁ ।
ବୋଲେ ବାଣାସୁର ଜେମା ଶୁଣ ସହଚରୀ
ଅଚେତନେ ଶୋଇଥିଲି ପଲଙ୍କ ଉପରି ।
ସେହିକାଳେ କାହୁଁ ଏକ ପୁରୁଷ ରତନ
ଆସି ମୋର ସଙ୍ଗେ କଲେ ସୁରତି ବିଧାନ ।
ନାନା କଉତୁକ ରଙ୍ଗକରି ମୋର ତୁଲେ
ଚେତି ଚାହାନ୍ତେ ନାହାନ୍ତି ସେ କେଣିକି ଗଲେ
ମନ ଜଳିପୋଡ଼ି ଯାଏ ତାଙ୍କରି ନିମନ୍ତେ
ମରମକଥା ମିତଣି ! କହିଲି ମୁଁ ତୋତେ ।
ଯେବେତାହାଙ୍କ ସଙ୍ଗେ ମୋ ନ ହେବ ମିଳନ
ନିଶ୍ଚୟ ଏ ଦେହରୁ ଗୋ ଛୁଟିବ ଜୀବନ ।
ଚିତ୍ରରେଖା କହେ ଶୋକ ମୁଞ୍ଚ ଗୁଣବତୀ
ନିଶ୍ଚୟ ମୁଁ ତାକୁ ଭେଟାଇବି ତୋର କତି ।
ସାକ୍ଷାତେ ଦେଖ ଚତୁରୀମଣି ମୋ ଶକତି
କି କରି ନ ପାରେ ମୁହିଁ ବୁଝ ମୋ ଭାରତୀ ।
ତ୍ରିଭୁବନ ମଧ୍ୟେ ଅଛନ୍ତି ଯେତେ ଯୁବା ପୁଂସ
ସବୁରି ଚିତ୍ର ମୁଁ ଲେଖିପାରଇ ଅବଶ୍ୟ ।
ଚିହ୍ନି ନିଅ ନିଜ ପତି କିଏ ତୋର ଧନ
ତାହାକୁ ଆଣିଦେବି ମୁଁ ତୋ ପାଶେ ବହନ
ଏତେ କହି ତିନିଦିନ ମଧ୍ୟରେ ଚତୁରୀ
ତ୍ରିଭୁବନେ ଯେତେ ଯୁବା ଲେଖେ ଯତ୍ନକରି
ସବୁ ଲେଖିସାରି ସେହି ଚିତ୍ରପଟ ଗୋଟି
ଉଷାବତୀକୁ ଦେଖାଇଦେଲା ବିମ୍ବଓଷ୍ଠୀ ।

ଏକେ ଏକେ ଉଷାବତୀ ଦେଖଇ ନିରେଖି
ସୁନ୍ଦର ପୁରୁଷ ଯେତେ ସଖୀ ଅଛି ଲେଖି ।
ସ୍ୱର୍ଗ ଆଉ ପାତାଳ ଦେଖିଲା ଗୁଣବତୀ
ନ ଦେଖିଲା ତା ମଧ୍ୟରେ ନିଜ ପ୍ରାଣପତି ।
ପୃଥ୍ୱୀ ନିବାସୀ ଯେତେ [illegible]ବକ ପୁରୁଷ
ନିରେଖିଲା ସେମାନଙ୍କୁ ସୁନ୍ଦରୀ ବାଳୀଶ ।
ଅନିରୁଦ୍ଧ ଛବି ଦେଖି ସେ ନବ ବନିତା
ଆହା ପ୍ରାଣନାଥ ବୋଲି ହଜିଗଲା ଚେତା ।
ସଚେତନ ହୋଇ କହେ ଅଙ୍ଗୁଳି ଦେଖାଇ
ଏଥି ଆମ୍ଭିଣ ଯୌବନ ଲୁଟି ଛନ୍ତି ସେହି ।
ଚିତ୍ରରେଖା ବୋଲେ ବଡ଼ ସୌଭାଗ୍ୟତୋହର
କୃଷ୍ଣଙ୍କର ନାମେ ଏଯେ କନ୍ଦର୍ପ [illegible]ମର ।
ଏକ୍ଷଣି ତୋହ ପାଶରେ ଭେଟାଇବିଆଣି
ସକଳ ସ୍ଥାନରେ ମୋର ଗ[illegible] ଅଛି ପୁଣି ।
ଉଷା କହେ ବିଳମ୍ବରେ ତେଜିବି ପରାଣ
ବହନ ପ୍ରାଣ ମିତଣୀ ମୋ ଦେବତା ଆଣ ।
ଉଷାବତୀଙ୍କୁ ସାନ୍ତ୍ୱନା ଦେଇ ମନ ସୁସ୍ଥେ
ଚଞ୍ଚଳ ଦ୍ୱାରକା ପୁର ଚଳେ ସଖୀ ରଥେ ।
ଅନିରୁଦ୍ଧପାଶେ ଯାଇ ମିଳିଲା ସୁନ୍ଦରୀ
ନିଜ ବୁଦ୍ଧି ବଳେ ବିଚାରଇ କୃଶୋଦରୀ ।
ଏଣେ ଅନିରୁଦ୍ଧ ବୀର ପ୍ରଦ୍ୟୁମ୍ନ କୁମର
ସ୍ୱପ୍ନେ ଉଷାସଙ୍ଗେ କରେ ପୀରତି ବିହାର ।
ନିଦ୍ରାଭଙ୍ଗେ ଉଷାପରି ବ୍ୟାକୁଳ ଚିତ୍ତରେ
ଉଷାରୂପ ଚିନ୍ତି ବସିଅଛି ଅବନୀରେ ।
କେମନ୍ତେ ମିଳିବ ସେହି ଉତ୍ତମା ରମଣୀ
କାହିଁ ତାର ଘର ଘାଟ ନ ପାରଛି ଜାଣି ।
ଏହିରୂପେ ଅନିରୁଦ୍ଧ ଭାଳେ ନିରବଧି
ଦଇବର ନିଧି ତାର ମିଳାଇଲା ବିଧି ।
ତାଙ୍କ ନିକଟକୁ ଆସି ଉଷା ସହଚରୀ
ବୋଲେ ଉଠ ମିଳାଇବି ପ୍ରିୟାଙ୍କୁ ତୁମ୍ଭର ।
ଚକ୍ଷୁ ମେଲି ଅନିରୁଦ୍ଧ ଚମକି ଅନାଏ
ପରମା ସୁନ୍ଦରୀ ଦେଖି ପୁଚ୍ଛେ ସେ ସମୟେ ।
କିଏ ତୁହି ଗଡ଼ କେଉଁ ଆସିଲୁ ମୋ ପୁରେ
ସଖୀକହେ ଭାବଯାନରେ ଦୂତୀ ମୁଁ ତାହାରେ ।
ବାଣ କନ୍ୟା ଉଷା ସ୍ୱପ୍ନେ ତୁମ୍ଭଙ୍କୁ ଦେଖିଲା
ତୁମ୍ଭଠୁଁ ଅଧିକ ଦଶା ତାହାର ଘଟିଲା ।

ଶୁଣି ଅନିରୁଦ୍ଧ ମୁଖୁ ନ ସ୍ତୁତିରେ ବଚନ
ହରଷ ଆଉ ଉତ୍କଣ୍ଠା ବଳିଲା ତା ମନ ।
ମନହୁଁ ଅତି ବେଗରେ ରଥକୁ ଚଳାଇ
ବାଣାସୁର ଭବନରେ ମିଳିଲାକ ଯାଇ ।
ଚିତ୍ରରେଖା କହେ ଉଷାବତୀଙ୍କୁ ଅନାଇ
କେମାମଣି ଦୁଃଖ ତେଜ ଆସ ବେଗେ ଧାଇଁ
ଆନନ୍ଦେ ଅସ୍ଥିର ହୋଇ ଉଠି ଉଷାବତୀ
ମଦନ ପ୍ରକାରେ ନିଜ ନେତ୍ରେ ଦେଖି ପତି ।
ମୂର୍ଚ୍ଛିତ ହୋଇ ପଡ଼ିଲା ପାଦ୍ୟ ଅର୍ଘ୍ୟଦେଇ
ଅନିରୁଦ୍ଧ ମୂର୍ଚ୍ଛା ହେଲା ଉଷାକୁ ଅନାଇଁ ।
ଦୁହିଁଙ୍କ ମୁଖରେ ଜଳ ସିଞ୍ଚି ସଖୀଗଣେ
ସଚେତନ କରାଇଲେ ଅତ୍ୟନ୍ତ ଯତନେ ।
ଆନନ୍ଦେ ବିହ୍ୱଳା ହୋଇ ସହଚରୀଗଣ
ଗାନ୍ଧର୍ବ ବିବାହ କରାଇଲେ ତତକ୍ଷଣ ।
ପଲ୍ୟଙ୍କରେ ବସି ଦୁହେଁ ମିଳନ ହୋଇଲେ
ନାନାରଙ୍ଗେ କାମକେଳି ରସରେ ମାତିଲେ
କୃପଣ ଧନ ପରାୟେ ଦୁହିଁଙ୍କ ମିଳନ
ହୋଇଲେ ଆନନ୍ଦ ଜଳେ ସେ ଦୁହେଁ ମଗନ
ନ ଜାଣିଲେ ଉଦେ ଅସ୍ତ କିବା ଦିବାରାତି
କାମରସ ମଦେ ମତ୍ତ ଯୁବକ ଯୁବତୀ ।
ଏମନ୍ତେ ଦୁହେଁ ଅଛନ୍ତି ହରଷିତ ମନେ
ଉଷା ଗର୍ଭବତୀ ହେଲା ତହିଁ କିଛି ଦିନେ ।
ଦେଖି ସଖୀମାନେ ଭୟେ ରାଜାଙ୍କୁ କହନ୍ତି
ପ୍ରମାଦ ଉଷାର ବାସେ ଶୁଣ ମହୀପତି ।
କେବଣ ଦେଶୁଁ ଆସିଲା ପୁରୁଷ ସୁନ୍ଦର
ବିହାର କରଇ ଉଷା ସଙ୍ଗେ ନିରନ୍ତର ।
ଦେବ କି ମାନବ ସେହି ଆମ୍ଭେ ଯେ ନ ଜାଣୁ
ସାକ୍ଷାତେ କନ୍ଦର୍ପ ପରି ମାନସକୁ ଆଣୁ ।
ଆମ୍ଭମାନଙ୍କର ଦୋଷ ନାହିଁ ଏଥି ପୁଣି
ଏହାର ବିଧାନ ଯାହା କରି ନୃପମଣି ।
ଏହା ଶୁଣି କ୍ରୋଧେ କହେ ବାଳିର ନନ୍ଦନ
ମୋ ପୁର ଲଙ୍ଘିଲା ପୁଣି ଅଛି କେଉଁ ଜନ ।
ଆଗରେ ଦେଖିଲା ବାଣା ଶୂର ସେନାପତି
ଆଜ୍ଞା ଦେଲା ସେ ଚୋରକୁ ବାନ୍ଧିଆଣ ଏଥି ।
ରାଜାଙ୍କ ଆଦେଶମତେ ସେନାପତି ଗଲେ
ଉଷାର ଗୃହ ଚୌପାଶେ ସୈନ୍ୟ ଘେରାଇଲେ

ପଶା ଖେଳୁଥିଲା ଉଷା ସଙ୍ଗେ କାମସୁତ
ଯୁଦ୍ଧ ସଜା ନେତ୍ରେ ଦେଖି ଉଠିଲା ତୁରିତ ।
ଶୂର ସେନାପତି ହାତେ ଯେତେ ଅସ୍ତ୍ର ଥିଲା
ଝପଡ଼ି ମାରିଣ ବୀର ସବୁ କାଢ଼ି ନେଲା ।
ସେହି ଅସ୍ତ୍ର ଅନିରୁଦ୍ଧ ବରଷଣ କରି
ସୈନ୍ୟ ସେନାମାନଙ୍କୁ ସେ ପକାଇଲା ମାରି
ପୁନରପି ପଶା ଖେଳି ବସେ ଉଷା ସଙ୍ଗେ
ଭଗ୍ନସୈନ୍ୟ ଯାଇ ଜଣାଇଁଲେ ରାଜା ଆଗେ
ଶୁଣି କ୍ରୋଧେ ବାଣାସୁର ଆସିଲା ବହନ
ସଙ୍ଗରେ ଅଇଲେ ତାର ଅନେକ ସଇନ ।
ମାର ମାର ବୋଲିଣ ଧାମନ୍ତି ଉଷାପୁରେ
ବାଣା ଦେଖି ଅନିରୁଦ୍ଧ ଉଠେ କ୍ରୋଧଭରେ
ପାଦ ଧରି ଉଷାବତୀ କରଇ ମିନତି
ରଣେ କାର୍ଯ୍ୟ ନାହିଁ ପ୍ରଭୁ ରାଜାର ସଂହତି ।
ପଳାଇଣ ଯାଅ ପ୍ରାଣ ଘେନିଣ ଆପଣେ
ଉଷାକୁ ତୋଷିଲା ବୀର ମଧୁର ବଚନେ ।
ବୀରଦର୍ପ କରି ବାଣା ଆଗେ ଠିଆ ହେଲା
ଦୁହିଙ୍କର ବାକ୍ୟ ଯୁଦ୍ଧେ ଦ୍ୱନ୍ଦ୍ୱ ଉପୁଜିଲା ।
ଦିବ୍ୟ ବାଣମାନ ଯେ ପ୍ରହାରେ ବାଣାସୁର
ନିମିଷେକେ କାଟେ ସବୁ କନ୍ଦର୍ପ କୁମାର ।
ତହୁଁ ସର୍ପବାଣ କ୍ରୋଧେ ବାଣାସୁର ମାରେ
ସର୍ପମାନେ ଗିଳିବାକୁ ଧାଇଁଲେ କୁମାରେ ।
ଛାଡ଼ିଲା ଗରୁଡ଼ ଅସ୍ତ୍ର କାମର ନନ୍ଦନ
ସର୍ପଙ୍କୁ ଗିଳି ଚଳଇ ଗିଳିବ ରାଜନ ।
ଅଗ୍ନି ଅସ୍ତ୍ର ଛାଡ଼ି ବାଣା ପକ୍ଷୀ ପୋଡ଼ାଇଲା
ବରୁଣାସ୍ତ୍ରେ ଅନିରୁଦ୍ଧ ଅଗ୍ନି ଲିଭାଇଲା ।
ଘୋରତର ବରଷଣ କରେ ଜଳଧର
ବାୟୁ ବାଣେ ମେଘ ଉଡ଼ାଇଲା ବାଣାସୁର
ଏହି ମତେ ନାନା ଅସ୍ତ୍ର ହୋନ୍ତି ବିନ୍ଧାବିନ୍ଧି
ଘୋରଯୁଦ୍ଧେ ଦୁହେଁ ସମ ପଡ଼େ ଜିଦାଜିଦି ।
ଶକ୍ତି ଶେଲ କୁଠାର ସାବେଳୀ ମୁଦ୍ଗର
ମୁଷଳ ଶୂଳ ଶାର୍ଙ୍ଗିଆ ହଳ ଭୁଷାବର ।
ଅର୍ଦ୍ଧଚନ୍ଦ୍ର ବାଣ ବ୍ରହ୍ମଜାଲ ରୁଦ୍ରଜାଲ
କୁନ୍ତ ଖଡ଼ଗ ସହିତେ ଅସ୍ତ୍ର ବିଷ୍ଣୁଜାଲ ।
ଏପରି ଅନେକ ଅସ୍ତ୍ର ଶସ୍ତ୍ର ପ୍ରହାରନ୍ତି
ଯୁଦ୍ଧରେ କେହି କାହାକୁ ଊଣା ସେ ନୁହନ୍ତି

ଅନ୍ୟର ଉପରେ ଫିଙ୍ଗେ ଯେହ୍ନୁ ଯାହା ଜାଣେ
କାଟିଲେ ଦୁହିଁଙ୍କ ଶର ଦୁହେଁ ତାଙ୍କବାଣେ ।
କଟି ଯାନ୍ତେ ବାଣମାନ ବାଣା କ୍ରୋଧହୋଇ
ଭୀଷଣ ଆକାର ଶକ୍ତି ହାତେ ନେଇ ସେହି
ଝମକାନ୍ତେ ଅଗ୍ନି ଉଠେ ଶକତିର ମୁଖେ
ତାହା ଦେଖି ଅନିରୁଦ୍ଧ ହୃଦୟ ଚମକେ ।
ସେ ଶକ୍ତି ପ୍ରହାରେ ବାଣାସୁର ଦର୍ପକରି
ଗର୍ଜି ଚଳିଗଲା ଅସ୍ତ୍ର କୁମାର ଉପରି ।
କୃଷ୍ଣଙ୍କ ଚରଣପଦ୍ମ ଚିନ୍ତି ଏକମନେ
ଅନିରୁଦ୍ଧ ଶକ୍ତିକି କାଟିଲା ଦିବ୍ୟବାଣେ ।
ଶକ୍ତି କାଟିବାରେ ବାଣାସୁର ହୋଇ ଭୀତ
ନାଗପାଶ ବାଣ ତହୁଁ ଛୁଡ଼ିଲା ତୁରିତ ।
ବାଣଛୁଡ଼ି ବାଣାସୁର ଡ଼ାକିଣ କହଇ
ଯୁଦ୍ଧ କରିବାକୁ ତୁ ଆସିଲୁ ଛୁଆ ହୋଇ ।
ଏହି ଶିବଦତ୍ତ ବାଣ ମାଇଲି ଓଟାରି
କେମନ୍ତେ ତରିବୁ ଏଥୁଁ ଯିବୁ ଯମପୁରୀ ।
ତହୁଁ ନାଗପାଶ ଯାଇ କୁମାରେ ବାନ୍ଧିଲା
କାତର ହୋଇଣ ବୀର ଭୂମିରେ ପଡ଼ିଲା ।
ରଣ ଜୟ କରି ଚଳିଗଲା ନୃପମଣି
ଉଷାର ମନ୍ଦିରେ ଉଠେ କ୍ରନ୍ଦନର ଧ୍ୱନି ।
ଗଦ ଗଦ ହୋଇକରି କାନ୍ଦେ ଉଷାବତୀ
ଆହା ପ୍ରାଣନାଥ ମୋର ହେଲା କି ବିପତ୍ତି ।
ଭକତି ଭାବେ ସେବିଲି ଗଉରୀ ଶଙ୍କର
ସୁପ୍ରସନ୍ନ ହୋଇ ଯେହ୍ନୁ ଦେଲେ ମୋତେବର
ଉତ୍ତମ ବର ପାଇବୁ କହିଥିଲେ ଭୋଳା
କେଉଁ କରମ ଦୋଷରୁ ଏ ଦଶା ଘଟିଲା ।
ସୁପ୍ରସନ୍ନ ହୋଇ ମୋହଠାରେ ଭଗବତୀ
ଯାଚି ଦେଇଥିଲେ ମୋତେ ଏ ସୁନ୍ଦର ପତି ।
ତେବେ ଏମନ୍ତ ଦୁର୍ଗତି ଘଟିଲା କିମ୍ପାଇଁ
ସମରେ ପଡ଼ିଲେ ମୋର ଜୀବନର ସାଇଁ ।
ବୁଝି ପାରୁଅଛି ମନେ ସେହି ମାହେଶ୍ୱରୀ
ମୋ ଭଳି ପାପିନୀ ଅଭାଗିନୀ ଦେଖିକରି ।
ନିର୍ଦ୍ଦୟା ହୋଇଲେ ନିକି ମୋହଠାରେସେହି
ଆଣ ଗୋ ସଖି ଗରଳ ଖାଇବଇଁ ମୁହିଁ ।
ଏ ପାପ ପିଣ୍ଡେ ପରାଣ ଆଉ ନ ରଖିବି
ନିଶ୍ଚୟ ମରିବି ଯେବେ କାନ୍ତେ ନ ଦେଖିବି ।

କାନ୍ଦି କାନ୍ଦି ଉଷାବତୀ ପତିକୁ କୋଳାଏ
ନୟନ ଯୁଗଳୁଁ ତାର ଲୁହ ବହିଯାଏ ।
ସହଚରୀମାନେ ମିଳି ତାକୁ ପ୍ରବୋଧନ୍ତି
ଆଖି ଲୁହ ପୋଛି ମୁଖେ ସଲିଳ ସିଞ୍ଚନ୍ତି ।
ଯେତେ ବୁଝାଇଲେ ବାଳୀ ସ୍ଥିର ନ ହୁଅଇ
ଆହେ ନାଥ ବୋଲି ଶିରେ କର କଚାଡ଼ଇ
ଉଷାବତୀର ବିଳାପ କେ ପାରେ ବରନି
ହୃଦୟ କରତି ଦ୍ରୁଏ ଶୁଣି ସେ କାହାଣୀ ।
କାମସୁତ ଅନିରୁଦ୍ଧ ବନ୍ଦି ଭାବେ ରହେ
କୃଷ୍ଣଙ୍କ ଚରଣ ତଳେ ମନ ରଖିଥାଏ ।
ଡାକେ କାହିଁ ଅଛ ପ୍ରଭୁ ବାରେ ଦେଖାଦିଅ
କାହିଁଅଛ ଦୟାମୟ ମୋ ପ୍ରାଣ ବଞ୍ଚାଅ ।
କେବଳ ତୁମ୍ଭ ଚରଣେ ଭରସା ମୋହର
ବିଷମ ବିଷ ବାହାରେ ଜଳେ ମୋ ଶରୀର ।
କୃପାସିନ୍ଧୁ କୃପାକରି ନାତିକି ଉଦ୍ଧର
ପ୍ରାଣ କଲବଲ ହୁଏ ନାଗ ପାଶେ ମୋର ।
କାହିଁ ଅଛ ଭଗବତୀ ତ୍ରିଲୋକ ତାରିଣୀ
ମୋ ପ୍ରତି କରୁଣା କର ମାନ ଉଦ୍ଧାରିଣୀ ।
ଅବିଳମ୍ବେ ଆଗମନ କରି ରଖ ପ୍ରାଣ
ଆହେ ମାହେଶ୍ୱରୀ ଡାକୁଅଛି ମୁଁ ଆର୍ତ୍ତେଣ
ଏହିପରି ସ୍ତୁତି ଯହୁଁ କଲା କାମସୁତ
ଦୟାମୟୀ ଭଗବତୀ ମିଳିଲେ ତୁରିତ ।
ବୋଇଲେ ସାନ୍ତ୍ୱନା ଦେଇ ଶୁଣରେ କୁମର
ଦୁଃଖ ନ କର ମନରେ କିଞ୍ଚିତ ମାତର ।
ଶ୍ରୀହରି କରିବେ ଆସି ଏଥି ପ୍ରତିକାର
ବନ୍ଧନରୁ ମୁକୁଳାଇ ଦେବେ ସେ ସତ୍ୱର ।
ଏହା କହି ଜଗତ ମାତା ହେଲେ ଅନ୍ତର୍ଦ୍ଧାନ
ନାରଦ ଆସି କହିଲେ ଅମୀୟ ବଚନ ।
ଭାବନା ନ କର ଆଉ ଅନିରୁଦ୍ଧବୀର
ଯିବି ମୁହିଁ ଏହିକ୍ଷଣି ଦ୍ୱାରକା ନଗର ।
ସମସ୍ତ କହି କୃଷ୍ଣଙ୍କୁ ଏଥି ଆଣାଇବି
ତାହାଙ୍କ ଦ୍ୱାରା ତୁମ୍ଭଙ୍କୁ ଉଦ୍ଧାର କରିବି ।
ଅନିରୁଦ୍ଧ ବୀରବରେ ଆଶ୍ୱାସି ନାରଦ
ଉଷାବତୀକୁ ଯେ ପୁଣି ଦେଇଣ ପ୍ରବୋଧ ।
ଏହା କହିଣ ନାରଦ ତହୁଁ ଚଳିଗଲେ
ଦ୍ୱାରକା ପୁରେ ବହନ ଯାଇଣ ମିଳିଲେ ।

ଏଣେ ଯେ ଦ୍ୱାରକା ପୁରରେ ନ ଦେଖି କୁମର
ଦୂତଆସି ଜଣାଇଲା କୃଷ୍ଣଙ୍କ ଛାମୁର ।
ଶୁଣି ଅତ୍ୟନ୍ତ ବିଷାଦ ହୋଇଲେ ମୋହନ
ଅନ୍ତରଗତେ ଜାଣିଲେ ସକଳ ବିଧାନ ।
ବାଣାସୁର କନ୍ୟା ଉଷା ଅପୂର୍ବ ସୁନ୍ଦରୀ
ମୋହର ନାତିକୁ ନେଇଅଛି ଚୋରିକରି ।
ସେ ଦାରୁଣ ବାଣାସୁର କ୍ରୋଧଭର ହୋଇ
ନାଗପାଶରେ ନାତିକୁ ମୋର ବାନ୍ଧିଛଇଁ ।
କାହାକୁ ନ କହି ଏହା କରିଲେ ଗୋପନ
ଖୋଜିବା ନିମନ୍ତେ ପଠାଇଲେ ଦୂତଗଣ ।
ଚରମାନଙ୍କୁ ସେ ସ୍ଥାନେ ସ୍ଥାନେ ପଠାଇଲେ
ମୋତେ ଆଣି କାମସୁତେ ଦିଅଯେ ବୋଇଲେ
ଅନିରୁଦ୍ଧଙ୍କୁ ନ ଦେଖି ତନୁ ମୋର ଦହେ
ଏ ପିଣ୍ଡରେ ଆଉକ୍ଷଣେ ପ୍ରାଣ ଯେ ନ ରହେ
ଏହିପରି କହୁ କହୁ ଆପଣେ ଗୋବିନ୍ଦ
ପ୍ରବେଶ ହୋଇଲେ ଆସି ଦେବର୍ଷି ନାରଦ
ତାହାଙ୍କୁ ଦେଖିଣ କୃଷ୍ଣ ବହନ ଉଠିଲେ
ପାଦ ଅର୍ଘ୍ୟଦେଇ ଯତନରେ ପୂଜାକଲେ ।
ପ୍ରଭୁ ବୋଇଲେ ସୌଭାଗ୍ୟ ଅଟଇ ମୋହର
ଯେଣୁ ମୋ ପୁରେ ପଡ଼ିଲା ଦେବର୍ଷି ପୟର
ନାରଦ ବୋଲନ୍ତି ଶୁଣ ଯଦୁକୁଳ ନିଧି
ଶୋଣିତ ନଗରେ କାମ ସୁତ ଅଛି ବନ୍ଦି ।
ପ୍ରତାପ ନୃପତି ବାଣାସୁର ଯାର ନାମ
ତାର ସୁତା ଉଷାବତୀ ସୁନ୍ଦରୀ ଲଲାମ ।
ତାକୁ ଚୋରି କରି ତବ ନାତି ଅନିରୁଦ୍ଧ
ବିବାହ ହେଲା ଗନ୍ଧର୍ବ ମତରେ ଗୋବିନ୍ଦ ।
ବାଣାସୁର ଜାଣି ପାରି ଏହି ସମାଚାର
ରଖିଛି ଦୃଢ଼େ ବାନ୍ଧି ସେ କରିଣ ଯବର ।
ବିଷମ ବିଷ ବାଣରେ ହୁଏ ଦୁର୍ଗ୍ରଧିଭୂତ
ତହିଁ ଯାଇ ପ୍ରତିକାର କର ଜଗନ୍ନାଥ ।
ଏହାଶୁଣି ନାରାୟଣ ବହୁତ କାନ୍ଦିଲେ
କ୍ଷଣକେ ପୁଣି ଆପଣେ ଧଇର୍ଯ୍ୟ ଧଇଲେ ।
ସୈନ୍ୟ ସାଜିବାକୁ କୃଷ୍ଣ ହେଲେ ତତପର
ଅନିରୁଦ୍ଧଙ୍କୁ ବନ୍ଧନୁ କରିବେ ଉଦ୍ଧାର ।
ସୂତ ମୁନି ବଖାଣନ୍ତି ନୈମିଷା କାନନରେ
ଶ୍ରବଣ ଚକିତ ଶନକାଦି ମୁନିମାନେ ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ର ମୋହନ ଏ ଗୀତ ରଚଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର
ଖଣ୍ଡେ ସୂତ ଶୌନକ ସମ୍ବାଦେ
ଦ୍ୱାରକାଲୀଳା ବର୍ଣ୍ଣନେ ନାମ
ଏକ ପଞ୍ଚାଶୋଽଧ୍ୟାୟଃ ।



## ଦ୍ୱିପଞ୍ଚାଶ ଅଧ୍ୟାୟ
## ହରିହର ଯୁଦ୍ଧାଦି ବିବରଣ

ସୂତ ଉବାଚ

ଏଥୁ ଅନନ୍ତେଣ ବକ୍ତା ଯେ ସୂତ ମୁନିବର
କହନ୍ତି ବିଚିତ୍ର କଥା ତପିଙ୍କ ଆଗର ।
ଯୁଦ୍ଧ ସାଜ ଗଲେ କୃଷ୍ଣ ବଳରାମ ସଙ୍ଗେ
ପ୍ରଦ୍ୟୁମ୍ନ ସାତ୍ୟକି ଆଦି ଗଲେ ଚତୁରଙ୍ଗେ ।
ବାର ଅକ୍ଷୌହିଣୀ ସେନା ଶ୍ରୀହରି ଘେନିଲେ
ବାଣାସୁର ପୁର ଚଉଦିଗରେ ବେଢ଼ିଲେ ।
ଅଗ୍ନିଗଡ଼ ଅଛି ତାର ଉଆସ ବାହାରେ
ଆକାଶ ମାର୍ଗରେ ଶକ୍ତି ନୁହଇ ଯିବାରେ ।
ଦେଖି ଆଜ୍ଞା ଦେଲେ ହରି ଗରୁଡ଼େ ବହନ
ଅତି ଶୀଘ୍ର ମହାଅଗ୍ନି କରିଭୁ ନିର୍ବାଣ ।
ଆଜ୍ଞାପାଇ ବୈନତେୟ ସ୍ୱର୍ଗ ନଦୀ ଗଲା
ଥଣ୍ଟେ ଜଳ ଆଣି ସେହି ଅଗ୍ନିରେ ଢ଼ାଳିଲା
ସମୂଳେ ଅନଳ ରାଶି କରି ସେ ନିର୍ବାଣ
କୃଷ୍ଣଙ୍କ ଛାମୁରେ ପକ୍ଷୀ ମିଳିଲା ବହନ ।
ତୋଷ ହୋଇ ପୁରେ ପ୍ରବେଶିଲେ ଗଦାଧର
ଯୁଦ୍ଧ ବାର୍ତ୍ତା ଶୁଣି ପ୍ରଫୁଲ୍ଲ ସେ ବାଣାସୁର ।
ନାଚି ନାଚି ମତ୍ତଗର୍ବେ ହରଷ ହୋଇଣ
ସୈନ୍ୟ ସଙ୍ଗେ କଲା ରଣସ୍ଥଳକୁ ଗମନ ।
ସହସ୍ରେକ ହାତେ କଲା ବାଣ ବରଷଣ
ବୃଷପୃଷ୍ଠେ ଯୁଦ୍ଧକୁ ଆଇଲେ ତ୍ରିଲୋଚନ ।
କୃଷ୍ଣଙ୍କ ଉପରେ ବାଣ ବିନ୍ଧିଲେ ଶଙ୍କର
ଭୟଙ୍କର ଘୋରରଣ ହେଲା ବେନିଙ୍କର ।
କାର୍ତ୍ତିକେଶ ସଙ୍ଗେ କାମଦେବ କରେ ରଣ
ବେନି ଜନେ ଶର ଜାଳେ ଛାଇଲେ ଗଗନ

ପ୍ରଳୟ କାଳରେ ଯେସନେ ଉଚ୍ଛଳେ ଅର୍ଣ୍ଣବ
ଘୋରରଣ ସେସନେ ଦେଖନ୍ତି ଦେବସର୍ବ ।
ଶୂଳ ହସ୍ତେ ଶିବ ଆରମ୍ଭିଲେ ମହାରଣ
ଶୂଳ ଦେଖି ଚକ୍ର ଚଳାଇଲେ ଜନାର୍ଦ୍ଦନ ।
ଦେଖି ସର୍ବ ଦେବଗଣ ମନେ ପାନ୍ତି ତ୍ରାସ
ବିଷମ ଅନଳେ ପୋଡ଼େ ଧରଣୀ ଆକାଶ ।
ଅଗ୍ନି ଦହନେ ଜଳିଲେ ବାଣ ସୈନ୍ୟଗଣ
ସହି ନ ପାରି ଭାଜିଲା ସେ ବାଣ ରାଜନ ।
ମହାଦେବ ଏଡ଼ୁ କୃଷ୍ଣ ଚକ୍ର ହାତେ ନେଇ
ବାଣରେ ଛେଦିଲେ ଯାନ କ୍ରୋଧଭରହୋଇ
ବିଷମ ଚକ୍ର ଅନଳ ଶିବଙ୍କୁ ବେଢ଼ିଲା
ସେ ବିପଦ ଦେଖି ଦୁର୍ଗା ମଧ୍ୟେ ଉଭାହେଲା ।
ପାର୍ବତୀଙ୍କି ଦେଖି ହରି ବିସ୍ମୟ ହୋଇଣ
ଚକ୍ର ଘେନି ଯୁଦ୍ଧ କଲେ ହସି ହସି ପୁଣ ।
ଅବସର ପାଇ ରାଜା ଗଲା ନିଜ ଘରେ
ମହେଶ୍ୱର ଜ୍ୱର ଧାଏଁ ଯୁଦ୍ଧ କରିବାରେ ।
ତିନିପାଦ ତ୍ରିନୟନ ଶିରେ ଜଟାଧର
ଛଅହାତେ ଅସ୍ତ୍ର ଘେନି ବୋଲେ ମାର ମାର
ଜ୍ୱରକୁ ଦେଖି ଶ୍ରୀହରି ମୋହିତ ହୋଇଲେ
ସମୟ ପାଇଣ ନିଜ ଜ୍ୱର ସୃଷ୍ଟି କଲେ ।
ଧାଇଁଲା ବୈଷ୍ଣବ ଜ୍ୱର ଶିବ ଜ୍ୱର ସ୍ଥାନେ
ଦୁଇଜ୍ୱରେ ଘୋର ଯୁଦ୍ଧ ତ୍ରସ୍ତ ଦେବଗଣେ ।
ତହିଁନ୍ତେ ବୈଷ୍ଣବ ଜ୍ୱର ଧରି ଶିବ ଜ୍ୱରେ
ଜଟା ଓଟାରି ପିଙ୍ଗିଲା ଅବନୀ ଉପରେ ।
ମୋହଗଲା ଶିବଜ୍ୱର ଦୁଷ୍କର ତାଡ଼ନେ
କରଯୋଡ଼ି ସ୍ତବ କରେ କୃଷ୍ଣଙ୍କ ଚରଣେ ।
ନମେ ନମଃ ପୂର୍ଣ୍ଣବ୍ରହ୍ମ ପ୍ରଣତ ପାଳନ
ନମୋନମଃ ପରମାତ୍ମା ନମୋ ନାରାୟଣ ।
ଆପଣେ ସୃଜ କାହ୍ନିକ ସଂସାରୁଛ ପୁଣି
ତୁମ୍ଭ ପ୍ରଭାବ କେ ଅବା ଜାଣେ ଚକ୍ରପାଣି ।
ଜ୍ୱରର ଏମନ୍ତ ସ୍ତବ ଶୁଣି ନାରାୟଣ
ଦୟାକରି ନିଜ ଜ୍ୱର ହରିଲେ ବହନ ।
ଏହିକଥା ଶ୍ରଦ୍ଧା ଚିତ୍ତେ ଶୁଣେ ଯେ କର୍ଣ୍ଣରେ
ଜ୍ୱର ବେଗ ତାର କିଛି କରି ଯେ ନ ପାରେ
ତହୁଁ ଶିବ ଜ୍ୱର କରି କୃଷ୍ଣଙ୍କୁ ପ୍ରଣାମ
ଚଳିଗଲା ନିଜ ସ୍ଥାନେ ମେଲାଣି ଘେନିଣ ।
ଜ୍ୱର ବ୍ୟର୍ଥ ଦେଖି ବାଣାସୁର ଅଙ୍ଗ ଥରେ
ସହସ୍ରେକ ହସ୍ତେ ବାଣମାନ ବୃଷ୍ଟି କରେ ।
କାଟିଲେ ସକଳ ଅସ୍ତ୍ର ପ୍ରଭୁ ଚକ୍ରଧର
ଶୂଳହସ୍ତେ ଯୁଝେ ରାଜା ଅତି ଭୟଙ୍କର ।
ଯୁଝିଲେ ଶ୍ରୀଧର ଶୂଳ ଦେଖି ଚକ୍ରହସ୍ତେ
ରାଜାର ବିପଦ ଶିବ ଦେଖିକରି ନେତ୍ରେ ।
ସ୍ତବ ଆରମ୍ଭିଲେ କରଯୋଡ଼ି ଗୌରୀପତି
ନମୋ ନମୋ ଜଗନ୍ନାଥ ହେ ଅଖିଳ ଗତି ।
ଅଚ୍ୟୁତ ଅନନ୍ତ ଅଜ ଅବ୍ୟୟ ଆକାର
ଆତ୍ମାରାମ ଆଦିକନ୍ଦ ଆବ୍ରହ୍ମ ଆଧାର ।
ଇଙ୍ଗିତେ ଇତରେ ଇଷ୍ଟପଦ କର ଦାନ
ଇସତେ ଇକ୍ଷଣେ ଈଶ କର ପରିତ୍ରାଣ ।
ତୁମ୍ଭ ବିନେ ଜଗତରେ ଆନ କେହି ନାହିଁ
ମାରିବା ତାରିବା ତବ ହସ୍ତରେ ଅଛଇଁ ।
ଯାହାକୁ ଯେମନ୍ତ ଭାବେ କରିଛ ନିଯୁକ୍ତ
ସେହି ପଥରେ ଗମନ୍ତି ସେହି ଅବିରତ ।
ସକଳ ପ୍ରାଣୀଙ୍କ ହୃଦେ ତୁମ୍ଭେ ବିଜେ କର
ଅଂଶ ରୂପେ ଅସଂଖ୍ୟ ଯେ ଅଟେ ଅବତାର
କରୁଣା ନିଧନ କୃଷ୍ଣ କମଳା ଜୀବନ
ଖଗେନ୍ଦ୍ର ପତି ଖେଚର ଖଳ ବିନାଶନ ।
ଗୋପୀନାଥ ଗୋ ଗୋପ ଗୋପିମା ହିତକାରୀ
ଘନେ ଆହେ ଘନଶ୍ୟାମ ରଖ କୃପାକରି ।
ନମୋ ନମୋ ନୀଳମଣି ନିତ୍ୟାନନ୍ଦ ରୂପ
ଚତୁର୍ଭୁଜ ଚିନ୍ତାମଣି ଚୈତନ୍ୟ ସ୍ୱରୂପ ।
ଜନତେଜ ମୋରେ ପଦଛାୟା କର ଦାନ
ଜୟ ଜଗଧାଶ ଜଗନ୍ନାଥ ଜନାର୍ଦ୍ଦନ ।
ଝଲକ ଉଠେ ଝଲକେ ଅଗ୍ନି ସୁଦର୍ଶନେ
ତା ଦେଖି ହେ ଜଗନ୍ନାଥ ଭୀତ ହୁଏ ମନେ ।
ଅଟଳ ବିହାରୀ ଟଳ ହୀନ ଭଗବାନ
ଠେକିଲିଣି ଠାକୁର ହେ କର ପରିତ୍ରାଣ ।
ଡମ୍ବରୁ ବାଜଇ ସଦା ତବ ନାମମାନ
ଢ଼ଳଢ଼ଳ ଜଳଦ ବରନ କରେ ଧ୍ୟାନ ।
ଣାରଜନନ୍ଦନ ନୀଳ ନୟନ ତୁମ୍ଭର
ତାରିକୋଣେ ଏ ତାପିତେ ଗୃହଁ ବିଶ୍ୱମ୍ଭର
ଭକ୍ତେ ଥିରେ ହର କମେ ସ୍ଥିର ନୋହିପାରି
ଦୋଷ କ୍ଷମାକର ଦୟାନିଧି ଦୟାକରି ।

ତୁଟନ୍ତି ଧରା ଭାର ହାରି ଜଗତ ଈଶ୍ୱର
ନମୋନମୋ ନାରାୟଣ ମହାଲକ୍ଷ୍ମୀ ବର ।
ପତିତ ପାବନ ନାଥ ପରମ ଆଶ୍ରୟ
ଫାନ୍ଦେ ପଡ଼ିଅଛୁ ଫେରି ଚାହଁ କୃପାମୟ ।
ବିଷ୍ଣୁ ବୈଷ୍ଣବଙ୍କ ପ୍ରାଣ ବିଘ୍ନ ବିନାଶନ
ଭୟେ ଭୀତ ଜନଙ୍କୁ ଅଭୟ ଦିଅ ଦାନ ।
ଦାନବ ମୋହିଲ ମାୟା ମୋହିନୀ ରୂପରେ
ଶମନ ଦଣ୍ଡରୁ ଜନ ସେ ଭବେ ନିସ୍ତରେ ।
ରାବଣ ବିନାଶି ରାମାବତାରେ ତ୍ରେତାରେ
ଲକ୍ଷ୍ମୀ ଲକ୍ଷ୍ମଣଙ୍କୁ ଘେନ ଫେରିଲ ସ୍ୱପୁରେ ।
ବିଧିର ବାସନା ପୂର୍ଣ୍ଣ କରି ଅନିବାର
ଶରଣ ଜନ ତାରଣ ବ୍ରହ୍ମାଣ୍ଡ ଠାକୁର ।
ସଦା ନବୟୁବା ପୁଣି ଐଶ୍ୱର୍ଯ୍ୟଶାଳିନୀ
ସ୍ୱଭକ୍ତ ଗୋଚରେ ସର୍ବସିଦ୍ଧି ହୁଏ ପୁଣି ।
ଦାସକୁ ବିନାଶ କଲେ ହେବ କେଉଁ ଯଶ
ନହୋଇ ବିମୁଖ କ୍ଷୀଣ ଜନେ କ୍ଷମଦୋଷ ।
ତୁମ୍ଭର ପ୍ରସାଦେ ମହାଦେବ ମୋର ନାମ
ବାଣାସୁରେ ପ୍ରାଣ ଦାନ ଦିଅ ନରୋତ୍ତମ ।
ଶଙ୍କରଙ୍କ ସ୍ତବ ପାର୍ଥେ ସନ୍ତୁଷ୍ଟ ହୋଇଣ
କହିଲେ ତାହାଙ୍କୁ ପ୍ରଭୁ ଅଳପେ ହସିଣ ।
ନ ନେବି ବାଣାର ପ୍ରାଣ ପ୍ରହ୍ଲାଦ ବଚନେ
ମାତ୍ର ସବୁ ବାହୁ ଛେଦିବଇଁ ଚକ୍ରମୁନେ ।
ସହସ୍ରେକ ହସ୍ତୁ ମଦେ ମତ୍ତ ଅତିଶୟ
ଗୁରିଗୋଟି ହାତରଖି କାଟିବି ନିଶ୍ଚୟ ।
ଏହା ଶୁଣି ଶିବ ଯେଣୁ ଅନୁମତି ଦେଲେ
ଚକ୍ର କରେ ଧରି ବାଣା ହସ୍ତକୁ ଛେଦିଲେ ।
ଶେଷେ ଗୁରିଗୋଟି ହାତ ଛାଡ଼ିଦେଲେ ହରି
ତହୁଁ ଶିବ ତାହାକୁ ଆଣିଲେ କୋଳକରି ।
କୃଷ୍ଣଙ୍କ ସମ୍ମୁଖରେ ଶିବ ବିନୟ ଭାବରେ
ହସ୍ତ ପଦ୍ମ ଦିଅ ପ୍ରଭୁ ଏହାର ଶରୀରେ ।
ଚକ୍ର ଜ୍ୱାଳାରେ ଜଳଇ ନୃପ କଳେବର
ଶ୍ରୀକର ଲଗାଇ ବେଗେ ତାହା ଶାନ୍ତ କର ।
ଶିବଙ୍କ ବାକ୍ୟେ ଶ୍ରୀକୃଷ୍ଣ ବୁଲାଇଲେ କର
ଗୁରିହାତ ହେଲା ରାଜା ହୋଇଲା ସୁନ୍ଦର ।
ତହୁଁ ଶ୍ରୀହରିଙ୍କୁ ରାଜା ବିଧାନେ ପୂଜିଲା
ଆପଣା ନଗରେ ନେଇ ବହୁ ସ୍ତବ କଲା ।

ତଦନ୍ତେ ସଭ୍ରମେ ଅନିରୁଦ୍ଧେ ମୁକ୍ତ କରି
ଉଷାବତୀ କନ୍ୟାଦାନ ଦେଲା ଦଣ୍ଡଧାରୀ ।
ନାନା ରତ୍ନ ଯୌତୁକେ ତୋଷିଲା ନରପତି
ଗୋବିନ୍ଦେ ସମର୍ପେ ଅନିରୁଦ୍ଧ ଉଷାବତୀ ।
କୌତୁକେ ଶ୍ରୀହରି ତହୁଁ ବିଦାୟ ଘେନିଲେ
ନିଜଗଣ ଘେନି ସୁଖେ ଦ୍ୱାରକାକୁ ଗଲେ ।
ଉଷାକୁ ଦେଖି ହରଷ ପୁରବାସୀ ଜନେ
ପୁତ୍ର ପୁତ୍ରବଧୂ ଗଲେ ରତି ନିକେତନେ ।
ଅମୃତ ବାରିଧି ଲୀଳା ଅତି ସୁବିସ୍ତାର
ବାଞ୍ଛା ପୂର୍ଣ୍ଣ ସଦା ଶ୍ରଦ୍ଧା ହୁଏ ବର୍ଣ୍ଣିବାରେ
ପୁସ୍ତକ ବିସ୍ତାର ଭୟେ ସୂକ୍ଷ୍ମେ ବିରଚନ
ବକତା ସୂତ ମହର୍ଷି ଶ୍ରୋତା ମୁନିଗଣ ।
ସେହି ସାଧୁମାନଙ୍କର ମୁଁ ଦାସାନୁଦାସ
ଅଧମ ଷେନିଙ୍କୁ ଦୟାକର ପୀତବାସ ।
ଏ ବ୍ରହ୍ମ ପୁରାଣ ପଢ଼ି ଶୁଣି ନାରୀ ନରେ
ପରଂବ୍ରହ୍ମେ ଗତି ଲଭିବେ ଅନ୍ତିମରେ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ହରିହର
ଯୁଦ୍ଧାଦି ବର୍ଣ୍ଣନଂ ନାମ
ଦ୍ୱିପଞ୍ଚାଶୋଽଧ୍ୟାୟଃ ।



## ତ୍ରିପଞ୍ଚାଶ ଅଧ୍ୟାୟ
## ନୃଗରାଜା ଉପାଖ୍ୟାନ

ସୂତ ଉବାଚ

ସୂତ ମହର୍ଷି କହନ୍ତି ଏଥୁ ଅନନ୍ତରେ
ମନ କର୍ଣ୍ଣ ଦେଇ ଶୁଣ ସର୍ବ ମୁନିବରେ ।
ଏକଦିନେ ଦ୍ୱାରକାରେ ହେଲା ଯା ଘଟନ
ତାହା ମୁଁ ସଙ୍କ୍ଷେପି ଏବେ କରୁଛି ବର୍ଣ୍ଣନ ।
ଯାଦବ କୁମାର ଯେତେ ଆନନ୍ଦ ଚିତ୍ତରେ
ବିହରିବାକୁ ଚଳିଲେ କାନନ ଭିତରେ ।
ବହୁକ୍ଷଣ ବନ କ୍ରୀଡ଼ା କରି ତାହାପର
ପିପାଶାରେ ଅତିଶୟ ହୋଇଲେ କାତର ।
ଜଳ ପାଇଁ ଖୋଜି ଖୋଜି କାହିଁ ନ ପାଇଲେ
ତଦନ୍ତେ ଏକଇ କୂପ ସେଠାରେ ଦେଖିଲେ
ଜଳହୀନ କୂପ ଦେଖି ଲଗିଲା ତରାସ
ଦେଖିଲେ ପଡ଼ିଛି ତହିଁ ଏକ କୃକଳାସ ।

ବିଶାଳ ଶରୀର ତାର ପର୍ବତ ପ୍ରମାଣ
କୂପର ମଧ୍ୟରେ ସେହୁ ରହିଥାଏ ଜାଣ ।
ତାକୁ ଦେଖି ମନେମନେ ଆଶ୍ଚର୍ଯ୍ୟ ହୋଇଲେ
କୂପ ଭିତରୁ କାଢ଼ିବା ପାଇଁ ବିଚାରିଲେ ।
ପରସ୍ପର ମନ ମଧ୍ୟେ ଯୁକ୍ତିକରି ସାର
ଯାଦବ ନନ୍ଦନ ଯେତେ କରନ୍ତି ବିଚାର ।
କୂପର କୃକଳାସକୁ ଟେକିବାକୁ ପୁଣ
ଚର୍ମ ଦଉଡ଼ିରେ କଲେ ତାହାକୁ ବନ୍ଧନ ।
ପ୍ରାଣପଣେ ଯଦୁଗଣ ଉଦ୍ଧାର ଲାଗିଲେ
କାହିଁରେହିଁ କୃକଳାସେ ଟେକି ନ ପାରିଲେ
ଟେକିବାର ଦୂରେଥାଉ ଝିଙ୍କି ନ ପାରନ୍ତି
ବହୁଯତ୍ନ କଲେ ତୋଳିବାରେ ଯଦୁପନ୍ତି ।
ମହା ବଳବାନ ଯେତେ ଯାଦବ ନନ୍ଦନ
ଏକାବେଳେ ବିସ୍ମୟରେ ହୋଇଲେ ମଗନ
କେଉଁମତେ କୃକଳାସେ ଉଦ୍ଧାରି ନ ପାରି
କୃଷ୍ଣଙ୍କ ଆଗେ କହିଲେ ସର୍ବେ ଯାଇକରି ।
ଅହେ ଦେବ କି ଦେଖିଲୁ ବିଚିତ୍ର ଘଟନ
କୂପେ ଏକ କୃକଳାସ ହୋଇଛି ପତନ ।
ପ୍ରକାଣ୍ଡ ଶରୀର ତାର ବିଷମ ଆକାର
ଆମ୍ଭେ ସର୍ବେ ଗଲୁ ତାକୁ କରିବୁ ଉଦ୍ଧାର ।
ମାତ୍ର ହଲାଇବା ଶକ୍ତି କାର ହେଲା ନାହିଁ
ଏଣୁ ତାକୁ ଦେଖିବାକୁ ଚାଲ ଯଦୁସାଇଁ ।
ଜାଣିଲୁ କେଉଁ ମାୟାବୀ ପ୍ରକାଶିଲା ମାୟା
କୂପମଧ୍ୟେ ପଡ଼ିଅଛି ବଢ଼ାଇ ତା କାୟା ।
ତାକୁ ଦେଖି ଆମ୍ଭ ମନେ ହେଲା ବଡ଼ ଭୟ
ଚାଲ ପ୍ରଭୁ ଏକବାରେ ଘୁଞ୍ଚିବ ସଂଶୟ ।
ତାହା ଶୁଣି ବାସୁଦେବ ଚାଲିଲେ ସତ୍ୱର
କୂପ ନିକଟକୁ ଯାନ୍ତି ଦେବ ଦାମୋଦର ।
ଈଶ୍ୱରଙ୍କ ମାୟାବଳ କେବା ବୁଝିପାରେ
ବାମହାତେ ଧରି ହରି ଟେକିଲେ ତାହାରେ
କୂପରୁ ଯେବେଳେ କୃକଳାସକୁ ତୋଳିଲେ
ସର୍ବ ପାପ ତା ଦେହରୁ ବିନାଶ କରିଲେ ।
ତେଣୁ ଦିବ୍ୟକାନ୍ତି ଧରି ଉଭା ହେଲା ଦୈତ୍ୟ
ସୁବର୍ଣ୍ଣକୁ ଜିଣି ବର୍ଣ୍ଣ ଦିଶଇ ଶୋଭିତ ।
ଦିବ୍ୟ ଅଳଙ୍କାର ଦେହେଁ ଦିବ୍ୟମାଳା ଗଳେ
ପଡ଼ିଲା ସେ କରଯୋଡ଼ି କୃଷ୍ଣ ପାଦତଳେ ।
ପ୍ରଭୁଙ୍କର ପାଦେ ପଡ଼ି ଉଠି ଉଭା ହୋନ୍ତେ
ଦରହସି ପୁଚ୍ଛାକଲେ ତାକୁ ଜଗନ୍ନାଥେ ।
ଆହେ ମହାଭାଗ ପଚାରୁଛି ମୁଁ ତୁମ୍ଭରେ
କେଉଁତୁମ୍ଭେ ସୌଭାଗ୍ୟଶାଳୀ କହ ମୋଆଗରେ
ତୁମ୍ଭ ଏ ସୁନ୍ଦର ରୂପ ଦେଖି ଛନ୍ତି ନୟନ
ଏତେ ଦୁର୍ଦ୍ଦଶାରେ ଥିଲ କେବଣ କାରଣ ।
କହେ କେଉଁ ଦେବ ତୁମ୍ଭେ ନିକଟେ ମୋହର
କେଉଁ ପାପୁଁ ହୋଇଥିଲା ଏ ରୂପ ତୁମ୍ଭର ।
ମୋଆଗେ ପ୍ରକାଶ କର ଯଥେଷ୍ଟ କାରଣ
ଗୋବିନ୍ଦ ମଧୁର ବାକ୍ୟେ ପୁଚ୍ଛନ୍ତି ଏସନ ।
କୃଷ୍ଣଙ୍କ ବଚନେ ତହୁଁ କହେ ସେହୁ ଜନ
ଶୁଣ ପ୍ରଭୁ କହୁଛି ମୁଁ ନିଜ ବିବରଣ ।
ଈକ୍ଷ୍ୱାକୁ ବଂଶରେ ଜନ୍ମ ନୃଗ ନାମ ମୋର
ଦାନଧର୍ମେ ମୁହିଁ ରତ ଥିଲି ନିରନ୍ତର ।
ଯୁକ୍ତି ନୁହେଁ ନିଜ ଅପରାଧ କହିବାର
ଆପଣଙ୍କ ଆଜ୍ଞାରେ ମୁଁ କହୁଛି ମାତର ।
ମୋ ସମାନ ଦାତା କେହି ନଥିବେ ଭୁବନେ
ତବ ସାକ୍ଷାତେ ତାହା ମୁଁ କହିବି କେସନେ
ଆକାଶରେ ତାରାଯେତେ ଛନ୍ତି ଅଗଣନ
ତାହାଙ୍କ ସଂଖ୍ୟା ଯଦ୍ୟପି ହୁଏ ନିରୂପଣ ।
ମୋ ଦାନର ସଂଖ୍ୟା କେତେ କଳି ନହୋଇବ
ଜଳ ଧାରାପରି ଦାନ ଜାଣନ୍ତୁ ସରବ ।
କି କହିବି ଦାନ କଥା ତୁମ୍ଭ ସମୀପରେ
ଦୁଗ୍ଧବତୀ ଗାଈ କେତେ ଦେଇଛି ବିପ୍ରରେ
ବତ୍ସା ଧେନୁ ଅକାତରେ କରିଛି ମୁଁ ଦାନ
ନାନାବିଧ ରତ୍ନ ସହିତେ ରଜତ ସୁବର୍ଣ୍ଣ ।
ଆନନ୍ଦେ ମୁଁ ଦାନକରେ ଯେବା ଯେହୁଚାହେଁ
ମୋହର ଦୁର୍ଗତି କଥା ଶୁଣ ଯଦୁରାୟେ ।
ଏକଦିନେ ବିପ୍ର ଏକ ଆସି ମୋ ଭୁବନ
ଗାଈଗୋଟିଏ ମାଗିଲେ ନେବାପାଇଁ ଦାନ
ତାର ଇଚ୍ଛା ଅନୁସାରେ ଧେନୁ ଦାନ କଲି
ଆନନ୍ଦରେ ଧେନୁ ନେଇ ବିପ୍ରଗଲା ଚଳି ।
ସେ ବିପ୍ର ଗୃହରୁ ଧେନୁ ପଳାଇ ଆସିଲା
ପୁନଶ୍ଚ ମୋହର ଧେନୁ ପଲ୍ଲେ ମିଶିଲା ।
ଏ ମରମ କିଛିମାତ୍ର ନ ଜାଣଇ ମୁହିଁ
ସେ ଧେନୁକୁ ଅନ୍ୟ ବିପ୍ରେ ଦାନ କରିଲଇଁ

ଧେନୁ ଘେନି ବିପ୍ରେ ତାର ଗୃହକୁ ଚଳିଯାନ୍ତେ
ଆଗ ବିପ୍ର ଗାଈ ଖୋଜି ଭେଟିଗଲା ପଥେ ।
ଗାଈକି ଚହ୍ନି ସେ ବିପ୍ର ତାହାକୁ ପଚାରେ
କାହୁଁ ଏ ଗାଈ ପାଇଲୁ ସତ କହ ମୋରେ
ସେ ବୋଇଲା ନୃଗରାଜା ମୋତେ କଲା ଦାନ
ଆନନ୍ଦରେ ମୁହିଁ ଘେନି ଯାଉଛି ସଦନ ।
ଏମନ୍ତେ କହନ୍ତେ ତାକୁ ସେହୁ ଦ୍ୱିଜବର
ପୁଣି ପୂର୍ବ ଦ୍ୱିଜ ହେଲା କ୍ରୋଧରେ ଅସ୍ଥିର ।
ରାଗେ ଜର ଜର ହୋଇ ବୋଇଲା ବ୍ରାହ୍ମଣ
କାଲି ଏ ଗାଈକି ମୁହିଁ ନେଇଥିଲି ଦାନ ।
ବାଉଳାରେ ମୋର ଘରୁ ଆସି ସେହି ଗାଈ
ରାଜାର ଧେନୁ ପଲ୍ଲରେ ମିଶିଲା ସେ ଯାଇ ।
ନ ଜାଣି ତୁମ୍ଭକୁ ଆଜ ରାଜା ଦେଲା ଦାନ
ମୋ ଗାଈ ଫେରାଇ ଦିଅ ଅନ୍ୟକୁ ବହନ ।
ଏହା ଶୁଣି ପଛବିପ୍ର କ୍ରୋଧଭର ହୋଇ
ବୋଇଲେ କାହିଁକି ମିଥ୍ୟା ଭାଷୁଛ ଏଠାଇଁ
ଦୁହେଁ ମୋତେ ପଚାରିଲେ ବାଦ ଲଗାଇଣ
କାହାର ହେବ ଏ ଗାଈ କହ ହେ ବହନ ।
ବିପ୍ର ଦୁହିଁଙ୍କର କ୍ରୋଧଭାବ ଦେଖି ମୁହିଁ
କୋମଳ ବଚନେ ତାଙ୍କୁ କହିଲି ବୁଝାଇ ।
ମୋହର ବିନୟ ବାଣୀ ଶୁଣ ହେ ବ୍ରାହ୍ମଣେ
ବୃଥାରେ କଳହ କିମ୍ପାକର କ୍ରୋଧମନେ ।
ବିବାଦରେ ମତ୍ତ ନୁହଁ ବିପ୍ର ଦୁଇଜଣ
ମୋହର କଥାରେ କ୍ଷାନ୍ତ ହୁଅ ବର୍ତ୍ତମାନ ।
ପୁଣି ମୋହ ଗୀରେ ଯେଉଁ ଦ୍ୱିଜହେବ କ୍ଷାନ୍ତ
ଲକ୍ଷେକ ଧେନୁ ମୁଁ ଦାନ କରିବି ନିଶ୍ଚିନ୍ତ ।
କାହିଁରେ ତୋଷ ନୋହିଲେ ସେଦୁଇ ବ୍ରାହ୍ମଣ
କହିଲେ ତହିଁ କ୍ରୋଧରେ ଦେଖାଇଣ ପଣ ।
ବିପ୍ରଙ୍କ କଥାରେ ମୁହିଁ ବିପଦେ ପଡ଼ିଲି
କି କାରଣେ ଭାବ ସେ ଉପାୟ ନ ପାଇଲି ।
ସେ ଉତ୍ତରୁ ବିପ୍ରଦୁହେଁ ଧେନୁ ତ୍ୟାଗକଲେ
ଅତି କ୍ରୋଧ ବହି ନିଜ ନିଜ ପୁରେ ଗଲେ ।
ମୋହର ମୃତ୍ୟୁ ହୁଅନ୍ତେ ଯମଦୂତଗଣେ
ଯମଭୁବନକୁ ଘେନିଗଲେ ତତକ୍ଷଣେ ।
ମୋତେ ପଚାରିଲେ ତହିଁ ସେହି ଜନ୍ତୁପତି
ଆଗ କି ଭୋଗ କରିବୁ କହ ନରପତି ।

ପାପଫଳ ଭୋଗିବୁ କି ଅବା ପୁଣ୍ୟଫଳ
ଅବିଳମ୍ବେ କହ ରାଜା ନହୋଇ ଆକୁଳ ।
ଶୁଭ ବା ଅଶୁଭ ଭୋଗ ଆଗ କିସ ଗୃହଁ
ମୋହର ଛାମୁରେ ତୋର ବାସନା ଜଣାଅ
ଧର୍ମରାଜାଙ୍କୁ କହିଲି ବିନୀତ ବଚନେ
ଆଗ ମୁଁ ଅଶୁଭ ଫଳ ଭୋଗିବି ଏକ୍ଷଣେ ।
ଏମନ୍ତ କହିଣ ଯେଉଁ ଶମନଙ୍କ ଜତ
କୃକଳାସ ରୂପେ ମୋର ହୋଇଲା ଦୁର୍ଗତି
କୃକଳାସ ହୋଇଥିଲି କୂପର ଭିତର
ତବ ଦରଶନେ ମୁକ୍ତି ଲଭିଲି ଶ୍ରୀଧର ।
ଯୋଗୀଙ୍କ ବାଞ୍ଛିତପଦ ଦେଖିଲି ନୟନେ
ଯୋଗେଶ୍ୱର ତପ ରୂପ ଭାବୁଥାନ୍ତି ମନେ ।
ସେହି ପ୍ରଭୁ ସମ୍ମୁଖରେ କରି ଦରଶନ
ଦ୍ୱିଜହୁଁ ହୋଇଲା ମୋର ସୌଭାଗ୍ୟ ଘଟନ
ଏଜଡ଼ ବିଷମ କୂପରୁ ମୋତେ ଉଦ୍ଧାରିଲ
ଦୟା କରି ତତ୍ତ୍ୱଜ୍ଞାନେ ଭ୍ରମ ଘୁଞ୍ଚାଇଲ ।
ଏବେ କୃପା ଦୃଷ୍ଟି ମୋରେ କର ନାରାୟଣ
ଯେହ୍ନେ ତବ ପଦେ ମତି ରହେ ଅନୁକ୍ଷଣ ।
ଅନନ୍ତ ଶକ୍ତି ତୁମ୍ଭର କି ବର୍ଣ୍ଣିବି ଆଉ
ହେ ମାଧବ ବାସୁଦେବ ଶଂଖ ଚକ୍ର ବାହୁ ।
ଦେବ ଦେବ ଜଗନ୍ନାଥ ପତିତପାବନ
ହେ ଗୋବିନ୍ଦ ହୃଷୀକେଶ ପ୍ରଭୁ ଜନାର୍ଦ୍ଦନ ।
ଅଚ୍ୟୁତ ଅବ୍ୟୟ ଅଜ ବ୍ରହ୍ମାଣ୍ଡରପତି
ଭବବନେ ଅନ୍ଧ ମୁହିଁ ଅତି ମୂଢ଼ମତି ।
ସଦା ଆନନ୍ଦ ସ୍ୱରୂପ ହେ ବିଶ୍ୱ ବିଧାତା
ସବୁ ପ୍ରାଣୀଙ୍କ ଆଶ୍ରୟ କର୍ମଫଳ ଦାତା ।
ଅତି ଦୀନହୀନ ତତ୍ତ୍ୱ ନ ଜାଣଇ ମୁହିଁ
ଦିଅ ଅଭୟ ପୟର ମୋ ଶିରେ ଚଢ଼ାଇ ।
ଏହିରୂପେ ସ୍ତୁତିକଲେ କୃଷ୍ଣଙ୍କୁ ନୃପତି
ପ୍ରଦକ୍ଷିଣ ଅନ୍ତେ ସେହୁ ଆଗରେ ପ୍ରଣତି ।
କୃଷ୍ଣ ଅନୁମତି ଘେନି ନୃଗ ନରପତି
ବିମାନ ଆରୋହି ସ୍ୱର୍ଗପୁରେ କଲା ଗତି ।
କୃଷ୍ଣ କୃପାରେ ସେ ମୁକ୍ତି ଲଭେ ଅନାୟାସେ
ତଦନ୍ତରେ କୃଷ୍ଣ କହିଲେ ଯେ ଯଦୁବଂଶେ ।
ମୋ ବଚନ ଶୁଣ ସର୍ବେ ଯଦୁକୁଳ ଜନେ
ସକଳ ବର୍ଣ୍ଣରେ ଶେଷ ଅଟନ୍ତି ବ୍ରାହ୍ମଣେ ।

ସେମାନଙ୍କ ଆଜ୍ଞାକାରୀ ଶିଷ୍ୟ ନିକର
ବ୍ରାହ୍ମଣ ମାନେଟି ତେଣୁ ପ୍ରିୟଜନ ମୋର ।
ଶୁଣ ପୁତ୍ର ନାତିଗଣ ମୋହର ବଚନ
ଦୁର୍ଜ୍ଜୟ ଏ ବ୍ରହ୍ମଅଗ୍ନି ନୁହେ ନିବାରଣ ।
ଏ ଅଗ୍ନି ବିଷମ ମନେ ଜାଣ ହେ ନିଶ୍ଚୟେ
ବିନା ଦୋଷେ ଏଅଗ୍ନିରେ ସବୁ ଦଗ୍ଧହୋଏ
ଯେ ଦୋଷୀ ତା କଥା ମୁଁ କି କହିବ ଆବର
ନୃଗରାଜେ କି ଦୁର୍ଗତି ସାକ୍ଷୀଦେଖ ତାର ।
ସର୍ପ ବିଷକୁ ମୁଁ ବିଷ ବୋଲି ଯେ ନ ମଣେ
ମନ୍ତ୍ରେ ଔଷଧେ ତାର ପ୍ରତିକାର ଜାଣେ ।
ବ୍ରହ୍ମଶାପ ବିଷ କେବେ ନୁହେଁ ନିବାରଣ
ବ୍ରହ୍ମଅନଳରେ ଦଗ୍ଧ ହୋଇନ୍ତି ସୁରଗଣ ।
ରୋଗର ନିର୍ବାଣ ହୁଏ ଭକ୍ଷିଲେ ଗରଳ
ଅଗ୍ନି ନିବାରଣ ହୁଏ ବରଷିଲେ ଜଳ ।
ମାତ୍ର ବ୍ରହ୍ମଅଗ୍ନି କେବେ ନିବାରଣ ନୁହେଁ
ସମୂଳେ ସର୍ବ ପ୍ରାଣୀଙ୍କି ଦହଇ ନିଶ୍ଚୟେ ।
ଯଦି କେହି ହରେ କେବେ ବ୍ରାହ୍ମଣର ଧନ
ସମୂଳେ ତିନି ପୁରୁଷ ହୁଅନ୍ତି ନିଧନ ।
ବଳାତ୍କାରେ ଯେଉଁ ଜନ ବ୍ରହ୍ମସ୍ୱକୁ ହରେ
ଦଶମ ପୁରୁଷଯାଏଁ ଦଗ୍ଧ ହୋଇନ୍ତି ତାରେ
ବ୍ରାହ୍ମଣ ମନରେ କଷ୍ଟ ଦିଏ ଯେଉଁଜନ
ତାହାର ହୁଅଇ ଘୋର ନରକେ ପତନ ।
ଶୁଣ ପୁତ୍ରେ କହୁଛି ତା ସଂଖ୍ୟା ନିରୂପଣ
ଅଭିମାନେ ବିପ୍ର ଯଦି କରଇ ରୋଦନ ।
ସେହି ନେତ୍ରଜଳେ ଯେତେ ଧୂଳି ତିନ୍ତିଯାଏ
ତେତେକ ହଜାର ବର୍ଷ ନରକେ ସେ ରହେ
ମହା କୁମ୍ଭୀପାକେ ପଡ଼େ ସେହି ଦୁଷ୍ଟଜନେ
କୋଟି କଳ୍ପ କାଳପରେ ମୁକୁଳଇ ଜନେ ।
ଏଣୁ ଆହେ ପୁତ୍ରମାନେ ଶୁଣ କଥାସାର
ଦ୍ୱିଜ ଦତ୍ତ ବୃତ୍ତିହରେ ଯେଉଁ ଦୁରାଚାର ।
କିମ୍ବା ପରଦତ୍ତ ବୃତ୍ତି ବଳେ ବଳେ ହରେ
ତାହାର ପାପର ସୀମା କେବା କହିପାରେ
ସେ ପ୍ରାଣୀ ନିଶ୍ଚୟ ଷାଠୀ ସହସ୍ର ବରଷ
ବିଷ୍ଠା ମଧ୍ୟେ କୃମି ହୋଇ ପାଇଥାଏ କ୍ଲେଶ
ଏ ହେତୁ କହଇ ଶୁଣ ପୁତ୍ରନାତି ଗଣ
ବିପ୍ରେ ହେଳା ନ କରିବ କଦାଚନେ ଜାଣ ।

ମୋର ବାକ୍ୟ ଯେଉଁଜନ ଲଙ୍ଘନ କରିବ
ସେ ପ୍ରାଣୀ ଅବଶ୍ୟ ଯମଦଣ୍ଡ ଭୋଗି ହେବ
ନୃଗରାଜାର କେମନ୍ତେ ଦୁର୍ଦ୍ଦଶା ଘଟିଲା
ସାକ୍ଷାତେ ଦେଖିଲଟିକି ଯାହା ସେ ଭୋଗିଲା
ବ୍ରହ୍ମ ବିଷରେ ତାହାର ଦେହ ଗଲା ଦହି
ଦେଖିଲତ ତୁମ୍ଭେମାନେ ସର୍ବେ ନେତ୍ର ଫେଇ
ସର୍ବ ବିପଦରୁ ମୁହିଁ ରକ୍ଷା କରିପାରେ
ବ୍ରହ୍ମଶାପ କେବେ ଜାଣ ଖଣ୍ଡି ମୁଁ ନ ପାରେ
ମନେ ଅସନ୍ତୋଷ ହୁଏ ଯଦ୍ୟପି ବ୍ରାହ୍ମଣ
ମହା ଅମଙ୍ଗଳ ତାର ହୁଅଇଟି ଜାଣ ।
ଯେଉଁଜନ ଅପରାଧ କରେ ବ୍ରାହ୍ମଣରେ
ତାହାକୁ ସେବା କରିଲେ ସର୍ବ ଦୋଷହରେ
ବ୍ରାହ୍ମଣଙ୍କୁ କେହି ଯଦି କେବେ ପ୍ରହାରଇ
ସେ ପ୍ରହାର ଆସି ମୋର ଶିରରେ ବାଜଇ
ମୋହଠାରେ ଦ୍ରୋହକଲେ କ୍ଷମାକରେ ମୁହିଁ
ବ୍ରାହ୍ମଣେ ଦ୍ରୋହ ଅର୍ଜିଲେ ବହୁଦଣ୍ଡ ପାଇ
ଶୁଣି ଯଦୁବଂଶୀ ମାନେ ହୋଇଲେ ତାଟକା
ବ୍ରାହ୍ମଣଠାରେ ଦ୍ରୋହକୁ ମନେ କଲେ ଦକା
ସୁତମୁନି ପ୍ରକାଶିଲେ ଋଷିଙ୍କର ମେଳେ
ଶ୍ରବଣ କରି ଚକିତ ହୋଇଲେ ସକଳେ ।
ବ୍ରହ୍ମ ପୁରାଣ ଉତ୍ତର ଖଣ୍ଡର ଆଖ୍ୟାନ
କ୍ଷେତ୍ରମୋହନ ଗୀତରେ କରଇ ବଖାନ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ ସୁତ
ଶୌନକ ସମ୍ବାଦେ ନୃଗରାଜା ଉପାଖ୍ୟାନଂ
ନାମ ତ୍ରି ପଞ୍ଚାଶୋଽଧ୍ୟାୟଃ ।



## ଚତୁଃ ପଞ୍ଚାଶ ଅଧ୍ୟାୟ

## ବଳରାମଙ୍କର ବୃନ୍ଦାବନ ପରିଦର୍ଶନରେ ଯମୁନାର ଆକର୍ଷଣ

ସୂତ ଉବାଚ

ସୂତ ବୋଲନ୍ତି ଭୋ ମୁନି ଶୁଣ ଦେଇ ମନ
ଯାହା ଶ୍ରବଣରେ ଦୁଃଖ ହୋଇବ ମୋଚନ
ରାମକୃଷ୍ଣ ବେନିଭାଇ ଦ୍ୱାରକା ଭୁବନେ
ମାନବ ରୂପରେ ବିହରନ୍ତି ଅନୁକ୍ଷଣେ ।

ଏକଦିନେ ବଳରାମ ବୃନ୍ଦାବନ ବନେ
ଗମନକଲେ ସେ ଶୁଭେ ରଥ ଆରୋହଣେ ।
ହଳପାଣି ବୃନ୍ଦାବନେ ପ୍ରବେଶ ହୋଇଲେ
ତାଙ୍କୁଦେଖି ଗୋପଗୋପୀ ଚକିତ ହୋଇଲେ
ସକଳେ ଦେଖିଣ ତାଙ୍କୁ ଆନନ୍ଦିତ ମନ
ପାଖକୁ ଆସିଣ ତହିଁ କଲେ ଆଲିଙ୍ଗନ ।
ରୂପ ନିରେଖନ୍ତି ସର୍ବେ ବଳରାମଙ୍କର
ନନ୍ଦ ଯଶୋମତୀ ଆସି ମିଳିଲେ ସେଠାର ।
ପିତା ମାତାଙ୍କ ପୟରେ ହଳ ପ୍ରଣମିଲେ
ପିଅର ଜନନୀ ତାଙ୍କୁ କୋଳକରି ନେଲେ ।
କୋଳେ ବସାଇଣ ଦୁହେଁ କରନ୍ତି କ୍ରନ୍ଦନ
ଆଖିମାନେ ବର୍ଷନ୍ତି ଆହେ ମୁନିଗଣ ।
ଗଦ ଗଦ ସ୍ୱରେ ବଳରାମଙ୍କୁ ପୁଚ୍ଛିଲେ
କହବାପ କାହ୍ନୁ ମୋର ଅଛନ୍ତି କୁଶଳେ ।
କି ରୂପେ ରହିଛି ସେହି କୃଷ୍ଣ ଛଡ଼ା ହୋଇ
କୁଳୁହଳେ ଅଛନ୍ତିକି ଜ୍ଞାତିଜନେ ନେଇ ।
ଏହିପରି ପରସ୍ପରେ ହୋନ୍ତି କୁହାକୁହି
ଗୋପ ଶିଶୁମାନେ ଆସି ପ୍ରବେଶିଲେ ତହିଁ ।
ସଭିଙ୍କି ସମ୍ଭାଷି ରାମ ଆନନ୍ଦ ଅପାର
ଶ୍ରୀଦାମାଦି ସଖାମାନେ ମିଳିଲେ ସେଠାର ।
ସଖାମାନଙ୍କୁ ଦେଖିଣ ଆନନ୍ଦ ଅପାର
ନାନାକଥା ପଚାରିଲେ ପ୍ରଭୁ ହଳଧର ।
ବିହରନ୍ତି ମହାସୁଖେ ଘେନି ସଖାଗଣ
କହିବାକୁ ସବୁକଥା ଅସରନ୍ତି ଜାଣ ।
କ୍ଷଣକ ବସିଣ ତହିଁ ବିଶ୍ରାମ ଲଭିଲେ
ସବୁ ବୃନ୍ଦାବନବାସୀ ସେଠାକୁ ଅଇଲେ ।
ସମାଦରେ ସମ୍ଭାଷଣ କଲେ ସମସ୍ତଙ୍କୁ
ପ୍ରେମେ ପୂର୍ଣ୍ଣ ବଳରାମ ଦେଖିଣ ତାହାଙ୍କୁ ।
ବୋଇଲେ କହ ଗୋପାଳ କୁଶଳ ବାରତା
ଗୋପାଳେ ବୋଲନ୍ତି କମ୍ପା କହୁଛ ଏ କଥା
କୃଷ୍ଣବିନା ବୃନ୍ଦାବନେ ଆଉକି କୁଶଳ
ଅନ୍ଧକାରମୟ ଦେଖ ଏ ବ୍ରଜ ମଣ୍ଡଳ ।
କହ ବଳରାମ ଏବେ କୃଷ୍ଣଙ୍କ କାହାଣୀ
କି ରୂପେ ଅଛନ୍ତି ଦ୍ୱାରକାରେ ଚିନ୍ତାମଣି ।
କେମନ୍ତେ ଅଛନ୍ତି କୃଷ୍ଣ ଘେନି ପରିଜନ
ଶୁଣାଅ ହେ ବଳଭଦ୍ର ସେହି ବିବରଣ ।

କୃଷ୍ଣହସ୍ତେ କଂସ ବଂଶ ହୋଇଲା ନିଧନ
କଂସେ ମାରିଗଲେ ପରା ଦ୍ୱାରକା ଭୁବନ ।
କେତେବେ ନଇବେ ଏ ବୃନ୍ଦାବନେ ପୁନର୍ବାର
ନିବାସ କଲେ ତ ସେହି ସାଗର ମଧ୍ୟର ।
ବୋଧହୁଏ ପାଶୋରିଲେ ସେ ଆମ୍ଭମାନଙ୍କୁ
ଆମ୍ଭେମାନେ ସର୍ବେ ଝୁରି ହେଉଅଛୁ ତାଙ୍କୁ
ଏମନ୍ତେ ପୁଚ୍ଛନ୍ତି ଯେହି ଗୋପପୁର ଜନେ
ସେକାଳେ ଅଇଲେ ତହିଁ ବ୍ରଜନାରୀମାନେ ।
ବଳଦେବଙ୍କ ପ୍ରଫୁଲ୍ଲ ବଦନକୁ ଦେଖି
ସବୁ ଗୋପାଙ୍ଗନାମାନେ ହେଲେ ମହାସୁଖୀ
ଆନନ୍ଦରେ ସିମାନାହିଁ ଗୋପନାରୀଙ୍କର
ହସି ହସି ବଳରାମେ ପୁଚ୍ଛନ୍ତି ସତ୍ୱର ।
କହ ବଳଦେବ କୃଷ୍ଣ ଅଛନ୍ତି କେମନ୍ତେ
ଆମ୍ଭମାନଙ୍କୁ ସେ ମନେ ପକାନ୍ତି ନା ସତେ ।
ମାତା ପିତା ବନ୍ଧୁଗଣ ଛନ୍ତି ବା କେସନ
ଆମ୍ଭ କଥା କହୁଥାନ୍ତି ଟିକି ସୁମରଣ ।
ଆମ୍ଭମାନଙ୍କୁ ଛାଡ଼ିଣ କୃଷ୍ଣ ଗୁଚିଗଲେ
କଂସକୁ ମାରି ମଥୁରାପୁରେ ବିଜେକଲେ ।
ତହୁଁ ନୂଆ ନଗର ତୋଳାଇ ଗିରିଧାରୀ
ସେହି ଦ୍ୱାରବତୀ ପୁରେ ଚଳିଲେ ଶ୍ରୀହରି ।
ଆମ୍ଭମାନଙ୍କୁ ନିରେଖି କରି କଳାକାହ୍ନୁ
ନିଶ୍ଚିନ୍ତ ହୋଇ ରହିଲେ ହେ ରୋହିଣୀସୁନୁ
ଆଉକି ସତେ ଆସିବେ ଶ୍ରୀକୃଷ୍ଣ ଏଠାକୁ
ଚନ୍ଦ୍ରଙ୍କୁ ଚକୋରୀ ପରି ହେଉ ଦେଖିବାକୁ ।
କହ କହ ବଳରାମ ସ୍ୱରୂପ ବଚନ
କେବେ ଏଠାକୁ ଆସିବେ ମଦନ ମୋହନ ।
ଆଉକି ଗୋପିଙ୍କୁ ମନେ ପଡ଼ନ୍ତି ତାଙ୍କର
ବହୁ ନାରୀ ସଙ୍ଗେ ଏବେ କରନ୍ତି ବେଭାର ।
ହେଉଁ କୃଷ୍ଣଲାଗି ଆମ୍ଭେ ଆତ୍ମୀୟ ସ୍ୱଜନ
ପତି ପୁତ୍ର ପିତା ମାତା କଲୁଟି ବର୍ଜ୍ଜନ ।
ସେ କୃଷ୍ଣ ଆମ୍ଭମାନଙ୍କୁ ମନୁ କରି ଦୂର
ମଥୁରା ନଗର ଗଲେ ସଙ୍ଗରେ ଭୃତ୍ୟର ।
ଯିବାବେଳେ କହିଥିଲେ ପରା ରାଣ ଦେଇ
ଗୁରିଦିନେ ମଧୁପୁର ବାହୁଡ଼ିବି ମୁହିଁ ।
ସେ କଥା ପାଶୋରି ଦେଲେ ମନରୁ କେମନ୍ତେ
ଦ୍ୱାରକା ଭୁବନେ ଏବେ ରହିଲେ ନିଶ୍ଚିନ୍ତେ

ତାହାଙ୍କ କଥାରେ ଆଉ ନାହିଁତ ବିଶ୍ୱାସ
ଜାଣୁଛୁ ସେ କଲେ ଆମ୍ଭ ସଙ୍ଗେ ପରିହାସ
କେଉଁଗୋପୀ ବୋଇଲେ କିମ୍ପା କହ କୃଷ୍ଣକଥା
ନ ଶୁଣିବାକୁ ମୁଁ ଇଚ୍ଛେ କୃଷ୍ଣର ବାରତା ।
ଆମ୍ଭମାନଙ୍କୁ ଛାଡ଼ି ସେ ରହିଲେ ଯେପରି
ଆମ୍ଭେ ମଧ୍ୟ ରହିଥିବା ତା ବିନେ ସେପରି ।
ଏହିପରି କଥା କହୁଁ କହୁଁ ଗୋପୀଗଣ
କୃଷ୍ଣରୂପ କୃଷ୍ଣ ଗୁଣ କଲେ ସୁମରଣ ।
କୃଷ୍ଣରୂପ ମନେ ମନେ ସର୍ବେ ଭାଳି ହେଲେ
କୃଷ୍ଣଙ୍କ ସେ ହାସ୍ୟମୁଖ ମନେ ପକାଇଲେ ।
ଯେତେ ଯେତେ କରିଥିଲେ କଉତୁକ ଲୀଳା
ସବୁ ଗୋପୀମାନଙ୍କର ମନରେ ପଡ଼ିଲା ।
ଏକାବେଳେ କୃଷ୍ଣ କଥା କୃଷ୍ଣ ନାମ ସ୍ମରି
ବିଚଳିତା ହେଲେ ସର୍ବେ ବାଇଆଣୀ ପରି ।
କୃଷ୍ଣ କୃଷ୍ଣ ବୋଲି ସର୍ବେ ଅତି ଉଚ୍ଚସ୍ୱରେ
ତଳେ ପଡ଼ି ଗଡ଼ି ସଡ଼ି କାନ୍ଦିଲେ କାତରେ ।
ତାହାଦେଖି ବଳରାମ ଦୁଃଖିତ ହୋଇଲେ
କୃଷ୍ଣଙ୍କ କୁଶଳ କହି କେତେ ପ୍ରବୋଧିଲେ ।
ଶୁଣ ମୁନିମାନେ ଅତି ବିଚିତ୍ର କଥନ
ଏହି ରୂପେ ଗୋପୀଗଣେ ସାନ୍ତ୍ୱନା କରିଣ
କିଛିଦିନ ଗୋପରେ ରହିଲେ ସଙ୍କର୍ଷଣ
ଗୋପୀଙ୍କ ସଙ୍ଗେ କ୍ରୀଡ଼ାରେ ହୋଇଲେ ମଗନ
ରାସଲୀଳା କଲେ ହରି ଘେନି ଗୋପୀଯୂଥ
ପୂର୍ଣ୍ଣିମା ରାତ୍ର ସେକାଳେ ହେଲା ଉପଗତ ।
ଯମୁନା ପୁଳିନେ ସେହି ନିକୁଞ୍ଜ କାନନେ
ବଳଦେବ କେଳିକଲେ ଘେନି ଗୋପୀଗଣେ
ବଳରାମଙ୍କର ପ୍ରୀତି ହେତୁ ଜଳେଶ୍ୱର
ବାରୁଣୀ ଆଦେଶ କଲେ ଯିବାକୁ ସତ୍ୱର ।
କୋଟରୁ ମଧୁ ବାରୁଣୀ ହୋଇଲା ବାହାର
ସେହିକ୍ଷଣେ କୁଞ୍ଜବନ ହେଲା ସେ ଅସ୍ଥିର ।
ଗନ୍ଧ ଅନୁସରି ବଳରାମ ସେ ଧୀମନ୍ତ
ଗୋପୀଙ୍କ ସଙ୍ଗରେ ମୋଦଭରେ ମଧୁ ଖାଆନ୍ତି
ସୁରାପାନେ ଉନ୍ମତ୍ତ ହୋଇ ବଳଦେବ
ମଧୁର ସୁସ୍ୱରେ ଗାନ କଲେ ସେ ଆରମ୍ଭ ।
ମଧୁପାନେ ମହାମତ୍ତ ଦେବ ହଳଧର
ଆରକ୍ତ ନୟନ ଦୁଇ ଅତ୍ୟନ୍ତ ସୁନ୍ଦର ।
ଫୁଲମାଳା ଗଳେ ଦୋଳେ କର୍ଣ୍ଣରେ କୁଣ୍ଡଳ
ଝାଳ ବିନ୍ଦୁ ବିନ୍ଦୁ ଶୋଭେ ବଦନ କମଳ ।
ଜଳକ୍ରୀଡ଼ା ନିମନ୍ତେଣ ସେକାଳେ ଅଧୀରେ
ଆବାହନ କଲେ ପ୍ରଭୁ ଯମୁନା ନଦୀରେ ।
ଏକାବେଳେ ମଧୁପାନେ ମାତିଣ ଉଠିଲେ
ବାରମ୍ବାର ଯମୁନାକୁ ଡାକ ପକାଇଲେ ।
ଯମୁନାକୁ ଡାକନ୍ତି ସେ ରୋହିଣୀ କୁମର
ଉତ୍ତର ନ ପାଇ କ୍ରୋଧ ହୋଇଲେ ମନର ।
ବେଳକୁ ବେଳ ହୋଇଲେ କୋପଭର ଅତି
ଅନାଦର ହେତୁ ଦେଖା ନ ଆସଇ ତଥି ।
ଯମୁନାକୁ ନ ଦେଖିଣ ରୋହିଣୀ ନନ୍ଦନ
କ୍ରୋଧରେ ହୋଇଲା ତାଙ୍କ ସର୍ବାଙ୍ଗ କମ୍ପନ
ଆରକ୍ତ ଲୋଚନେ ତହୁଁ ଦେବ ହଳଧର
ହଳଅସ୍ତ୍ରେ ଯମୁନାକୁ ଟାଣିଲେ ସତ୍ୱର ।
ପୁଣି କେତେ କୁବଚନ କହିଲେ କ୍ରୋଧରେ
ମହାବେଗେ ଆକର୍ଷଣ କରିଲେ ତାହାରେ ।
କିମ୍ପା ପାପିଷ୍ଠୀ ତୋର ଏଡ଼େ ଅହଙ୍କାର
ନ ଦେଉ ଉତ୍ତର ପଦେ କଥାରେ ମୋହର
ଡାକିଲି ମୁଁ ବାରମ୍ବାର ତେବେ ନ ଆସିଲୁ
କେଉଁ ଗରବରେ ତୁହି ମତ୍ତ ହୋଇଥିଲୁ ।
ତୋହ ଅହଙ୍କାର ଆଜ କରିବି ମୁଁ ଚୂର୍ଣ୍ଣ
ସମୁଚିତ ଦଣ୍ଡ ତୋରେ କରିବି ବିଧାନ ।
ଖଣ୍ଡ ଖଣ୍ଡ ତୋତେ ଆଜ ନଷ୍ଟପ୍ରାୟ କରିବ
ଏ ମୋହର ବାକ୍ୟ ଅଟେ ଅଟଳ ଥା ଭାବ ।
ବଳଦେବ ଆଉ ବହୁ ଭର୍ତ୍ସନା କରିଲେ
ଯମୁନା ତାହାଙ୍କ କଥା ଶୁଣିଲିକ ହେଲେ ।
ତାହାଙ୍କ ବଚନ ଶୁଣି ମନେ ଭୟ ପାଇ
କୃତାଞ୍ଜଳି ପୁଟେ ତହିଁ ପ୍ରବେଶିଲା ଯାଇ ।
ଅତ୍ୟନ୍ତ ଭୀତ ମନରେ ସେଠାରେ ମିଳିଲା
ବଳଦେବଙ୍କର ପାଦେ ପତିତ ହୋଇଲା ।
ଯେତେବେଳେ ପାଦତଳେ ହୋଇଲା ପତିତ
ଭୟରେ ସର୍ବାଙ୍ଗ ତାର ହୁଅଇ କମ୍ପିତ ।
ବେନି ଚରଣକୁ ଧରି କାନ୍ଦିଣ ଲାଗିଲା
ମୃଦୁବାକ୍ୟେ ମହା ତ୍ରାସେ ସ୍ତବ ଆରମ୍ଭିଲା ।
ଆହେ ମହାବାହୁ ତୁମ୍ଭେ ଅଟ ବଳସାର
କି ଜାଣିବ ତବ କୀର୍ତ୍ତି ମୁଁ ରମଣୀ ଛାର ।

ଅପରାଧ କ୍ଷମାକର ଆହେ ହଳପାଣି
ସର୍ବାଧାର ସର୍ବାଶ୍ରୟ ଯୋଡ଼ି ବେନପାଣି ।
ମୋର ଦୋଷ ପରିହର କୃପା ଅବତାର
ତୁମ୍ଭେ ଦୟା ନ କଲେଟି ହେବ ନାରଖାର
ଅଧୀନାର ସର୍ବ ଦୋଷ ମାର୍ଜନା କରଣ
ମନରୁ ସକଳ ରୋଷ ତେଜନ୍ତୁ ଆପଣ ।
ଯମୁନାର ସ୍ତୁତି ଶୁଣି ପ୍ରଭୁ ବଳରାମ
ସଭୟା ଦେଖି ତାହାକୁ ତେଜିଲେ ସେ ତମ
ସନ୍ତୁଷ୍ଟ ନୟନେ ଗୃହିଁ ବୋଇଲେ ତାହାକୁ
ଯାଅ ଯାଅ ଆନନ୍ଦରେ ଆପଣା ପୁରକୁ ।
ଆଉ ଏପରି କରିବୁ ନାହିଁ ଦିନେ ମାତ୍ର
ଥରେ ଡାକିବେ ମିଳିବୁ ଆସି ସାଥ ସାଥ ।
ଏତେ କହି ହଳଧର ଗୋପୀଗଣ ସଙ୍ଗେ
ଯମୁନା ବିହାର କଲେ ତହିଁ ନାନାରଙ୍ଗେ ।
ହସ୍ତିନୀ ସଙ୍ଗରେ ଯେହ୍ନେ ମତ୍ତ କରିବର
ତେହ୍ନେ ଗୋପୀ ସଙ୍ଗେ କେଳି କଲେ ହଳଧର
ଜଳ କ୍ରୀଡ଼ା ଶେଷକରି ହରଷ ମନରେ
କୂଳକୁ ଗମନ କଲେ ସର୍ବେ ତୋଷଭରେ ।
ଜଳମଧ୍ୟୁ ବଳରାମ ଉଠିଲେ ଯେକ୍ଷଣ
ଲକ୍ଷ୍ମୀ ଦେବୀ ନୀଳବାସ କଲେ ସମର୍ପଣ ।
ମହାମୂଲ୍ୟ ରତ୍ନମୟ ମାଳା ଅଳଙ୍କାର
ପ୍ରଦାନ କଲେ ଯେ ଲକ୍ଷ୍ମୀ ଆନନ୍ଦ ମନର ।
ପରିଧାନ କଲେ ସର୍ବେ ବସନ ଭୂଷଣ
ତହିଁରେ ଅଙ୍ଗ ଢ଼ାଙ୍କିଲେ ଗୋପାଙ୍ଗନାଗଣ
ଏହିରୂପେ ନିଶାକାଳେ କେଳିରସେ ମତ୍ତ
ନିତ୍ୟ ରଜନୀରେ ରାସ କଲେ ଗୋପୀନାଥ
ପ୍ରେମର ବନ୍ୟା ବହିଲା ନବ ବୃନ୍ଦାବନେ
ଆନନ୍ଦ ଲହରୀ ତହିଁ ଉଠେ ପ୍ରତିକ୍ଷଣେ ।
ସେହି ମୁଗ୍ଧକାରୀ ପ୍ରେମ ଅତ୍ୟନ୍ତ ଶୋଭନ
କେ ବର୍ଣ୍ଣିପାରିବ ତାହା କେମନ୍ତ କରଣ ।
ସଞ୍ଜପି କହିଲ କୃଷ୍ଣବ୍ୟାସଙ୍କ କୃପାରେ
ଶୁକ ଯାହା କହିଥିଲେ ପରୀକ୍ଷ ରାଜାରେ ।
ବଳରାମଙ୍କର ଏ ଅପୂର୍ବ ରାସଲୀଳା
ଶ୍ରବଣ ମାତ୍ରକେ ତରଳାଇ ଦିଏ ଶିଳା ।
ଏମନ୍ତେ ସୁତ ମହର୍ଷି ମୁନିଗଣ ମେଳେ
ବଳରାମଙ୍କ ବିହାର ଠିକେ ବଖାଣିଲେ ।

ଏହି ଯେ ବ୍ରହ୍ମ ପୁରାଣ ଅମୃତ ବାରିଧି
ପଢ଼ି ଶୁଣି ନର ନାରୀମାନେ ଲଭି ସିଦ୍ଧି ।
ଶ୍ରୀଗୁରୁ କୃଷ୍ଣ ବୈଷ୍ଣବ ଚରଣ ପଙ୍କଜେ
ଅଧମ କ୍ଷେତ୍ର ମୋହନ ହରନ୍ତର ଭଜେ ।

ଇତି ଶ୍ରୀ ବ୍ରହ୍ମ ପୁରାଣ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ବଳରାମ
ବୃନ୍ଦାବନ ଦର୍ଶନ ପ୍ରସଙ୍ଗେ
ଯମୁନା ଆକର୍ଷଣେ ନାମ
ଚତୁଃପଞ୍ଚାଶୋଽଧ୍ୟାୟଃ ।

—※—

## ପଞ୍ଚ ପଞ୍ଚାଶ ଅଧ୍ୟାୟ
## ପୌଣ୍ଡ୍ରକ, କାଶୀରାଜ ଓ ସୁଦକ୍ଷିଣା ବଧ ବୃତ୍ତାନ୍ତ

ସୁକ ଉବାଚ

କହନ୍ତି ଯେ ସୁତ ତୋଷେ ମୁନି ମଣ୍ଡଳୀରେ
ସକଳ ତାପସେ ପୁଣ ଏଥୁ ଅନନ୍ତରେ ।
ଦ୍ୱାରିବର୍ଣ୍ଣରେ ଘଟଣା ହୋଇଲା ଯେସନ
ସଞ୍ଜପି ତୁମ୍ଭ ଆଗେ ମୁଁ କରୁଛି ବର୍ଣ୍ଣନ ।
କରୁଷର ରାଜାଥିଲା ପୌଣ୍ଡ୍ରକ ନୃପତି
ବଳଦୃପ୍ତ ଥିଲା ସେହୁ କିନ୍ତୁ ମୂର୍ଖ ଅତି ।
ବୋଇଲେ ମୁହିଁ ଯେ ରାଜା ବାସୁଦେବ ହୋଇ
ଅବତୀର୍ଣ୍ଣ ହୋଇଅଛି ଏହି ମର୍ତ୍ତ୍ୟଭୂଇଁ ।
ମନରେ ଏମନ୍ତ ଚିନ୍ତ ସେହି ନୃପବର
ବେଗେଁ ପଠାଇଲେ ଦୂତ ଦ୍ୱାରକା ନଗର ।
କୃଷ୍ଣଠାରେ ଗର୍ବବହି ପୌଣ୍ଡ୍ରକ ରାଜନ
ଦୂତହାତେ ଏକ ପତ୍ର କଲା ସେ ପ୍ରେରଣ ।
ଅହଙ୍କାରେ ଉନମତ୍ତ ହୋଇ ଅତିଶୟ
ମୁହିଁ ବାସୁଦେବ ବୋଲି ମନେ କଲା ଥୟ ।
ଦ୍ୱାରକା ଭୁବନେ ଯାଇ ଦୂତ ଉତ୍ତରିଲା
କୃଷ୍ଣଙ୍କ ଚରଣ ପଦ୍ମେ ପ୍ରଣିପାତ କଲା ।
ତହୁଁ ଦୂତ କରଯୋଡ଼ି କହିଲା ତକ୍ଷଣ
ପୌଣ୍ଡ୍ରକଙ୍କ ଦୂତ ମୁହିଁ ଶୁଣ ବିବରଣ ।
କୃଷ୍ଣପାଦେ ଦୂତ ନିଜ ଶିର ପାତି ଦେଲା
କୃଷ୍ଣଙ୍କ ସଭା ମଧ୍ୟରେ ବଖାଣି ବସିଲା ।
ବୋଇଲା ହେ ଯଦୁନାଥ କରନ୍ତୁ ଶ୍ରବଣ
କହୁଛି ମୁଁ କହିବି ଏବେ ରାଜାଙ୍କ ବଚନ

ପୌଣ୍ଡ୍ରକ ନୃପତି ଲେଖା ଲେଖି ପଠାଇଲେ
ଆତୁର କହୁଛି ଶୁଣ ଯାହା ସେ ଜଣାଇଲେ ।
ମୁହିଁ ବସୁଦେବ ଅବତୀର୍ଣ୍ଣ ଅବନୀରେ
ଏକମାତ୍ର ଈଶ୍ବର ମୁଁ ଜାଣ ଜଗତରେ ।
ବର୍ତ୍ତମାନ ବ୍ରହ୍ମାଣ୍ଡେ ମୁଁ ପୂର୍ଣ୍ଣ ଅବତାର
ବୃଥା ଅଭିମାନ ତୁମ୍ଭ ତେଜ ଆପଣାର ।
ବାସୁଦେବ ରୂପେ ମୁହିଁ ବନ୍ଦିତ ଭୁବନ
ମୋଠାରେ ଏକାନ୍ତ ମନେ ହୁଅ ହେ ଶରଣ
ଈଶ୍ବର ରୂପରେ ମୁହିଁ ହୋଇଛି ଉଦୟ
ନାରାୟଣ ବୋଲି ମୋତେ ଜାଣିବ ନିଶ୍ଚୟ ।
ଏଣୁକରି ଶୁଣ କୃଷ୍ଣ ମୋହର ବଚନ
ମୋହର ଶରଣେ ତବ ରହିବ ଜୀବନ ।
ଅନୁଚର ମୁଖୁଁ ଶୁଣି ଏମନ୍ତ ବଚନ
ହସି ଉଠିଲେ ସକଳ ସଭାସଦଗଣ ।
ଏ କଥା ଶ୍ରବଣେ ଯେତେ ଦ୍ୱାରକାର ଜନ
ହସି ଲାଗିଲେ ସକଳେ ଠାପରା କରଣ ।
ଦୂତ କଥା ଯଦୁମଣି ସକଳ ଶୁଣିଲେ
ରାଜାକୁ ପାଗଳ ଭାବି ହସିଣ ଲାଗିଲେ ।
ଦୂତକୁ କହିଲେ ପ୍ରଭୁ ମଧୁର ବଚନେ
ଆରେ ଦୂତ କହିବୁ ତୁ ଯାଇ ସେ ରାଜନେ ।
ହେଜାଇ କହିବୁ ତାକୁ ମୋହର ବଚନ
ମୋର ଦୂତ ହୋଇକରି ତାପାଶେ ଗମନ ।
କହିବୁ ପୌଣ୍ଡ୍ରକକୁ ଯେ ମୋହର ଖବର
ଅଭିମାନ ତେଜିଲି ମୁଁ ଆଜ୍ଞାରେ ତାହାର ।
ଯେତେବେଳେ ମହା ଯୁଦ୍ଧେ ହେବ ତା ପତନ
ସେହିକ୍ଷଣି ହେବି ମୁଁ ତାହାର ଶରଣ ।
ଯେଉଁକାଳେ ରଣକ୍ଷେତ୍ରେ ଶୟନ କରିବ
ଶାଗୁଣା ଶୃଗାଳ ଗଣେ ବେଷ୍ଟିତ ହୋଇବ
ଶ୍ବାନ ମାନେ ଶବପାଶେ ଆନନ୍ଦେ ନାଚିବେ
ସେ କାଳେ କାରଣ ନେବ କହିବ ତା ଆଗେ
ଜାଣୁଛି ହୋଇଛି ତାର ମରଣ ବାସନା
ଏହିଥର ଏଡ଼ି ଦେବେ ସଂସାର ଯନ୍ତ୍ରଣା ।
ମୋହର ହାତରେ ତାର ଯନ୍ତ୍ରଣା ଘୁଞ୍ଚିବ
ରାଜାକୁ କହିବୁ ଯାଇ ଏହି କଥା ସବୁ ।
ଆଜ୍ଞାବୋଲି କହି ଦୂତ ବହନ ଚଳିଲା
କାଶୀପୁର ନୃପତିଙ୍କ ଆଗେ ପ୍ରବେଶିଲେ ।

ରାଜା ବୋଲେ କହ ଦୂତ ବିଶେଷ ଖବର
କି କହିଲା ସେ ଗୋପାଳ ଟୋକା ତୋ ଆଗର
ତହୁଁ ବେନକର ଯୋଡ଼ି କହେ ଦୂତ ତରେ
କୃଷ୍ଣଙ୍କ କହିବା ଗାଥା ମାନ ତା ଆଗରେ ।
ଶୁଣି ମହା କ୍ରୋଧ ହୋଇ ଦୁଷ୍ଟ ନରପତି
ବାହାରିଲା ରଣସାଜେ ଘେନି ରଥ ହାତୀ ।
ଏଣେ କୃଷ୍ଣ ନନ୍ଦୀଘୋଷେ କରି ଆରୋହଣ
ପ୍ରବେଶ ହୋଇଲେ କାଶୀ ପୁରରେ ବହନ ।
ଅଗଣିତ ଯଦୁସୈନ୍ୟ ମହା ବଳୀୟାର
ତାଙ୍କ କୋଳାହଳ ନାଦେ କମ୍ପେ କାଶୀପୁର
ତାଙ୍କ ସାଜ ସାଜ ରବେ ଚହଳ ପଡ଼ନ୍ତେ
ପୌଣ୍ଡ୍ରକ ଶୁଣି କୌତୁକ ଗୁହିଁଲା ଚକିତେ ।
ପିପିଲିକା ପରି ଯଦୁ ସୈନ୍ୟଙ୍କୁ ସେ ଦେଖି
ବାହାରିଲା ଯୁଦ୍ଧବେଶେ କ୍ରୋଧଭରେ କମ୍ପି
କୃଷ୍ଣଙ୍କ ପରାୟେ ବେଶ କରି ସେ ଧାରଣ
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ତତକ୍ଷଣ ।
ଶ୍ରୀବତ୍ସ କୌସ୍ତୁଭ ମଣି ବକ୍ଷରେ ସାଜିଲା
ପିତବସ୍ତ୍ର ପିନ୍ଧି ବର୍ଣ୍ଣମାଳା ଗଳେ ଦେଲା ।
ଏହିପରି କୃଷ୍ଣଭଳି ଧରି କଳେବର
ରଣ କ୍ଷେତ୍ରେ ମିଳିଲା ସେ କରିବ ସମର ।
ଏକ କାଷ୍ଠର ଗରୁଡ଼ ଉପରେ ବସିଣ
ପଉଣ୍ଡ୍ରକ ରାଜା ପାଶେ କରିବାକୁ ରଣ ।
ତାହାକୁ ଦେଖିଲେ ଯହୁଁ କୃଷ୍ଣ ନିଜବେଶ
କେତେ କଥା କଉତୁକେ କହିଲେ ହରଷ ।
ପୌଣ୍ଡ୍ରକର ବଡ଼ ମିତ୍ର କାଶୀ ନରନାଥ
ହସ୍ତୀ ପୃଷ୍ଠେ ରଣ କ୍ଷେତ୍ରେ ମିଳିଲେ ତୁରିତ ।
ଦୁହେଁ ଯାଇ ପରାକ୍ରମ ରଣେ ଦେଖାଇଲେ
ସାହସ ବିଷମେ ବାଣ ବରଷଣ କଲେ ।
ଏଣେ କ୍ଷଣେ ଶର ମାରି ଯଶୋମତୀ ସୁତ
ସମସ୍ତ ବାଣକୁ କାଟି କଲେ ଭସ୍ମୀଭୂତ ।
ଦୁହିଁଙ୍କ ବାଣକୁ ହରି କାଟିଲେ ବହନ
ଅନ୍ୟାୟାସେ ବାଣଯାକ କଲେ ବରଷଣ ।
ଅଗଣନ ସେନାଗଣେ ବଧିଲେ ହେଳାରେ
ରହିଲେ କେବଳ ଏକା ରାଜା ରଜନୀରେ ।
ପୌଣ୍ଡ୍ରକକୁ ପୁଛିଲେ ଦେବକୀ ନନ୍ଦନ
ଦୂତ ପେଶିଥିଲୁ ପରା ମୋର ସନ୍ନିଧାନ ।

ତାହାଙ୍କ କହିଣ ଥିଲୁ ଆମ୍ଭେ ବାରମ୍ବାର
ଆବଶ୍ୟକ ବେଳେ ଦେବୁ ଶରଣ ତାହାର ।
ସେହି କାରଣରୁ ବାଣ କରୁଛି ସନ୍ଧାନ
ସମ୍ଭାଳ ସମ୍ଭାଳ ରାଜା ଏହି ଗଲା ବାଣ ।
ଏହି ବାଣ ଯଦି ତୁହି ବ୍ୟର୍ଥ କରିପାରୁ
ତାହେଲେ ମୋ ନାମଟୋଗୋଟି ପୋଛିବୁ ମହୀରୁ
ତୋହର ନିକଟେ ମୁହିଁ ଯିବି ଶରଣ
ଏତେ କହି ମହାବେଗେ ଦେବକୀ ନନ୍ଦନ ।
ଛାଡ଼ିଲେ ସୁତୀକ୍ଷ୍ଣ ବାଣ ସାରଥି ଉପରେ
ତାହା ମୁଣ୍ଡ ଛିଡ଼ି ଯାଇ ପଡ଼ିଲା ମହୀରେ ।
ସାରଥି ହୀନ ହୁଅନ୍ତେ ଚମକିତ ରାଜନ
ତହୁଁ ଚକ୍ରକୁ ଛାଡ଼ିଲେ ଦେବ ଜନାର୍ଦ୍ଦନ ।
ସୁଦର୍ଶନ ଚକ୍ର ଚଳିଗଲା ଧାଇଁକାରେ
ନୃପତିର ମୁଣ୍ଡକାଟି ପକାଏ ଧରାରେ ।
ଯେସନେ ବଜ୍ରଘାତେ ଗିରି ଛିନ୍ନଭିନ୍ନ ହୁଏ
ନୃପତିର ମୁଣ୍ଡ ଗୋଟି ହେଲା ସେହି ପ୍ରାଏ ।
ସେ କାଶୀ ରାଜାକୁ ସୁଦର୍ଶନ ଚକ୍ର ପେଶି
ଅବିଳମ୍ବେ ମୁଣ୍ଡକାଟି ପକାଇଲେ ନାଶି ।
ଆନନ୍ଦରେ ବାସୁଦେବ କଲେ ଶଙ୍ଖସ୍ୱନ
ଏହିପରି ନାଶ ହେଲେ ସେ ବେନି ରାଜନ ।
ଶ୍ରୀମଧୁସୂଦନ ଦୁଷ୍ଟ ରାଜାଙ୍କୁ ସଂହାରି
ଦ୍ୱାରକା ପୁରକୁ ଚଳିଗଲେ ଚକ୍ରଧାରୀ ।
ମୁକ୍ତି ପଦ ପାଇଲେ ସେ ଦୁଷ୍ଟ ନୃପ ବେନି
ଭବୁଁ ନିସ୍ତରିଲେ କୃଷ୍ଣେ ଶତ୍ରୁ ଭାବ ଘେନି ।
ଅନୁକ୍ଷଣ କୃଷ୍ଣ ନାମ ମୁଖେ ଉଚ୍ଚାରିଲେ
ଦୁଷ୍ଟପଣେ ସେହି ହେତୁ ମୁକତି ଲଭିଲେ ।
ଏଥଅନ୍ତେ ଅପୂର୍ବ କଥା ଶୁଣ ମୁନିବର
ଚକ୍ରରେ ଛିଡ଼ି ସେ କାଶୀ ନୃପତିର ଶିର ।
ରାଜସିଂହ ଦ୍ୱାରଦ୍ୱାରେ ଯାଇଣ ପଡ଼ିଲା
ଅନୁଚରଙ୍କର ତହିଁ ନେତ୍ରପାତ ହେଲା ।
ଆରକ୍ତ କୁଣ୍ଡଳ ସହ ମୁଣ୍ଡ ଗଡ଼େ ଦ୍ୱାରେ
ଦୁଆରୀମାନେ ଚକିତ ମଣିଲେ ମନରେ ।
ଚଞ୍ଚଳ ହୋଇ ସକଳେ କଲେ ନିରୀକ୍ଷଣ
ରାଜାର ମସ୍ତକ ଜାଣି ବିଷାଦିତ ମନ ।
ସର୍ବେ ହାହାକାର ରବ କରିଣ ଉଠିଲେ
ଅନ୍ତଃପୁରେ ନାରୀମାନେ ସମସ୍ତେ ଜାଣିଲେ ।
ମହା ଶୋକଭରରେ ସର୍ବେ ହୋଇଲେ ମଗନ
ଶୋକାର୍ତ୍ତ ହୃଦେ କାନ୍ଦିଲେ ରାଜପୁତ୍ରଗଣ ।
ପୂରିଲା ସେ ରାଜପୁରୀ ହାହାକାର ରବେ
କାଶୀରାଜ ପୁତ୍ର ତହୁଁ ମନେ ମନେ ଭାବେ ।
ସୁଦକ୍ଷିଣ ନାମେ ସେହି ରାଜାର ନନ୍ଦନ
ପିତୃବୈରୀ ନାଶିବାକୁ ଚିନ୍ତିଲା ତକ୍ଷଣ ।
ଆମ୍ଭ ପିତୃ ଶତ୍ରୁ ଅଛି ଦ୍ୱାରକା ନଗରେ
କପରି ମୁହିଁ ନିଧନ କରିବି ତାହାରେ ।
ତାହାଙ୍କୁ ମାରି ମୁଁ ଶୋକାନଳ ଲିଭାଇବି
ପିତୃ ଋଣରୁ ତେବେ ତ ନିସ୍ତାର ପାଇବି ।
ଏତେ ବୋଲି ମନେ ମନେ କରିଣ ଚିନ୍ତନ
ଆରାଧନା କରେ ତହୁଁ ଦେବ ତ୍ରିଲୋଚନ ।
ଅନାହାରେ ବହୁଦିନ ସେବେ ମହେଶ୍ୱର
ପ୍ରୀତିଯୁକ୍ତ ହେଲେ ତେଣୁ ଦେବତା ଶଙ୍କର ।
ତାର ସ୍ତବରେ ସନ୍ତୋଷ ପାର୍ବତୀରମଣ
ବୋଇଲେ ହେ ରାଜପୁତ୍ର ବର ମାଗି ଘେନ
ଶିବଙ୍କ ବଚନେ କହେ ସେ ରାଜ କୁମର
ପିତୃବୈରୀ ନାଶ ବର ଦିଅ ଉମାବର ।
ତହୁଁ ପାର୍ବତୀ ରମଣ ମନରେ ପାଞ୍ଚିଲେ
ବାଞ୍ଛାସିଦ୍ଧ ହେଉ ବୋଲି ବର ତାକୁ ଦେଲେ
ଋତ୍ୱିକ ଦକ୍ଷିଣାଗ୍ନିରେ ପୌଣ୍ଡ୍ରକ ନନ୍ଦନ
ଶଙ୍କରଙ୍କ କଥାମତେ କଲେ ଉପାସନ ।
ଅଗ୍ନିଦେବ ଯେତିକାଳେ ହେଲେ ମୂର୍ତ୍ତିମାନ
ଭୟଙ୍କର ତେଜ ତାଙ୍କ ଘୋର ଦରଶନ ।
ମହା ଭୀଷଣ ମୂରତି ଭୀଷଣ ଆକାର
ପଦଭରେ ଟଳମଳ ଧରା ଅନିବାର ।
ଭୟଙ୍କର ବେଗେ ଅଗ୍ନି ଗମନ ଯେ କଲେ
ଦ୍ୱାରକା ପୁରୀ ମଧ୍ୟରେ କ୍ରୋଧେ ପ୍ରବେଶିଲେ
ମହାବେଗେ ଅଗ୍ନିଦେବ ହୋଇ ପ୍ରଜ୍ୱଳନ
ଦ୍ୱାରକା ନଗର ସବୁ କଲେକ ଦହନ ।
ତହୁଁ ଦ୍ୱାରକାର ଲୋକେ ସଭୟ ଚିତ୍ତରେ
କାନ୍ଦି ବୋବାଳି ଛାଡ଼ିଲେ ଅତି ଉଚ୍ଚସ୍ୱରେ ।
ଦାବାନଳେ ଦଗ୍‌ଧ ଯେସନେ ମୃଗ ଶିଶୁଗଣ
ସେହିପରି ଶୋକାକୁଳ ଦ୍ୱାରକାର ଜନ ।
କୃଷ୍ଣଙ୍କ ନିକଟେ ସର୍ବେ ଧାଇଁଲେ ବେଗରେ
ଦେଖିଲେ ଶ୍ରୀହରି ପଶା ଖେଳନ୍ତି ସଭାରେ ।

କାନ୍ଦ ଆନ୍ତିଲେ ସେଠାରେ ମିଳି ପ୍ରଜାଗଣ
କାତର ସ୍ୱରେ ସକଳେ କହିଲେ ତକ୍ଷଣ ।
ରକ୍ଷାକର ଦୟାନିଧି ଦ୍ୱାରକା ଈଶ୍ୱର
କାହୁଁ ଯେ ଆସିଲା ଅଗ୍ନି ମହା ଭୟଙ୍କର ।
ଦ୍ୱାରକା ଭୁବନ ଯାକ କରଇ ଦହନ
ପ୍ରାଣଯାଉଅଛି ପ୍ରଭୁ କରନ୍ତୁ ରକ୍ଷଣ ।
ହେ ପ୍ରଭୁ ତ୍ରୈଲୋକ୍ୟନାଥ କୃପା ଅବତାର
ଏ ଘୋର ବିପଦୁଁ ବେଗେ କରନ୍ତୁ ଉଦ୍ଧାର ।
ପ୍ରଜାଙ୍କ ଆକୁଳ ଦେଖି ପ୍ରଭୁ ହୃଷୀକେଶ
ଅନ୍ତର୍ଯ୍ୟାମୀ ଜନାର୍ଦ୍ଦନ ଜାଣିଲେ ବିଶେଷ ।
ପ୍ରଜାମାନଙ୍କୁ କହିଲେ କରି ସମ୍ବୋଧନ
କମ୍ପ ବୃଥା ଭୟକର କମ୍ପ ଏ କ୍ରନ୍ଦନ ।
ନିର୍ଭୟେ ସକଳେ ରହ ନ କର ଭାବନା
ମୁହିଁ ରକ୍ଷାକର୍ତ୍ତା ଅଛି ନୁହ ଭ୍ରାନ୍ତ ମନା ।
ମହାଦେବ କୃତ ଅଗ୍ନି ଜାଣି ମାନସରେ
ସୁଦର୍ଶନକୁ ଶ୍ରୀହରି କହିଲେ ଧୀରରେ ।
ଚକ୍ରକୁ ଅନାଇ ପ୍ରଭୁ ବୋଲନ୍ତି ବଚନ
ଆହେ ଚକ୍ରବର ବେଗେଁ କର ତୁ ଗମନ ।
ଶଙ୍କରଙ୍କ ଅନଳକୁ ବେଗେ ନିବାରଣ
ତା ସାଥେ କାଶୀ ପୁରକୁ କର ଯା ଦହନ
ଅବିଳମ୍ବେ ମୋର ଆଜ୍ଞା କରିବ ପାଳନ
ଆପଣା କାର୍ଯ୍ୟ କରିଣ ଆସ ବାହୁଡ଼ିଣ ।
ତହୁଁ ଅନୁମତି ପାଇ ଚକ୍ର ସୁଦର୍ଶନ
ଶଙ୍କର କୃତ ଅଗ୍ନିକୁ ଗ୍ରାସିଲେ ବହନ ।
ତାହା ନିବାରଣ କରି ଆପଣା ତେଜରେ
ଦହିଲା କାଶୀ ପୁରକୁ କ୍ଷଣକ ମଧ୍ୟରେ ।
ରାଜ ସଦନ ସହିତେ ରାଜପୁତ୍ରଗଣ
ଆଉର ସେ ପୁରୀ ମଧ୍ୟେ ଥିଲେ ଯେତେ ଜନ
ନିଜ ତେଜେ ସୁଦର୍ଶନ ସମସ୍ତ ଦହିଲା
ରାଜ ପୁରୀର ତିଳେହେଁ ଚିହ୍ନ ନ ରହିଲା ।
କ୍ଷଣକ ମାତ୍ରେ ଦହିଲା ବାରାଣସୀ ଗଡ଼
ରହିଲା କେବଳ ଭସ୍ମ ରାଶି କୂଡ଼କୂଡ଼ ।
ଏହିରୂପେ ବିଷ୍ଣୁ ଚକ୍ର ନିଜ କାର୍ଯ୍ୟ ସାଧି
ବାହୁଡ଼ିଲା ଯହିଁଛନ୍ତି ପ୍ରଭୁ ଦୟାନିଧି ।
ତାହାଙ୍କ ଚରଣ ତଳେ ପ୍ରଣାମ ଜଣାଇ
କହିଲା ସକଳ କଥାମାନ ସେ ବୁଝାଇ ।
ସୁଦର୍ଶନ ଚକ୍ରକଥା ଶୁଣି ନାରାୟଣ
ମନ ମଧ୍ୟରେ ହୋଇଲେ ଆନନ୍ଦ ତକ୍ଷଣ ।
ସେହି ଚକ୍ରର ମହିମା କହିଲେ ନ ସରେ
କୃଷ୍ଣଙ୍କ କରରେ ଶୋଭପାଏ ନିରନ୍ତରେ ।
ଶ୍ରୀକୃଷ୍ଣଙ୍କ କଥା ଯେହୁ ଶୁଣିଣ ଶୁଣାଏ
ମହା ପାପରୁ ସେ ଜନ ପରିତ୍ରାଣ ପାଏ ।
ତାହାକୁ ଏ ତ୍ରିଭୁବନେ କେ ନୁହନ୍ତି ସରି
ଏହିପରି ସୂତ ମୁନି କହିଲେ ବିସ୍ତରି ।
ଶ୍ରବଣ କରି ଶୌନକ ଆଦି ମୁନିଗଣ
ମନ ମଧ୍ୟରେ ଗଲେ ଯେ ଆନନ୍ଦ ହୋଇଣ ।
ପରଂବ୍ରହ୍ମ ଶ୍ରୀହରିଙ୍କ ଚରଣ ସରୋଜେ
ଅଧମ କ୍ଷେତ୍ର ମୋହନ ଦିବା ନିଶି ଭଜେ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦ ପୁଣ୍ଡ୍ରକ ବାସୁଦେବ
ଚରିତ ବର୍ଣ୍ଣନେ ନାମ ପଞ୍ଚ ପଞ୍ଚାଶୋଽଧ୍ୟାୟଃ

—※—

## ଷଟ୍ ପଞ୍ଚାଶ ଅଧ୍ୟାୟ
## ଦ୍ୱିବିଦ ବାନର ନିଧନ ଓ
## ବଳରାମଙ୍କ କୌରବ
## ଲୀଳା କଥନ

ସୂତ ଉବାଚ

ଏଥୁ ଅନନ୍ତରେ ଶୁଣ ଆହେ ମୁନିବର
କହୁଛି ମୁଁ ପୂର୍ବ ଗାଥା ଅତି ମନୋହର ।
ନରକ ରାଜାର ସଖା ଦ୍ୱିବିଦ ବାନର
ସୁଗ୍ରୀବର ମନ୍ତ୍ରୀ ସେହୁ ମହା ବଳୀୟାର ।
ନରକାକୁ ଯେଉଁଦିନ ଶ୍ରୀହରି ବଧିଲେ
ତହୁଁ ଦ୍ୱିବିଦ ବାନର ଭାସେ ଶୋକଜଳେ ।
ମନେ ମନେ ସଦା ସେହୁ କରଇ ଚିନ୍ତନ
କିପରି ମିତ୍ର ବୈରୀକୁ କରିବ ନିଧନ ।
ହରିଙ୍କ ସାଥେ ବଇରୀ ହେବାକୁ ବସିଲା
ପ୍ରଥମେ ଆପଣା ରାଜ୍ୟେ ଉତପାତ କଲା ।
ପରେ ଅପର ଦେଶରେ କରେ ଅତ୍ୟାଚାର
ତାହା ଡରେ ଘରୁ କେହି ନୁହନ୍ତି ବାହାର ।
ଦୁଇ ହାତରେ ସାଗର ଜଳକୁ ସେ ତୋଳି
ନେଇଣ ଯାଏ କୂଳକୁ ସେହୁ ଠେଲି ଠେଲି

ସମୁଦ୍ର ତରଙ୍ଗ ଦେଇ ସେ ଦୁଷ୍ଟ ବାନର
ବୁଡ଼ାଇ ଦେଲା ଅନେକ ଗ୍ରାମ ବା ସହର ।
ଋଷିମାନଙ୍କ ଆଶ୍ରମ ଯେତେ ତହିଁ ଥିଲା
ଏକାବେଳେ ତାହା ସବୁ ଉଚ୍ଛନ୍ନ କରିଲା ।
ଭାଙ୍ଗି ନଷ୍ଟ କଲା ଯେତେ କୁସୁମ କାନନ
ଉପାଡ଼ି ଦେଲା ସେ ଫଳବନ୍ତ ତରୁମାନ ।
ଯଜ୍ଞକୁଣ୍ଡ ମାନଙ୍କରେ ମୂତ୍ର ନଷ୍ଟ କଲା
ତାର ଅତ୍ୟାଚାର ଆଉ ସମ୍ଭାଳି ନୋହିଲା ।
ସିଦ୍ଧ ଋଷିଗଣ ଭୟେ ଅସ୍ଥିର ହୋଇଲେ
ରଖ ଜଗନ୍ନାଥ ବୋଲି ଉଚ୍ଚରେ ଡାକିଲେ ।
ନାରୀ ପୁରୁଷଙ୍କୁ ଧରି ପର୍ବତ କନ୍ଦରେ
ପଥର ମଡ଼ାଇ ରଖେ ସେ ଗୁମ୍ଫା ଭିତରେ ।
ସେ ଦୁଷ୍ଟ ବାନର ଅତି ଦୌରାତ୍ମ୍ୟ ଆଚରେ
କୁଳାଙ୍ଗନା ବଳେ ଧରି ତାଙ୍କ ମାନ ହରେ ।
ଏହିପରି ସବୁଠାରେ ଉତପାତ କଲା
ବଡ ସାନ ମାନ୍ୟ ଜନେ କାହାରେ ନ ମାନିଲା
ଅତି ହାନି କରିଲା ସେ ପାପିଷ୍ଟ ପାମର
ଡରିଣ ସକଳେ ତାକୁ ହୋଇଲେ ଅସ୍ଥିର ।
ଏକଦିନେ ରୈବତକ ମଧ୍ୟେ ହଳଧର
କେଳି କରନ୍ତି କାମିନୀ ସଙ୍ଗେ ନିରନ୍ତର ।
ମଧୁପାନେ ବଳଦେବ ଉନ୍ମତ୍ତ ହୋଇଲେ
ଆନନ୍ଦ ମନେ ସୁସ୍ୱରେ ଗାନ ଆରମ୍ଭିଲେ ।
କାମିନୀଙ୍କ ସଙ୍ଗେ ଗାନ କରନ୍ତି ମଧୁର
ତାହା ଶୁଣି ବେଗେ ଧାଏଁ ଦ୍ୱିବିଦ ବାନର
ପର୍ବତ ଉପରେ ଯାଇ ଦେଖିଲା ବହନ
ଯଦୁପତି ବଳରାମ ସୁନ୍ଦର ବଦନ ।
ରାମଣୀ ବେଷ୍ଟିତ ହୋଇ ବସିଛନ୍ତି ସେହି
ସୁମଧୁର ଗୀତ ବାଦ୍ୟେ ବିମୋହିତ ହୋଇ ।
ହଂସୀମେଳେ ଖେଳେ ଯେହ୍ନେ ରାଜହଂସବର
କାମିନୀମାନଙ୍କ ମଧ୍ୟେ ତେହ୍ନେ ହଳଧର ।
ତହୁଁ ସେ ଦୁର୍ବୃତ୍ତ କପି ବୃକ୍ଷରେ ଚଢ଼ିଲା
ଗଛ ଶାଖାମାନ ସବୁ ହଲାଇ ଲାଗିଲା ।
ବିକଟ ମୁଖରେ ହସେ ସେ ବାନରପତି
କଲା ଯେ ବିଷମ ଭଙ୍ଗୀ ବଳଦେବ ପ୍ରତି ।
ନାନାରୂପେ କୁହାଟଇ ଦ୍ୱିବିଦ ବାନର
କେତେ ରଙ୍ଗେ ମୁଖଭଙ୍ଗୀ ଦେଖାଇଲା ତାର

ଏମନ୍ତ ଦେଖି ହସନ୍ତି ନାରୀମାନେ ଯେତେ
ଦ୍ୱିବିଦ ବାନର ପୁଣି ଭଙ୍ଗୀକରେ ସେତେ ।
ବୃକ୍ଷପରୁ ଝେପାମାରି ସେ ଦୁଷ୍ଟ ବାନର
ରମଣୀମାନଙ୍କ ପାଶେ ଡେଇଁଲା ପାମର ।
ମୁଖ ଭଙ୍ଗୀ କରି ସେ ଦେଖାଏ ବାରେ ବାରେ
ଲମ୍ଫ ଝାମ୍ପ ମାରେ କେତେ ବିକଟ ଆକାରେ
ତାହା ରୀତି ଗତି ଦେଖି ରୋହିଣୀ ନନ୍ଦନ
କ୍ରୋଧରେ ହୋଇଲା ତାଙ୍କ ଆରକ୍ତ ନୟନ
ବାନରକୁ ମାରିବାକୁ ଛାଡ଼ିଲେ ପଥର
କୁଦା ମାରି ବଞ୍ଚାଇଲା ନିଜର ଶରୀର ।
ପରେ ମଦ୍ୟ କୁମ୍ଭ ନେଇ ପଥରେ ଛାଡ଼ିଲେ
ହସି ଲାଗିଲା ବାନର ଅତି ଖଳ ଖେଳେ ।
କବୁଡ଼ି ପକାଇ କୁମ୍ଭ ଭାଙ୍ଗିଲା ଦୁରନ୍ତ
ଦେଖି ହଳଧର ତାହା ହୋଇଲେ କୋପିତ
ଦାନ୍ତ ନିକୁଟିଣ କପି ଆସି ନିକଟକୁ
କୌତୁକଭରେ ଟାଣଇ ଗୋପୀଙ୍କ ବସ୍ତ୍ରକୁ ।
ତା ଦେଖି କ୍ରୋଧେ କମ୍ପିଣ ରୋହିଣୀ ନନ୍ଦନ
ବେନି ନେତ୍ର ଏକାବେଳେ କରି ରକ୍ତବର୍ଣ୍ଣ
ବାନରକୁ ବଧିବାକୁ ପ୍ରଭୁ ବିଚାରିଲେ
ହଳ ମୂଷଳକୁ ବେଗେ ଶ୍ରୀହସ୍ତେ ଧଇଲେ ।
ତାହା ଦେଖି କପିବର କ୍ରୋଧଯୁକ୍ତ ହେଲା
ଏକ ଶାଳତରୁ ଘେନି ବେଗରେ ଧାଇଁଲା ।
ବଳଦେବଙ୍କ ମସ୍ତକେ ସେ ବୃକ୍ଷ ପଡ଼ନ୍ତେ
ଶତଖଣ୍ଡ ହୋଇଣ ପଡ଼ିଲା ଭୂମିଗତେ ।
ତଦନ୍ତେ କ୍ରୋଧେ କମ୍ପିତ ଦେବ ହଳଧର
ବାନର ମସ୍ତକେ କଲେ ମୂଷଳ ପ୍ରହାର ।
ମୂଷଳ ଘାତେ ବାନର ଅସ୍ଥିର ହୋଇଲା
ତା ମୁଣ୍ଡରୁ ଧାରି ଧାରି ରୁଧିର ବହିଲା ।
ମହା ବଳବନ୍ତ କପି ନିର୍ଭୟ ଅନ୍ତର
ମହାକୋପେ ଉପାଡ଼ିଲା ଧାର୍ଦ୍ଧ ତରୁବର ।
ସେ ବୃକ୍ଷ ବଳଦେବଙ୍କ ମସ୍ତକେ ଫିଙ୍ଗିଲା
ମୂଷଳ ପ୍ରହାରି ନିବାରିଲେ ରାମ ଭଲା ।
ଶଏଖଣ୍ଡ ହୋଇ ତରୁ ପଡ଼ିଲା ଭୂତଳେ
ତହୁଁ କପି ଆନ ବୃକ୍ଷ ଉପାଡ଼ିଲା ବଳେ ।
ପୁଣି ବଳଦେବ ତାହା ଅସ୍ତ୍ରରେ କାଟିଲେ
ଏହି ମତେ ଘୋର ଯୁଦ୍ଧ ଦୁହେଁ ତହିଁ କଲେ ।

ଯେତେ ବୃକ୍ଷ ଉପାଡ଼ିଲା ସଙ୍ଖ୍ୟା ନାହିଁ ତାର
ବୃକ୍ଷ ଶୂନ୍ୟ ହେଲା ବନ ଅତି ଘୋରଖାର ।
ତହୁଁ କପି ବୃକ୍ଷହୀନ ଦେଖି ସେ କାନନ
ପର୍ବତ ଉପରେ ଡ଼େଇଁ ଉଠିଲା ତକ୍ଷଣ ।
ସେ ପର୍ବତ ଶୃଙ୍ଗ ଭାଙ୍ଗି ବିଷମ କୋପରେ
ପ୍ରହାରିଲା ନେଇ ବଳରାମଙ୍କ ବକ୍ଷରେ ।
ମୂଷଳ ପ୍ରହାରି ରାମ ତାହା ନିବାରିଲେ
ହେଳାରେ ପର୍ବତ ଶୃଙ୍ଗ ଚୂନାକରି ଦେଲେ
ତଦନନ୍ତେ କପିରାଜ ନ ଦେଖି ଉପାୟେ
ଦୁଇ ବାହୁ ଉଚେ ଟେକି ରାମ କତି ଧାଏଁ ।
ଜାନୁ ଟେକି ତା ବାହୁ ଘାର୍ଦ୍ଧ ଅତିଶୟ
ତହିଁରେ ମୁଖ ଲୁଣ୍ଠାଏ ନ କରି ସେ ଭୟ ।
ହାତ ମୂଠା କରି କପି ଧାମଇ ବେଗରେ
ପ୍ରହାରିବା ପାଇଁ ବଳରାମଙ୍କ ଉପରେ ।
ବଜ୍ର ସମ ମୁଷ୍ଟିଘାତ କଲା ସେ ତକ୍ଷଣ
ବଳରାମଙ୍କ ଗାତ୍ରରେ ବାଜେ ଘନ ଘନ ।
ତହୁଁ ହଳଧର କ୍ରୋଧେ କମ୍ପମାନ ହେଲେ
ଭୀଷଣ ମୁଷ୍ଟି ଆଘାତ ବାନରକୁ କଲେ ।
ସେହି ବଧା ଘାତେ କପି ଅସ୍ଥିର ହୋଇଲା
ଝଲକା ଝଲକା ରକ୍ତ ତହିଁ ବାନ୍ତିକଲା ।
ଭୂମି ପରେ ପଡ଼ି ତହିଁ ଛଟ ପଟ ହୋଇ
ଘୋର ରଡ଼ି କରି ପ୍ରାଣ ବିସର୍ଜିଲା ତହିଁ ।
ସେହୁ ଯେତେବେଳେ ଭୂମି ଉପରେ ଲୋଟିଲା
ବସୁମତୀ ଅସମ୍ଭାଳେ ଥରହର ହେଲା ।
ରମ୍ଭା ବୃକ୍ଷ ଯେସନେ ହୁଏ ବାତରେ ପତନ
ସେହିପରି କପିବର ତେଜିଲା ଜୀବନ ।
ବଳରାମ ବିନାଶିଲେ ସେ ଦୁଷ୍ଟ ବାନର
ଦୁନ୍ଦୁଭି ବାଦ୍ୟ ବାଇଲେ ଶୂନ୍ୟରେ ଅମରେ
ଆନନ୍ଦରେ ନୃତ୍ୟ କଲେ ଅପସରାଗଣ
ସ୍ତୁତି ଗାନ କଲେ ହର୍ଷେ ସିଦ୍ଧ ଋଷିଗଣ ।
ଏହିପରି ବଳରାମ ବଧି କପିବରେ
ଅତି ଆନନ୍ଦ ଲଭିଲେ ଆପଣା ମନରେ ।
ସମସ୍ତଙ୍କୁ ଘେନି ସାଥେ ଦ୍ୱାରକା ଫେରିଲେ
ବାନର ନିଧନ ବାର୍ତ୍ତା ସକଳେ ଶୁଣିଲେ ।
ଏହା ଶୁଣି ସୁତମୁନି ହୋଇଲେ ମଉନ
ଗୀତ ଛନ୍ଦେ ଭାବି ଲେଖେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଦ୍ୱିବିଦବାନର
ନିଧନେ ନାମ ଷଟ୍ ପଞ୍ଚଶୋଽଧ୍ୟାୟଃ ।

—※—

## ଶାମ୍ବଙ୍କର ଉଦ୍ଧାର ଓ ବଳଦେବଙ୍କ ବିଜୟ କଥନ

ସୂତ ଉବାଚ

ଶୁଣ ଆହେ ମୁନିଗଣ ଦେଇ ମନକର୍ଣ୍ଣ
ଏଥୁଅନ୍ତେ ଯେଉଁ ଲୀଳା କଲେ ଭଗବାନ ।
କୃଷ୍ଣ ଚରିତ କଥନ ଅମୃତ ସମାନ
ଯାହା ଶ୍ରବଣରେ ପାପ ହୁଅଇ ଦହନ ।
ଦ୍ୱାରକା ପୁରରେ ରହି ପ୍ରଭୁ ଭବଗ୍ରାହୀ
ଯେତେ ପାପୀ ନିସ୍ତାରିଲେ କେ ପାରିବ କହି
ଯେଉଁ ଯେଉଁ ଲୀଳା କଲେ ଜଗତ ଜୀବନ
ତାହା ସର୍ବ ପ୍ରାଣୀଙ୍କର କଲ୍ମଷ ମୋଚନ ।
ଅପୂର୍ବ ଚରିତ ଏବେ କହୁଛି ବଖାଣ
କୃଷ୍ଣ ପୁତ୍ର ଶାମ୍ବ କଥା ମନ ଦେଇ ଶୁଣ ।
ଦୁର୍ଯ୍ୟୋଧନଙ୍କର କନ୍ୟା ଲକ୍ଷ୍ମଣା ସୁନ୍ଦରୀ
ରୂପେ ଗୁଣେ ତା ସମାନ ନୋହେ କେହି ସରି
ସ୍ୱୟମ୍ବର କଲା ରାଜା ତାର ବିଭାପାଇଁ
ଶାମ୍ବବୀର ନେଲା ସେହି କନ୍ୟାକୁ ହରାଇ ।
ତାହା ଦେଖି କୁରୁବଂଶ ହୋଇ କ୍ରୋଧଭର
ବୋଇଲେ ଏହି ବାଳକ ଅଟେ ନାରୀଚୋର
କୁବଚନ କହି ତାକୁ ବହୁ ଗାଳିଦେଲେ
ଶ୍ରୀକୃଷ୍ଣ ନନ୍ଦନ ଜାଣି ଭର୍ତ୍ସନା କରିଲେ ।
ତହୁଁ ସର୍ବ କୁରୁଗଣେ ଯୁକ୍ତି କରି ସାର
ବୋଇଲେ ଏ ଦୁଷ୍ଟମତି କୃଷ୍ଣର କୁମର ।
ଆମ୍ଭମାନଙ୍କର ମାନ ମର୍ଯ୍ୟାଦା ସରିଲା
ଜାଣି ଶୁଣି ମନ୍ଦମତି ହୀନକର୍ମ କଲା ।
ଏଣୁ ଏ ଦୁର୍ବୃତ୍ତର ଶୀଘ୍ର ନିଅ ପ୍ରାଣ
ଆମ୍ଭମାନଙ୍କର ମାନ ସରିଲା ଅଜ୍ଞାନ ।
ଯଦୁବଂଶ ଆମ୍ଭଠାରୁ ଅଟନ୍ତି ଯେ ହୀନ
କୁରୁବଂଶଙ୍କର ସେହୁ ଅଟନ୍ତି ଅଧୀନ ।
ଯଦ୍ୟପି ଯଦୁବଂଶକୁ କରୁ ଭୟ ଅଛୁ
ୟାକୁ ବଧକଲେ ତଳେ ଦୋଷନାହିଁ କିଛୁ ।

କେହୁ ଯଦି ଯୁଝିବାକୁ ଆସେ ଆମ୍ଭ କୁଳେ
ସକଳେ ମିଳି ତାହାକୁ ବଧିବା ଏ ସ୍ଥଳେ ।
ଏଣୁ ଶୀଘ୍ର ବଧ କର ଏ ଦୁଷ୍ଟ ଚୋରକୁ
ଏତେ ବୋଲି ଦୁର୍ଯ୍ୟୋଧନ ଡାକିଲା ବୀରଙ୍କୁ ।
କର୍ଣ୍ଣ ଆଦି ବୀରମାନେ ଅତି ଦର୍ପ ଭରେ
ଶଲ୍ୟ ସୋମଦତ୍ତ ଆଦି ଯେତେକ ଯେ ବୀରେ
ଶାମ୍ବକୁ ଧରିବା ପାଇଁ କରିଲେ ଗମନ
ଘୋରନାଦ କରି କରି ଧାଆନ୍ତି ପଛେଣ ।
ରହ ରହ ବୋଲି ସେ ଡାକନ୍ତି ଘନ ଘନ
ତାହା ଶୁଣି ଶାମ୍ବବୀର ଠିଆ ତତକ୍ଷଣ ।
କୁରୁବଳ ଶାମ୍ବପରେ ବାଣ ପ୍ରହାରିଲେ
ବାମକରେ ଧନୁଧରି ଶାମ୍ବ ଯେ ବିନ୍ଧିଲେ ।
ଧନୁରେ ଟଙ୍କାର ଦେଇ ତୀକ୍ଷ୍ଣ ଧନୁ ଶର
ବିନ୍ଧିଣ କୁରୁବଳଙ୍କୁ କରିଲା ଅସ୍ଥିର ।
ପୁଣି ମହାମହା ବୀରେ କରିଣ ସନ୍ଧାନ
କର୍ଣ୍ଣପରେ ଛଅବାଣ ବିନ୍ଧିଲା ତକ୍ଷଣ ।
ଚାରିଅଶ୍ୱେ ଚାରିବାଣ ବିନ୍ଧିଲା ବହନ
ଏକେ ବାଣେ ଘେନିଲା ସେ ସାରଥିର ପ୍ରାଣ ।
କୃଷ୍ଣ ପୁତ୍ର ଶାମ୍ବବୀର ମହାଧନୁର୍ଦ୍ଧର
ବାଣଘାତେ କଲା କୁରୁବଳଙ୍କୁ କାତର ।
କ୍ଷିପ୍ର ହସ୍ତ ଦେଖି ଶାମ୍ବେ ପ୍ରଶଂସା ଯେ କଲେ
ତାର ବଳ ଜାଣି ସର୍ବେ ବିସ୍ମିତ ହୋଇଲେ
ମହାରଥୀ ମହାବୀର ସୂର୍ଯ୍ୟଙ୍କ ନନ୍ଦନ
ଚାରିଗୋଟା ବାଣ ବିନ୍ଧେ ଶାମ୍ବକୁ ତକ୍ଷଣ ।
ଚାରି ଚାରି ବାଣରେ ଛେଦିଲା ଅଶ୍ୱ ଚାରି
ବାଣକେ ପେଶିଲା ସାରଥିକି ଯମପୁରୀ ।
ବାଣକରେ କାଟିଲା ତାହାର ଧନୁଶର
ସେତେବେଳେ ଅସ୍ତ୍ରହୀନ ହେଲା ଶାମ୍ବବୀର ।
ରଥହୀନ ହୋଇ ଶାମ୍ବ ମନେ ଭୀଳହେଲା
ବରୁଣ ଅସ୍ତ୍ରରେ କର୍ଣ୍ଣ ଶାମ୍ବକୁ ବାନ୍ଧିଲା ।
କନ୍ୟାସହ କୁମାରକୁ କଲା ସେ ବନ୍ଧନ
ତହୁଁ ଯେତେ କୁରୁବଳ ଆନନ୍ଦେ ମଗନ ।
ଲକ୍ଷଣା କନ୍ୟାକୁ ନେଇ ପୁରେ ପ୍ରବେଶିଲେ
କୃଷ୍ଣ ତନୟ ଶାମ୍ବକୁ ବନ୍ଧନେ ରଖିଲେ ।
ଅପର ଅପୂର୍ବ କଥା ଶୁଣ ମୁନିଚୟ
ଦ୍ୱାରକାକୁ ଚଳିଗଲେ ବ୍ରହ୍ମାଙ୍କ ତନୟ ।

କୃଷ୍ଣଙ୍କ ଆଗରେ କହିଲେ ଯେ ତପୋଧନ
ଶୁଣ ଦେବ ହସ୍ତିନାରେ ହେଲା ଅଘଟନ ।
ଦୁର୍ଯ୍ୟୋଧନର କନ୍ୟାକୁ ଶାମ୍ବ ହରୁ ବଳେ
ତହିଁ ଯେତେ କୁରୁଗଣ ବିରୋଧ ସେ କଲେ ।
ଏକେ ତୁମ୍ଭ ପୁତ୍ରକୁ ସେ ବାନ୍ଧି ରଖିଛନ୍ତି
ପଳାଇ ଆସିବା ପାଇଁ ନାହିଁ ତା ଶକତି ।
ନାରଦଙ୍କ ମୁଖୁଁ ଶୁଣି ଏମନ୍ତ ବଚନ
କୋପଭରେ ହେଲେ କୃଷ୍ଣ ଆରକ୍ତ ଲୋଚନ
କ୍ରୋଧରେ କମ୍ପିତ କୃଷ୍ଣ ଅସ୍ଥିର ହୋଇଲେ
ସେହିକ୍ଷଣି ଉଗ୍ରସେନ ଅନୁମତି ନେଲେ ।
କ୍ରୋଧଭରେ ଯଦୁବୀରଂ'କଲେକ ଗମନ
ବୋଇଲେ ଧ୍ୱଂସ କରିବି ସର୍ବ କୁରୁଗଣ ।
ବଶି ଦାନ ଦେବା ପାଇଁ କାରେ ନ ରଖିବି
ଧରାକୁ କୁରୁବଂଶଙ୍କୁ ଶୂନ୍ୟ କରିଦେବି ।
ବଳରାମଙ୍କର ଶିଷ୍ୟ ଅଟେ ଦୁର୍ଯ୍ୟୋଧନ
ତେଣୁ ଶ୍ରୀକୃଷ୍ଣେ ବୁଝାଇ କରିଲେ ତତକ୍ଷଣ ।
ସାନ୍ତ୍ୱନା ଦେଇ କହନ୍ତି ସଧୀରେ ବଚନ
ଶୁଣ କୃଷ୍ଣ ହୁଅନାହିଁ ଏଡ଼େ କ୍ରୋଧ ମନ ।
ତୁମ୍ଭ କ୍ରୋଧ ସହିପାରେ କେବା ଜଗତରେ
ତ୍ରିଭୁବନ ଧ୍ୱଂସ ହୁଏ ତବ କଟାକ୍ଷରେ ।
ଦୁର୍ଯ୍ୟୋଧନେ ବୃଥାକୋପ ତବ ବର୍ତ୍ତମାନ
ମୋର କଥାମାନ କ୍ରୋଧକର ସମ୍ବରଣ ।
ନିଶ୍ଚିନ୍ତ ହୋଇଣ ତୁମ୍ଭେ ଥାଅ ଏ ନଗରେ
ମୁଁ ଯାଇ ତୁମ୍ଭ ପୁତ୍ରକୁ ଆଣିବି ସତ୍ୱରେ ।
ଏମନ୍ତେ କୃଷ୍ଣଙ୍କୁ କରି ସାନ୍ତ୍ୱନା ପ୍ରଦାନ
ହସ୍ତିନାକୁ ବାହାରିଲେ ପ୍ରଭୁ ବଳରାମ ।
ତାଳଧ୍ୱଜ ରଥ ପରେ କରି ଆରୋହଣ
ଆନନ୍ଦ ମନେ ଚଳିଲେ ରେବତୀ ରମଣ ।
ପବନହୁଁ ଖରତରେ ଚଳେ ରଥବର
ନିମିଷକେ ମିଳେ ଯାଇ ହସ୍ତିନା ନଗର ।
ନଗର ବାହାରେ ଯହିଁ ଦିବ୍ୟ ଉପବନ
ସେଠାରେ ବିଶ୍ରାମ କଲେ ପ୍ରଭୁ ସଙ୍କର୍ଷଣ ।
ଉଦ୍ଧବଙ୍କୁ ବୋଇଲେ ଯେ ସେ ରେବତୀପତି
କୁରୁସଭା ମଧ୍ୟେ ତୁମ୍ଭେ ଶୀଘ୍ରେ କର ଗତି ।
ସେହି ରାଜସଭା ଠାକୁ ଅବିଳମ୍ବେ ଯାଇ
ଧୃତରାଷ୍ଟ୍ର ଅଭିପ୍ରାୟ ବୁଝିଆସ ତହିଁ ।

ଆଜ୍ଞା ପାଇଣ ଉଦ୍ଧବ ଚଳିଲା ସତ୍ୱରେ
ପ୍ରବେଶ ହୋଇଲା କୁରସଭାର ମଧ୍ୟରେ ।
ଧୃତରାଷ୍ଟ୍ର ଭୀଷ୍ମ ଦ୍ରୋଣେ ନମସ୍କାର କଲା
ତହୁଁ ବାହ୍ଲୀକ ରାଜାର ଚରଣେ ନମିଲା ।
ସମ୍ଭାଷଣ କରି ପରେ ରାଜା ଦୁର୍ଯ୍ୟୋଧନେ
ବଳରାମ ଆଗମନ ଜଣାଏ ବଚନେ ।
ତାହା ଶୁଣି ଦୁର୍ଯ୍ୟୋଧନ ଆନନ୍ଦ ଅପାର
ବଳରାମଙ୍କ ନିକଟେ ଚଳିଲା ସତ୍ୱର ।
ତାଙ୍କ ପାଦେ ନମସ୍କାର କରେ ଦୁର୍ଯ୍ୟୋଧନ
ବିଧିମତେ କରେ ପୁଣି ଅର୍ଚ୍ଚନ ବନ୍ଦନ ।
ନାନା ଉପହାରେ ପୂଜା କଲା କୁରୁପତି
ଆଉ ଯେତେ ରାଜା ଗଲେ କଲେ ସେ ପ୍ରଣତି
ବଳରାମ ଦୁର୍ଯ୍ୟୋଧନେ ଆଶୀର୍ବାଦ କଲେ
କୁଶଳ ବାରତାମାନ ତାଙ୍କୁ ପଚାରିଲେ ।
ତହୁଁ ଦୁର୍ଯ୍ୟୋଧନଙ୍କୁ କହିଲେ ଶଙ୍କର୍ଷଣ
ଶୁଣ କୁରୁପତି ମୋର ଏକଇ ବଚନ ।
ତୁମ୍ଭହିତେ ରତ ମୁହିଁ ଜାଣ ହେ ନିଶ୍ଚୟ
ଦ୍ୱାରକାର ରାଜା ଉଗ୍ରସେନ ମହାଶୟ ।
ରାଜା ଆଜ୍ଞାକାରୀ ଆମ୍ଭେ ଯେତେ ଯଦୁଗଣ
ଏଣୁ କହୁଅଛୁ ଶୁଣ ମୋହର ବଚନ ।
ଏକା ପାଇ କୃଷ୍ଣ ପୁତ୍ରେ ବାନ୍ଧି ଯା ରଖିଲ
କି କାରଣେ ତୁମ୍ଭେ ସତେ ଅନ୍ୟାୟ କରିଲ
ବହୁଜନ ମିଳି କଲ ଶାମ୍ବକୁ ବନ୍ଧନ
ତୁମ୍ଭ ଉଚିତ କାର୍ଯ୍ୟ ଏ ନୁହେଁ କଦାଚନ ।
କୁମାରକୁ ବଧୂସଙ୍ଗେ ଛାଡ଼ ବର୍ତ୍ତମାନେ
ଆପଣା କଲ୍ୟାଣ ବାଞ୍ଛା ମୋହର ବଚନେ ।
ଶୁଣି ସେହି କୁରୁଗଣ ଗର୍ବିତ ବଚନ
ଏକାବେଳେ କ୍ରୋଧଭର ହୋଇଲେ ତକ୍ଷଣ ।
ତଦନ୍ତେ ବଳରାମଙ୍କୁ ଦେଲେ ଯେ ଉତ୍ତର
ଆଚମ୍ବିତ ତୁମ୍ଭ କଥା ଆହେ ହଳଧର ।
ଅସମ୍ଭବ କଥା ତୁମ୍ଭ ଶୁଣି ମାଡ଼େ ହସ
ପର ପାଦୁକା କେ ଅବା ବହେ ଶିରଦେଶ ।
କୁରୁଦତ୍ତରାଜ୍ୟକୁ ଭୋଗନ୍ତି ଯଦୁଗଣ
ରାମଆଦି ସଙ୍ଗ ଆଉ କଷ୍ଟେ ଆସନ ।
କୁରୁଗଣ ଅନୁଗ୍ରହେ ବିଭବ ତୁମ୍ଭର
ତେବେ କିମ୍ପା ଏତେ ଗର୍ବ କର ଅନିବାର ।
ଦୁଗ୍ଧ ଦେଇ କାଳ ସର୍ପେ କରିଲେ ପାଳନ
ଅବଶେଷେ ତା ମସ୍ତକେ ସେ କରେ ଦଂଶନ
ସେହିରୂପେ ଯଦୁ ଙ୍କ ଜାଣୁଅଛୁଁ ମନେ
ଲଜ୍ୟାହୀନ ହୋଇ କଥା କହ କି କାରଣେ
ନ କରନ୍ତି ଭୟ କୁରୁଗଣ ଯେ କାହାରେ
ଇନ୍ଦ୍ର ଆଦି କରି ଛନ୍ତି ଯେତେକ ଅମରେ ।
କୌରବଙ୍କ ଆଜ୍ଞାକାରୀ ସକଳେ ଅଟନ୍ତି
ଭୀଷ୍ମ ଦ୍ରୋଣଆଦି ଯାରେ ଅନୁଗତ ଛନ୍ତି ।
କେଶରୀ ନ ଡରେ ହରିଣକୁ କଦାଚନେ
ନ ଛାଡ଼ିବୁ ଶାମ୍ବକୁ ହେ ଜାଣିଥାଅ ମନେ ।
ନାନାବିଧ ଅକଥ୍ୟ ଭାଷା କହି ହଳଧରେ
କୌରବମାନେ ଚଳିଲେ ନିଜ ନିଜ ଘରେ ।
ବଳରାମ ମନେ ମନେ ବୁଝିଲେ ତକ୍ଷଣେ
ଧାର୍ମିକ ଅଟନ୍ତି ଏ କୁରୁ ସଭାଜନେ ।
ତହୁଁ ହଳଧର ନିଜମନେ ବିଚାରିଲେ
କ୍ରୋଧଭରେ ତାଙ୍କ ଅଙ୍ଗ କମ୍ପେ ଏକାବେଳେ
କ୍ରୋଧରେ ଦାନ୍ତକୁ ଦାନ୍ତ କରଣ ଘର୍ଷଣ
ମହାରୋଷେ ହଳଧର ବୋଇଲେ ତକ୍ଷଣ ।
ଅଧର୍ମୀ ଜିନଙ୍କ ହିତ ଯୁକ୍ତିଯୁକ୍ତ ନୁହେଁ
ଦୁଷ୍ଟଙ୍କୁ ଉଚିତ ଦଣ୍ଡ ଉପଯୁକ୍ତ ହୁଏ ।
କୃଷ୍ଣଙ୍କୁ ପ୍ରବୋଧ କରି ଆସିଲି ଏ ସ୍ଥାନେ
ହିତେ ବିପରୀତ ହେବ ଜାଣିଲି ବିଧାନେ ।
ମଦମତ୍ତ କୁରୁପତି କଳହରେ ରତ
ଖଳର ସ୍ୱଭାବ ସଦା ଅଟେ ଏହିମତ ।
କୁବଚନ କହି ମୋତେ ଅବଜ୍ଞା ଯା କଲା
ଦ୍ୱାରକା ଉଗ୍ରସେନଙ୍କୁ ତିଳେ ନ ଡରିଲା ।
ଦେବତାଗଣ ଅଟନ୍ତି ଆଜ୍ଞାକାରୀ ଯାର
ଆଣେ ଯେହୁ ପାରିଜାତ ଯାଇ ସ୍ୱର୍ଗପୁର ।
କମଳା ଯାହାର ପାଦ ସେବେ ଦିବାରାତ୍ର
ଦ୍ୱାରକାରେ ନର ରୂପେ ଯାର ଅବସ୍ଥିତ ।
ବ୍ରହ୍ମା ଶିବ ଆଦି ଅଂଶ ଅଟନ୍ତି ଯାହାର
ମୁଁ ମଧ୍ୟ ଅନନ୍ତ ଅଟେ ଯାହା ବଂଶଧର ।
ଯାର ପଦରଜ ଆମ୍ଭେମାନେ ଶିରେ ବହି
ରହିଣ ଥାଉ ସର୍ବଦା ଆନନ୍ଦିତ ହୋଇ ।
ତାକୁ ତୁଚ୍ଛ ମଣନ୍ତି ଏ ଦୁରାଚାର ଗଣେ
ଆମ୍ଭେମାନେ ଅନୁଗତ ଯାହାର ଚରଣେ ।

ପରମ କାରଣ ଯେହୁ ଜଗତର ସାର
ମନେ ମନେ ଚାହ୍ଲୁ ତୁଚ୍ଛ ମଣନ୍ତ ଗୁଆଁର ।
କୁରୁଗଣ ଦତ୍ତଭୂମି ଭୁଞ୍ଜେ ଯଦୁରାଜ
ଯାହା କୌରବଙ୍କ ମୁଖୁ ଶୁଣିଲି ମୁଁ ଆଜ ।
ମାତ୍ତ ଅହଙ୍କାରେ ହୀନ କଥାଏ କହନ୍ତ
ସମ୍ଭବ କଏବା ସ୍ୱାଙ୍କ ଗରବ ଖଣ୍ଡଣ ।
ଏଣୁ ମୁଁ କୌଣସିମତେ କ୍ଷମା ନ କରବ
କୌରବଗଣେ ସଂହାର୍ କ୍ରୋଧ ମେଣ୍ଟାଇବ ।
ଏତେ କହ୍ବି ହଳଧର କମ୍ପମାନ ହେଲେ
ତକ୍ଷଣେ ହଳ ମୁଷଳ ଶ୍ରୀକରେ ଧରିଲେ ।
ହଳହସ୍ତେ କ୍ରୋଧଭରେ ହୋଇଲେ ବାହାର
ଉପାଡ଼ି ଫିଙ୍ଗିବା ପାଇଁ ହସ୍ତିନା ଅଙ୍ଗର ।
ନଗର ଶେଷ ଭାଗରୁ କଲେ ଆକର୍ଷଣ
ସେ ଲଙ୍ଗଳ ଆଗ୍ରେ କଲେ ଭୂମି ବିଦାରଣ ।
ହସ୍ତିନା ପୁର ଉପାଡ଼ି ଲଙ୍ଗଳ ମୁନରେ
ଭାବିଲେ ଫିଙ୍ଗିବା ପାଇଁ ସେ ନଗ୍ର ଗଙ୍ଗାରେ ।
ଏମନ୍ତ କାର୍ଯ୍ୟ ଦେଖନ୍ତେ ଯେତେ କୁରୁଗଣ
ଅନ୍ତରେ ବିଷମ ଭୟ ପାଇଲେ ତକ୍ଷଣ ।
ତହୁଁ କୁରୁବଳ ଆସି କରକୁ ଯୋଡ଼ଣ
ଚଞ୍ଚଳେ ଧଇଲେ ବଳରାମଙ୍କ ଚରଣ ।
ବୋଇଲେ କରନ୍ତୁ ରକ୍ଷା ନଜ ଭୃତ୍ୟଗଣେ
ନଜାଣି କରିଛୁ ଦୋଷ ତୁମ୍ଭର ଚରଣେ ।
ମୂଢ଼ମତ୍ତ ହୀନ ବୁଦ୍ଧି ଆମ୍ଭେ ଯେ ସକଳେ
ଅପରାଧ କ୍ଷମାକର ପ୍ରଭୁ ଦୟାବଳେ ।
ତୁମ୍ଭେ ସମସ୍ତଙ୍କ ଶ୍ରେଷ୍ଠ ସବୁହୁଁ ପ୍ରଧାନ
ସୃଷ୍ଟି ସ୍ଥିତି ପ୍ରଳୟର ତୁମ୍ଭେହିଁ ନଦାନ ।
ତୁମ୍ଭେ ଅଟ ସଂସାର ଜଗଜର ପତ୍ତ
ପ୍ରାଣୀଙ୍କ ଜୀବନ ତୁମ୍ଭେ ସମସ୍ତଙ୍କ ଗତ୍ତ ।
ପରମ ଆଶ୍ରୟ ତୁମ୍ଭେ ଆହେ ଦୟାମୟ
ତୁମ୍ଭର କଟାକ୍ଷେ ହୁଏ ସୃଷ୍ଟି ସ୍ଥିତି ଲୟ ।
ଅନନ୍ତ ମହିମା ତବ ଅନନ୍ତ ମୂରତ୍ତ
ମସ୍ତକରେ ଧର ତୁମ୍ଭେ ସଦା ବସୁମତ୍ତୀ ।
ମୂଢ଼ ଜନେ ଜ୍ଞାନ ଦାତା ତୁମ୍ଭେ ଅନୁକ୍ଷଣ
ଆମ୍ଭଠାରୁ କୃପାଦୃଷ୍ଟି କର ସଙ୍କର୍ଷଣ ।
ସର୍ବଭୂତ ଆତ୍ମା ତୁମ୍ଭେ ସର୍ବଶକ୍ତ ଧର
ହେ ଅବ୍ୟୟ ତୁମ୍ଭ ପାଦେ କୋଟି ନମସ୍କାର

ବିଶ୍ୱର ନୟନ୍ତା ତୁମ୍ଭେ ପରମ ଈଶ୍ୱର
ତୁମ୍ଭ ଚରଣେ କରୁଛୁଁ ସର୍ବେ ନମସ୍କାର ।
ନମସ୍ତେ ଜଗତପତ୍ତ ଦେବ ସର୍ବେଶ୍ୱର
ସୃଷ୍ଟି ସ୍ଥିତ୍ତ ଲୟ କର୍ତ୍ତା ପ୍ରଭୁ ହଳଧର ।
ରକ୍ଷାକର ହୀନଜନେ ହେ କରୁଣାମୟ
ଆମ୍ଭେମାନେ ସର୍ବେ ନେଲୁଁ ତୁମ୍ଭର ଆଶ୍ରୟ
ଏହିମତେ ସ୍ତୁତ୍ତକର କୁରୁଗଣ ଯେତେ
କରଯୋଡ଼ି ପାଦତଳେ ପଡ଼ିଲେ ସମସ୍ତେ ।
ଲକ୍ଷଣା ସହିତ ଶାମ୍ବେ କଲେ ସମର୍ପଣ
ସନ୍ତୋଷ ହୋଇଲେ ତହୁଁ ପ୍ରଭୁ ସଙ୍କର୍ଷଣ
ଭୟାତୁର ହୋଇନ୍ତେ କୁରୁ ଦେଖି ବଳରାମ
ଅଭୟ ଦାନେ ସଭିଙ୍କୁ କରିଲେ ସାନ୍ତ୍ୱନ ।
ଦୁର୍ଯ୍ୟୋଧନ ପ୍ରବୋଧିଣ ରେବତ୍ତୀର ବର
ହଳ ନବାରିଲେ ତହୁଁ ହୋଇ ତୋଷଭର
ଦେଖି ଅତ୍ତ ଆନନ୍ଦିତ ହେଲା ଦୁର୍ଯ୍ୟୋଧନ
ନଜ କନ୍ୟା କୃଷ୍ଣ ସୁତେ କରିଲା ଅର୍ପଣ ।
ବହୁଧନ ରତ୍ନ ଦେଲା ଯୌତୁକ ବିଧାନେ
ହସ୍ତୀ ଅଶ୍ୱ ଧେନୁ ଦାନ ଦେଲା ହର୍ଷମନେ ।
କେତେ ଦାସଦାସୀ ଦେଲା କେ କରେ ଗଣନ
ରଥ ରଥୀ ସହିତରେ ତୋଷେ କଲା ଦାନ ।
ଯୌତୁକ ପ୍ରଦାନ କରି କୁରୁପତ୍ତ ତେବେ
ବିନତ ବଚନେ ସ୍ତୁତ୍ତ କରେ ବଳଦେବେ ।
ତହୁଁ ଦେବ ହଳଧର ଆନନ୍ଦିତ ମନେ
ଅନେକ ସାନ୍ତ୍ୱନାକଲେ ରାଜା ଦୁର୍ଯ୍ୟୋଧନେ
ଯୌତୁକରେ ଦ୍ରବ୍ୟ ସବୁ କରିଣ ଗ୍ରହଣ
ସବୁରି ସଙ୍ଗରେ କରି ମିଷ୍ଟ ଆଳାପନ ।
ପୁତ୍ର ତୁଲେ ପୁତ୍ର ବଧୂ ସଙ୍ଗରେ ଘେନିଲେ
ଦ୍ୱାରକା ନଗରେ ପ୍ରଭୁ ଶୁଭେ ବିଜେକଲେ ।
ଦ୍ୱାରିବତ୍ତୀ ପୁରେ ଆସି ହେଲେ ଉପସ୍ଥିତ
ଦେଖିଣ ନଗରବାସୀ ସର୍ବେ ଆନନ୍ଦିତ ।
ସଭା ମଧ୍ୟେ ବଳରାମ ସମସ୍ତ କହିଲେ
କୁରୁଗଣ ଯେତେ ମନ୍ଦ ଆଚରଣ କଲେ ।
ଶ୍ରବଣେ ଦ୍ୱାରକାବାସୀ ସ୍ତବ୍ଧ ସେ ସମୟ
ଏରୂପେ ହୋଇଲା ବଳଦେବଙ୍କ ବିଜୟ ।
ଅପୂର୍ବ କଥନ ଏ ଯେ ଶ୍ରବଣ ମଧୁର
ଶୁଣି ଋଷିମାନେ ହେଲେ ଆନନ୍ଦ ଅପାର ।

ଶ୍ରୀଗୁରୁ ଗୋବିନ୍ଦ ପାଦ ପଦ୍ମେ ରଖି ମନ
ଭାଷା ପ୍ରବନ୍ଧେ ଭଣଇ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ବଳଦେବ ବିଜୟ ଶାମ୍ବ ଉଦ୍ଧାର କଥନଂ
ନାମ ସପ୍ତପଞ୍ଚାଶୋଽଧ୍ୟାୟଃ ।

—୦—

## ଅଷ୍ଟ ପଞ୍ଚାଶ ଅଧ୍ୟାୟ

## ନାରଦଙ୍କ ଦ୍ୱାରକା ଦର୍ଶନ
## ବା ମାୟା ପ୍ରପଞ୍ଚ

ସୂତ ଉବାଚ

ଶୁଣ ଶୁଣ ମୁନିଜନେ ଦେଇ ମନକର୍ଣ୍ଣ
ଏ ବ୍ରହ୍ମ ବୈବର୍ତ୍ତ ଗାଥା ଅପୂର୍ବ ବିଧାନ ।
ସୁଚରିତ ଗାଥା ଏ ଯେ ଅତି ମନୋହର
ଶୁଣିଲେ ଶ୍ରବଣ ହୁଏ ଶ୍ରବଣ ଗୋଚର ।
କୃଷ୍ଣର ମହିମା ଯେହୁ ଶ୍ରବଣ କରଇ
ସକଳ ପାତକମାନ ତାହାର ଘୁଞ୍ଚଇ ।
ଏକଦିନେ ମନେ ମନେ ଦେବର୍ଷି ନାରଦ
ବିଚାର କରିଲେ ତାହାଙ୍କର ହୃଦ ପଦ୍ମ ।
ନରକ ରାଜାଙ୍କୁ କୃଷ୍ଣ କରିଣ ନିଧନ
ଯେମନ୍ତ ପ୍ରକାର କଲେ ଅପୂର୍ବ ବିଧାନ ।
ସହସ୍ର କନ୍ୟାଙ୍କୁ ତାର ବିବାହ ହୋଇଲେ
କିରୂପେ ତାହାଙ୍କ ସଙ୍ଗେ ରମଣ କରିଲେ ।
ଏକ କାଳେ ସର୍ବ ସାଥେ ରଙ୍ଗରେ ବିହାର
ଦେଖିବି କେମନ୍ତ ଅଟେ ସେ କେଳି ବେଭାର
ସେ କୌତୁକମାନ ନୟନରେ ନିରେଖିବି
ଏହି ପରକାରେ ଋଷି ମନ ମଧ୍ୟେ ଭାବି ।
ଦ୍ୱାରକା ପୁରରେ ଯାଇଁ ପ୍ରବେଶ ହୋଇଲେ
ଶୋଭଇ ଅପୂର୍ବ ପୁରୀ ଦରଶନ କଲେ ।
କୌତୁକ ଦର୍ଶନେ ମିଳିଛନ୍ତି ଦ୍ୱାରକାରେ
ବିଚିତ୍ର ଦ୍ୱାରକାବିସ୍ତା ଦେଖନ୍ତି ନେତ୍ରରେ ।
କେତେ ବନ ଉପବନ ନୟନେ ଦେଖିଲେ
ନାନା ପରକାର ପୁଷ୍ପେ କ୍ରୀଡ଼ନ୍ତି ଭ୍ରମରେ ।
ମଧୁ ଲୋଭରେ ମଧୁପେ କରନ୍ତି ଝଙ୍କାର
କ୍ରୀଡ଼ୁଥାନ୍ତି ସରୋବରରେ ରାଜହଂସ ବର ।
ପ୍ରସୂନ କମଳମାନ ଜଳେ ଶୋଭେ ସରୋବର
ତା ଦେଖି ହୋଇଲେ ଋଷି ଆନନ୍ଦ ଅପାର
ଅସଂଖ୍ୟ ରମ୍ୟ ଅଟ୍ଟାଳି ଶୋଭେ ଦ୍ୱାରକାରେ
ରତ୍ନ ନିର୍ମିତ ମନ୍ଦିର ଅତି ଶୋଭାଧରେ ।
ଗୃହର ଶୋଭା ସ୍ୱରଗ ପୁରୀକୁ ନିନ୍ଦଇ
ଦେଖି ବ୍ରହ୍ମାଙ୍କ ନନ୍ଦନ ମନେ ତୋଷହୋଇ ।
ସକଳ ସୌନ୍ଦର୍ଯ୍ୟ ଋଷି କରି ବିଲୋକନ
ଅନ୍ତରେ ବିସ୍ମୟ ହୋଇଲେକ ତପୋଧନ ।
ପୁଣି ଯାଇ ରାଜ ଅନ୍ତଃପୁରେ ପ୍ରବେଶିଲେ
ସକଳ ଗୃହର ଶୋଭା ନିରେଖି ଦେଖିଲେ ।
ଦେଖନ୍ତି ସକଳ ଗୃହ ମଧ୍ୟେ ଋଷିବର
ଏକନାରୀ ସଙ୍ଗେ ଏକ କୃଷ୍ଣଙ୍କ ବିହାର ।
ହୀରା ନୀଳା ମାଣିକ୍ୟରେ ପ୍ରଦୀପ ଜଳଇ
ପ୍ରବାଳ ମୁକୁତା ଝଲମଲ ବିରାଜଇ ।
ରତ୍ନ ନିର୍ମିତ ପଲଙ୍କ ଅତି ମନୋହର
ଦ୍ରବ୍ୟ ମଣି ବିମଣ୍ଡିନ ବର୍ଣ୍ଣ ଚମତ୍କାର ।
ଏ ସମସ୍ତ ଶୋଭା ନିରେଖିଣ ତପିମଣି
ମନ ମଧ୍ୟରେ ଆଶ୍ଚର୍ଯ୍ୟ ହୋଇଲେ ତକ୍ଷଣି ।
ସକଳ ଗୃହରେ ଦାସୀ ସାତ ସାତ ଜଣ
ସେବା କରନ୍ତି କୃଷ୍ଣଙ୍କ ପୟର ପୂଜଣ ।
ସେହି ଦାସୀଙ୍କର ଶୋଭା ରହଚି ବିଶରି
ବର୍ଣ୍ଣନା କରିବା ପାଇଁ ସାଧ୍ୟ ମୋର ନାହିଁ ।
ଏମନ୍ତ ଅପୂର୍ବ ଶୋଭା ଦେଖି ତପିବର
ବିସ୍ମୟେ ମୋହିତ ହେଲା ଅନ୍ତର ତାଙ୍କର ।
ନାରଦ ମୁନିଙ୍କୁ ଦେଖି ପ୍ରଭୁ ଭଗବାନ
ବ୍ୟସ୍ତ ହୋଇଣ ପଲଙ୍କୁ ଉଠିଣ ବହନ ।
ନାରଦଙ୍କର ପୟରେ ନମସ୍କାର କଲେ
ସୁବର୍ଣ୍ଣ ଗଡ଼ୁରେ ନୀର ଆଣିଣ ଥୋଇଲେ ।
ଅତିସମାଦରେ କରି ଆସନେ ବସାଇ
ଚରଣ ଧଉତ ଜଳ ସିଞ୍ଚିଲେ ନେଇ ।
ସେ ପ୍ରଭୁ ଜଗତ ନାଥ ଜଗତ ଜୀବନ
ବ୍ରାହ୍ମଣଙ୍କ ପାଦ ସେବା କରିଲେ ବହନ ।
ବିଧିମତେ ନାରଦଙ୍କୁ କରିଣ ଅର୍ଚ୍ଚନ
କୃତାଞ୍ଜଳି ହୋଇ ତାଙ୍କୁ ପୁଚ୍ଛିଲେ ବହନ ।
କୁହ ୨ ଦେବ କିବା କରିବି ପାଳନ
ଦ୍ୱାରକାକୁ କି ନିମନ୍ତେ ତବ ଆଗମନ ।

କୃଷ୍ଣଙ୍କ ବଚନେ ତହୁଁ ସେ ନାରଦ ଯତି
ଭକ୍ତିଭାବେ ବେନି କରଯୋଡ଼ି କହନ୍ତି ।
ହେ ଯଦୁକୁଳ ଚନ୍ଦ୍ରମା ଭକ୍ତ ପ୍ରାଣଧନ
ନୟନେ ଦେଖିଲି ଆଜ ଏ ପଦ୍ମ ଚରଣ ।
ବ୍ରହ୍ମା ଆଦି ଇନ୍ଦ୍ରଗଣ ଯାହାଙ୍କୁ ପୂଜନ୍ତି
ଏଭବ ସାଗରୁ ହେଳେ ତରିବାକୁ ଚିନ୍ତି ।
ସର୍ବଦା ମୁଁ ଧ୍ୟାନକରେ ତବ ଶ୍ରୀଚରଣ
ତବ ଶ୍ରୀ ମୂରତି ମନେ ଭାବେ ଅନୁକ୍ଷଣ ।
ଏଣୁ ଶ୍ରୀଚରଣ ତଳେ ରଖ ଦୟାମୟ
ଏହି ମୋ ପ୍ରାର୍ଥନା ମାତ୍ର ଜାଣ ହେ ନିଶ୍ଚୟ
ଏମନ୍ତ କହି ଦେବର୍ଷି ଅନ୍ୟଗୃହେ ଗଲେ
ରମଣୀଙ୍କ ସଙ୍ଗେ କୃଷ୍ଣେ ସେ ପୁରେ ଦେଖିଲେ
ଉଦ୍ଧବଙ୍କ ସଙ୍ଗେ କାହିଁ ପଶା ଖେଳୁଛନ୍ତି
ସାନନ୍ଦ ମନରେ ହାସ୍ୟ ପରିହାସେ ମତ୍ତ ।
ମୁନିବରଙ୍କୁ ଶ୍ରୀହରି ଦେଖିଲେ ଯେକ୍ଷଣ
ପଶାଖେଳ ଛାଡ଼ି ପ୍ରଭୁ ଉଠିଲେ ବହନ ।
ସାଦରେ ନାରଦଙ୍କର ଚରଣ ପୂଜିଲେ
ମଧୁର ବଚନ ତହୁଁ ପଚାରି ଲାଗିଲେ ।
କହ ଋଷି କେତେବେଳୁଁ ଏଥି ଆଗମନ
କିବା ଆଜ୍ଞାକର ମୋରେ କରିବି ପାଳନ ।
କୃଷ୍ଣଙ୍କ ବଚନେ କିଛି ନଦେଇ ଉତ୍ତର
ଆନଗୃହେ ମୁନିବର ଚଳିଲେ ସତ୍ୱର ।
ସେଠାରେ ଦେଖିଲେ କୃଷ୍ଣ କାମିନୀଙ୍କ ସଙ୍ଗେ
ବାଳକମାନଙ୍କୁ ଘେନି ଖେଳୁଛନ୍ତି ରଙ୍ଗେ ।
ତାହା ଦେଖି ମୁନିବର ବିସ୍ମୟ ମଣିଲେ
ସେଠାରୁ ଅନ୍ୟ ଗୃହକୁ ବେଗେହୋଇ ଗଲେ
ବନିତା ସହିତେ ତହିଁ ଜଗତ ମୋହନ
କରୁଛନ୍ତି ଆପଣାର ଗାତ୍ର ସମାର୍ଜ୍ଜନ ।
ସେଠାବରୁ ଅନ୍ୟଗୃହେ ଗଲେ ତପୋଧନ
ଦେଖିଲେ ଯଜ୍ଞ କରନ୍ତି ଦେବ ଜନାର୍ଦ୍ଦନ ।
କେବଣ ଗୃହରେ କୃଷ୍ଣ ପଢ଼ୁଛନ୍ତି ପୋଥି
କେଉଁ ଗୃହେ ଗୀତବାଦ୍ୟେ ମଜ୍ଜି ରହିଛନ୍ତି ।
କେଉଁ ଗୃହେ ସଖା ସଙ୍ଗେ ପ୍ରେମ ଆଳାପନ
କେବଣ ଗୃହେ କରାନ୍ତି ବ୍ରାହ୍ମଣ ଭୋଜନ ।
କାହିଁ ସନ୍ଧ୍ୟା ଆଦି କ୍ରିୟା କରନ୍ତି ସାଧନ
କେଉଁଗୃହେ କରିଛନ୍ତି ଖଡ଼ଗ ଧାରଣ ।
କେଉଁଠାରେ ଚର୍ମ ହସ୍ତେ କରନ୍ତି ଭ୍ରମଣ
କେଉଁ ମନ୍ଦିରେ ସେ କରି ଅଛନ୍ତି ଶୟନ ।
ହୋଇଛନ୍ତି କେଉଁଠାରେ ଦ୍ୱାର ଜଗୁଆଳି
କେଉଁ ଗୃହେ ବସି କୃଷ୍ଣ ଜପୁଛନ୍ତି ମାଳି ।
ବିଜେ କରିଛନ୍ତି କେଉଁ ଗୃହେ ରଥପରେ
ଅନ୍ନ ଭୁଞ୍ଜୁଛନ୍ତି ବସି କେବଣ ଗୃହରେ ।
କେଉଁଗୃହେ ବନ୍ଦୀମାନେ ସ୍ତୁତି କରୁଛନ୍ତି
କେଉଁଗୃହେ ମନ୍ତ୍ରୀ ସଙ୍ଗେ ମନ୍ତ୍ରଣା କରନ୍ତି ।
କେଉଁଗୃହେ କୃଷ୍ଣ ଶୁଣୁ ଅଛନ୍ତି ପୁରାଣ
କାହିଁ ହାସ୍ୟ ପରିହାସେ ଭୋଳ ଭଗବାନ ।
କେଉଁ ସ୍ଥାନେ ଧର୍ମସେବା କରୁଛନ୍ତି ହରି
କେଉଁ ସ୍ଥାନେ ଦାନ ବ୍ରତ ଆପଣେ ମୁରାରି ।
କେବଣ ଗୃହରେ ବସି କରନ୍ତି କି ଚିନ୍ତା
କେଉଁଗୃହେ କାମ ଭୋଗେ ଛନ୍ତି ଜଗଜ୍ଜିତା
କେଉଁଗୃହେ ମରଦନ ହେଉଛନ୍ତି ତେଲ
କେଉଁ ଗୃହେ କୁମାରଙ୍କୁ କରୁଛନ୍ତି ଗେଲ ।
କେଉଁ ଗୃହେ ସେବା କରୁଛନ୍ତି ଗୁରୁଜନେ
ପୁତ୍ର କନ୍ୟାଙ୍କୁ ପାଳନ କରନ୍ତି କେ ସ୍ଥାନେ
କେଉଁ ଗୃହେ କରେ କୃଷ୍ଣ ଦେବତା ଅର୍ଚ୍ଚନ
କାହିଁ ମୃଗୟାକୁ ବିଜେ ସଙ୍ଗେ ସଙ୍କର୍ଷଣ ।
କାହିଁ ଯଜ୍ଞ ଅର୍ଥେ ବହୁଛନ୍ତି ଧୃତଶର
କାହିଁ ରଣବେଶ ସାଜ ଯୁଦ୍ଧକୁ ତିଆର ।
କେଉଁ ଗୃହେ ବସି କୃଷ୍ଣ ବାଉଛନ୍ତି ବଂଶୀ
କେବଣ ସ୍ଥାନରେ ସଖା ସଙ୍ଗେ ଛନ୍ତି ରସି ।
ଆଉ କେଉଁ କେଉଁ ଗୃହେ ପ୍ରିୟାଙ୍କର ସଙ୍ଗେ
ସଂସାର ଲୀଳା କରନ୍ତି ପ୍ରଭୁ ରସ ରଙ୍ଗେ ।
ଅନାଦି ଅବ୍ୟୟ ସେହି ଦେବ ଆଦିମୂଳ
କାହିଁକି ଲୀଳା କରନ୍ତି ଜଗତ ମଙ୍ଗଳ ।
ଅନନ୍ତ ମହିମାମୟ ଯାର ଅନ୍ତ ନାହିଁ
ଭକ୍ତ ବିନେ ତାଙ୍କ ମର୍ମ କେ ଜାଣିବ କାହିଁ
ମାୟାମୟ ନିଜମାୟା ପଟଳେ ମୋହିତ
ପ୍ରତି ଗୃହେ ଦେଖୁଛନ୍ତି ତାଙ୍କୁ ବ୍ରହ୍ମା ସୁତ ।
ଭିନ୍ନ ଭିନ୍ନ କାର୍ଯ୍ୟ ଦେଖି ଯଦୁପତିଙ୍କର
ମନ ମଧ୍ୟରେ ଚକିତ ହେଲେ ମୁନିବର ।
ଦରଶନେ କୃଷ୍ଣମତି ପ୍ରେମେ ପୁଲକିତ
କରଯୋଡ଼ି ମହାମୁନି ଧରାରେ ଲୁଣ୍ଠିତ ।

କହନ୍ତି ନାରଦ ପ୍ରଭୁ କୃପାକର ମୋରେ
ତବ ମାୟା ଦେଖି ବୁଦ୍ଧି ବଣା ବଶେଷରେ
ପୁଣି ମନରେ ହରଷ ବଢ଼େ ବେଳୁଁ ବେଳ
ଅନୁମାନ କର ତୁମ୍ଭ ଏ ବଚିତ୍ର ଖେଳ ।
ମୋହିତ ହେଉଛି ମୁହିଁ କର ଅନୁଭବ
ଏକହୁଁ ଅନେକ ମୂର୍ତ୍ତି ଦେଖିଲ ଯା ତବ ।
ସିଦ୍ଧ ଯୋଗୀମାନେ ଦେଖି ନ ପାରନ୍ତି ଯାହା
ଦୟାବନ୍ତ ମୋରେ ପ୍ରଭୁ ଦେଖାଇଲ ତାହା
ତବ ପାଦ ସେବ ହାଦେ କ ଦୟା ମୋହର
ଦେଖିଲ ମୁଁ ଲୀଳାଖେଳା ବୈଭବ ତୁମ୍ଭର
ତୁମ୍ଭ ଦୟାରୁ ସର୍ବଦା ଗୁଣ ଗାନ କରେ
ତୁମ୍ଭ ନାମ ଧର ପ୍ରଭୁ ଥାଏ ଏ ସଂସାରେ ।
ବୀଣା ଯନ୍ତ୍ର ଏଥିଲାଗି କରଛୁ ଧାରଣ
ତୁମ୍ଭର ଅଦ୍ଭୁତ ଲୀଳା କରବାକୁ ଗାନ ।
ହେ ଶ୍ରୀହର କୃପାକର ମାୟା ଦେଖାଇଲ
ହେ ଜଗନ୍ନାଥ ତୁମ୍ଭେ କ ଲୀଳା ଆଚରିଲ ।
ଯେଉଁ ଦେଶେ ଗାନହୁଏ ତବ ଯଶ ଚୟ
ସେହି ଦେଶକୁ ମୁଁ ଯିବ ହେ କରୁଣାମୟ ।
ସେଠାରେ ରହି ମୁଁ ତବ ଗୁଣ ଗାଉଥିବ
ଆପଣେ ମାତ୍ର ଅପରେ ଶୁଭେ ମତାଇବ ।
ତାହାଙ୍କ ବଚନ ଶୁଣି କହିଲେ ମାଧବ
ପ୍ରକୃତ ବଚନ ଶୁଣ ହେ ମୁନପୁଙ୍ଗବ ।
ମୁହିଁ ଯେ ଧର୍ମରବକ୍ତା ଜଗତେ ବଦତ
ମୁହିଁ ତାର ଅନୁଷ୍ଠାତା ଜାଣ ସୁନଶ୍ଚିତ ।
ଧର୍ମର କରତା ମୁହିଁ ପୁରୁଷ ରତନ
ସମସ୍ତଙ୍କୁ ଶିଖାଏ ମୁଁ ଧର୍ମ କଥାମାନ ।
ଲୋକଶିକ୍ଷା ଲାଗି ମୋର ମାନବ ଆକାର
ସେହି ହେତୁ କରଇ ମୁଁ ଧର୍ମର ଆଚାର ।
ସୂତ ବୋଲନ୍ତି ଶ୍ରବଣ କର ମୁନଗଣ
କୃଷ୍ଣଙ୍କ ମାୟାରେ ବମୋହିତ ତପୋଧନ ।
ଦେବର୍ଷି ନାରଦ ଦେଖନ୍ତି ଯେ ଜନାର୍ଦ୍ଦନ
ଏ ଦେଶର ସର୍ବ ଧର୍ମ କରେ ଆଚରଣ ।
ଗୃହସ୍ଥମାନଙ୍କ ଅଟେ ଯେଉଁ ଧର୍ମମାନ
ସବୁ କୃଷ୍ଣ ପାଶେ ମୁନ କରନ୍ତି ଦର୍ଶନ ।
ତାହାଦେଖି କୃଷ୍ଣଙ୍କୁ ସେ କରନ୍ତି ସ୍ମରଣ
ଆନନ୍ଦେ ଉନ୍ମତ୍ତ ହୋଇ ଫେରିଲେ ବହନ

ଜଗତ ମଙ୍ଗଳମୟ ପ୍ରଭୁ ଏ ସଂସାରେ
ଲୀଳା ରଚନା କରନ୍ତି ମାନବ ରୂପରେ ।
ସର୍ବ ଶକ୍ତିବନ୍ତ ହର ସର୍ବ ଗୁଣଦାତା
ଭକ୍ତ ଭାବଗ୍ରାହୀ ଭଗବାନ ହର୍ତ୍ତାକର୍ତ୍ତା ।
ଷୋଳ ସହସ୍ର ରମଣୀମାନଙ୍କର ସଙ୍ଗେ
ବହାର କରନ୍ତି ଦ୍ୱାରକାରେ ନାନାରଙ୍ଗେ ।
ସକଳ ଈଶ୍ୱର ତୁମ୍ଭେ ପତିତପାବନ
ତୁମ୍ଭେ ଏକା ବ୍ରହ୍ମାଣ୍ଡର ପରମ କାରଣ ।
ସୃଷ୍ଟି ସ୍ଥିତି ପ୍ରଳୟ ଯେ ଯାହାଠାରୁ ହୁଏ
ମାନବ ରୂପରେ ସେହୁ ଲୀଳାକୁ ରଚୁଏ ।
କେ ଅନ୍ତ ପାଇବ ସେହି ଲୀଳାମୟଙ୍କର
ସମରଥ କେହୁ ତତ୍ତ୍ୱ ବୁଝାଇ ତାଙ୍କର ।
ଏମନ୍ତେ ଯେ ପୌରାଣିକ ସୂତ ଆନନ୍ଦରେ
ପ୍ରକାଶ କଲେ ଏ କଥା ସେ ମୁନ ବୃନ୍ଦରେ ।
ବ୍ରହ୍ମ ପୁରାଣ ପ୍ରସଙ୍ଗ ସୁଧାରସ ସାର
ଯଦୁବଂଶୀ କୃଷ୍ଣଙ୍କର ମହିମା ଅପାର ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଏ ଗୀତ ରଚଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ନାରଦ
ଦ୍ୱାରକା ଦର୍ଶନ ବର୍ଣ୍ଣନଂ ନାମ
ଅଷ୍ଟ ପଞ୍ଚାଶୋଽଧ୍ୟାୟଃ ।

—※—

## ଊନ ଷଷ୍ଠିତମ ଅଧ୍ୟାୟ
## ଭଗବାନଙ୍କର ଧର୍ମାସନେ ଧର୍ମ ପାଳନ କଥା ଓ ନାରଦ ସମ୍ବାଦ

ସୂତ ଉବାଚ

ବଦନ୍ତି ଯେ ସୂତମୁନ ଏଥୁ ଅନନ୍ତରେ
ଶ୍ରବଣ କର ହେ ସର୍ବ ତାପସ ନକରେ ।
ଧର୍ମ ରକ୍ଷାହେତୁ ଯାହା କଲେ ଭଗବାନ
ସେକଥା ମୁଁ ତୁମ୍ଭ ଆଗେ କରୁଛି ବଖାନ ।
ଏକଦା ରୁକ୍ମିଣୀ ଗୃହେ ଦେବ ଜନାର୍ଦ୍ଦନ
ସାନନ୍ଦ ମନେ କରନ୍ତି ରଜନୀ ଯାପନ ।
ନିଶା ଅବସାନ ହେଲା ଯେଉଁ ସମୟରେ
ଗାଇଲେ ବିହଙ୍ଗମାନେ ସର୍ବେ ପ୍ରଭାତରେ ।

ତା ଶୁଣି ରୁକ୍ମିଣୀ ଦେବୀ ଚମକିତ ଅନ୍ତରେ
ପତି ପାହିବାର ଜାଣି ଦୁଃଖିତ ଅନ୍ତରେ ।
ନିଶା ଅବସାନେ କାନ୍ତ ବିଚ୍ଛେଦ ଘଟଇ
କେମନେ ସହିବି କୃଷ୍ଣ ବିରହ ଯେ ମୁହିଁ ।
ଏତେକହି ମହାଦେବୀ କରନ୍ତି ଚିନ୍ତନ
ପ୍ରବେଶିଲେ ସେହିକାଳେ ଆସି ବନ୍ଦୀଗଣ ।
ପ୍ରଭାତି ଗାନ ଗାଇଣ ପ୍ରଫୁଲ୍ଲ ଚିତ୍ତରେ
ଜାଗରଣ କରାଇଲେ କୃଷ୍ଣ ମୃଦୁସ୍ୱରେ ।
ଶଯ୍ୟା ତେଜିଣ ଉଠିଲେ ପ୍ରଭୁ ଭଗବାନ
ପ୍ରାତଃ କୃତ୍ୟ ସର୍ବଶୁଭେ କଲେ ସମ୍ପାଦନ ।
ତଦନ୍ତେ ଅପୂର୍ବ କଥା ଶୁଣ ମୁନିବର
ସୁଶୀତଳ ଜଳେ ସ୍ନାନ ସାରି ଯଦୁବୀର ।
ପୀତପଟ୍ଟ ପରିଧାନ କଲେ ତାହାପର
ନିତ୍ୟକ ଆହ୍ନିକ କ୍ରିୟା ସାରିଲେ ସତ୍ୱର ।
ସନ୍ଧ୍ୟା ତର୍ପଣ କୁଶଳେ କରି ସମାପନ
ବିପ୍ରଗଣେ ବିଧିମତେ କଲେ ସେ ପୂଜନ ।
ଦୁଗ୍ଧବତୀ ଧେନୁ ଅତି ହରଷରେ ନେଇ
ଦ୍ୱିଜଗଣେ ଦାନ କଲେ ଯଦୁକୁଳ ସାଇଁ ।
ବିବିଧ ରତ୍ନ ବସନ ଆନନ୍ଦରେ ପୁଣି
ବୈଦିକ ବ୍ରାହ୍ମଣଗଣେ ଅର୍ପିଲେ ବହନ ।
ଏକେ ଏକେ ପୂଜାକଲେ ନିଜ ଗୁରୁଜନେ
ଅତିଥି ସତ୍କାର ଆଦି କଲେ ଯେ ବିଧାନେ ।
ତହୁଁ ମଙ୍ଗଳ ଦ୍ରବ୍ୟକୁ କରି ସ୍ପରଶନ
ନିଜ ଶ୍ରୀଅଙ୍ଗରେ ଲାଗି ହୋଇଲେ ଭୂଷଣ ।
ସୁଗନ୍ଧ ଚନ୍ଦନେ କରି ସର୍ବାଙ୍ଗ ଚର୍ଚ୍ଚିତ
ବନଫୁଲ ମାଳା ଗଳେ ହେଲେ ବିମଣ୍ଡିତ ।
ଗୋ ବୃଷ ବ୍ରାହ୍ମଣେ କରି କୃଷ୍ଣ ଦରଶନ
ଆନନ୍ଦିତ କରାଇଲେ ପୁରବାସୀ ଜନ ।
ସେ ଉତ୍ତାରୁଁ କରାଇଲେ ବ୍ରାହ୍ମଣ ଭୋଜନ
ଭୋଜନ ଶେଷରେ କଲେ ଦକ୍ଷିଣା ପ୍ରଦାନ ।
ପୁରବାସୀ ଗୁରୁଜନେ ଭୁଞ୍ଜାଇଲା ପରେ
ଆପଣେ ଭୋଜନ କଲେ ହରଷ ଅନ୍ତରେ ।
ତହୁଁ ରଥ ଆଣି ଦେଲା ସାରଥି ଯୋଗାଇ
ସୁଗ୍ରୀବାଦି ମନୋହର ଚାରି ଅଶ୍ୱ ତହିଁ ।
ସାରଥିର ହାତଧରି ଉଠିଲେ ରଥରେ
ଆରୋହଣ କଲେ ସିଂହାସନେ ଆନନ୍ଦରେ ।

ପୂର୍ବାହ୍ନ କୃତ୍ୟ ସକଳ କରି ସମାପନ
ଉଦ୍ଧବ ସାତ୍ୟକି ସଙ୍ଗେ ଚଳିଲେ ବହନ ।
ସୁଧର୍ମା ସଭାର ମଧ୍ୟେ ହେଲେ ଉପସ୍ଥିତ
ଆନ ପାତ୍ର ମନ୍ତ୍ରୀ ଗଣେ ଆସିଲେ ସମସ୍ତ ।
ବସିଲେ ଦେବକୀ ସୁତ ରତନ ଆସନେ
ଚଉଦିଗେ ବେଢ଼ିଣ ବସିଲେ ରାଜାମାନେ ।
ନଟ ଯେ ନର୍ତ୍ତକୀମାନେ ମିଳି ସେ ସଭାରେ
ନୃତ୍ୟ ଗୀତ ଆରମ୍ଭିଲେ ଆନନ୍ଦ ମନରେ
ବାଜଇ ବିବିଧ ବାଦ୍ୟ ତହିଁ ତାନେ ତାନେ
ବିମୋହିତ ସଭାଜନେ ମଧୁମୟ ଗାନେ ।
ରାଗ ରାଗିଣୀ ଉଚ୍ଚାରି ଗାୟିଣୀ ସକଳେ
ସୁମଙ୍ଗଳ ଗୀତ ମୃଦୁସ୍ୱରେ ଗାନ କଲେ ।
ବନ୍ଦୀମାନେ ସ୍ତୁତିକଲେ ଆନନ୍ଦ ମାନସେ
ଗହ ଗହ ସଭାସ୍ଥଳୀ ମଞ୍ଜୁଳ ବିଶେଷେ ।
ଏମନ୍ତ ସମୟେ ସେହି ଦିବ୍ୟ ସଭାସ୍ଥଳେ
ଏକ ତେଜସ୍ୱୀ ବ୍ରାହ୍ମଣ ବେଗେ ଆସି ମିଳେ ।
କୃଷ୍ଣଙ୍କ ଚରଣ ତଳେ କରି ସେ ପ୍ରଣତି
ଜଣାଇଲା ରାଜା ଜରାସନ୍ଧର ଅକୀର୍ତ୍ତି ।
ବୋଇଲା ହେ କୃଷ୍ଣ ଶୁଣ ବିନୟ କଥନ
ଜରାସନ୍ଧ କରେ ଦିଗ ବିଜୟ ଗମନ ।
ଯେତେ ନୃପଗଣ ରଣେ କରି ପରାଜୟ
ସମସ୍ତଙ୍କୁ ଆଣିଅଛି ଆପଣା ଆଳୟ ।
ସେମାନଙ୍କ କଷ୍ଟ ଯେତେ କହିବି କେମନେ
କେତେ କଷଣ ଦେଉଛି ସେ ନୃପତିଗଣେ ।
କୋଡ଼ିଏ ସହସ୍ର ନୃପଙ୍କୁ କରିଣ ବନ୍ଧନ
ନିଜଗୃହେ ରଖିଅଛି ସେ ଦୁଷ୍ଟ ଦାରୁଣ ।
ଯେତେ ନୃପ ବନ୍ଦିଛନ୍ତି କହିଲେ ସେ ମୋରେ
[illegible] ସିଅଛି ମୁହିଁ ତବ ଶ୍ରୀ ଛାମୁରେ ।
ସେମାନଙ୍କ ବାକ୍ୟ ପ୍ରଭୁ କରନ୍ତୁ ଶ୍ରବଣ
ତବ ପାଦେ ପଶିଛନ୍ତି ସେ ସର୍ବେ ଶରଣ ।
ତାହାଙ୍କ ରକ୍ଷକ ଏବେ ହୁଅ ଯଦୁପତି
ତୁମ୍ଭ ବିନୁ ସେମାନଙ୍କ ନାହିଁ ଅନ୍ୟ ଗତି ।
ଜଗତର ପତି ତୁମ୍ଭେ ଦେବ ଜନାର୍ଦ୍ଦନ
ତୁମ୍ଭଯୋଗୁଁ ଛୁଟିଯାଏ ସଂସାର ବନ୍ଧନ ।
ସାମାନ୍ୟ ବନ୍ଧନୁ ତାଙ୍କୁ ରକ୍ଷାକର ଏବେ
ଆଉ କେତେ କଷ୍ଟଛନ୍ତି ନୃପମାନେ ସର୍ବେ ।

ଜଗତର ଲୋକ ଯେତେ ମନ୍ଦ କାର୍ଯ୍ୟେ ରତ
ଭଲମନ୍ଦ କାର୍ଯ୍ୟେ ସର୍ବେ ପ୍ରବୃତ୍ତ ସନ୍ତତ ।
ଆଶାର ନାହିଁ ଯେ ଶେଷ ଆହେ ଦାମୋଦର
ଭୋଗର ଲାଳସା ଏବେ ବଢ଼ଇ ଦୁସ୍ତର ।
ତବ ପାଦେ ଏଥିପାଇଁ ନେଉଛୁ ଶରଣ
ମାନବ ରକ୍ଷଣେ ଅଟେ ତବ ଆଗମନ ।
ଶିଷ୍ଟଙ୍କୁ ପାଳନ କରି ଦୁଷ୍ଟଙ୍କୁ ସଂହାର
ନଶ୍ୱର ସ୍ୱପନ ପରି ଅଟେ ଧନ ସାର ।
ଆପଣ ଯେ ପରମ୍ ବ୍ରହ୍ମ ସର୍ବ ଜ୍ୟୋତିର୍ମୟ
କେ ଜାଣେ ତୁମ୍ଭର ଅନ୍ତ ଅନନ୍ତ ଅବ୍ୟୟ ।
ନାଶିବାକୁ ପାପଭାର ତବ ଅବତାର
ଅଧର୍ମୀଙ୍କ ପ୍ରତି ଦୟା କର ଚକ୍ରଧର ।
ପରମ ପୁରୁଷ ତୁମ୍ଭେ ଭୁବନ ମୋହନ
ତୁମ୍ଭେ ତାତ ଲୋକାତିତ ପ୍ରାଣୀଙ୍କ ଜୀବନ ।
ପୁଣି ଦୂତ କରଯୋଡ଼ି ଏସନ କହିଲା
ତୁମ୍ଭେ ମୋକ୍ଷଦାତା ବୋଲିକର ଯେଯୋଡ଼ିଲା
ମୁହିଁ ଅତି ହୀନଜନ ତୁମ୍ଭଙ୍କୁ ନ ଜାଣି
ବନ୍ଦୀହୋଇ ମାୟାଜାଲେ ଛନ୍ଦହେଲି ପୁଣି ।
ତବ ପାଦେ ଯେଉଁଜନ ଶରଣ ନଅଇ
ଭବ ଯାତନା ତାହାକୁ ମାତ୍ର ନ ବାଧଇ ।
କର୍ମର ଦୋଷରେ ତାର ହୁଅଇ ବନ୍ଧନ
ଏବେ ଏ ଅଧମେ ରକ୍ଷା କର ଜନାର୍ଦ୍ଦନ ।
ମଗଧ ଦେଶରେ ଜରାସନ୍ଧ ବନ୍ଦୀଘରେ
କୋଡ଼ିଏ ହଜାର ରାଜା ଅଛନ୍ତି ବନ୍ଦୀରେ ।
ଦ୍ୱାରକା ନଗରେ ତୁମ୍ଭେ ଅଟ ମତ୍ତସିଂହ
ଏକା ଜରାସନ୍ଧ କରେ ତୁମ୍ଭଙ୍କୁ ଯେ ଭୟ ।
ତୁମ୍ଭ ବିନା ରଣେ ତାକୁ କେହି ନ ଜିତନ୍ତି
ତାକୁ ବଧିବାକୁ ନାହିଁ କାହାରି ଶକତି ।
ତୁମ୍ଭ ତେଜ ବିନା ଅଛି ଏଡ଼େ ତେଜ କାର
ଦର୍ପ ଚୂନା କରିବାକୁ ସେ ଜରାସନ୍ଧର ।
ବନ୍ଦୀ ରାଜାମାନେ ତୁମ୍ଭ ଭୃତ୍ୟ ବୋଲି ଜାଣ
ସେମାନଙ୍କୁ ମୁକୁଳାଅ ବହନ ଯାଇଣ ।
ତାହାଙ୍କର ପରିତ୍ରାଣ ନାହିଁ ତୁମ୍ଭ ବିନେ
କୃପାବହି ରକ୍ଷା କର ଆହେ ପଦ୍ମାସନେ ।
ତୁମ୍ଭ ଅଭୟ ଚରଣେ ସେମାନେ ଶରଣ
ତୁମ୍ଭର ଉଚିତ ଯାହା କର ନାରାୟଣ ।

ଏମନ୍ତେ ସେ ରାଜଦୂତ ମୃଦୁସ୍ୱରେ ବୋଲେ
ସେହି କାଳରେ ନାରଦ ଆସି ପ୍ରବେଶିଲେ ।
ବୀଣା ବଜାଇ ଶ୍ରୀକୃଷ୍ଣଙ୍କର ଗାନ ଗାଇ
ପ୍ରବେଶିଲେ ମହାମୁନି ଆନନ୍ଦିତ ହୋଇ ।
ପିଙ୍ଗଳ ବରନ ଜଟାଜୁଟ ଶୋଭାବନ
ପ୍ରଭାକର ସମ ଆଭା ଅଟଇ ମହାନ ।
ସେହି ଦେବର୍ଷିଙ୍କୁ ପ୍ରଭୁ ଦେଖିଣ ନୟନରେ
ରଥ ଉପରୁ ଓହ୍ଲାଇ ଆସି ଆନନ୍ଦରେ ।
ମୁନିବରଙ୍କ ଚରଣେ ନମସ୍କାର କଲେ
ମଧୁର ବଚନେ ମୃଦୁସ୍ୱରେ ପଚାରିଲେ ।
କୁହ କୁହ ମୁନି କେଉଁଠାରୁ ଆଗମନ
ପାଣ୍ଡବଙ୍କର କୁଶଳ କହନ୍ତୁ ବହନ ।
କୃଷ୍ଣଙ୍କ ବଚନେ କହନ୍ତି ଯେ ମୁନିବର
ନିବେଦନ କରୁଅଛି ଶୁଣ ଚକ୍ରଧର ।
ମାୟାମୟ ସର୍ବାଶ୍ରୟ ତୁମ୍ଭେ ସର୍ବସାର
ମହୀଭାର ହରିବାକୁ ତବ ଅବତାର ।
ଅଦ୍ଭୁତ କାର୍ଯ୍ୟ ତୁମ୍ଭର ନିଜ ମାୟାବଳେ
ପ୍ରଭାକର ହୋନ୍ତି ଯଥା ମେଘ ଆଚ୍ଛାଦିଲେ ।
କେ ଜାଣି ପାରିବ ତୁମ୍ଭ ମାୟାକୁ କେଉଁପରି
ସୃଷ୍ଟି ସ୍ଥିତି ପ୍ରଳୟ ଯେ ସର୍ଜନା ତୁମ୍ଭର ।
କୋଟି କୋଟି ନମସ୍କାର ପାଦରେ ତୁମ୍ଭର
ପୂର୍ଣ୍ଣବ୍ରହ୍ମ ଭଗବାନ ଲୀଳା ଅବତାର ।
ଶୁଣ ଯାହା କରିଛନ୍ତି ପାଣ୍ଡବେ ବାସନା
ରାଜସୂୟ ଯଜ୍ଞ ଅଟେ ତାହାଙ୍କ କାମନା ।
ଏଣୁ ତୁମ୍ଭେ ସେହିଠାକୁ ଯାଇ ଜନାର୍ଦ୍ଦନ
ପାଣ୍ଡୁପୁତ୍ରଗଣେ କର ଉତ୍ସାହ ପ୍ରଦାନ ।
ସେହି ଯଜ୍ଞେ ଦେବଗଣ ଉପସ୍ଥିତ ହେଲେ
ମୁନି ଋଷି ନୃପ ଯେତେ ଉତ୍ସବେ ଆସିଲେ ।
ତବ ନାମ ଯେହୁ କରେ ଶ୍ରବଣ କୀର୍ତ୍ତନ
ପରମ ପବିତ୍ର ହୁଏ ସେହି ଅନୁକ୍ଷଣ ।
ମହିମା ତୁମ୍ଭର ସ୍ୱର୍ଗେ ହୁଅଇ ବିସ୍ତାର
ପୃଥ୍ୱୀ ରସାତଳେ ଯାଏ ରେଷେ ଅନିବାର ।
ତବ ପାଦଧୌତଜଳେ ଦେବୀ ଭୋଗବତୀ
ସ୍ୱର୍ଗେ ମନ୍ଦାକିନୀ ମର୍ତ୍ତ୍ୟେ ନାମ ଭାଗୀରଥୀ ।
ତିନିଧାର ହୋଇ ତିନି ଭୁବନେ ଗମଇ
ତ୍ରିଲୋକର ପାପୀ ତାପୀ ଉଦ୍ଧାରିବା ପାଇଁ ।

ଏହା ଶୁଣି କୃଷ୍ଣେ ତହୁଁ ଉଦ୍ଧବେ ଡାକିଲେ
ଏବେ କି କରିବା ବୋଲି ତାହାଙ୍କୁ ବୋଇଲେ
ସବୁ ତତ୍ତ୍ୱ ଜାଣ ତୁମ୍ଭେ ବତାଅ ବିଧାନ
କିବା ଯୁକ୍ତ ହୁଏ ତାହାଙ୍କର ଅନୁଷ୍ଠାନ ।
ପାଣ୍ଡବ ଦୂତ ଆସିଲା ମୋହର ସଦନେ
ରାଜସୂୟ ଯଜ୍ଞ କରିବା ପାଣ୍ଡୁ ପୁତ୍ରମାନେ ।
କେଉଁ କାର୍ଯ୍ୟ ଆଗ ଯିବି କହ ସେ ବାରତା
ସୁବିଚାର କରି ମନ୍ତ୍ରୀ କହ ସେହି କଥା ।
କୃଷ୍ଣଙ୍କ ବଚନ ଶୁଣି ଉଦ୍ଧବ ତକ୍ଷଣ
କରଯୋଡ଼ି ଜଣାଇଲେ ମଧୁରେ ବଚନ ।
ବ୍ରହ୍ମ ପୁରାଣ ପ୍ରସଙ୍ଗ ଅପୂର୍ବ କଥନ
ସୂତ ମହର୍ଷି ବଦନ୍ତି ମୁନି ସନ୍ନିଧାନ ।
ପରମବ୍ରହ୍ମ ଶ୍ରୀଗୁରୁଙ୍କ ଦାସ ଅନୁଦାସ
ସେ ପଦରେ ସଦା ଥାଏ କ୍ଷେତ୍ରବାସୀ ଆଶ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ ସୂତ
ଶୌନକ ସମ୍ବାଦେ ଧର୍ମ ପାଳନ କଥା
ପ୍ରସଙ୍ଗେ ନାରଦ ସମ୍ବାଦ ବର୍ଣ୍ଣନଂ
ନାମ ଊନଷଷ୍ଟିତମୋଽଧ୍ୟାୟଃ ।

—୍—

## ଷଷ୍ଟିତମ ଅଧ୍ୟାୟ
### ଶ୍ରୀକୃଷ୍ଣଙ୍କର ରାଜସୂୟ ଯଜ୍ଞେ ଗମନ

ସୂତ ଉବାଚ

ସୂତମହର୍ଷି କହନ୍ତି ଶୁଣ ମୁନିଗଣ
ଉଦ୍ଧବ କହିଲେ ଶୁଣି ଗୋବିନ୍ଦ ବଚନ ।
ନାରଦଙ୍କ ମୁଖୁଁ ସବୁ କରି କର୍ଣ୍ଣଗତ
କରଯୋଡ଼ି ମହାମତି ବୋଇଲେ ତୁରିତ ।
କୃଷ୍ଣଙ୍କର ଅଭିପ୍ରାୟ ବୁଝି ମାନସରେ
ଉଦ୍ଧବ କହନ୍ତି ଧୀରେ ସୁଲଳିତ ସ୍ୱରେ ।
ବେନି କରପଦ୍ମ ଯୋଡ଼ି ଜଣାନ୍ତି ଉଦ୍ଧବ
ଯାହା କହିଲେ ଦେବର୍ଷି ତାହାହିଁ ସମ୍ଭବ ।
ପାଣ୍ଡବେ କରି ଅଛନ୍ତି ଯଜ୍ଞ ଅନୁଷ୍ଠାନ
କର୍ତ୍ତବ୍ୟ ସେ କାର୍ଯ୍ୟ ଆଗେ କରିବା ସାଧନ
ଏକାନ୍ତ ଶରଣାଗତ ଅଟନ୍ତି ଯେ ଜନ
ଉପଯୁକ୍ତ ଅଟେ ଆଗେ ତାହାଙ୍କ ରକ୍ଷଣ ।
ଦୁଇ କାର୍ଯ୍ୟ ଗୁରୁତର ନିଶ୍ଚୟ ଜାଣିବ
କିନ୍ତୁ ଆଗେ ଯଜ୍ଞ କାର୍ଯ୍ୟେ ଯିବାପାଇଁ ହେବ
ଏହି କାର୍ଯ୍ୟ ହେତୁ ରାଜା ଦିଗ୍‌ବିଜୟୀ ହେବେ
ତହିଁରେ ହିଁ ଜରାସନ୍ଧ ପ୍ରାଣ ପ୍ରଭୁ ନେବେ ।
ତାହାଲେ ଉଭୟ ପକ୍ଷେ ଗୌରବ ସମାନ
ଆମ୍ଭରେ ହୋଇବ ପ୍ରଭୁ ତହିଁ କେତେ ମାନ
ବନ୍ଧନ ମୋଚନ ହେବେ ତହିଁ ରାଜାମାନେ
ତହିଁରେ ପୌରୁଷ ଅଛି ଶୁଣ ଜନାର୍ଦ୍ଦନେ ।
ଏଣୁ ଆଗ ଇନ୍ଦ୍ରପ୍ରସ୍ଥେ କରନ୍ତୁ ଗମନ
ସେଠାରେ ଜାଣି ପାରିବେ ସବୁ ବିବରଣ ।
ସମସ୍ତେ ଜାଣନ୍ତି ଜରାସନ୍ଧ ବଳବାନ
ତହୁଁ ଅଧିକ ବଳିଆ ପବନ ନନ୍ଦନ ।
ଭୀମାର୍ଜ୍ଜୁନ ସହ କରି ମଗଧେ ଗମନ
ଅନାୟାସେ ଜରାସନ୍ଧେ କରନ୍ତୁ ନିଧନ ।
ବହୁତ ସଇନ ତାର ଆହେ ଯଦୁପତି
ବିପ୍ର ରୂପେ ମଲ୍ଲଯୁଦ୍ଧ ମାଗିବେ ତାର କତି ।
କହି ତାକୁ ଭୀମସଙ୍ଗେ କରିବାକୁ ରଣ
ମହାବଳୀ ଭୀମ ତାକୁ କରିବ ନିଧନ ।
ମୋହର ମନରେ ପ୍ରଭୁ ଏହି ଯୁକ୍ତି ହୁଏ
ଏକ୍ଷଣି କର୍ତ୍ତବ୍ୟ ଯାହା କର ସମୁଦାୟେ ।
କି ମନ୍ତ୍ରଣା ଦେବି ମୁହିଁ ସକଳ ତ ଜାଣ
ଅନ୍ତର୍ଯ୍ୟାମୀଙ୍କୁ ଅଜଣା କିସ ଅଛି ପୁଣ ।
ବ୍ରହ୍ମା ଶିବ ଦେବଗଣ ତୁମ୍ଭର କିଙ୍କର
ତୁମ୍ଭ ମହିମା ତାହାଙ୍କୁ ଅଟେ ଅଗୋଚର ।
କେ ଜାଣେ ତୁମ୍ଭର ତତ୍ତ୍ୱ ହେ ଜଗଦୀଶ୍ୱର
ତୁମ୍ଭର ପବିତ୍ର କାର୍ଯ୍ୟ ଅତି ଚମତ୍କାର ।
ରାଜ ଶତ୍ରୁ ବିନାଶ କରି ନାରାୟଣ
କରିଅଛ ପିତୃ ମାତୃ ବନ୍ଧନ ମୋଚନ ।
ଅନାୟାସେ କଂସାସୁରେ ଦେଲ ଯମାଳୟ
ଗୃଣୁର ମୁଷ୍ଟିକ ଆଉ ହସ୍ତୀ କୁବଳୟ ।
ଏମାନଙ୍କୁ ଲୀଳା ମାତ୍ରେ କରିଛ ସଂହାର
ହେଲେ ଉଶ୍ୱାସ କରିଛ ଅବନୀର ଭାର ।
ମହାଯୋଗୀ ଋଷିମାନେ ଗାନ୍ତି ତବ ଯଶ
କି ଯୁକ୍ତି ଦେବି ତୁମ୍ଭଙ୍କୁ ଆହେ ହୃଷୀକେଶ ।
ଜରାସନ୍ଧ ବଧ ହେତୁ ଯଜ୍ଞ ଆୟୋଜନ
ସେହି ଯଜ୍ଞଠାକୁ ବେଗେ କରନ୍ତୁ ଗମନ ।
ପ୍ରଭୁ ଜନାର୍ଦ୍ଦନ ଶୁଣି ଉଦ୍ଧବ ବଚନ
ମନ୍ଦେ ହସି ସୁମଧୁରେ କହିଲେ ତକ୍ଷଣ ।

ଭଲଯୁକ୍ତ ଦେଲ ତୁମ୍ଭେ ଆହେ ମନ୍ତ୍ରୀବର
ମୁହିଁ ଆଗ ଯିବି ସେହି ହସ୍ତିନା ନଗର ।
ସାରଥିକ ଶୁଣି ପ୍ରଭୁ ବେଗେ ଆଜ୍ଞା ଦେଲେ
ସେକ୍ଷଣି ଦାରୁକ ରଥ ଯୋଗାଇଲା ହେଲେ ।
ଭୃତ ବନ୍ଧଗଣେ କୃଷ୍ଣ କହିଲେ ତକ୍ଷଣ
ବଳଦେବ ଉଗ୍ରସେନ କହ ବିବରଣ ।
ପୁତ୍ର ପତ୍ନୀ ମାନଙ୍କୁ ହେ ବୁଝାଇ କହନ୍ତୁ
ସକଳେ ଇନ୍ଦ୍ରପ୍ରସ୍ଥକୁ ବେଗ ହୋଇ ଯାନ୍ତୁ ।
କୃଷ୍ଣଙ୍କ ଆଦେଶେ ଭୃତ ଜଣାଇଲା ଯାଇ
ପ୍ରଭୁଙ୍କର ଆଜ୍ଞା ଇନ୍ଦ୍ରପ୍ରସ୍ଥେ ଯିବା ପାଇଁ ।
ସକଳେ ଶୁଣି ହୋଇଲେ ଅତି ହରଷିତ
ପରିବାର ସହ ରଥେ ବସିଲେ ସମସ୍ତ ।
ଅସଂଖ୍ୟ ଯାଦବ ସୈନ୍ୟ ଚଳିଲେ ବହନ
ମହା ଶବଦରେ ସ୍ତବ୍ଧ ହେଲେ ସର୍ବଜନ ।
ବିବିଧ ବାଦ୍ୟ ନାଦରେ କମ୍ପିଲା ସେ ପୁର
ଅତ୍ୟନ୍ତ ବେଗରେ ବେଗେ ଚଳେ ରଥବର ।
ପୁତ୍ର ପତ୍ନୀଗଣ ତୁଲେ ଦେବ ଯଦୁପତି
ଆନନ୍ଦ ମନରେ ସର୍ବ ଶୁଭ କଲେ ଗତି ।
ଯେତେ ପଦାତିକ ଗଣ ଖଣ୍ଡା ଢାଲ ଧରି
ହସ୍ତୀ ଅଶ୍ୱ ଅରତି ନ ଯାନ୍ତି ବେଗ କରି ।
ସେ ସୈନ୍ୟଙ୍କ ମୁଖ ରବରେ କମ୍ପଇ ଗଗନ
ମହା ପ୍ରଳୟ କାଳରେ ଯେସନ ପବନ ।
ଏହିପରି ସାଜ ସର୍ବେ ଇନ୍ଦ୍ରପ୍ରସ୍ଥେ ଗଲେ
ମଧୁର ବଚନେ କୃଷ୍ଣ ତାହାଙ୍କୁ ତୋଷିଲେ ।
ତଦନ୍ତରେ ନୃପ ଦୂତେ କହି ଆଶ୍ୱାସିଲେ
ଆପଣା ସ୍ଥାନକୁ ଏବେ ଯାଅ ତୁମ୍ଭେ ହେଲେ
ମଗଧ ରାଜାଙ୍କୁ ମୁହିଁ କରିଣ ନିଧନ
ଉଦ୍ଧାରିବି ସର୍ବ ନୃପମାନଙ୍କୁ ବନ୍ଧନ ।
ଯେତେ ଯେତେ ରାଜାମାନେ ବନ୍ଦ ହୋଇଛନ୍ତି
ମୁକୁଳାଇ ଆଣିବି ମୁଁ ତାହାଙ୍କୁ ତଡ଼ିତି ।
ଶୁଣି ସର୍ବେ ଆନନ୍ଦରେ ଚଳିଲେ ବହନ
ମନରେ ଭାବିଲେ ଜରାସନ୍ଧର ନିଧନ ।
ତହୁଁ ପ୍ରଭୁ ଆନନ୍ଦରେ ରଥ ଚଳାଇଲେ
ହର୍ଷ ମନେ ପ୍ରଜାମାନେ ସର୍ବେ ବିଲୋକିଲେ ।
ରଥର ପତାକା ଦିଶୁଥାଏ ଯେ ପର୍ଯ୍ୟନ୍ତ
ଦେଖୁଥାନ୍ତି ପ୍ରଜାଗଣମାନେ ସେ ପର୍ଯ୍ୟନ୍ତ ।

ତଦନ୍ତେ କ୍ଷୁବ୍ଧ ମନରେ ଯେଝାପୁରେ ଗଲେ
ସାରଥି ସାନନ୍ଦଭରେ ରଥ ଚଳେ ଭଲେ ।
ମହାବେଗେ ନନ୍ଦଘୋଷ ଚଳେ ଘନ ଘନ
ଲଙ୍ଘି ଯାଏ ନଦ ନଦୀ ପର୍ବତ କାନନ ।
ଘୁ ଘୁ ଶବ୍ଦକରି ରଥ ଧାମଇ ସତ୍ୱରେ
ଦୃଷଦ୍ୱତୀ ମହାନଦୀ ଅତିକ୍ରମ କରେ ।
ମତ୍ସ୍ୟ ପଞ୍ଚାଳ ପ୍ରଦେଶ ପଛ କରି ରହେ
ତାହାପରେ ଇନ୍ଦ୍ରପ୍ରସ୍ଥେ ଉପସ୍ଥିତ ହୋଏ ।
କୃଷ୍ଣ ଆଗମନ ବାର୍ତ୍ତା କରନ୍ତେ ଶ୍ରବଣ
ପଦବ୍ରଜେ ଯୁଧିଷ୍ଠିର ଧାଇଁଲେ ବହନ ।
ସଙ୍ଗରେ ଚଳିଲେ ଯେତେ ମହାରଥି ଗଣ
ଦ୍ୱାରକା ନାଥଙ୍କୁ କରିବାକୁ ଦରଶନ ।
ଯେତେ ଦେବଜ୍ଞ ବ୍ରାହ୍ମଣ ବେଦଗାନ କଲେ
ଶ୍ରୀକୃଷ୍ଣଙ୍କ ସନ୍ନିଧେ ପରବେଶ ହେଲେ ।
ସଂସାର ସାର ମୂର୍ତ୍ତିକୁ କରି ବିଲୋକନ
ଜୀବନ ଧନ୍ୟ ମଣିଲେ ହସ୍ତିନାର ଜନ ।
ସତେକି ମୃତ ଶରୀର ପ୍ରାଣ ସଞ୍ଚରିଲା
ଅଙ୍ଗରୁ କଳୁଷ ତେତେବେଳେ ବିନାଶ ହୋଇଲା ।
କୃଷ୍ଣଙ୍କର ବଦନେ ପାଇ ଦରଶନ
ପୁନଃ ପୁନଃ ସକଳେ କରନ୍ତି ଆଲିଙ୍ଗନ ।
କୃଷ୍ଣ ଆଲିଙ୍ଗନେ ସର୍ବେ ପୁଲକ ହୃଦୟ
ପହଣ୍ଡ ମଣାଇ ନେଲେ ଲକ୍ଷ୍ମୀଙ୍କ ଆଶ୍ରୟ ।
କୃଷ୍ଣ ଅଙ୍ଗସ୍ପର୍ଶେ ହେଲା ପାପ ବିମୋଚନ
ନୟନୁ ଆନନ୍ଦ ଅଶ୍ରୁ ହୋଇଲା ପତନ ।
ହର୍ଷ ଭରେ ପୁଲକିତ ଧର୍ମଙ୍କ ତନୟ
କୃଷ୍ଣଙ୍କୁ ହୃଦରେ ଯାକି ଭାବରେ ତନ୍ମୟ ।
ବହୁ କଥା ପଚାରନ୍ତି ରାଜା ଯୁଧିଷ୍ଠିର
ନୟନ ଯୁଗଳୁ ବହେ ପ୍ରେମ ଅଶ୍ରୁଧାର ।
ତହୁଁ ବୀର ଭୀମସେନ କଲେ ଆଲିଙ୍ଗନ
ତାହାଙ୍କ ନୟନୁ ଅଶ୍ରୁ ବହେ ଘନ ଘନ ।
ବୀରବର ପାର୍ଥ ତହୁଁ ଆଲିଙ୍ଗନ କଲେ
ପରସ୍ପର ଅଶ୍ରୁବାରି ଅନର୍ଗଳ ଝରେ ।
ପାଦ ପଦ୍ମକୁ ଆଉଁସି ବୀର ଅରଜୁନ
କୋଳାଇଲେ ଶ୍ରୀକୃଷ୍ଣଙ୍କୁ ଆନନ୍ଦ ହୋଇଣ ।
ତଦନ୍ତେ ନକୁଳ ସହଦେବ ବେନିଭାଇ
ଶ୍ରୀକୃଷ୍ଣ ଚରଣ ଯୁଗେ ପ୍ରଣମିଲେ ଯାଇ ।

ସସ୍ନେହଭରେ କୃଷ୍ଣ ତାଙ୍କୁ କୋଳାଗ୍ରତ କଲେ
ସେକାଳ ଆନନ୍ଦ ମୁଖେ କହିଲେ ନ ସରେ ।
ପରେ କୃଷ୍ଣ ବିପ୍ରଗଣେ କଲେ ନମସ୍କାର
ବନ୍ଦୀମାନେ ଗାନକଲେ ଗୀତ ସୁମଧୁର ।
ଚଉଦିଗେ ଶୁଭ ବାଦ୍ୟ ବାଜଲା ସେକ୍ଷଣି
ଋଷିମାନେ ହର୍ଷ ମନେ କଲେ ବେଦଧ୍ୱନି ।
ପରେ ସୁହୃଦମାନଙ୍କୁ କରି ସମ୍ଭାଷଣ
ପୁରି ମଧ୍ୟେ ପ୍ରବେଶିଲେ ଦେବକୀ ନନ୍ଦନ ।
ପୁରବାସୀ ନାରୀଗଣ ଧାଇଁଣ ଆଇଲେ
ନେତ୍ର ଭରି କୃଷ୍ଣରୂପ ଦରଶନ କଲେ ।
ନିଜ ଗୃହ କାର୍ଯ୍ୟ ଗୁଡ଼ି ସକଳ ଯୁବତୀ
କେହି ବା ଆଇଲେ ଗୁଡ଼ି ଆପଣାର ପତି ।
କେଉଁନାରୀ ଶିଶୁପୁତ୍ର କରି ବରଜନ
ବେଗେ ସେ ଯେ ଦେଖିବାକୁ କୃଷ୍ଣଙ୍କ ବଦନ
ପତ୍ନୀଙ୍କ ସହିତେ କୃଷ୍ଣ ଦରଶନ କରି
ପୁଷ୍ପ ବରଷନ୍ତି ସର୍ବେ ମସ୍ତକ ଉପରି ।
ମନେ ମନେ କୃଷ୍ଣେ କଲେ ସର୍ବେ ଆଲିଙ୍ଗନ
କୃଷ୍ଣ ଦର୍ଶନେ ସକଳ ଆନନ୍ଦେ ମଗନ ।
କୃଷ୍ଣ ମୁଖ ଚନ୍ଦ୍ର ନିରେଖନ୍ତି ନାରୀ ନରେ
କେତେ କଥା ପଚାରନ୍ତି ସାନନ୍ଦ ଅନ୍ତରେ ।
ପତ୍ନୀ କଲେ କଲବେଳେ କୃଷ୍ଣଙ୍କ ଦର୍ଶନ
ତାରି ମଧ୍ୟେ ଶୋଭେ ଯେହ୍ନେ ପୂର୍ଣ୍ଣିମାର ଜହ୍ନ
କୃଷ୍ଣ ଦର୍ଶନେ ସବୁରି ଆନନ୍ଦ ଅପାର
ପୁରବାସୀମାନେ କଲେ ମଙ୍ଗଳ ଆଚାର ।
ସମସ୍ତଙ୍କ ମନୋରଥ ପୂର୍ଣ୍ଣକରି ହରି
ପୁରି ଭିତରେ ପ୍ରବେଶ ହୋଇଲେ ମୁରାରି ।
କୃଷ୍ଣେ ଦେଖି କୁନ୍ତୀଦେବୀ ଆନନ୍ଦେ ଭାସିଲେ
ଅତି ଚଞ୍ଚଳରେ ଆସି ତାଙ୍କୁ କୋଳକଲେ ।
କୃଷ୍ଣେ କୃଷ୍ଣ ପତ୍ନୀଗଣେ କରି ସମାଦର
ଏକେ ଏକେ ପୂଜା କଲେ ହୋଇ ସ୍ନେହଭର
ସମସ୍ତଙ୍କୁ ପୂଜା କଲେ ଦ୍ରୌପଦୀ ସୁମତି
ସତ୍ୟଭାମା ରୁକ୍ମିଣୀ ଯେ ଭଦ୍ରା ଜାମ୍ବବତୀ ।
ମିତ୍ର ବିନ୍ଦା କାଳନ୍ଦୀ ଶ୍ରୀ ଶୈବ୍ୟା ନାଗ୍ନଜିତୀ
ସମସ୍ତଙ୍କୁ ପୂଜି ମନେ ଆନନ୍ଦିତା ଅତି ।
ରତନ ଆସନେ ଆନନ୍ଦରେ ବସାଇଲେ
ଦେବ ଜନାର୍ଦ୍ଦନ ଯୁଧିଷ୍ଠିର ଘେନିଗଲେ ।
ଆଉ ଯେତେ ଯଦୁଗଣେ କରିଲେ ପୂଜନ
ସକଳ ସହଚରଙ୍କୁ କଲେ ସମ୍ଭାଷଣ ।
ତଦନ୍ତରେ ସର୍ବଙ୍କି ଯେ ଦେଲେ ବାସସ୍ଥାନ
ଆନନ୍ଦ ବିଧାନେ ଭଲେ କରାନ୍ତି ଭୋଜନ ।
ସନ୍ତୁଷ୍ଟ କରି ଶ୍ରୀହରି ଧର୍ମଙ୍କ କୁମରେ
କିଛି ଦିନ ରହିଲେ ସେ ପାର୍ଥ ଭବନରେ ।
ଆନନ୍ଦରେ ବିହରନ୍ତି ଘେନି ଧନଞ୍ଜୟ
ଇନ୍ଦ୍ରପ୍ରସ୍ଥ ବାସୀଙ୍କ ଆନନ୍ଦ ଅତିଶୟ ।
ଏମନ୍ତେଣ କୃଷ୍ଣ ବିହରନ୍ତି ହସ୍ତିନାରେ
ସେ କାଳ ସୁଲଭ କେବା ମୁଖେ ବର୍ଣ୍ଣିପାରେ
କୃଷ୍ଣ କଥା ଯେଉଁଜନ କରଇ ଶ୍ରବଣ
ରୋଗ ଶୋକ ଦୂରେ ଯୁଚଇ ପାପ ବିମୋଚନ
କୃଷ୍ଣ ଚରିତ ସାକ୍ଷାତେ ଅମୃତର ସିନ୍ଧୁ
ଆସ୍ୱାଦନ କରି ଭକ୍ତ ପିଅବେ ବିନ୍ଦୁ ବିନ୍ଦୁ ।
ଏହି ଯେ ବ୍ରହ୍ମ ପୁରାଣ ବ୍ୟାସ ବିରଚିତ
ଶ୍ରବଣ କରି ଆନନ୍ଦ ଲଭ ମୁନି ଯୂଥ ।
ଏହିପରି ସୁତ ମୁନି ପରକାଶ କଲେ
ଗୁରୁ ବ୍ରହ୍ମ ଚିନ୍ତି କ୍ଷେତ୍ରମୋହନ ଯେ ବୋଲେ

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ
ଶ୍ରୀକୃଷ୍ଣ ରାଜସୂୟ ଯଜ୍ଞେଗମନ କଥନଂ
ନାମ ଷଷ୍ଟିତମୋଽଧ୍ୟାୟଃ ।

—◆—

## ଏକଷଷ୍ଟିତମ ଅଧ୍ୟାୟ

### ଜରାସନ୍ଧ ବଧ ବୃତ୍ତାନ୍ତ

ଶୌନକ ଉବାଚ

ପୁଚ୍ଛନ୍ତି ଶୌନକ ମୁନି ସୁତଙ୍କୁ ଅନାଇଁ
ଆହେ ପୌରାଣିକ ଏବେ କହନ୍ତୁ ବୁଝାଇ ।
ଯେଉଁପରି ଜରାସନ୍ଧ ହୋଇଲା ନିଧନ
ତାହା ଶୁଣିବାକୁ ବଳୁଅଛି ଆମ୍ଭ ମନ ।

ସୁତ ଉବାଚ

ଶୁଣ ଶୁଣ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।

ଅନେକ ରାଜସଭାରେ ଧର୍ମଙ୍କ ନନ୍ଦନ
ବସିଛନ୍ତି ବେଢ଼ି ଛନ୍ତି ସଭାସଦଗଣ ।
ସିଦ୍ଧ ମୁନି ଋଷି ଆଉ କ୍ଷତ୍ରିୟ ବ୍ରାହ୍ମଣ
କୁଳାଚାର୍ଯ୍ୟ ପୁରବାସୀ ଆତ୍ମୀୟ ସ୍ୱଜନ ।
ସଭାରେ ଆନନ୍ଦେ ବସିଅଛନ୍ତି ସକଳେ
ବିନୟରେ ଯୁଧିଷ୍ଠିର ଶ୍ରୀକୃଷ୍ଣେ କହିଲେ ।
ହେ କୃଷ୍ଣ କରୁଣାକର ଶୁଣ ମୋର ଗିର
ତୁମ୍ଭେ ମୋ ବାନ୍ଧବ ବୋଲି ଜାଣେ ଚରାଚର
ଯେଉଁ ରାଜସୂୟ ଯଜ୍ଞ ମନସ୍ଥ ଆମ୍ଭର
ଏହାର ଦାୟିତ୍ୱ ନ୍ୟସ୍ତ ଉପରେ ତୁମ୍ଭର ।
ତୁମ୍ଭଙ୍କୁ କିସ କହିବି ଶୁଣ ହେ ଶ୍ରୀପତି
ତବ ପାଦ ପଦ୍ମେ ସଦା ରହେ ଯାର ମତି ।
ସକଳ ପାତକରାଶି ନାଶ ଯାଏ ତାର
ଅନ୍ତକାଳେ ବସଇ ସେ ବଇକୁଣ୍ଠ ପୁର ।
ଆତ୍ମପର ଜ୍ଞାନ ତବ ନୁହେଁ କଦାଚନ
ସର୍ବଜୀବେ ସମଭାବ ରଖିଥାଅ ପୁଣ ।
ଭକ୍ତ ଜନେ ଅନୁକ୍ଷଣେ ତବ ଦୟାଥାଏ
ଭକ୍ତ ବାଞ୍ଛା କଳ୍ପତରୁ ତୁମ୍ଭ ତ ନିଶ୍ଚୟେ ।
ବେଦରେ ରହିଛି ଭକ୍ତ ଭାବଗ୍ରାହୀ ବୋଲି
ଭକ୍ତଙ୍କୁ ମାନ ବଢ଼ାଅ ସଦା ପ୍ରେମେ ଭୁଲି ।
ତୁମ୍ଭଙ୍କୁ ଯେମନ୍ତ ଜନ ଯେ ଭାବେ ଭଜଇ
ସେହିମତେ ତାରେ ଦୟାକର ଭାବଗ୍ରାହୀ ।
ମୁହିଁ ଅଟେ ଅଳ୍ପ ମତି ବୁଦ୍ଧି ଅଳ୍ପ ମୋର
କି ଗତି ହୋଇବ ଏବେ ଜାଣେନା ଶ୍ରୀଧର ।
ଏହି ରାଜସୂୟ ଯଜ୍ଞ କରି ଆବାହନ
ଜାଣେ ନାହିଁ କେଉଁରୂପେ ହେବ ତା ସମ୍ପୂର୍ଣ୍ଣ ।
ଧର୍ମରାଜଙ୍କ ବଚନେ କହନ୍ତି ଶ୍ରୀଧର
ଯହିଁରେ ମଙ୍ଗଳ ହେବ ଶୁଣ ନୃପବର ।
ବଡ଼ ଭୟଙ୍କର ଏହି ଯଜ୍ଞର ବିଧାନ
ସମସ୍ତଙ୍କ ବାଞ୍ଛା ଏହା ଜାଣହେ ରାଜନ ।
ଆବର ଯଜ୍ଞର ଅଟେ ନିୟମ ଯେମନ୍ତ
ସାବଧାନେ ଶୁଣ ଆହେ କୁନ୍ତୀଙ୍କର ସୁତ ।
ଆଗେ ବସୁଧାକୁ ରଖି ନିଜ ଆୟତରେ
ଦିଗ୍ ବିଜୟ କରି ଧନ ଆଣ ସୁଚତୁରେ ।
ଯେଉଁପରି ଏହିଯଜ୍ଞ ହୋଇବ ସାଧନ
ତେମନ୍ତ ଉପାୟ ମୁହିଁ ବତାଉଛି ଜାଣ ।

ଦେବ ଅଂଶରେ ଜନମ ତୁମ୍ଭ ସହୋଦର
ଦିଗ୍ ବିଜୟ କରି ଧନ ଆଣିବେ ପ୍ରଚୁର ।
ଏହା ଶୁଣି ଧର୍ମରାଜ ଆନନ୍ଦ ହୋଇଲେ
ଚରି ଭାଇଙ୍କୁ ପାଶକୁ ହକାରି ବୋଇଲେ ।
ଆନର ଶ୍ରୀକୃଷ୍ଣଚନ୍ଦ୍ର କହିବେ ଯେମନ୍ତ
ଶୁଣି ବାହାରିଲେ ସାଥେ ୨ ସବୁଭ୍ରାତ ।
ଦକ୍ଷିଣକୁ ସହଦେବ କରିଲେ ଗମନ
ପଶ୍ଚିମେ ନକୁଳ ଗଲେ ଘେନି ବହୁ ସୈନ୍ୟ
ପୂର୍ବଦିଗେ ଭୀମସେନ ଗମନ କରିଲେ
ତିନିଭାଇ ବଣ ରାଜ୍ୟ ପରାଜୟ କଲେ ।
ବାହୁବଳେ ଆଣିଲେ ସେ ଅପର୍ଯ୍ୟାପ୍ତ ଧନ
ଯୁଧିଷ୍ଠିରଙ୍କ ସନ୍ନିଧେ କରିଲେ ଅର୍ପଣ ।
ପରାଜିତ ହେଲେ ସର୍ବ ନରପତି ଚୟ
ମାତ୍ର ଜରାସନ୍ଧ ନ ହୋଇଲା ପରାଜୟ ।
ଏହାଶୁଣି ଧର୍ମସୁତ ଚିନ୍ତିତ ହୋଇଲେ
କି କରିବେ ବୋଲି ସେହୁ ଭାବି ନ ପାରିଲେ
ଜରାସନ୍ଧେ ନାଶିବାକୁ ପ୍ରଭୁ ଜନାର୍ଦ୍ଦନ
ମନେ ମନେ କଲେ ତାର ଉପାୟ ଚିନ୍ତନ ।
ପ୍ରଧାନ ଉପାୟ ଗୋଟି ମାନସେ ଭାବିଲେ
ଭୀମ ଅର୍ଜୁନଙ୍କ ସାଥେ ଆପଣେ ଚଳିଲେ ।
ମଗଧ ରାଜ୍ୟ ମଧ୍ୟକୁ ଗଲେ ତିନିଜନ
ଯହିଁ ରହିଅଛି ଜରାସନ୍ଧ ସେ ଦୁର୍ଜ୍ଜନ ।
ଏହି ତିନିଜଣ ଗଲେ ବ୍ରାହ୍ମଣ ବେଶରେ
ପ୍ରବେଶ ହୋଇଲେ ଜରାସନ୍ଧ ନିକଟରେ ।
ଦେଖି ବ୍ରାହ୍ମଣଙ୍କୁ ନମସ୍କାର କଲା ବୀର
ତିନିଜଣ ବୋଇଲେକ ତାହାଙ୍କୁ ସତ୍ୱର ।
ଶୁଣ ଆମ୍ଭର ବଚନ ଆହେ ନରପତି
ଆଜ ତିନିଜଣ ତୁମ୍ଭ ଦୁଆରେ ଅତିଥି ।
ବହୁତ ଦୂରୁ ଏଠାକୁ କରିଛୁ ଗମନ
ବିଧିମତେ କର ଆମ୍ଭ ବାସନା ପୂରଣ ।
ଭିକ୍ଷା ଅନ୍ନ ରୂପେ କାର୍ଯ୍ୟ କରିବାକୁ ହେବ
ଆମ୍ଭ କଲ୍ୟାଣରେ ତୁମ୍ଭେ ଭବେ ସୁଖୀହେବ ।
ତୁମ୍ଭେ ମହାଦାତା ବୋଲି କୁହନ୍ତି ସଂସାରେ
ଦାତାର ଅଦେୟ କିଛି ନ ଦେଖୁଁ ନେତ୍ରରେ
ଏ ଜଗତେ କେତେ ଦାନ ଲଭିଣ ଜନମ
ଅକାତରେ କରିଛନ୍ତି ବହୁ ଦାନ ଧର୍ମ ।

ହରିଶ୍ଚନ୍ଦ୍ର ଆଦିକରି ଦାତାମାନେ ଜାଣ
ବ୍ରାହ୍ମଣମାନଙ୍କୁ ଦେଇଛନ୍ତି ବହୁଧନ ।
ଦେଖ ରାଜା ନୁହନ୍ତି ସେ ସମାନ ତୁମ୍ଭର
ତୁମ୍ଭେ ମହାଦାନୀ ଅଟ ଜଗତ ମଧ୍ୟର ।
ଦ୍ୱିଜଭକ୍ତ ମହାରାଜା ମହୀରେ ବିଖ୍ୟାତ
ତୁମ୍ଭ ସମ ଦାତା ଆମ୍ଭେ ନଦେଖୁ ଜଣେ ତ
ଏହାଶୁଣି ଜରାସନ୍ଧ କରଇ ଭାବନା
କେବା ଏହି ତିନିଜଣ ଯାଉ ନାହିଁ ଜଣା ।
ବ୍ରାହ୍ମଣ ବେଶଧାରୀ ଏ କ୍ଷତ୍ରିୟ ଆକାର
ସନ୍ଦେହ ହେଉଛି ମନେ ଏଥିରେ ମୋହର ।
ଯା ହେଉ ମାଗନ୍ତେ ଭିକ୍ଷା ମୋହର ନିକଟେ
ଯା ଗୃହିଁବେ ତାହା ମୁହିଁ ଦେବ ଅକପଟେ
ବଳିକି ଛଳିବା ପାଇଁ ଗଲେ ନାରାୟଣ
ଅକାତରେ ସର୍ବଧନ କଲା ସେହୁ ଦାନ ।
ଆପଣା କୀରତି ରଖି ଜଗତ ଭିତର
ପାତାଳେ ଗମନ କଲା ଆନନ୍ଦେ ସତ୍ୱର ।
ରଖିଲା ସେ ନିଜ ଯଶ କି ଅବା ନ କଲା
ଗୁରୁ ଶୁଧାଚ୍ଚର୍ଯ୍ୟ କଥା କର୍ଣ୍ଣେ ନ ଶୁଣିଲା ।
ଆପଣା ଯଶ ରକ୍ଷଣେ କଲାନାହିଁ ଭୟ
ଜଗତେ ଥାପିଲା କୀର୍ତ୍ତି ବଳୀନ୍ଦ୍ର ଦୈତ୍ୟରାୟ ।
ଏଣୁ ମୁହିଁ ଆପଣାର ସୁଖ୍ୟାତି ରଖିବି
ଏ ବ୍ରାହ୍ମଣେ ଯା ଇଚ୍ଛିବେ ତାହା ନିଶ୍ଚେ ଦେବି
ମନେ ମନେ ଏହିପରି କରିଣ ବିଚାର
ଜରାସନ୍ଧ କହେ ତହୁଁ ଗମ୍ଭୀରେ ଉତ୍ତର ।
ଆହେ ବିପ୍ରମାନେ ଯାହା ବାଞ୍ଛା ତବ ମନେ
ଅଭିମତ ଭିକ୍ଷା ମାଗ ଦେବଇଁ ବହନେ ।
ଯା ଗୃହିଁବ ତା ପାଇବ ଜାଣ ହେ ନିଶ୍ଚୟ
ମୋକଥା ଆନ ନୁହଇ ଆହେ ବିପ୍ରଚୟ ।
ମୋହର ଶିର କମଳ ଗୃହଁ ଯଦି ତୁମ୍ଭେ
ଅକାତରେ ଦେବି ତାହା ମୁହିଁ ଅବିଳମ୍ବେ ।
ବୋଇଲେକ ଜରାସନ୍ଧ ବାକ୍ୟେ ଜନାର୍ଦ୍ଦନ
ଯୁଦ୍ଧଭିକ୍ଷା ମାଗୁଅଛୁ ତୁମ୍ଭଙ୍କୁ ରାଜନ ।
ଦେଖୁଅଛ ମୋର ସଙ୍ଗେ ଏ ଯେ ଦୁଇଜଣ
ପଣ୍ଡୁଙ୍କ କୁମର ଭୀମ ଆଉ ଅରଜୁନ ।
ବସୁଦେବ ସୁତ ମୁହିଁ କୃଷ୍ଣ ନାମ ମୋର
ବିଶେଷ ଭାବରେ ମୋତେ ଜାଣ ନରେଶ୍ୱର ।

ତୁମ୍ଭ ପୂର୍ବ ଶତ୍ରୁ ମୁହିଁ ଜାଣ ଭଲକରି
ଏବେ ଏହି ଭିକ୍ଷା ଦାନ କର ଦଣ୍ଡଧାରୀ ।
ଏହାଶୁଣି ଜରାସନ୍ଧ ଜଳିଣ ଉଠିଲା
କୃଷ୍ଣଙ୍କୁ ଗୃହିଁ ସେ ମୂଢ଼ ସକ୍ରୋଧେ କହିଲା ।
ମୋର ଭୟେ ସମୁଦ୍ରରେ ସଦା କରୁ ବାସ
କି ସାହସେ ଅଇଲୁ ତୁ ପୁଣି ମୋ ଆବାସ ।
ଭୟାଳୁ ଜନ ସଙ୍ଗରେ ଯୁଦ୍ଧ ଯୁକ୍ତ ନୁହେଁ
କେତେଥର ପଳାଇଛୁ ଯୁଦ୍ଧର ସମୟେ ।
ନେନେ ଦେଖୁଅଛି ମୁହିଁ ଏହି ଯେ ଅର୍ଜ୍ଜୁନ
ଅତି କ୍ଷୁଦ୍ରଅଟେ ଏ ତ ବାଳକ ସମାନ ।
କେବେ ଯୁଦ୍ଧ ନ କରିବି ଏହାର ସହିତ
ଭୀମ ମୋହର ସମାନ ଅଟେ ଏ କଥିତ ।
ଅତଏବ ଭୀମ ସଙ୍ଗେ କରିବି ସମର
ଏହାଶୁଣି ବାସୁଦେବ ହରଷ ଅନ୍ତର ।
ତହୁଁ ଜରାସନ୍ଧ ଅତି ଆନନ୍ଦିତ ମନେ
ପୁର ମଧ୍ୟରୁ ବାହାର ହେଲା ତତକ୍ଷଣେ ।
ଯୁଦ୍ଧକ୍ଷେତ୍ରେ ସର୍ବେ ମିଳି କଲେକ ଗମନ
ଏକା ଗଦା ଭୀମେ ଦେଲା ନୃପତି ସେକ୍ଷଣ ।
ଆପଣେ ଘେନିଲା ଏକ ଗଦା ମହାକାୟ
ଗଦାହାତେ ଚଉଦିଗେ ବୁଲେ ଦୁର୍ବିଶୟ ।
ରଣସ୍ଥଳେ ଦୁଇବୀର କଲେ ଆସ୍ଫାଳନ
ଦୁଇଗୋଟା ମତ୍ତହସ୍ତୀ ଭ୍ରମନ୍ତି ଯେସନ ।
ବାମ ଦକ୍ଷିଣ ଦିଗରେ ଦୁହେଁ ତତକ୍ଷଣ
ମଣ୍ଡଳ ଆକାରେ ବେଗେ କଲେକ ଭ୍ରମଣ ।
ମହାଯୁଦ୍ଧ କଲେ ଦୁହେଁ ସେ ରଣ ସ୍ଥଳରେ
ଧରା ଥରଥର ହେଲା ତାଙ୍କ ପଦଭରେ ।
ମୁଣ୍ଡେ ମୁଣ୍ଡ ଅତି ଆଣ୍ଠେ କରନ୍ତି ଆଘାତ
ଭୟଙ୍କର ଶବ୍ଦ ଯେସନ୍ତେ ହୁଏ ବଜ୍ରପାତ ।
ବାହୁକୁ ବାହୁ ଗୁଡ଼ିକ ଗୁଡ଼ି ଲଢ଼ାଲଢ଼ି
ତଳେପଡ଼ି ରୋଷଭରେ ହୋନ୍ତି ଗଡ଼ାଗଡ଼ି ।
ପଡ଼ନ୍ତି ଉଠନ୍ତି ପୁଣି ଗୁଡ଼ନ୍ତି ଗର୍ଜ୍ଜନ
ଭୀମ ଜରାସନ୍ଧ ଯୁଦ୍ଧ ଅତହିଁ ଭୀଷଣ ।
ବିପରୀତ ସଂଗ୍ରାମରେ କେହି ନୁହେଁ ସ୍ଥିର
ଦୁହିଁଙ୍କ ଅଙ୍ଗରୁ ବହି ପଡ଼ଇ ରୁଧିର ।
ପଳାଶ ବୃକ୍ଷର ପରି ରକ୍ତେ ଜର ଜର
ଦେଖି କମ୍ପମାନ ହେଲେ ସକଳ ଅମର ।

ରଣକ୍ଷେତ୍ରେ ବେନିଜଣ କମ୍ପିତ ଅନ୍ତର
ଘୋର ନାଦେ କମ୍ପେ ଧରା ହୋଇ ଥରହର ।
ରଣସ୍ଥଳେ ଯେତେ ବଡ଼ ବଡ଼ ବୃକ୍ଷ ଥିଲା
ଦୁଇବୀର ପଦଭରେ ଛିନ୍ନଛିନ ହେଲା ।
ଯେସନ୍ତେ ଦୁଇମତ୍ତ କରି କରନ୍ତି ଲଢ଼ାଇ
ତେମନ୍ତ ଭାବେ ଲଢ଼ନ୍ତି ଏହି ବୀର ଦୁଇ ।
ବଧା ଗୋଇଠା ବିପୁଳା ଗଳଥା ସହିତ
ମରାମରି ହୋଇ ଦୁହେଁ ହୋନ୍ତି ରକ୍ତ ସିକ୍ତ ।
ବଜ୍ରସମ ଗରଜନ ଶୁଭନ୍ତେ କର୍ଣ୍ଣରେ
କୃଷ୍ଣ ବତାଇଲେ ଜରା ମଲା ଭୀମକରେ ।
ଦୁଇଅଙ୍ଗ ଅର୍ଦ୍ଧ ଅର୍ଦ୍ଧ ହୋଇ ତାର ଥିଲା
ତାହାକୁ ଜରା ନାମେଣ ଦାନବୀ ଯୋଡ଼ିଲା ।
ତେଣୁ ଜରାସନ୍ଧ ନାମେ ହୋଇଛି ବିଖ୍ୟାତ
କୌଶଳରେ ଭୀମ ଠାରିଦେଲେ ନନ୍ଦସୁତ ।
ତହୁଁ କୃଷ୍ଣ ଏକ ବୃକ୍ଷ ଶାଖା ଧରି ହାତେ
ଚିରି ପକାଇଲେ ଭୀମସେନର ସାକ୍ଷାତେ ।
ଏପରି ସଙ୍କେତ ଯହୁଁ କୃଷ୍ଣ ଭୀମ ଦେଲେ
ତାହା ଦେଖି ଭୀମସେନ ସମଝି ପାରିଲେ ।
ମହା କ୍ରୋଧଭରେ ଭୀମ ଜରାସନ୍ଧେ ଧରି
ତଳେ ପକାଇଣ ଏକ ପାଦେ ଚଢ଼ି କରି ।
ଆଉ ଏକ ପାଦ ନିଜ ହାତରେ ଧରିଣ
ଚିରି ପକାଇଲେ କ୍ରୋଧେ ବୀର ଭୀମସେନ ।
ମଧୁକରି ବୃକ୍ଷଡ଼ାଳ ଚିରେ ଯେଉଁପରି
ଭୀମ ସେହିପରି ଦେଲେ ଜରାସନ୍ଧେ ଚିରି ।
ଦୁଇ ଦିଗେ ଦୁଇ ଅଙ୍ଗ ଅଲଗା କରନ୍ତେ
ପ୍ରାଣହାରି ପଡ଼ିଲା ସେ ବୀର ଭୂମିଗତେ ।
ତଥାପି ନ ଛାଡ଼ି ତାକୁ ବୀର ଭୀମସେନ
ମହା କ୍ରୋଧରେ ଆଘାତ କରେ ଘନ ଘନ
ତା ଆତ୍ମୀୟ ଜନ ଏହା ଦେଖିଣ କାନ୍ଦନ୍ତି
ଭୀମଙ୍କୁ ଧରି ଶ୍ରୀହରି ସାନ୍ତ୍ୱନା କରନ୍ତି ।
ଯା ଦେଖି ଅମରବୃନ୍ଦ ପୁଷ୍ପ ବରଷିଲେ
ଭୀମଙ୍କୁ ଆନନ୍ଦେ କୃଷ୍ଣ କୋଳାଗତ କଲେ ।
ସହଦେବ ନାମରେ ଯେ ରାଜାର କୁମର
ତାକୁ କୃଷ୍ଣ ମଗଧରେ କଲେ ନରେଶ୍ୱର ।
ତାପରେ ବନ୍ଦିରେ ଥିଲେ ଯେତେ ରାଜାଗଣ
ସମସ୍ତଙ୍କୁ ମୁକାଳିଲେ ପ୍ରଭୁ ନାରାୟଣ ।

ଏଥୁ ଅନନ୍ତରେ ଶୁଣ ଅପୂର୍ବ କଥନ
ଥିଲେ ଜରା ବନ୍ଦଶାଳେ ଯେତେକ ରାଜନ ।
କୋଡ଼ିଏ ହଜାର ଆଠଶତ ସଂଖ୍ୟା ସେହି
ବନ୍ଦିନରେ ଥିଲେ ଯୁଦ୍ଧେ ହାରି ନରସାଇଁ ।
ଜରାସନ୍ଧ ନିହତ ହୋଇଲା ଯେତେବେଳେ
ଗିରି ଶ୍ରେଣୀରୁ ସକଳ ନୃପେ ବାହାରିଲେ ।
ମଳିନ ମୁଖ ତାଙ୍କର ମଳିନ ବସନ
କ୍ଷୀଣ ତନୁ କ୍ଷୁଧାତୁର ଅଟନ୍ତି ସେ ପୁଣ ।
ବନ୍ଧନ ଯାତନା ହେତୁ ସକଳେ କାତର
କୃଷ୍ଣରୂପ ଦେଖି ହେଲେ ଆନନ୍ଦ ଅପାର ।
ନବଘନ ଶ୍ୟାମ ରୂପ କଲେ ଦରଶନ
ପଦ୍ମନାଭ ପୀତାମ୍ବର କମଳ ଲୋଚନ ।
ମକର କୁଣ୍ଡଳ କର୍ଣ୍ଣ ତଟେ ଶୋଭାପାଏ
ସୁଲଳିତ ଗଣ୍ଡସ୍ଥଳ ଜନ ମନ ମୋହେ ।
ଶଙ୍ଖଚକ୍ର ଗଦା ପଦ୍ମ ଚତୁର୍ଭୁଜଧାରୀ
ରଣ ବେଶେ ଶୋଭାବନ୍ତ ବୈକୁଣ୍ଠବିହାରୀ ।
କୌସ୍ତୁଭ ମଣ୍ଡିତ ବକ୍ଷ ବନମାଳା ଗଳେ
ମୋହନ ରୂପ ଦର୍ଶନେ କୃତାର୍ଥ ମଣିଲେ ।
ଭାବଅଶ୍ରୁ ଜଳେ ନେତ୍ରେ ହୁଏ ଜର ଜର
ବନ୍ଧରୁ ମୁକୁଳି କୃଷ୍ଣେ ନମିଲେ ସତ୍ୱର ।
ତାଙ୍କୁ ଦରଶନ କରି ସର୍ବ ନୃପଗଣ
ମନ ମଧ୍ୟରେ ଲଭିଲେ ଆନନ୍ଦ ତକ୍ଷଣ ।
ଚରଣ ବନ୍ଦନ କଲେ ଭୂମି ତଳେ ପଡ଼ି
ନାନା ପରକାର ସ୍ତୁତି କଲେ କରଯୋଡ଼ି ।
ଜୟ ହେ ଜଗତ ନାଥ ଜଗତ ଜୀବନ
ତୁମ୍ଭର ଶରଣାଗତ ଆମ୍ଭେ ସର୍ବ ଜନ ।
ତୁମ୍ଭର ମହିମା ବୁଝିବାକୁ କିବା କ୍ଷମ
ନମୁଛୁ ଅଭୟ ପାଦେ ପୂରା ମନସ୍କାମ ।
ନମୋ ନମୋ ନାରାୟଣ ତ୍ରିଭୁବନ ପତି
କୃପାସିନ୍ଧୁ ଦୟାମୟ ଅଗତିର ଗତି ।
ହେ ଦରିଦ୍ର ଦୁଃଖ ହାରୀ ଦେବ ନାରାୟଣ
କଲେ ଆଜ ମହାଦୁଷ୍ଟ ଜରାକୁ ନିଧନ ।
ଦୁର୍ଜ୍ଜନଙ୍କୁ ଯେଉଁ ଶାସ୍ତି ଦେଲ ଦୟାମୟ
ବନ୍ଧନୁ ମୋଚନ କଲେ ସର୍ବ ରାଜଚୟ ।
ନୋହିଲେ ବିନାଶ ହୋଇଥାନ୍ତୁ ଆମ୍ଭେମାନେ
ଦୟାମୟ ଦୟା କଲେ ଏହି ଅକିଞ୍ଚନେ ।

ମାୟା ମାୟା ତବ ମାୟା କେବା ବୁଝିପାରେ
ଧରଣୀରେ ଅବତାର ପ୍ରାଣୀ ମୋହିବାରେ ।
ମନ୍ତ୍ରିତକା ଦେଖି ଯେହ୍ନେ ମୃଗୀ ମୃଗଚୟ
ଜାଲରେ ଆବଦ୍ଧ ହୋନ୍ତି ମଣି ଜଳାଶୟ ।
ସେହିପରି ଅବିବେକୀ ଅଟେ ଯେଉଁଜନ
ଅବାସ୍ତରେ ସତ୍ୟ ବୋଲି ଭାବେ ଅନୁକ୍ଷଣ ।
ଜରାସନ୍ଧ ମଦଗର୍ବେ ମତ୍ତହୋଇ ଅତି
ଆମ୍ଭ ସର୍ବ ରାଜ୍ୟ ଧନ ହରିଲା ଦୁର୍ମତି ।
ଆମ୍ଭ ସମସ୍ତଙ୍କୁ ବନ୍ଦୀ ରଖି କାରାଗାରେ
କେତେ ଯେ କଷଣ ଦେଲା କହିଲେ ନସରେ
ଦର୍ପହାରୀ ତାର ଦର୍ପ କରିଦେଲ ଚୂର୍ଣ୍ଣ
ଭୀମହସ୍ତେ ମରାଇଲ ପ୍ରଭୁ ଜନାର୍ଦ୍ଦନ ।
ତୁମ୍ଭେ ପୂର୍ଣ୍ଣବ୍ରହ୍ମ ହରି କୃପା ଅବତାର
ବୃଥାରାଜ୍ୟ ଧନ ସବୁ ଜାଣିଲୁ ଏଥର ।
ବିଷୟୀ ବିଷୟ ବିଷେ ନାହିଁ ପ୍ରୟୋଜନ
ତୁମ୍ଭର ଅଭୟ ପଦେ ଦେନଲୁଁ ଶରଣ ।
ତବ ନାମ ଗୁଣ ସଦା କୀର୍ତ୍ତନ କରିବୁଁ
ତବପଦେ ଅବିରତେ ପଡ଼ି ରହିଥିବୁ ।
ଜୟ ଜୟ ପରମାତ୍ମା ଗୋଲକ ବିହାରୀ
ଜୟ ବାସୁଦେବ ସୁତ ମୁକୁନ୍ଦ ମୁରାରୀ ।
ନମୋନମୋ ହୃଷୀକେଶ ଦେବ ଜନାର୍ଦ୍ଦନ
ଶ୍ରୀଗୋବିନ୍ଦ ଗୋପୀନାଥ ମଦନ ମୋହନ ।
ଅଧମ ଜନର ଗତି ପତିତ ଉଦ୍ଧାର
କେ ଜାଣେ ମହିମା ତବ ଅନନ୍ତ ଅପାର ।
ରାଜ୍ୟେ ଆଉ ବାଞ୍ଛାନାହିଁ ଆହେ ଦୟାମୟ
ମୃଗତୃଷ୍ଣା ସମ ତାହା ଜାଣିଲୁଁ ନିଶ୍ଚୟ ।
ତୁମ୍ଭ ଶ୍ରୀଚରଣ ତଳେ ବାଞ୍ଛୁଅଛୁଁ ସ୍ଥାନ
ନିଜଗୁଣେ କୃପାକର କରୁଣା ନିଧାନ ।
ପୁଣି ଯଦି ସଂସାରକୁ କରୁଁ ଆଗମନ
ତୁମ୍ଭ ପାଦ ଯେହ୍ନେ ନ ଭୁଲିବୁଁ କଦାଚନ ।
ତୁମ୍ଭେ ପରଂବ୍ରହ୍ମନାଥ ବ୍ରହ୍ମାଣ୍ଡ ଗୋସାଇଁ
ଆମ୍ଭ ନମସ୍କାର ଘେନ ବାରେ ଦୟାବହି ।
ଚର୍ମ ନେତ୍ରେ ଆଜ ଆମ୍ଭେ ତବ ପୂର୍ଣ୍ଣରୂପ
ଦରଶନ କରି ଘୁଞ୍ଚାଇଲୁ ଭବ ତାପ ।
ଏମନ୍ତେ ଅନେକ ସ୍ତୁତି କଲେ ରାଜାଗଣେ
ସ୍ୱହସ୍ତେ ବନ୍ଧନ ହରି ଫେଡ଼ିଲେ ତକ୍ଷଣେ ।

ରାଜାଙ୍କୁ ଚାହିଁ ଶ୍ରୀହରି କହିଲେ ଏସନ
ଆଜଠାରୁ ମୋର ଭକ୍ତହେଲ ରାଜାଗଣ ।
ମୋହର ଚରଣ ପୂଜାକର ନିରନ୍ତର
ମୋ ବଚନ ଶୁଣ ଏବେ ସର୍ବ ନୃପବର ।
ବିଷୟେ ଉନ୍ମତ ଜଗତରେ ଯେତେଜନ
ନ କରନ୍ତି ସେହୁ କେବେ ମୋ ନାମ ଭଜନ
ଐଶ୍ୱର୍ଯ୍ୟରେ ମତ୍ତହୋଇ ଯେତେକ ନୃପତି
ଅଶ୍ରଦ୍ଧା କରନ୍ତି ସେ ସକଳେ ମୋର ପ୍ରତି ।
ଧନ ମଦେ ଏକାବେଳେ ଉନ୍ମତ୍ତ ହେଲେ
ମୋତେ ନ ଭଜି କେବଳ ଦୁର୍ଦ୍ଦଶା ଲଭିଲେ
କାର୍ତ୍ତବୀର୍ଯ୍ୟ ବେଣୁରାଜା ନହୁଷ ରାବଣ
ନରକ ଆଦି ଯେତେକ ଥିଲେ ନୃପଗଣ ।
ଐଶ୍ୱର୍ଯ୍ୟ ମଦରେ ଯହୁଁ ମତ୍ତ ସେହୁ ହେଲେ
ଅବଶେଷରେ ସେମାନେ ବିନଷ୍ଟ ହୋଇଲେ ।
ରାଜ୍ୟ ଧନ ବାଡ଼ି ବୃତ୍ତି ସବୁ ହେଲା ହତ
ବିପାକେ ପଡ଼ିଲେ ସର୍ବେ ଶରଦିନ ମାତ ।
ଏଣୁ ତୁମ୍ଭେ ସର୍ବେ ମିଳି କରି ଏକ କର୍ମ
ମୋତେ ଭଜିବ ସକଳେ କରି ଯଜ୍ଞ ଧର୍ମ ।
ସ୍ୱଧର୍ମରେ ପ୍ରଜାଗଣେ କରିବ ପାଳନ
ଧର୍ମମତେ କରୁଥିବ ରାଜ୍ୟକୁ ପାଳନ ।
ଅନ୍ତିମେ ପରମ ଗତି ଲଭିବଟି ଜାଣ
ଅବଶ୍ୟ ପାଇବ ସର୍ବେ ମୋହର ଚରଣ ।
ମୋତେ ସେବିବାକୁ ଯଦି ସଦାଥାଏ ମନ
ଦୁଃଖ ଦୁର୍ଦ୍ଦଶା ପାଇବ ନାହିଁ କଦାଚନ ।
ଏମନ୍ତ ଭାବରେ ଭଲେ ମୋ ପାଦେ ସେବିବ ,
ଅନ୍ତଃକାଳେ ମୋତେ ସର୍ବେ ନିଶ୍ଚୟ ପାଇବ
ଏତେ କହି ବାସୁଦେବ ନରପତି ଗଣେ
ସାନ୍ତ୍ୱନା ଦେଲେ ସଭିଙ୍କି ମଧୁର ବଚନେ ।
ଜରାସନ୍ଧ ପୁତ୍ର ଦ୍ୱାରା କରାଇ ସମ୍ମାନ
ନିଜଯୋଗ୍ୟ ବସ୍ତ୍ରମାନ କଲେକ ପ୍ରଦାନ ।
ନାନା ରତ୍ନ ଅଳଙ୍କାରେ ତାଙ୍କୁ ମଣ୍ଡାଇଲେ
ନାନାବିଧ ମିଷ୍ଟାନ୍ନ ସଭିଙ୍କି ଭୁଞ୍ଜାଇଲେ ।
ବନ୍ଧନରୁ ମୁକ୍ତହୋଇ ସର୍ବ ରାଜାମାନେ
ଏହିରୂପେ ସନମାନ ଲଭିଲେ ସେମାନେ ।
ବହୁଦିନ କ୍ଲେଶ ପାଇଥିଲେ ବନ୍ଦୀଘରେ
ମୁକ୍ତହୋନ୍ତେ ଆନନ୍ଦିତ ହୋଇଲେ ମନରେ ।

ବରଷା ଶେଷରେ ଯଥା ଚନ୍ଦ୍ରମା ଦର୍ଶନ
ତେମନ୍ତ ଭାବରେ ତୋଷ ହୋଇ ନୃପଗଣ ।
ପରେ ଶ୍ରୀକୃଷ୍ଣ ତାହାଙ୍କୁ ବମାନେ ବସାଇ
ଆପଣା ଆପଣା ରାଜ୍ୟେ ଦେଲେ ପଠିଆଇ ।
ପ୍ରଭୁଙ୍କ ପାଦ ପଦ୍ମରେ ନମି ବାର ବାର
ନିଜ ରାଜ୍ୟକୁ ଚଳିଲେ ସର୍ବ ନୃପବର ।
ସମସ୍ତ ନୃପଗଣଙ୍କୁ ଦେଇଣ ବଦାୟ
ଏଣେ ଇନ୍ଦ୍ରପ୍ରସ୍ଥେ ଗଲେ ପ୍ରଭୁ ନାରାୟଣ ।
ଭୀମ ଅରଜୁନ ତାଙ୍କ ସଙ୍ଗତରେ ଗଲେ
ତାଙ୍କୁ ଦେଖି ଧର୍ମରାଜ ଆନନ୍ଦ ଲଭିଲେ ।
ରଣଜୟ ଶଙ୍ଖ ଯହୁଁ ଶୁଭିଲା କର୍ଣ୍ଣରେ
ଅର୍ଘ୍ୟସ୍ଥାଳୀ ଘେନ ବାହାରିଲେ ନାରୀବରେ ।
ବନ୍ଦାପନା କରି କୃଷ୍ଣ ଅର୍ଜୁନ ଭୀମଙ୍କୁ
ନେଲେ ସନମାନ କରି ସେ ଇନ୍ଦ୍ରପ୍ରସ୍ଥକୁ ।
ଜରାସନ୍ଧ ମୃତବାର୍ତ୍ତା କର୍ଣ୍ଣରେ ଶୁଣିଣ
ଆଜ ନରପତ ହେଲେ ଆନନ୍ଦେ ମଗନ ।
ଶ୍ରୀହରିଙ୍କର ମହିମା ଅସୀମ ଅନନ୍ତ
ବର୍ଣ୍ଣିନେ ସକ୍ଷମ କେହି ନାହିଁ ତ୍ରିଜଗତ ।
ତାହାଙ୍କ ଅଭୟ ପାଦେ ରହୁ ମୋର ମନ
ଅନ୍ତମେ କ୍ଷେତ୍ରକୁ ଦିଅ ପାଦପଦ୍ମେ ସ୍ଥାନ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ଜରାସନ୍ଧ
ବଧ କଥନେ ନାମ ଏକଷଷ୍ଟି-
ତମୋଽଧ୍ୟାୟଃ ।

—*—

## ଦ୍ୱିଷଷ୍ଟିତମ ଅଧ୍ୟାୟ
## ରାଜସୂୟ ଯଜ୍ଞ ଓ ଶିଶୁପାଳ ବଧ କଥନ

ଶୌନକ ଉବାଚ

ଶୁଣ ଶୁଣ ସୁଜ୍ଞଜନେ ଅପୂର୍ବ ଚରିତ
ସୁତ ମୁନିଙ୍କୁ ଶୌନକ ପୁଚ୍ଛିଲେ ଉଦନ୍ତ ।
ବୋଇଲେ ହେ ପୌରାଣିକ ସକଳ ସୁଧୀର
ଜରାସନ୍ଧ ବଧ ଗାଥା କରିଲ ଗୋଚର ।
ତଦନ୍ତେ ଆଉ କି ହେଲ ବସ୍ତାରିଣ କୁହ
ଶୁଣିବା ପାଇଁକି ମନ ହେଉଛି ଅଥୟ ।

ସୁତ ଉବାଚ

ବୋଇଲେକ ସୁତମୁନି ପୁରାଣ ବକତା
ସାବଧାନ ହୋଇ ଶୁଣ ଏ ଅପୂର୍ବ ଗାଥା ।
ଜରାସନ୍ଧକୁ ବନାଶ କରି ଜନାର୍ଦ୍ଦନ
ବାହୁଡ଼ିଲେ ଇନ୍ଦ୍ରପ୍ରସ୍ଥେ ହୋଇ ତୋଷମନ ।
ଭୀମ ଅର୍ଜୁନ ସହିତେ ଶ୍ରୀହରିଙ୍କୁ ଦେଖି
ଧର୍ମରାଜ ଯୁଧିଷ୍ଠିର ହେଲେ ମହାସୁଖୀ ।
ଭାବେ ଗଦ ଗଦ ହୋଇ ବୋଇଲେ ବଚନ
ଧନ୍ୟ ଧନ୍ୟ ଅଟ ତୁମ୍ଭେ ପ୍ରଭୁ ଜନାର୍ଦ୍ଦନ ॥
ତବମାୟା କଳିବାକୁ କେବା ସାମରଥ
ତୁମ୍ଭେ ବପଦ ନାଶନ ତ୍ରିଲୋକ ସାମନ୍ତ ।
ହେ ଈଶ୍ୱର ହେ ଭୂମୀଶ ଆହେ ନାରାୟଣ
ତବ ଆଜ୍ଞା ପାଳୁଛନ୍ତି ସର୍ବ ଦେବଗଣ ।
ଏ ସଂସାରେ ପାଳିବାକୁ ମହିମା ତୁମ୍ଭର
ସାମରଥ ନାହିଁ କେହି ଆହେ ଚକ୍ରଧର ।
ତୁମ୍ଭେ ତ୍ରିଜଗତଗୁରୁ ପରମ କାରଣ
କେତେଭାଗ୍ୟବଳୁ ଆମ୍ଭେ ପାଇଅଛୁ ଜାଣ ।
ଏଣୁ ବର ମାଗୁଅଛି ହେ ମଧୁସୂଦନ
ମନେ ଅହଙ୍କାର ଯେସନେ ନ ପାଉଟି ସ୍ଥାନ ।
ଏତେବୋଲି ଯୁଧିଷ୍ଠିର ମଉନ ହୋଇଲେ
ପ୍ରବୋଧ ବଚନେ କୃଷ୍ଣ ତାଙ୍କୁ ଶାନ୍ତ କଲେ ।
ପାର୍ଥଙ୍କୁ ଡାକିଣ ଆଜ୍ଞା ଦେଲେ ଚକ୍ରଧର
ରାଜସୂୟ ମହାଯଜ୍ଞ ବଡ଼ାଇ ଦୁଷ୍କର ।
ବ୍ରାହ୍ମଣେ ବରଣ କରି ସତ୍ଵର ସାକ୍ଷାତ
ପ୍ରଭୁଙ୍କ ବଚନ ପାଳି ବାହାରିଲେ ପାର୍ଥ ।
ଯେଉଁପରି ଆଜ୍ଞା ଦେଇଥିଲେ ନାରାୟଣ
ତେମନ୍ତ ଅର୍ଜୁନ ବରିଲେକ ଦ୍ୱିଜଗଣ ।
ଗୌତମ ସୁମନ୍ତ ଭରଦ୍ୱାଜ ଦ୍ୱୈପାୟନ
ଅସିତ ବଶିଷ୍ଠ କଣ୍ୱ ମୈତ୍ରେୟ ଚ୍ୟବନ ।
ବାମଦେବ ବଶ୍ୱାମିତ୍ର ସୁରଥ ସୁମନ୍ତ
ପୈଳ ପରାଶର ଋଷି ଗର୍ଗ ମହାସନ୍ତ ।
ଏହିରୂପେ ବହୁଗଣେ ବରଣ ସେ କଲେ
ନିମନ୍ତ୍ରିତ ଦ୍ୱିଜମାନେ ସତ୍ଵରେ ଆଇଲେ ।
ଙ୍କତହୋତ୍ର ମଧୁଚ୍ଛନ୍ଦା ବୀରସେନ ରାୟେ
ନିମନ୍ତ୍ରିତ ମହାଯଜ୍ଞେ ଧୀମନ୍ତ ସଭିଏଁ ।

ଧୃତରାଷ୍ଟ୍ର ଭୀଷ୍ମ ଦ୍ରୋଣ କୃପ ମହାମତି
ଦୁର୍ଯ୍ୟୋଧନ ଶତଭାଇ ବିଦୁର ସୁମତି ।
ଆଉ ଯେତେ ଦ୍ୱିଜ ବୈଶ୍ୟ ଯେ କ୍ଷତ୍ରିୟଗଣ
ମହାଯଜ୍ଞ ଦେଖିବାକୁ ଆଇଲେ ବହନ ।
ପୃଥିବୀର ରାଜା ରାଜଚକ୍ରବର୍ତ୍ତୀ ଯେତେ
ନିମନ୍ତ୍ରିତ ହୋଇ ଯଜ୍ଞେ ଆସିଲେ ସମସ୍ତେ ।
ଅସଂଖ୍ୟ ଆସିଲେ ଯଜ୍ଞେ ଯେତେ ନୃପଗଣ
ସମାଦରେ ସମସ୍ତଙ୍କୁ କଲେ ସମ୍ଭାଷଣ ।
ଏଥୁଅନ୍ତେ ଶୁଣ ମୁନି ଅପୂର୍ବ କଥନ
ଯଜ୍ଞ ଭୂମିକି ଚଳିଲେ ବେଦଜ୍ଞ ବ୍ରାହ୍ମଣ ।
ସୁନା ଲଙ୍ଗଳେ ଚଷନ୍ତି ଯଜ୍ଞର ସମୟେ
ତହୁଁ ଦୀକ୍ଷା କରାଇଲେ ଧର୍ମଙ୍କ ତନୟେ ।
ଯଜ୍ଞର ନିୟମ ଯାହା କଲେ ତା ସମସ୍ତ
ରାଶି ରାଶି ସ୍ୱର୍ଣ୍ଣଦ୍ରବ୍ୟ ହୋଇଲା ପ୍ରସ୍ତୁତ ।
ପୂର୍ବେ ଏହି ଯଜ୍ଞ କରିଥିଲେ ଯେ ବରୁଣ
ଏ ଯଜ୍ଞର ତତୋଧିକ ଦ୍ରବ୍ୟ ଆୟୋଜନ ।
ଦେବତାମାନେ ଆସିଲେ ଯଜ୍ଞ ଦରଶନେ
ଶଚୀସଙ୍ଗେ ଦେବରାଜ ଅଇଲେ ସୁମନେ ।
ଅଇଲେ ପାର୍ବତୀ କାନ୍ତ ହୋଇ ହର୍ଷମତି
ବ୍ରହ୍ମ ଲୋକରୁ ଆସିଲେ ତହିଁ ବେଦପତି ।
ଗନ୍ଧର୍ବମାନେ ଆସିଲେ ଆନନ୍ଦିତ ମନେ
ବିଦ୍ୟାଧର ବିଦ୍ୟାଧରୀ ଯେ ସିଦ୍ଧ ଚାରଣେ ।
ଯକ୍ଷ ରକ୍ଷ ନାଗ ଆଉ ରାକ୍ଷସାଦି ଯେତେ
ଦେଖିବା ନିମନ୍ତେ ଯଜ୍ଞ ମିଳିଲେ ସମସ୍ତେ ।
କିନ୍ନରମାନେ କିନ୍ନରୀମାନଙ୍କୁ ଘେନିଣ
ଯଜ୍ଞ ସ୍ଥାନରେ ପ୍ରବେଶ ହେଲେ ତତକ୍ଷଣ ।
ସ୍ୱର୍ଗରୁ ଅପ୍‌ସରୀମାନେ ନାନା ବାଦ୍ୟବାଇ
ନୃତ୍ୟ ଗୀତ ଆଦି କରି ଆସିଲେକ ଧାଇଁ ।
ଘେନା ସେନାପତି ସାଥେ ନରପତିମାନେ
ରାଣୀଙ୍କୁ ଘେନି ପ୍ରବେଶ ହେଲେ ଯଜ୍ଞସ୍ଥାନେ ।
ଯୁଧିଷ୍ଠିର ନୃପମଣି ଅତ୍ୟନ୍ତ ଆଦରେ
ସମ୍ମାନେ ତୋଷିଲେ ଭଲେ ସଭାର ମଧ୍ୟରେ
ରହିବା ପାଇଁକି ଦେଲେ ଉପଯୁକ୍ତ ସ୍ଥାନ
ଭକ୍ଷ୍ୟ ଭୋଜ୍ୟ ଦ୍ରବ୍ୟମାନ ଯୋଗାନ୍ତି ବହନ
ସମସ୍ତଙ୍କୁ ସମ୍ମାନିତ କରିଣ ଭୂପତି
ତହୁଁ ରାଜା ଯୁଧିଷ୍ଠିର ଯଜ୍ଞେ ହେଲେ ବ୍ରତୀ

ମହାତେଜୋବନ୍ତ ମହାମୁନି ଯେ ସକଳେ
ମହାରାଜା ଯୁଧିଷ୍ଠିର ବ୍ରତୀ କରାଇଲେ ।
ରାଜସୂୟ ମହାଯଜ୍ଞ ଯଥା ବିଧାନରେ
ଯଜ୍ଞେ ବ୍ରତୀହେଲେ ରାଜା କୃଷ୍ଣଙ୍କ ଆଜ୍ଞାରେ ।
ତହୁଁ ଧର୍ମସୁତ ଆଗେ ବିପ୍ରଙ୍କୁ ବରିଲେ
ସମସ୍ତଙ୍କୁ ଯଥା ବିଧି ପାଦ ଅର୍ଘ୍ୟ ଦେଲେ ।
ପୂଜାଦ୍ରବ୍ୟ ହସ୍ତେଘେନି ସହଦେବ ବୀର
ସଭାମଧ୍ୟେ ଉଚ୍ଚୈଃସ୍ୱରେ କହିଲେ ଏ ଗୀର ।
ସ୍ଥିରଭାବେ ଶୁଣ ସର୍ବେ ଯେତେ ସଭାଜନ
ସବିନୟେ ମୁହିଁ କରୁଅଛି ନିବେଦନ ।
ସର୍ବଶ୍ରେଷ୍ଠ ଅଟନ୍ତି ଏ ଦେବ ଯଦୁପତି
ପ୍ରଥମେ ଏହାଙ୍କ ପୂଜା ଉତ୍ତମ ଯୁକତି ।
ସାକ୍ଷାତେ ବସିଅଛନ୍ତି ଦେଖ ଜନାର୍ଦ୍ଦନ
ସଭାମଧ୍ୟେ ଶ୍ରେଷ୍ଠଦେବ ଦେବକୀ ନନ୍ଦନ ।
ଏହି ବିଶ୍ୱ ଆତ୍ମାରୂପେ ଯାହାଙ୍କ ହୃଦୟ
ଯଜ୍ଞରକ୍ଷାକାରଣେ ଯେହୁ ଏ ଜଗତମୟ ।
ମନ୍ତ୍ରଆଦି କାର୍ଯ୍ୟ ଯେତେ ସ୍ୱରୂପ ଯାହାର
ଯାହାଠାରୁ ହୁଏ ସୃଷ୍ଟି ସ୍ଥିତି ଯେ ସଂହାର ।
ସକଳ ଧର୍ମର ସାର ନର ନାରାୟଣ
ଜୀବଙ୍କୁ ଶିଖାନ୍ତି ନିଜେ କରି ଆଚରଣ ।
ଆଗ ମୁଁ ଏହାଙ୍କୁ ଅର୍ଘ୍ୟ କରିବି ଅର୍ପଣ,
କୃଷ୍ଣ ତୋଷହେଲେ ତୋଷ ଜଗତର ଜନ ।
ଏହାଙ୍କୁ ପୂଜିଲେ ସମସ୍ତଙ୍କ ପୂଜା ହୁଏ
ସେହି ହେତୁ ଅଗ୍ରେ ପୂଜ୍ୟ ଶ୍ରୀକୃଷ୍ଣ ନିଶ୍ଚୟେ
ଏତେ କହି ସହଦେବ ମଉନ ହୋଇଲେ
ସଭାସଦେ ଶୁଣି ତାଙ୍କୁ ପ୍ରଶଂସା କରିଲେ ।
ବୋଇଲେ ସକଳେ ଏହା ଉତ୍ତମ ପ୍ରସ୍ତାବ
କୃଷ୍ଣଙ୍କୁ ଅର୍ଘ୍ୟ ଦେବାକୁ ବୋଇଲେକ ସର୍ବ
ସକଳେ ସହଦେବଙ୍କୁ ପୁନଶ୍ଚ ବୋଇଲେ
ଜଗତ ସମ୍ପଦ ହରି ଛନ୍ତି ଆତ୍ମ ଭୁଲେ ।
ତାଙ୍କୁ ସର୍ବେ ପୂଜିଣ ପରେ ଯାହାକର
ଶୁଣି ଯୁଧିଷ୍ଠିର ହେଲେ ଆନନ୍ଦ ଅପାର ।
ପ୍ରଥମେ କୃଷ୍ଣଙ୍କ ପାଦପଦ୍ମ ପୂଜା ସାରି
ପାଦୋଦକ ପାଇ ତୋଷ ହୋଇଲେ ସବୁରି
ପୀତପଟ୍ଟ ବସ୍ତ୍ର ଆଗ ପ୍ରଭୁଙ୍କୁ ପିନ୍ଧାଇ
ନାନା ମଣି ରତ୍ନମାନ ଦେଲେ ଅଙ୍ଗେ ଲାଇ ।

ଶ୍ରୀକୃଷ୍ଣ ପାଦ ପୂଜନ୍ତେ ଧର୍ମଙ୍କ ନନ୍ଦନ
ପ୍ରେମେ ନେତ୍ରୁ ନୀର ଧାର ବହେ ଘନ ଘନ
ସଭାଜନମାନେ ଏକସଙ୍ଗେ ସମସ୍ୱରେ
ନମୋ କୃଷ୍ଣ ବାସୁଦେବ ଭଣିଲେ ମୁଖରେ
ଭକତଭରେ ଯେବେକେ ନମିଲେ ସକଳେ
ଆକାଶରୁ ପୁଷ୍ପ ବୃଷ୍ଟି ହେଲା କୁତୂହଳେ ।
ଏଥୁଅନ୍ତେ ଶୁଣ ସର୍ବେ ଅପୂର୍ବ କଥନ
ସଭାମଧ୍ୟେ ଥିଲା ଦମଘୋଷର ନନ୍ଦନ ।
ଶିଶୁପାଳ ନାମ ତାର ଅଟେ କୃଷ୍ଣଦ୍ରୋହୀ
ସେ ବୋଇଲେ କ୍ରୋଧଭରେ ଜର ଜରହୋଇ
ଜାଣୁଛୁ ମୁଁ ଏ ସଭାରେ ଯେତେ ରାଜାଛନ୍ତି
ତିଳେମାତ୍ର ନାହିଁ ତାହାଙ୍କର ବୁଦ୍ଧି ବୃତ୍ତି ।
ସହଦେବ ତ ସହଜେ ବାଳକ ଅଟଇ
ତା କଥାରେ ଭାସିଗଲେ ସର୍ବ ନରସାଇଁ ।
ବୃଦ୍ଧେ ଜ୍ଞାନଶୂନ୍ୟ ହେଲେ ଶିଶୁର କଥାରେ
କୃଷ୍ଣଙ୍କୁ କପଟ ସାର ବୋଲୁଛ ସଭାରେ ।
ପୁଣି ସଭିଙ୍କ ଅଗ୍ରତେ କୃଷ୍ଣେ ପୂଜାକଲେ
ଦେବତା ମୁନି ଋଷିଙ୍କୁ ଅପମାନ ଦେଲେ ।
ଗନ୍ଧର୍ବ କିନ୍ନର ଆଦି ବହୁ ଏଥେଁ ଛନ୍ତି
ବିଦ୍ୟାଧର ସିଦ୍ଧଗଣ ସଭାରେ ଅଛନ୍ତି ।
ତାଙ୍କୁ ବନ୍ଦନା ନ କରି ଅଜ୍ଞାନ ପଣରେ
ଗଉଡ଼ ଟୋକାକୁ ପୂଜା କରିଲ ଏଠାରେ ।
ଅଧମକୁଳରେ ଜନ୍ମ ଅଟଇ ତାହାର
କ୍ଷତ୍ରିୟମାନେ ତାହାକୁ କରୁଛ ସ୍ୱୀକାର ।
ଶୁଣ ଆହେ ସଭାଜନେ ମୋହର ବଚନ
ଯଜ୍ଞ ଘୃତକୁ ଟେକୁଛ କୁଆ ହସ୍ତେ ପୁଣ ।
କୁଳ ଗୋତ୍ର ଧର୍ମ ଆଦି ତାର କିଛି ନାହିଁ
ସ୍ୱଧର୍ମ ବିହୀନ ଇଷ୍ଟ ଧର୍ମ ନ ଜାଣଇ ।
ଏଣୁ ପୂଜା ଯୋଗ୍ୟପାତ୍ର ନୁହେଁ କଦାଚନ
ଏହି ହେତୁ ଶାପଦେଲେ ଯଯାତି ରାଜନ ।
ସେ କାରଣୁ ଯଦୁବଂଶେ ରାଜା କେ ନୋହିଲେ
କୁଳର କଳଙ୍କ ଜାଣି ତେଣୁ ଶାପଦେଲେ ।
ଦେଖ ସେହୁ ଆପଣାର ରାଜ୍ୟ ଛାଡ଼ିଦେଇ
ସାଗର ମଧ୍ୟରେ ବାସ କରିଣ ଅଛଇ ।
ଗୋକୁଳରେ ଗୋପାଳଙ୍କ ଘରେ ଅନ୍ନଖାଏ
ଗୋପାଳ ବାଳକ ସଙ୍ଗେ ବନେ ବୁଲୁଥାଏ
ଗୋଧନ ଚରା ବେଉସା ଅଟଇ ତାହାର
କୌଶଳେ କଂସର ପ୍ରାଣ କରିଲା ସଂହାର ।
ଏହିପରି ଶିଶୁପାଳ କୁହନ୍ତେ କୁଭାଷ
ନଦେଇ ଉତ୍ତର ବସି ରହିଲେ ନରେଶ ।
ଶୃଗାଳ ରବେ ନ ଟଳେ କେଶରୀ ଯେସନ
ତେମନ୍ତେ ସ୍ଥିର ରହିଲେ ଦେବ ନାରାୟଣ ।
କୃଷ୍ଣ ନିନ୍ଦା କଥା ଶୁଣି ସଭାଜନେ ତେବେ
କର୍ଣ୍ଣେ ହସ୍ତଦେଇ ଘୋଡ଼ାଇଲେ ତହିଁ ସର୍ବେ
ଅନେକ ଜନ ନ ଶୁଣି କଲେ ପଳାୟନ
କୃଷ୍ଣନିନ୍ଦା ଶୁଣି ନ ସହିଲେ ବହୁଜନ ।
ଅନ୍ତରେ ବ୍ୟଥା ପାଇଣ ମନସ୍ତାପ କରି
ଶାପଦେଲେ ଦମଘୋଷ ପୁତ୍ରକୁ ସବୁରି ।
ଏହାପରେ ଯାହାହେଲା ଶୁଣଦେଇ ମନ
ଶାସ୍ତ୍ର ପୁରାଣମାନଙ୍କେ ହୋଇଛି ଲିଖନ ।
ଈଶ୍ୱରଙ୍କ ନିନ୍ଦା ଯେହୁ ଶ୍ରବଣ କରଇ
ତାହାର ଦୁର୍ଦ୍ଦଶା ମୁଖେ ଭଣି ନ ହୁଅଇ ।
ପୂର୍ବ କୃତ୍ୟ ପୁଣ୍ୟରାଶି ନଷ୍ଟହୁଏ ତାର
ନରକେ ପଡ଼ଇ ଅନ୍ତକାଳେ ସେହି ନର ।
କୃଷ୍ଣଙ୍କର ନିନ୍ଦା ଶୁଣି ପାଣ୍ଡବଙ୍କ ବଳ
ଆଉ ଯେତେ ରହିଥିଲେ ଭୂପତି ସକଳ ।
କ୍ରୋଧରେ କମ୍ପିତ ସର୍ବେ ଆରକ୍ତ ନୟନ
ଧନୁ ତୂଣ ଧରି ଠିଆ ହେଲେ ତତକ୍ଷଣ ।
ବଧିବା ପାଇଁକି ତାରେ ସମସ୍ତେ ଉଦ୍ୟତ
ଭର୍ତ୍ସନା କଲେ ତାହାକୁ କହିଣ ଅକଥ୍ୟ ।
ଖଡ଼ଗଧରି ପାପିଷ୍ଠ ଉଠି ଉଭା ହେଲା
ତାହାଦେଖି କୃଷ୍ଣଙ୍କର କ୍ରୋଧ ଉପୁଜିଲା ।
ପଣ୍ଡୁ ପୁତ୍ରଗଣେ କୃଷ୍ଣ କରି ନିବାରଣ
ଶ୍ରୀହସ୍ତରେ ସୁଦର୍ଶନ କରିଲେ ଧାରଣ ।
ସଭାମଧ୍ୟେ ଶିଶୁପାଳେ ଛେଦିଲେ ତହିଁରେ
ଦେହରୁ ମୁଣ୍ଡ ତାହାର ଲୋଟିଲା ଧୂଳିରେ ।
ଗଗନ ଭେଦିଲା ମହା କୋଳାହଳ ରବେ
ଶିଶୁପାଳ ଚରମାନେ ପଳାଇଲେ ସର୍ବେ ।
ଶିଶୁପାଳର ଜୀବନ ତେଜି କଳେବର
ଲୀନ ହେଲା କୃଷ୍ଣ ଦେହେ ଯାଇଣ ସତ୍ୱର ।
ଏହି ମତେ ଶିଶୁପାଳ ହୋଇଲା ନିଧନ
ଶୂନ୍ୟରୁ ହୁଅନ୍ତି ଯେହ୍ନେ ତାରକା ପତନ ।

ଏଥୁ ଅନ୍ତେ ଶୁଣ ମୁନି ଅପୂର୍ବ ଆଖ୍ୟାନ
ତିନି ଜନ୍ମେ ମୁକ୍ତି ତାକୁ ଦେଲେ ଭଗବାନ
ଶତ୍ରୁଭାବେ ଶିଶୁପାଳ ଲଭିଲା ମୁକତି
ଯେ ରୂପେ ଯେ ଭାବେ କୃଷ୍ଣେ ପାଏ ସେହିମତି
ଏ ଉତ୍ତାରୁ ଶୁଣ ଆହେ ତାପସ ନିକର
ଯଜ୍ଞ ସମାପନ କଲେ ରାଜା ଯୁଧିଷ୍ଠିର ।
ଧର୍ମସୁତ ଯଜ୍ଞ ଶେଷେ ପରମ ଯତନେ
ଧନ ବିତରଣେ ତୋଷ କଲେ ବିପ୍ରଗଣେ ।
ରତ୍ନ ଆଦି ଧେନୁ ଦାନ ଅସଂଖ୍ୟ ସେ କଲେ
ସର୍ବ ଜନଙ୍କୁ ବିଧାନେ ଆପଣେ ଅର୍ଚ୍ଚିଲେ ।
ସୁତ ମହର୍ଷି କହନ୍ତି ମୁନିଙ୍କ ଆଗର
ଏହିରୂପେ ଯଜ୍ଞ ଶେଷ ହେଲା ତଦନ୍ତର ।
ରାଜସୂୟ ଯଜ୍ଞ ଭଲେ ହୋନ୍ତେ ସମାପନ
ହୃଦୟ ହୋଇଲା ତାଙ୍କ ମହାନନ୍ଦେ ପୂର୍ଣ୍ଣ ।
ଆନନ୍ଦ ଲଭିଲେ ଯୁଧିଷ୍ଠିର ନରପତି
କିଛିଦିନ ସେହିଠାରେ ରହିଲେ ଶ୍ରୀପତି ।
ପରେ ଧର୍ମସୁତଙ୍କର ଅନୁମତି ଘେନି
ଦ୍ୱାରକା ପୁରୀକି ବିଜେ କଲେ ଚକ୍ରପାଣି ।
ଦେବ ଋଷି ଆଦି ଥିଲେ ଯେତେ ମହାଜନ
ଧର୍ମସୁତଙ୍କୁ ପ୍ରବୋଧି ବାହୁଡ଼ିଲେ ଜାଣ ।
ସଂସାର ସାର ଶ୍ରୀହରି ବ୍ରହ୍ମାଣ୍ଡ ଠାକୁର
ତାଙ୍କୁ ଏକମନେ ଯେହ୍ନେ ଭାବେ ନିରନ୍ତର ।
ସର୍ବ ପାପରୁ ସେ ଜନ ମୁକୁଳଣ ଯାଏ
ଅନ୍ତଃକାଳେ ବୈକୁଣ୍ଠରେ ସେହୁ ସ୍ଥାନ ପାଏ
ବ୍ରହ୍ମ ପୁରାଣେ ଶ୍ରୀହରି କଥା ଚମତ୍କାର
ଯେଉଁଜନ ପାଠକରେ ମୁକ୍ତି ହୁଏ ତାର ।
ଶିଶୁପାଳ ବଧ ହେଲା ଏମନ୍ତ ବିହିର
ଶୁଣିଲ ତ ମୁନିମାନେ କୃଷ୍ଣ କଥାସାର ।
ଏହିପରି ମୁନି ସୁତ କଲେ ପରକାଶ
ଶ୍ରବଣ କରି ସକଳେ ହୋଇଲେ ହରଷ ।
ଜଗତ ଜନମ୍ମାଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ର ମୋହନ ଗୀତେ ଯା ରଚଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ ସୁତ
ଶୌନକ ସମ୍ବାଦେ ଶିଶୁପାଳ ବଧ କଥନଂ
ନାମ ଦ୍ୱିଷଷ୍ଠିତମୋଽଧ୍ୟାୟଃ ।



## ତ୍ରିଷଷ୍ଠିତମ ଅଧ୍ୟାୟ

### ଦୁର୍ଯ୍ୟୋଧନର ହିଂସା ବିବରଣ

ସୁତ ଉବାଚ

ପୌରାଣିକ ସୁତ ମୁନି ବୋଲନ୍ତି ସଧୀର
ଏ ଉତ୍ତାରୁ ଯାହା କଲେ ପ୍ରଭୁ ଦାମୋଦର ।
ପାଣ୍ଡବେ ସେ ରାଜସୂୟ ଯଜ୍ଞ କଲେ ଯେବେ
ଦେବ ଋଷିମାନେ ଦେଖି ମହାତୋଷ ସର୍ବେ
କିନ୍ତୁ ରାଜା ଦୁର୍ଯ୍ୟୋଧନ ବ୍ୟଥିତ ଚିତ୍ତରେ
ବିରସ ଭାବରେ ତହିଁ ଅବସ୍ଥାନ କରେ ।
ତାର ଅନ୍ତର୍ଗତେ ଘୋର ଈର୍ଷା ଜନମିଲା
ପାଣ୍ଡବଙ୍କ ଯଶ କୀର୍ତ୍ତି ସହି ନ ପାରିଲା ।

ଶୌନକ ଉବାଚ

ଏହା ଶୁଣି ପୁଛନ୍ତି ଶୌନକ ମୁନିବର
ରାଜା ଦୁର୍ଯ୍ୟୋଧନ କିମ୍ପା ବ୍ୟଥିତ ଅନ୍ତର ।
କି କାରଣେ ତାର ମନେ ହିଂସାର ଉଦୟ
ମହାତ୍ମା ଯୁଧିଷ୍ଠିର ଧର୍ମଙ୍କ ତନୟ ।
ସେ କଥା ବିସ୍ତାରି ଏବେ କହ ଋଷିବର
ପୌରାଣିକ ବୋଲନ୍ତି ଯେ ଶୁଣ ସମାସ୍ତର ।
ଧାର୍ମିକ ପାଣ୍ଡବମାନେ ଯଜ୍ଞ ଆରମ୍ଭିଲେ
ସମସ୍ତଙ୍କୁ ଏକ ଏକ କର୍ମେ ନିୟୋଗିଲେ ।
ବନ୍ଧୁ ଧେବାରେ ନିଯୁକ୍ତ ବୀର ଧନଞ୍ଜୟ
ରନ୍ଧନ ଶାଳାର କର୍ତ୍ତା ପବନ ତନୟ ।
କୁରୁପତି ଆୟବ୍ୟୟ କାର୍ଯ୍ୟରେ ନିଯୁକ୍ତ
ଅଭ୍ୟର୍ଥନା କାର୍ଯ୍ୟେ ସହଦେବ ରହିଥାନ୍ତି ।
ସବୁ ଦ୍ରବ୍ୟ ଆୟୋଜନେ ରହିଲେ ନକୁଳ
ବ୍ରାହ୍ମଣ ସେବା କାର୍ଯ୍ୟରେ ପ୍ରଭୁ ନନ୍ଦବାଳ ।
ପାଣ୍ଡବ ଘରଣୀ ପରିଚର୍ଚ୍ଚା କାର୍ଯ୍ୟେ ଥାନ୍ତି
ନାନାଦି କର୍ମରେ କର୍ଣ୍ଣବୀର ଯେ ନିଯୁକ୍ତି ।
ବିଦୁର ବାହ୍ଲିକ ଆଦି ପୁଣି ଦୁର୍ଯ୍ୟୋଧନ
ବୁଝୁଥାନ୍ତି ବାହାରର ଅନ୍ୟକାର୍ଯ୍ୟମାନ ।
ଋତ୍ୱିକ ସଦସ୍ୟଗଣ ବାନ୍ଧବ ସହିତେ
ସକଳେହିଁ ସମ୍ମାନିତ ହୋଇଲେକ ସେଥେଁ ।
ଶିଶୁପାଳ କୃଷ୍ଣଙ୍କର ପାଦେ ହେଲା ଲୀନ
ଏହି ରୂପେ ରାଜସୂୟ ଯଜ୍ଞ ହେଲା ପୂର୍ଣ୍ଣ ।
ଏଥୁଅନ୍ତେ ଯାହା ହେଲା ଶୁଣ ମନ ଦେଇ
ଗଙ୍ଗାରେ ସ୍ନାହାନ କଲେ ଧର୍ମରାଜ ଯାଇ

ବୀଣା ବଂଶୀ କରତାଳ ବାଜେ ଘନ ଘନ
ନାଚନ୍ତି ନର୍ତ୍ତକୀମାନେ ଅପୂର୍ବ ଶୋଭନ ।
ଗାୟକମାନେ ଗାଆନ୍ତି ଗୀତମନୋହର
ଶ୍ରବଣ ମାତ୍ରେ ସଭିଙ୍କ ହରଷ ଅନ୍ତର ।
ପତାକା ଶୋଭିତ ରଥ ତହିଁ ବିରାଜନ୍ତି
ଐରାବତେ ହାତୀ ଘୋଡ଼ା ଲକ୍ଷ ଲକ୍ଷ ଥାନ୍ତି ।
ଅଗଣନ୍ତ ସେନାଗଣ ସକଳେ ସଜ୍ଜିତ
ଆତ୍ମୀୟନ୍ତ ସମସ୍ତଙ୍କୁ ସର୍ବେ ଅଲଂକୃତ ।
ବେଦପାଠ ଉଚ୍ଚାରନ୍ତି ସର୍ବ ମୁନିଗଣ
ଦେବଗଣ ହୋଇଲେକ ଆନନ୍ଦେ ମଗନ ।
ଗନ୍ଧର୍ବ କିନ୍ନର ଗଣ ହରଷ ଅନ୍ତରେ
ପୁଷ୍ପମାନ ବରଷନ୍ତି ପାଣ୍ଡବଙ୍କପରେ ।
ଦାସ ଦାସୀଗଣମାନେ ହୋଇ ଆନନ୍ଦିତ
ପିନ୍ଧିଛନ୍ତି ପାଟ ବସ୍ତ୍ର ବିବିଧ ବା ବିଚିତ୍ର ।
ସର୍ବେ ବେଶ ଭୂଷା ପିନ୍ଧି ଆନନ୍ଦେ ମଜ୍ଜିଲେ
ଅଗୁରୁ ଚନ୍ଦନ ଯେଝା ଅଙ୍ଗେ ବୋଳି ହେଲେ ।
ସୁଗନ୍ଧ ତୈଳ ହରିଦ୍ରା କରି ବିଲେପନ
ଗଙ୍ଗାଜଳେ କୌତୁକରେ କଲେ ସନ୍ତରଣ ।
ଆନ ସର୍ବ ନାରୀମାନେ ସାନନ୍ଦ ଚିତ୍ତରେ
ବିହାର କରନ୍ତି ସର୍ବେ ସେ ଜଳ ଭିତରେ ।
ଯାଦବ ରମଣୀମାନେ ପ୍ରସନ୍ନ ବଦନ
ଶୋଭାପାନ୍ତି ଅଳଙ୍କାରେ ହୋଇଣ ମଣ୍ଡନ ।
ଦିବ୍ୟ ନବ ବସ୍ତ୍ରମାନ ପିନ୍ଧିଣ ଶୋଭନ୍ତି
ଅତି ମନୋହର ଗଳେ ଦିବ୍ୟମାଳା ପିନ୍ଧନ୍ତି ।
ଗଙ୍ଗାକୁ ଗମନ କରି ପ୍ରଫୁଲ୍ଲ ଚିତ୍ତରେ
ଆନନ୍ଦେ ସକଳେ ସ୍ନାନ କଲେ ଅତିଶରେ ।
କୃଷ୍ଣଙ୍କ ସଙ୍ଗରେ ଧର୍ମରାଜ କରି ସ୍ନାନ
ଅନ୍ତର୍ଗତରେ ଆନନ୍ଦେ ହୋଇଲେ ମଗନ ।
ଦେବର୍ଷି ଆଦି କରି ଥିଲେ ଯେତେ ଜନ
ମହା ଆନନ୍ଦରେ କଲେ ପୁଷ୍ପ ବରଷଣ ।
ତହୁଁ ଧର୍ମ ନରପତି ଆନନ୍ଦିତ ମନେ
ଧନରତ୍ନ ଦାନେ ତୋଷ କରିଲେ ବ୍ରାହ୍ମଣେ
ଆଉ ଯେତେ ପୁରବାସୀ ଆତ୍ମୀୟ ସ୍ୱଜନ
କରିଲେକ ଏକେ ଏକେ ସଭିଙ୍କୁ ପୂଜନ ।
ନରନାରୀ ଆଦିକରି ଯେତୁ ଯେତେ ଥିଲେ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଆଦିଙ୍କର କୁଳେ ।
ସର୍ବେ ରାଜସୂୟ ଯଜ୍ଞେ ହୋଇ ନିମନ୍ତ୍ରିତ
ସେବା ଆଦର ଭକ୍ତିରେ ହୋଇଲେକ ପ୍ରୀତ
ଦେବତା ଋଷିଙ୍କ ସହିତରେ ନାଗ ନର
ଶତ ସହସ୍ର ଆସିଣ ଥିଲେ ସେ ଯଜ୍ଞର ।
ପୂଜାପାଇ ତୋଷ ହୋଇ କରିଲେ ଗମନ
ପ୍ରଶଂସା କରି ଚଳନ୍ତି ଆପଣା ଭୁବନ ।
ଧର୍ମ ନନ୍ଦନଙ୍କ ଯଶ ଘୋଷିଲା ଜଗତେ
ତହୁଁ ଯୁଧିଷ୍ଠିର ଘେନି ବନ୍ଧୁଗଣ ସାଥେ ।
ପ୍ରେମେ ପରିପୂର୍ଣ୍ଣ ହୋଇ କଲେ ସମ୍ଭାଷଣ
କୃଷ୍ଣଙ୍କ ବାହୁଡ଼ା ହେତୁ ବିଷାଦିତ ମନ ।
ତାହାଙ୍କ ହାତକୁ ଧରି ସେ ଧର୍ମ ନନ୍ଦନ
ବୋଇଲେ ତୁମ୍ଭେତ ଯିବ ଦ୍ୱାରକା ଭୁବନ ।
ତୁମ୍ଭର ବିରହ ଆମ୍ଭେ ସହିବୁ କେମନ୍ତ
କେମନ୍ତେ ଧରିବୁ ପ୍ରାଣ କହ ଯଦୁନାଥ ।
ଏହାଶୁଣି ଯଦୁପତି ସଦୟ ହୋଇଲେ
ଆଉ କିଛି ଦିନ ପୁଣି ସେଠାରେ ରହିଲେ ।
ଶାମ୍ବ ଆଦିକରି ଯେତେ ଯାଦବ ନନ୍ଦନେ
ପଠାଇଲେ କୃଷ୍ଣ ତାଙ୍କୁ ଦ୍ୱାରକା ଭୁବନେ ।
ଆପଣେ ରହିଲେ ତହିଁ ଦେବ ଦାମୋଦର
ପରମ ପ୍ରୀତ ହୋଇଲେ ଧର୍ମ ଯୁଧିଷ୍ଠିର ।
ଆନନ୍ଦରେ ତାଙ୍କ ମୁଖ ଉଜ୍ଜ୍ୱଳ ହୋଇଲା
ରାଜସୂୟ ମହାଯଜ୍ଞ ସମାପନ ହେଲା ।
ଅଭିମାନେ ମ୍ଳାନ ଅତି ରାଜା ଦୁର୍ଯ୍ୟୋଧନ
ଏହି ରାଜସୂୟ ଯଜ୍ଞ ଦେଖିଣ ନୟନ ।
ମନୋହର ଅନ୍ତଃପୁରେ ଦ୍ରୁପଦ ନନ୍ଦିନୀ
ପତି ସଙ୍ଗେ ସୁଖେ ବାସ କରିଛନ୍ତି ଧନୀ ।
ମୟର ନିର୍ମିତ ପୁରୀ ପରମ ସୁନ୍ଦର
ଐଶ୍ୱର୍ଯ୍ୟ ସମ୍ପଦେ ତାହା ଶୋହେ ମନୋହର
ଶ୍ରୀକୃଷ୍ଣଙ୍କ ରାଣୀମାନେ ହରଷରେ ଅତି
ସେହି ଅନ୍ତଃପୁର ମଧ୍ୟେ ମହାସୁଖେ ଥାନ୍ତି ।
ଏହା ସବୁ ଦେଖି କରି ରାଜା ଦୁର୍ଯ୍ୟୋଧନ
ସହି ନ ପାରିଲା ହିଂସା ବହିଲା ତା ମନ ।
ଈର୍ଷ ଅନଳେ ଜଳଇ ସ୍ଥିର ନୁହେଁ ମତି
ଖଳର ଚରିତ ଜିନା ଅଟେ ଏହିମତି ।
ସଂସାରେ ଯେବଣ ଜନ ଖଳ ଅତିଶୟ
ପରଶ୍ରୀକାତର ସେହି ଜାଣିବ ନିଶ୍ଚୟ ।

ପର ଐଶ୍ୱର୍ଯ୍ୟକୁ ଦେଖି ବିଷ ଲୁଚ୍ଛା ମଣେ
ବୃଶ୍ଚିକ ଦଂଶନେ ପ୍ରାଣୀ ଅସ୍ଥିର ଯେସନେ
ସେହିମତେ ବିଚଳିତ ହୁଏ ଦୁର୍ଯ୍ୟୋଧନ
ଏଥୁଅନ୍ତେ ଶୁଣ ମୁନି ଯେମନ୍ତ ଘଟନ ।
ଏକଦିନେ କୃଷ୍ଣପଦ ଚିନ୍ତ ମନେ ମନ
ସଭା ମଧ୍ୟେ ବସିଛନ୍ତି ପାଣ୍ଡୁ ପୁତ୍ର ଗଣ ।
କୃଷ୍ଣ ସଙ୍ଗେ କରି ହାସ୍ୟ ରସ ଆଳାପନ
ଆନନ୍ଦ ସାଗରେ ହୋଇ ଅଛନ୍ତି ମଗନ ।
ନିଶ୍ଚିନ୍ତ ମନେ ସକଳେ ସଭାର ମଧ୍ୟରେ
ବସି ଅଛନ୍ତି ରତନ ଆସନ ଉପରେ ।
ସ୍ୱର୍ଗେ ଯଥା ସୁରପତି ସଙ୍ଗେ ଦେବଗଣ
ସେହିମତେ ବିରାଜନ୍ତି ପାଣ୍ଡୁଙ୍କ ନନ୍ଦନ ।
ମୟ ଦାନବର କୃତ ସଭା ମନୋହର
ତେତେ ଶୋଭା ନାହିଁ କାହିଁ ଅବନୀ ଭିତର
ମାୟାରେ ଭିଆଣ ସଭା ସ୍ଫଟିକେ ନିର୍ମିତ
ଦୁର୍ଯ୍ୟୋଧନ ସଭା ମଧ୍ୟେ ହେଲା ଉପଗତ ।
ଭ୍ରାତୃଗଣସହ ରାଜା ସେଠାକୁ ଆସିଲା
ଅଭିମାନେ କୁରୁପତି ସଦର୍ପେ ଚଳିଲା ।
ଦୁର୍ଯ୍ୟୋଧନ କଲା ସଭା ମଧ୍ୟକୁ ଗମନ
ଜଳ ଭ୍ରମକଥା ସ୍ଥଳେ ଶୁଣ ତପୋଧନ ।
ବିପରୀତ ଜ୍ଞାନ ତାର ଉଦୟ ହୋଇଲା
ବସ୍ତ୍ର ତିନ୍ତିବାର ଶଙ୍କା ମନରେ ଜାଗିଲା ।
ତେଣୁ ସେହୁ ବସନକୁ ଟେକି ଉରୁପର
ଦେଖିଣ ତାହା ହସିଲା ବୀର ବୃକୋଦର ।
ହସି ଲାଗିଲେ ଆବର ଯେତେ ନାରୀଗଣ
ତାହା ଦେଖି ଦାମୋଦର କଲେ ନିବାରଣ
କେହି କିଛି ନ କହିଲେ କୃଷ୍ଣଙ୍କ ବଚନେ
ଅତି ଲଜ୍ଜା ପାଇଲା ସେ କୁରୁପତି ମନେ ।
ଅଧୋମୁଖରେ ନିରବେ ରହେ ଦୁର୍ଯ୍ୟୋଧନ
କୋପେ ଅଙ୍ଗଜଳେ ତାର ଯେସନେ ହୁତାଶନ
ଏମନ୍ତେ ବିଷମ ଲଜ୍ଜା ପାଇଲା ସଭାରେ
ହସ୍ତିନାକୁ ସେ ଗମନ କଲା ତାହାପରେ ।
ବଢ଼ିଲା ତାହାର ଈର୍ଷା ପାଣ୍ଡବଙ୍କ ପରେ
ତାର ତତ୍ତ୍ୱ କହିବାଇଁ ମୁଁ ତୁମ୍ଭ ଗୋଚରେ ।
ମୋତେ ପଚାରିଲ ମୁନି ତାହାର କାରଣ
ମହା ଖଳ ଅଟେ ସେହି ରାଜା ଦୁର୍ଯ୍ୟୋଧନ
ସୂତ ମହର୍ଷି ଭାଷିତ ଏ ବ୍ରହ୍ମ ପୁରାଣେ
ଗୁରୁ ବ୍ରହ୍ମ ଚିନ୍ତି ଭଣେ ଭାଷା ପ୍ରବନ୍ଧେଣ ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାୟି
ଅଧମ କ୍ଷେତ୍ରମୋହନ ଏ ଗୀତ ରଚଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ
ଦୁର୍ଯ୍ୟୋଧନ ହିଂସା ବିବରଣ ନାମ
ଦ୍ୱିଷଷ୍ଟିତମୋଽଧ୍ୟାୟଃ ।

—୦—

## ତ୍ରିଷଷ୍ଟିତମ ଅଧ୍ୟାୟ

## ଶାଲ୍ୱ ବଧ ବିବରଣ

### ସୂତ ଉବାଚ

ଏଥୁଅନ୍ତେ କହନ୍ତି ଯେ ସୂତ ମୁନିବର
ସକଳ ତାପସେ ଏବେ ମୋହ ଗିର ଶୁଣ ।
ଶ୍ରୀକୃଷ୍ଣ ଯେ ସ୍ୱୟଂ ପରବ୍ରହ୍ମ ବିଶ୍ୱପତି
ତାହାଙ୍କ ଚରିତ୍ର ଭବେ ଅପୂର୍ବ ଯେ ଅତି ।
ଶ୍ରବଣ କର ହେ ମୁନି ପୁରାତନ ଗୀର
ହୋଇଲା ନିଧନ ଯେହ୍ନେ ଶୌଭପତି ବୀର ।
ଶିଶୁପାଳର ସଖା ଯେ ଶାଲ୍ୱ ନରପତି
ମହା ପରାକ୍ରମୀ ସେହି ଅତି କ୍ରୂର ମତି ।
ରୁକ୍ମିଣୀ ବିବାହ କାଳେ ଅଇଲା ସେକ୍ଷଣ
ଅପମାନ ଦେଲେ ତାକୁ ଯଦୁ ସେନାଗଣ ।
ଯାବତୀୟ ନୃପତିଙ୍କ ସାକ୍ଷାତେ ସେ ପୁଣ
କହିଥିଲା ମହାକ୍ରୋଧେ ପ୍ରତିଜ୍ଞା ବଚନ ।
ସଭାମଧ୍ୟେ କଲେ ଶାଲ୍ୱ କରି ଅଙ୍ଗୀକାର
ବାହୁବଳେ ଯଦୁଗଣେ କରିବି ସଂହାର ।
ପୃଥିବୀରେ ଯାଦବଙ୍କ ନାମ ନ ରଖିବି
ଏହି ଧରାରୁ ଯଦୁଙ୍କୁ ନିର୍ମୂଳ କରିବି ।
ନୋହିଲେ ମୋ ଶାଲ୍ୱନାମ ଆଜ ଏ ଧରାରେ
ନ ରଖିବ ଅଗ୍ନିଜାଳ ମରିବ ସତ୍ୱରେ ।
ଏତେ ଭାବି ଶଙ୍କରଙ୍କୁ ଆରାଧନା କଲା
ଅନ୍ନଜଳ ତ୍ୟାଗ କରି ପବନ ଭକ୍ଷିଲା ।
ଏହିପରି ଏକ ବର୍ଷ ତପସ୍ୟା କରନ୍ତେ
ଶଙ୍କର ପ୍ରବେଶ ହେଲେ ଆସି ତା ନିକଟେ
ତାହାଙ୍କୁ ଦେଖିଣ ଶାଲ୍ୱ ପ୍ରଣତି ଜଣାଇ
କହିଲା ସକଳ କଥାମାନ ରସ ଫିଟାଇ ।

ଉପଭୃ ବଚନେ ତାଙ୍କୁ ଦେବ ତ୍ରିଲୋଚନ
ପରିତୋଷ ମନରେ ଧୀରେ ବୋଇଲେ ବଚନ
ତବ ତପରେ ସନ୍ତୁଷ୍ଟ ହୋଇଅଛୁ ମୁହିଁ
ଯାହା ଇଚ୍ଛା ବରମାଗ ନିଶ୍ଚୟ ଦେବଇଁ ।
ଶାଲ୍ୱ ବୋଇଲା ଯଦ୍ୟପି ଦେବ ମୋତେ ବର
ନମାର ପାରିବେ ମୋତେ ଭବେ କେହି ନର
ଦେବ ଦାନବ ମାନବ ନାଗ ବା ଗନ୍ଧର୍ବ
ବଧି ନ ପାରି ପରାସ୍ତ ହୋଇବେ ସରବ ।
ଯେତେ ବନ ଯାଏ ମୁହିଁ ଧରା ମଧ୍ୟେ ଥିବ
ସମସ୍ତଙ୍କୁ ପାଦତଳେ ଆଣି ଖଟାଇବ ।
ଆଉର ଏକଇ କଥା ଶୁଣ ମୋର ହର
ସେହିବର ଗୋଟି ଲୋଡ଼ା ବିଶେଷ ମୋହର
କାମଗାମୀ ଯାନ ଏକ ଦିଅ ପଶୁପତି
ପବନ ଠାରୁ କରିବ ସେହୁ ଶୀଘ୍ର ଗତି ।
ଏହା ଶୁଣି ପଶୁପତି ଅସ୍ତୁ ବୋଲି କହି
ମାୟାରଥ ଏକ ଦେଲେ ସେ ଶାଲ୍ୱକୁ ତହିଁ ।
ସେ ମୂଢ଼ମତିକୁ ସେହୁ ଦେଲେ କାମ ଯାନ
ଇଚ୍ଛାମତେ ବରପାଇ ଆନନ୍ଦ ତା ମନ ।
ହରଷ ମନରେ ସେହୁ ବହନ ଫେରିଲା
ନାନା ଅସ୍ତ୍ର ଶସ୍ତ୍ର ମାନ ହସ୍ତରେ ଘେନିଲା ।
କୃଷ୍ଣ ବୈରୀ ବୋଲି ମନେ ଯାଗିଛି ତାହାର
କାମ ଯାନ ଚଢ଼ି ଧାଇଁ ଦ୍ୱାରକା ନଗର ।
ବହୁ ସୈନ୍ୟ ମାନ ସଙ୍ଗେ ଧରିଣ ଚଳିଲା
ଦ୍ୱାରକାର ଚଉଦିଗେ ସୈନ୍ୟ ଘେରିଇଲା ।
ଦ୍ୱାଦଶ ଯୋଜନ ଯାଏ ବେଢ଼ିଲେ ସଇନ
ସୈନ୍ୟଙ୍କ ଚଳାରେ କର୍ମି ଉଠଇ ଗଗନ ।
ଯେତେ ପୁଷ୍ପ ଉପବନ ଦ୍ୱାରକାରେ ଥିଲା
ସେ ଦୁଷ୍ଟ ସୈନ୍ୟଙ୍କ ହାତେ ଭାଙ୍ଗି ପକାଇଲା
ଆବର ପ୍ରାଚୀର ଆଉ ଅଟ୍ଟାଳିକାମାନ
ଭାଙ୍ଗି ଛାରଖାର କଲେ ସେ ଶାଲ୍ୱ ସଇନ ।
ଆବର ଗୋଶାଳାମାନ କଲେ ଛାରଖାର
ଶଳେମାନ ହିତାହିତ ଜ୍ଞାନ ନାହିଁ ତାର ।
ବଡ଼ ବଡ଼ ବୃକ୍ଷ ସବୁ ଉପାଡ଼ି ପକାଇ
ସାଗର ଜଳକୁ ଦୁଷ୍ଟ ଦେଲା ଫୋପଡ଼ାଇ ।
ଯେତେ ଯେତେ ଦ୍ରବ୍ୟମାନ ଭଗ୍ନ କଲା ସେହି
କଳନା କରିବା ପାଇଁ କା ଶକତି ନାହିଁ ।

ମାୟା କୃଷ୍ଟି ହାଣେ ଦେଶେ କଲା ସେ ପାତନ
ମାୟାରେ ବହିଲା ପ୍ରଳୟର ବାତ ଘନ ।
ଦେଖି ଦ୍ୱାରକାର ଜନେ ଭୟେ ହେଲେ ଭୀତ
କି ହୋଇଲା ବୋଲି ସର୍ବେ ହୋଇଲେ ଶଙ୍କିତ
ମନ ମଧ୍ୟରେ ସକଳେ ଭାବନା କରିଲେ
ଇନ୍ଦ୍ରପ୍ରସ୍ଥରେ ତ କୃଷ୍ଣଚନ୍ଦ୍ର ଯେ ରହିଲେ ।
କପରି ରକ୍ଷା ପାଇବା ମନରେ ବିଚାରି
ପ୍ରଦ୍ୟୁମ୍ନ ସନ୍ନିଧେ ଗଲେ ସର୍ବ ନରନାରୀ ।
ତାହାଙ୍କୁ ବୋଇଲେ ସର୍ବେ ହୋଇ ଥରହର
ରକ୍ଷାକର ରକ୍ଷାକର ସରିଲା ସଂସାର ।
ମହା ପରାକ୍ରମଶାଳୀ କୃଷ୍ଣଙ୍କ ତନୟ
ସକଳ ପ୍ରଜାମାନଙ୍କୁ ଦେଇଣ ଅଭୟ ।
ବୋଇଲେ ଏକ୍ଷଣି ମୁହିଁ ନାଶିବ ଅରାତି
ଏହା କହି ରଥ ପରେ ଆରୋହି ତତ୍‌କ୍ଷତି ।
ବାହାର ହୋଇଲେ ସାଥେ ଘେନ ରଥୀଗଣ
ଏକ ଏକ ରଥ ମଧ୍ୟେ କରି ଆରୋହଣ ।
ସାତ୍ୟକ ଅକ୍ରୂର ଆଦି ଯେତେ ଧନୁର୍ଦ୍ଧର
ରଥ ରଥୀ ଅଶ୍ୱ ଘେନି ହୋଇଲେ ବାହାର
ସକଳ ଚଳିଲେ ରଣ କରିବା ନିମନ୍ତେ
ସଇନଗଣ ଚଳନ୍ତି ଭ୍ରାନ୍ତି ତେଜ ଶତେ ।
ଯଦୁକୁଳ ରଙ୍ଗେ ଢ଼ଙ୍ଗେ ଚଳିଲେ ସମରେ
ଯୁଦ୍ଧ ଆରମ୍ଭିଲେ ଶାଲ୍ୱ ରାଜାର ସଙ୍ଗରେ ।
ମହାମତ୍ତ ଯଦୁବୀରେ ସମରେ ପ୍ରଚଣ୍ଡ
ଶାଲ୍ୱ ସେନାଗଣ ରଣେ କଲେ ଖଣ୍ଡ ଖଣ୍ଡ
ଦୁଇ ଆଡ଼ୁ ସଂଗ୍ରାମ ଯେ ହେଲା ଘୋରତର
ଯେହ୍ନେ ଦେବତା ଅସୁରେ ଯୁଦ୍ଧ ଭୟଙ୍କର ।
ଶାଲ୍ୱ ରାଜା ମାୟାରଥେ ଆରୋହଣ କରି
ଭୀଷଣ ସଂଗ୍ରାମ କରେ ମାୟାରୂପ ଧରି ।
ଆସୁରିକ ମାୟା ଯେତେ ଦେଖାଏ ପାମର
କ୍ଷଣକେ ବିନାଶେ ତାହା କୃଷ୍ଣଙ୍କ କୁମର ।
ମହାମାୟା ଧରି ପୁଣି ରୁକ୍ମିଣୀ ତନୟ
ଶାଲ୍ୱର ମୋହିନୀ ମାୟା ସବୁ ବିନାଶଇ ।
ସୂର୍ଯ୍ୟ କିରଣରେ ଯଥା ଘୁଞ୍ଚେ ଅନ୍ଧକାର
ତେସନେ ନାଶଇ ମାୟା କୃଷ୍ଣଙ୍କ କୁମର ।
ତଦନ୍ତେ ପ୍ରଦ୍ୟୁମ୍ନ ଛାଡ଼େ ଅଧୋମୁଖେ ବାଣ
ସନ୍ଧାନ କରି ଶାଲ୍ୱକୁ ବିନ୍ଧେ ଘନ ଘନ ।

ଚାପରେ ସେ ମହାବଳୀ ପ୍ରଚଣ୍ଡ କ୍ଷିପ୍ର ଶର
ସେହି ବାଣକେ ସାରଥି ଗଲା ଯମ ଘର ।
ଆଉ ଏକ ବାଣ ପୁଣି ବିନ୍ଧିଲା ପ୍ରଚଣ୍ଡ
ସେ ବାଣରେ ରଥ ଅଶ୍ୱ କଲା ଖଣ୍ଡ ଖଣ୍ଡ ।
ଆଉ ଭିନ ବାଣ ମାରେ ସୈନ୍ୟଙ୍କ ଉପର
ସେ ବାଣେସୈନ୍ୟେ ଉଜାଡ଼ହେଲେଜରଜର
ପ୍ରଦ୍ୟୁମ୍ନର ଯୁଦ୍ଧ ସର୍ବେ ଚକିତ ହୋଇଲେ
ଧନ୍ୟଧନ୍ୟବୋଲି ତାକୁ କେତେ ପ୍ରଶଂସିଲେ
ସୌଭ ଅଧିପତି ତହୁଁ ତା ଦେଖି ନେତ୍ରରେ
ସେହିକ୍ଷଣି ସଂଗ୍ରାମରେ ମାୟାକୁ ବିସ୍ତାରେ ।
ଭୀଷଣ ମାୟା ପ୍ରକାଶି କରଇ ସମର
କେବେ ହୁଏ ଏକ ରୂପ କେବେ ସେ ବିସ୍ତାର
ମୟ ଦାନବର ମାୟା ଅଚିନ୍ତ୍ୟ ସେ ହୁଏ
କେବେ ଦୃଶ୍ୟ ରଣସ୍ଥଳେ କେବେ ଦୃଶ୍ୟନୁହେଁ
କେବେ ଏକରୂପ ପୁଣି କେବେ ବହୁରୂପ
ଥାଏ ସେ କେଉଁଠି କେହି ନ ଦେଖେ ସ୍ୱରୂପ
କାହିଁ ରହି ଯୁଦ୍ଧକରେ କେହି ନ ଜାଣଇ
କେବେ ଭୂତଳେକେବେ ସେ ଆକାଶେରହଇ
ପର୍ବତ ଶୃଙ୍ଗରେ କେବେ କେବେ ସାଗରରେ
ଏହିପରି ସେ ମାୟାବୀ ନାନା ମାୟାକରେ ।
କରନ୍ତି ସନ୍ଧାନ ତାକୁ ଯଦୁ ସୈନ୍ୟଗଣ
ନାନା ଅସ୍ତ୍ର ପ୍ରହାରନ୍ତି ତା ବଧ କାରଣ ।
ବାଛି ବାଛି ତୀକ୍ଷ୍ଣ ଅସ୍ତ୍ର ଛାଡ଼ନ୍ତି ବେଗରେ
ଏକେ ଏକେ ଶାଲ୍ୱ ସୈନ୍ୟ ପଡ଼ିଲେ ସମରେ
ତହୁଁ କ୍ରୋଧେ ଶାଲ୍ୱବେଗେ ବିନ୍ଧିଲାଯେ ବାଣ
ସେ ବାଣ ଆଘାତେ ଜର୍ଜରିତ ଯଦୁଗଣ ।
ଶୁଣ ଶୁଣ ଆହେ ମୁନି ବଚନ କଥନ
ଶାଲ୍ୱମନ୍ତ୍ରୀ ଥିଲା ତହିଁ ତା ନାମ ଦ୍ୟୁମନ ।
ପୂର୍ବରୁ କୋପ ତାହାର ପ୍ରଦ୍ୟୁମ୍ନ ଉପରେ
ଗଦା ହାତେ ସେ ଦୁରନ୍ତ ଧାଇଁଲା ସତ୍ୱରେ ।
ମହାଗଦା ଘେନି ବୀର ଚଞ୍ଚଳେ ଅଇଲା
ପ୍ରଦ୍ୟୁମ୍ନ ଉପରେ ତାହା ଆଣ୍ଟେ ପ୍ରହାରିଲା ।
ଭୟଙ୍କର ଗଦାକୁ ବୁଲାଏ ଘନ ଘର୍ନ
ପ୍ରଦ୍ୟୁମ୍ନ ଉପରେ ପ୍ରହାରଇ ସେ ଦାରୁଣ ।
ପ୍ରଦ୍ୟୁମ୍ନ ହୃଦରେ ସେହି ଗଦା ବାଜନ୍ତେଣ
ମହାବୀର କୃଷ୍ଣସୁତ ହେଲା ଅଚେତନ ।

ଏସ ଦେଖିଲ ସାରଥି ରଥ ଫେରାଇ ନେଲା
କ୍ଷଣ ପରେ କୃଷ୍ଣସୁତ ପାଇଲା ଚେତନା ।
କ୍ରୋଧଭରେ ସାରଥିକ କହିଲା ଭୀଷଣ
ଫେରାଇଲୁ ରଥ କହ କେବଣ କାରଣ ।
ଉପଯୁକ୍ତ ନୁହଇଟେ ତୋହର ଏ କର୍ମ
ଭଲ କାର୍ଯ୍ୟ କଲୁ ନାହିଁ ପାମର ଅଧମ ।
ତୋ ଯୋଗୁଁ ହୋଇଲା ଆଜ ଅଯଶ ବିଷମ
ଯୁଦ୍ଧରେ ବିମୁଖ ନ ହୁଅନ୍ତି ବୀରଗଣ ।
ରଣ ସ୍ଥଳେ ହେଲା ମୋତେ ଲଜ୍ଜା ଅତିଶୟ
ତୋହର ଦୋଷରୁ ରଣେଭଙ୍ଗ ମୋ ନିଶ୍ଚୟ
ସମ୍ମୁଖ ସମରେ ଯଦି ଯାଏ ରେ ଜୀବନ
ବୀର ବୋଲି ଏ ସଂସାରେ ହୁଅଇ ଘୋଷଣ ।
ରଣ ମଧ୍ୟେ ଯେଉଁ ବୀରେ ହୁଏ ମୃତ୍ୟୁଭୟ
ଅନ୍ତିମେ ନରକ ତାର ଏକଥା ନିଶ୍ଚୟ ।
ଯୁଦ୍ଧକ୍ଷେତ୍ରୁ ଯେଉଁଜନ ପଳାୟନ କରେ
ଜଗତ ଜନେ ଅଯଶ ଘୋଷନ୍ତି ତାହାରେ ।
ଏଣୁ ଅନୁଚିତ ତୁହି ଯେଉଁ କର୍ମ କଲୁ
ଶତ୍ରୁପକ୍ଷେ ମୋହର ଅଯଶ ଘଟାଇଲୁ ।
ରଣେ ଭଙ୍ଗ ଦେଲେ କେତେ ଅପଯଶ ହେବ
ତାତେ ଜଣାଇଲେ ତାହା କି ଫଳ ମିଳିବ
ରଣେ ମୃତ୍ୟୁ କେଉଁ ମତେ ହିତ ଅଟଇ ନୁହେଁ
ତୋହର କାତରେ ଏବେ ଅପଯଶ ହୋଏ ।
ଏ ଭର୍ତ୍ସନା ବାଣୀ ଶୁଣି କହିଲା ସାରଥି
ସାରଥିର ଧର୍ମ ଯାହା ଶୁଣନ୍ତୁ ସୁମତି ।
ସାରଥି-ଭୟକୁ ହେଲେ ରକ୍ଷା କରେ ରଥୀ
ରଥୀର ବିପଦ ହେଲେ ବଞ୍ଚାଏ ସାରଥି ।
ତୁମ୍ଭେ ମୂର୍ଚ୍ଛାଗତ ହେବା ଦେଖି ତତକ୍ଷଣ
ରଣ ସ୍ଥଳରୁ ଘେନି ମୁଁ କଲି ପଳାୟନ ।
ଏହାଶୁଣି ମହାବୀର ରୁକ୍ମିଣୀଙ୍କ ବଳା
ସାରଥିକି ସେ ଗମ୍ଭୀର ସ୍ୱରରେ କହିଲା ।
ଶୁଣରେ ସାରଥି ଏବେ ବଚନ ମୋହର
ଶତ୍ରୁର ନିକଟେ ରଥ ନିଅ ବେଗ କର ।
ବୀର ବାଣୀ ଶୁଣି ତହୁଁ ସାରଥି ତକ୍ଷଣ
ଶତ୍ରୁର ନିକଟେ ରଥ ନେଲା ତତକ୍ଷଣ ।
କୋପରେ ପ୍ରଦ୍ୟୁମ୍ନ ବୀର ଘେନି ଧନୁବାଣ
ମାଇଲା କୋଡ଼ିଏ ଶର ପୁରାଇ ସନ୍ଧାନ ।

ଆଉ ଅଷ୍ଟବାଣ ଅଶ୍ୱେ ବିନ୍ଧିଲା ସେ ପୁଣ
ଶୁରବାଣେ କ୍ରମେ ବିନ୍ଧେ ରଥର ବାହନ ।
ଆଉର ବାଣେକ ବୀର ଧନୁରେ ସନ୍ଧିଲା
ସାରଥିର ମୁଣ୍ଡକାଟି ତଳେ ପକାଇଲା ।
ସେ ମୁଣ୍ଡହୀନ ଦେହକୁ ମାରି ତୀକ୍ଷ୍ଣବାଣ
ଖଣ୍ଡ ଖଣ୍ଡ କରି ଫିଙ୍ଗେ ସାରଥି ମଦଧିଶ ।
ପ୍ରଦ୍ୟୁମ୍ନ ବୀର ଆଉ ଯେ ନାରାଚକୁ ବିନ୍ଧି
ଫିଙ୍ଗିଲା ସେ ପ୍ରଦ୍ୟୁମ୍ନର ମସ୍ତକକୁ ଛେଦି ।
ତଦନ୍ତେ ଶାଲ୍ୱ ସଙ୍ଗରେ କଲା ଘୋରରଣ
ଭୟଙ୍କର ରଣ ତହିଁ କଲେ ଦୁଇଜଣ ।
ଏହିପରି ବହୁଦିନ ଯୁଝିଲେ ସେ ବୀରେ
ଯଦୁଗଣ ବଳବାନ ବିଷମ ସମରେ ।
ଶାଲ୍ୱ ସହିତରେ ଯୁଦ୍ଧ ହେଲା ଏହିପରି
ଜଣା ନୁହେଁ ଦୁଇଜଣ ଛନ୍ତି ଏକାପରି ।
କେହି ଜିଣିବା ହାରିବା ଜଣାଗଲା ନାହିଁ
ଦୁହେଁ ଦୁହିଁଙ୍କୁ ବଳୁଆ କେହି ନ ହାରଇ ।
ଇନ୍ଦ୍ରପ୍ରସ୍ଥେ ଚକ୍ରପାଣି ଯେଣୁ ରହିଥିଲେ
ଅନ୍ତର୍ଯ୍ୟାମୀ ନାଥ ସବୁ ଅନ୍ତରେ ଜାଣିଲେ ।
ଅମ୍ଭ କ୍ଷଣେ ଦେଖିଲେ ସେ ଅଲକ୍ଷଣମାନ
ତେଣୁ ବେଗେ ବାହୁଡ଼ିଲେ ଦ୍ୱାରକା ଭୁବନ
ପାଣ୍ଡବ ନିକଟୁ ପ୍ରଭୁ ବିଦାୟ ଘେନିଲେ
ପୁରବାସୀ ସମସ୍ତଙ୍କୁ ସମ୍ଭାଷଣ କଲେ ।
ଏକେ ଏକେ ସୁମଧୁରେ ସନ୍ତୋଷ କରିଣ
ମୁନିମାନଙ୍କ ନିକଟୁ ମେଲାଣି ଘେନିଣ ।
ଅତି ଚିନ୍ତିତ ମନରେ ତହୁଁ ଉଦ୍‌ବେଗେ
ଦ୍ୱାରକାକୁ ବାହୁଡ଼ିଲେ ପତ୍ନୀଗଣ ସଙ୍ଗେ ।
ସେଠାବରେ ମିଳି ହରି ଦେଖିଲେ ଏସନ
ଶତ୍ରୁ ସୈନ୍ୟମାନେ କରିଛନ୍ତି ଆକ୍ରମଣ ।
ଶିଶୁପାଳର ସଖା ଯେ ଶାଲ୍ୱ ନରପତି
ଯାଦବମାନଙ୍କୁ ଦିଏ ଅଶେଷ ବିପତ୍ତି ।
ଦେଖି କୃଷ୍ଣଚନ୍ଦ୍ର ମନେ ଅତି କ୍ରୋଧ ହେଲେ
ବେଗେ ଦାରୁକକୁ ଡାକି ଆଦେଶ କରିଲେ ।
ବିଳମ୍ବ ନକରି ଶୀଘ୍ର ରଥ ସଜକର
ରଣସ୍ଥଳକୁ ବହନ ଚଳ ହୋ ସତ୍ୱର ।
ନନ୍ଦୀଘୋଷ ରଥକୁ ମୋ ବେଗେ ନେଇଯାଅ
ଶାଲ୍ୱ ନରପତି ପାଶେ ପହଞ୍ଚାଇ ଦିଅ ।
ମହା ମାୟାଧାରୀ ଅଟେ ଦୁଷ୍ଟ ସୌଭପତି
ସାବଧାନେ କାର୍ଯ୍ୟକର ଦାରୁକ ସାରଥି ।
ଆଜ୍ଞା ମାତ୍ରେ ରଥଚଳ ସାରଥି ବହନ
ଶତ୍ରୁ ସନ୍ନିଧିକୁ ରଥ ବାହେ ଘନ ଘନ ।
କୃଷ୍ଣଙ୍କୁ ଦେଖିବା ମାତ୍ରେ ଶାଲ୍ୱ ମହାବୀର
କ୍ରୋଧଭରେ ଅତ୍ୟନ୍ତ ହୋଇଲା ଅସ୍ଥିର ।
କୃଷ୍ଣଙ୍କ ଉପରେ ଦୁଷ୍ଟ ଶକ୍ତି ପ୍ରହାରିଲା
ମହା ଭୀଷଣ ଶବଦ ଆକାଶେ ଉଠିଲା ।
ଶକ୍ତି ମୁଖେ ଦାଉ ଦାଉ ଜଳୁଛି ଅନଳ
ସେ ତେଜରେ ଦଶ ଦିଗ ଦିଶିଲା ଉଜ୍ଜ୍ୱଳ ।
ଶକ୍ତି ଲକ୍ଷ୍ୟକରି କୃଷ୍ଣ ନିକ୍ଷେପିଲେ ବାଣ
ଖଣ୍ଡ ଖଣ୍ଡ ହୋଇ ସେହି ଶକ୍ତି ତତକ୍ଷଣ ।
ସେ ଉତ୍ତାରୁ ଚକ୍ରପାଣି ସକ୍ରୋଧ ଅନ୍ତରେ
ଦିବ୍ୟଶର ପ୍ରହାରିଲେ ଗୁହିଁ ଶାଲ୍ୱ ବୀରେ ।
ଶାଲ୍ୱ ଅଙ୍ଗ ଅସ୍ତ୍ରାଘାତେ ହେଲା ଜରଜର
ସର୍ବାଙ୍ଗ ଯାକରୁ ତାର ବହିଲା ରୁଧିର ।
ସେ ଶାଲ୍ୱର ଅଙ୍ଗ ଅସ୍ତ୍ରେ କଲେ ଆଚ୍ଛାଦନ
ଯେସନ୍ତେ ଶତ ରବିତେଜ ପ୍ରକାଶେ ଗମନ ।
ବାଣ ପ୍ରଭାବରେ ଦଶ ଦିଗ ଆଲୋକିତ
ଶାଲ୍ୱବୀର ହୋଇଲାକ ଅତ୍ୟନ୍ତ କ୍ରୋଧିତ ।
ଧନୁରେ ଟଙ୍କାର ଦେଇ କଲା ସେ ସନ୍ଧାନ
କୃଷ୍ଣଙ୍କ ବାମହସ୍ତକୁ ବିନ୍ଧେ ଏକ ବାଣ ।
ସେ ଅସ୍ତ୍ର ଆଘାତେ ହସ୍ତ ଅବଶ ହୋଇଲା
ହସ୍ତୁ ଧନୁ ଖସି ଭୂମି ଉପରେ ପଡ଼ିଲା ।
ସେତେବେଳେ ଚଉଦିଗେ ଉଠଇ ଚିତ୍କାର
ଦେଖି ଯଦୁବୀରମାନେ କଲେ ହାହାକାର ।
ମହାଦର୍ପେ ଶାଲ୍ୱ ବୀର କହିଲା ତକ୍ଷଣ
ମୋ ଆଗରେ ରହ କୃଷ୍ଣ ହୋଇ ସାବଧାନ
ଶିଶୁପାଳର ଭାର୍ଯ୍ୟାକୁ କଲୁ ତୁ ହରଣ
ମୋର ହସ୍ତେ ପ୍ରତିଫଳ ପାଇବୁ ଏକ୍ଷଣ ।
ମୋହ ଆଗରେ ତୁ ଥାଇ କରୁ ଯଦି ରଣ
ନିଶ୍ଚେ ତୋତେ ପଠାଇବି ଶମନ ସଦନ ।
ଆଜି ତୋର ଦର୍ପ ଚୂର୍ଣ୍ଣ ହେବ ହୃଷୀକେଶ
ମୋର ପରାକ୍ରମ ତେବେ ଜାଣିବୁ ଅବଶ୍ୟ ।
ଶାଲ୍ୱ ବଚନେ ଶ୍ରୀକୃଷ୍ଣ ହସିଲେ ସେକ୍ଷଣି
ମୃଦୁ ଭାଷାରେ କହିଲେ ପ୍ରଭୁ ଚକ୍ରପାଣି ।

ଆରେ ମୂଢ଼ମତି କମ୍ପା କହୁ କଟୁ ଭାଷ
ଏକ୍ଷଣି ଯିବୁରେ ଦୁଷ୍ଟ ଶମନ ଆବାସ ।
ଏହି ଦେଖ ତୋ ନିକଟେ ଅଛିରେ ଶମନ
କି ସାହସେ କହୁ ଦୁଷ୍ଟ ଏତେ କୁବଚନ ।
ବଳଖାଇ ବାକ୍ୟେ କେବେ ନୁହେଁ ପରିଚୟ
କାର୍ଯ୍ୟରେ ହୋଇଲେ ତେବେ ଜାଣିବୁ ନିଶ୍ଚୟ
ଏତେ ବୋଲି ମହାଗଦା ଘେନି ନାରାୟଣ
ମହାବଳେ ପ୍ରହାରିଲେ ଶାଲ୍ୱକୁ ବହନ ।
ସେ ଗଦା ଆଘାତେ ଶାଳ୍ୱ ଅସ୍ଥିର ହୋଇଲା
ରକ୍ତବାନ୍ତି କରି ଦୁଷ୍ଟ ଭୂମିରେ ପଡ଼ିଲା ।
କ୍ଷଣକ ପରେ ସେ ପୁଣି ପାଇଲା ଚେତନ
ଆକାଶ ଭିତରେ ହେଲା ଅଦୃଶ୍ୟ ତକ୍ଷଣ ।
କ୍ଷଣକ ଉତ୍ତରେ ଶାଳ୍ୱ ପ୍ରକାଶିତ ହୋଇ
ଦେବକୀଙ୍କ ଦୂତ ରୂପେ ଅଇଲା ସେ ଧାଇଁ ।
ଶ୍ରୀକୃଷ୍ଣଙ୍କ ସନ୍ନିଧିରେ କଲା ସେ କ୍ରନ୍ଦନ
କହେ ବେନିକର ଯୋଡ଼ି ଶୁଣ ଜନାର୍ଦ୍ଦନ ।
ଶାଲ୍ୱଶାଳ୍ୱ ବସୁଦେବ ବାନ୍ଧିଣ ଆଣିଲା
ସେ ବାର୍ତ୍ତା ଜଣାଇବାକୁ ଦେବୀ ଆଜ୍ଞା ଦେଲା
ତୁମ୍ଭର ପିତାକୁ ଏ ସମୟେ ରକ୍ଷାକର
ଏ ବଚନ ଶୁଣି କୃଷ୍ଣ ବିଷାଦ ଅପାର ।
ମନୁଷ୍ୟ ସ୍ୱଭାବ ହରି ମାନବ ଆକାର
ମାୟାରେ ମୋହିତ ହୋଇ ଭାବନ୍ତି ଆବର
ସତ୍ୟକଥା ଭାବି କୃଷ୍ଣ କହିଲେ ତକ୍ଷଣ
ମୋହର ଅଦୃଷ୍ଟେ ଏକି ବଧି ବିଡ଼ମ୍ବନ ।
ବଳଦେବ ଥାଉଁ ଦୁଷ୍ଟ ପିତାଙ୍କୁ ହରିଲା
କାତରେ କହନ୍ତି ଏହା ଦେବକୀଙ୍କ ବାଳା ।
ସେହିକାଳେ ଶାଲ୍ୱଶାଳ୍ୱ ଅଇଲା ବହନ
କୃଷ୍ଣ ପିତା ବସୁଦେବ କରିଣ ବନ୍ଧନ ।
ବାମହସ୍ତେ କେଶ ଧରି ସେଠାକୁ ଆଣିଲା
କେତେ କଟୁ କୁବଚନ କୃଷ୍ଣଙ୍କୁ କହିଲା ।
ଆରେ ବାସୁଦେବ ତୁହି ବଡ଼ ମୂଢ଼ମତି
ବସୁଦେବ ରକ୍ଷାକର ଜାଣିବି ଶକତି ।
ତୋ ଆଗରେ ତୋ ବାପକୁ କରିବି ନିଧନ
ଏତେ କହି ଖଣ୍ଡା ଗୋଟି ଧଇଲା ଦାରୁଣ ।
ବସୁଦେବଙ୍କୁ କଲା ସେ ଖଡ଼ଗେ ଛେଦନ
ପୁନର୍ବାର ଆକାଶକୁ କଲା ପଳାୟନ ।

ତା ଦେଖି ଚିନ୍ତିତ ହେଲେ ପ୍ରଭୁ ଭଗବାନ
ସେହି ଦେବ ଲୀଳାମୟ ମାୟାର କାରଣ ।
ଅନ୍ତର୍ଯ୍ୟାମୀ ହରି ସବୁ ଜାଣିଲେ ତକ୍ଷଣ
ଅସୁରୀ ମାୟାରେ ହୁଏ ଏମନ୍ତ ଘଟଣ ।
ମାୟାରେ କଲାସେ କାର୍ଯ୍ୟ ଏଡ଼େ ବିପରୀତ
କ୍ଷଣକରେ ମୋତେ କଲା ମାୟାରେ ମୋହିତ
ସ୍ୱପ୍ନ ସମ ଦରଶନ କରେ ମୁଁ ବସ୍ତୁତଃ ।
ମିଥ୍ୟାମୟ କାର୍ଯ୍ୟ ଆଜ ହୋଇଲା ସମ୍ଭୂତ ।
ଦୈତ୍ୟ ବଧିନାହିଁ ମୋ ପିତାଙ୍କୁ ମୁହିଁ ଜାଣେ
ମୋହିତ ହୋଇଲି ତେବେ ମାୟାର କାରଣେ
ଏତେ ଭାବି ଜନାର୍ଦ୍ଦନ ଅତି କ୍ରୋଧଭରେ
ଦୁଷ୍ଟ ଶାଲ୍ୱକୁ ଦେଖିଲେ ଆକାଶ ଉପରେ ।
ଆକାଶରୁ ଶାଲ୍ୱ କରେ ବାଣ ବରଷଣ
ବାଣେ ଏକାବେଳେ କଲା ମହୀ ଆଚ୍ଛାଦନ ।
କେଉଁ ବସ୍ତୁ ଦୃଶ୍ୟ ନ ହୁଅଇ ଧରାତଳେ
ତେବେ କୃଷ୍ଣ କ୍ରୋଧବହି ଗଦାହସ୍ତେନେଲେ
ସେ ମହା ଗଦା ବିଷମ କରିଲେ ପ୍ରହାର
ନିବାରଣ ହେଲା ବାଣ ଘୁଞ୍ଚେ ଅନ୍ଧକାର ।
ତାହାପରେ ଏକ ବାଣ ବିନ୍ଧିଲେ ଶ୍ରୀହରି
ତାରବାଣ ଗୋଟା କଲେ ଖଣ୍ଡ ଖଣ୍ଡ କରି
ଆଉ ଏକ ବାଣେ କାଟି ତାର ଶିରମଣି
ଆକାଶରୁ ପଡ଼େ ଦୁଷ୍ଟ ଧରାରେ ସେକ୍ଷଣି ।
ଆକାଶୁ ପଡ଼ି ଗଦାକୁ ହସ୍ତରେ ଧଇଲା
କୃଷ୍ଣଙ୍କ ସାଥିରେ ପୁଣି ଆସ୍ଫରେ ଲଢ଼ିଲା ।
ଚକ୍ର ଆକାରେ ଭ୍ରମଣ କରିଲେକ ଦୁହେଁ
ତାହା ଦେଖିଲା ମାନବେ ହୃଦ ସ୍ଥିର ନୁହେଁ
ତହୁଁ କୃଷ୍ଣ କରିବାକୁ ଶାଲ୍ୱକୁ ନିଧନ
ସୁଦର୍ଶନଚକ୍ର କଲେ ଶ୍ରୀକରେ ଧାରଣ ।
ଉଜ୍ଜଳ ପ୍ରଭା ଧରଇ ସେହି ଚକ୍ରବର
ଉଦୟ ଅଚଳେ ଯଥା ଉଦେ ଦିବାକର ।
ସେ ଚକ୍ରକୁ ଦାମୋଦର କଲେ ଯେ କ୍ଷେପଣ
କୁଣ୍ଡଳ ସହିତେ ମୁଣ୍ଡ ଛେଦିଲେ ତକ୍ଷଣ ।
ତା ମଥା ଛିଡ଼ି ପଡ଼ିଲା ଅବନୀ ଉପରେ
ଦେବ ପୁରନ୍ଦର ଯେହ୍ନେ ବଧେ ବୃତ୍ରାସୁରେ ।
ସେହିପରି ଶାଲ୍ୱକୁ ନାଶିଲେ ନାରାୟଣ
ହା ହା କାର କରିଣ ଯେ କାନ୍ଦିଲେ ସ୍ୱଜନ ।

ଆକାଶରେ ଦେବଗଣ ଆନନ୍ଦେ ମଗନ
କୃଷ୍ଣଙ୍କ ମସ୍ତକେ କଲେ ପୁଷ୍ପ ବରଷଣ ।
ଦୁନ୍ଦୁଭି ବାଜିଲା ସ୍ୱର୍ଗେ ଦେବେ ନୃତ୍ୟକଲେ
ଯକ୍ଷ ରକ୍ଷମାନେ ସର୍ବେ ହରଷେ ନାଚିଲେ ।
ଏଥିଅନ୍ତେ ଯା ଘଟିଲା ଶୁଣ ମୁନିଗଣ
ତାହାସବୁ ତୁମ୍ଭ ଆଗେ କରୁଛି ବଖାଣ ।
ଦନ୍ତବକ୍ର ନାମେଣ ଯେ ଏକ ଦୁରାଶୟ
ସଖାର ବଧରେ ହେଲା ଦୁଃଖିତ ହୃଦୟ ।
ଆଇଲା ଯୁଝିବା ପାଇଁ ଅତି କ୍ରୋଧଭରେ
ଏକ ପଦାତିକ ସଙ୍ଗେ ମିଳିଲା ସମରେ ।
ସେହି ମୂଢ଼ମତି ଶୂର ମରିବ ଯେସନ
ତୁମ୍ଭ ମାନଙ୍କ ଆଗେ ମୁଁ କରିବ ବର୍ଣ୍ଣନ ।
ଯେଉଁପରି ବିଦୂରଥ ହୋଇବ ବିନାଶ
ତାହାମଧ୍ୟ ଏଥି ମୁହିଁ କରିବ ପ୍ରକାଶ ।
ପରମବ୍ରହ୍ମ ଶ୍ରୀହରି ଦୁଷ୍ଟ ବିନାଶନ
ଦୁଷ୍ଟ ଦଳ ସନ୍ତ ପାଳ କରନ୍ତି ଶାସନ ।
ଭକତ ବତ୍ସଳ ହରି ଶରଣ ରକ୍ଷଣ
ଦୀନଜନ ବନ୍ଧୁ ପ୍ରଭୁ ଦୁରିତ ନାଶନ ।
ବ୍ୟାସରୂପେ ଯାହାଙ୍କର ଅଟେ ଅବତାର
ବର୍ଣ୍ଣିଛନ୍ତି ଅଷ୍ଟାଦଶ ପୁରାଣ ନିକର ।
ସେହି କୃଷ୍ଣ ଦ୍ୱୈପାୟନଙ୍କର କୃପାବଳେ
କହିବ ସକଳ କଥା ଏହି ମୁନିମେଳେ ।
ଏହାକହି ସୂତମୁନି ହୋଇଲେ ମଉନ
ଗୀତଛନ୍ଦେ ଭାବ ଲେଖେ କ୍ଷେତ୍ରବାସୀ ହୀନ ।

ଇତି ଶ୍ରୀ ବ୍ରହ୍ମପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଶାଲ୍ୱବଧ
କଥନଂ ନାମ ଚତୁଃ ଷଷ୍ଟିତମୋଽଧ୍ୟାୟଃ ।

—୫୦ଃ—

## ପଞ୍ଚଷଷ୍ଟିତମ ଅଧ୍ୟାୟ

### ଦନ୍ତବକ୍ର ବିଦୂରଥ ବଧ ବିବରଣ

ସୂତ ଉବାଚ

ଶୁଣ ଏକମନ ହୋଇ ସକଳ ତାପସେ
ପୂର୍ବର କଥା ପ୍ରକାଶ କରୁଛି ବିଶେଷେ ।
ଶାଲ୍ୱବୀର ସଂଗ୍ରାମରେ ହୋଇଲା ନିଧନ
ଶିଶୁପାଳ ପୌଣ୍ଡ୍ରକଙ୍କ ଦୁର୍ଗତି ସାଧନ ।
ଦନ୍ତବକ୍ର ତାହା ଜାଣି ବିସ୍ମୟ ମଣିଲା
କୃଷ୍ଣଙ୍କୁ ବଧିବ ବୋଲି ବେଗରେ ଧାଇଁଲା ।
ମହାବଳୀ ପରାକ୍ରମ ଅଟେ ସେହି ବୀର
ତାର ପାଦଭରେ ଧରା କମ୍ପେ ଥର ହର ।
ମହା ଭୟଙ୍କର କାୟ ଦେଖି ଲାଗେ ଭୟ
ଦେଖିଣ ତାହାଙ୍କୁ ପ୍ରଭୁ ଚଞ୍ଚଳ ହୃଦୟ ।
ତାହାକୁ ମାରିବା ପାଇଁ ଦେବକୀ କୁମର
ରଥରୁ ଡେଇଁ ପଡ଼ିଲେ ତକ୍ଷଣେ ଭୂମିର ।
ଗଦାହସ୍ତେ ଅତିଶୀଘ୍ର ଚଳିଲେ ଶ୍ରୀପତି
ସାଗର ତରଙ୍ଗ ଯେସନେ ବିକ୍ଷୋଭିତ ଅତି ।
ତହୁଁ ଅଧିକ ଚଞ୍ଚଳେ ଯାନ୍ତି ନାରାୟଣ
ଶ୍ରୀହସ୍ତେ ଅମୋଘ ଗଦା ଦିଶଇ ଶୋଭନ ।
କୃଷ୍ଣଙ୍କୁ ଦେଖିଣ କ୍ରୋଧେ ଦନ୍ତବକ୍ର କହେ
ଆଜ ମୁଁ ପାଇଲି ଦେଖା ତୋତେ ସୁସମୟେ
ତୋ ସଙ୍ଗରେ ଭାଗ୍ୟବଳେ ହୋଇଲା ଦର୍ଶନ
ମୋ ପରମ ଶତ୍ରୁ ତୁହି ଅଟୁ ଜନାର୍ଦ୍ଦନ ।
ଅତି ଦୁରାଚାର ମୋର ମିତ୍ରଘାତୀ ତୁହି
ଗଦା ଘାତେ ତୋତେ ଯମପୁର ପେଶିବଇଁ ।
ତୋ ରକ୍ତରେ ବନ୍ଧୁଗଣ କରିବ ତର୍ପଣ
ତେବେ ସିନା ମୋର କ୍ରୋଧ ହେବ ନିବାରଣ
ଏହିପରି କଟୁଭାଷା କହି ବାରମ୍ବାର
କୃଷ୍ଣଙ୍କ ମସ୍ତକେ କଲା ଗଦାରେ ପ୍ରହାର ।
ଗଦା ପ୍ରହାର କରଇ ବିଷମ ଗର୍ଜ୍ଜନ
ସେ ଗଦା ଆଘାତେ କୃଷ୍ଣ ଅଚଳ ତକ୍ଷଣ ।
ଗିରି ଶୃଙ୍ଗେ ହୁଏ ଯେସନେ ବଜ୍ର ନିପାତନ
ସେହି ମତେ ସ୍ଥିରଭାବେ ଥାନ୍ତି ଜନାର୍ଦ୍ଦନ ।
ଗଦାଘାତେ ମହାକ୍ରୋଧ ଜନ୍ମିଲା ଅନ୍ତରେ
ଆପଣା ଗଦାକୁ କୃଷ୍ଣ ଧଇଲେ ହସ୍ତରେ ।
ସେ ଗଦା ପ୍ରହାର ବୁଲାଇଲେ ଘନ ଘନ
ବକ୍ଷରେ ମାଇଲେ ତାଙ୍କ ନିଠାଇ ବହନ ।
ରକ୍ତବାନ୍ତି କରି ଦୁଷ୍ଟ ଦନ୍ତବକ୍ର ହୀନ
ଛଟପଟ ତଳେ ପଡ଼ି ତେଜିଲା ଜୀବନ ।
ହାତ ଗୋଡ଼ ଆଦିକରି ସର୍ବାଙ୍ଗ ତାହାର
ବିଦୀର୍ଣ୍ଣ ହୋଇଣ ତେଜ ହୋଇଲା ବାହାର
ସେହି ତେଜ ଶ୍ରୀହରିଙ୍କ ଅଙ୍ଗରେ ମିଶିଲା
ତା ଦେଖି ସବୁରି ମନେ ବିସ୍ମୟ ଜନ୍ମିଲା ।

ଏହି ରୂପେ ଯଦୁପତି ଦୁଷ୍ଟଙ୍କୁ ନାଶିଲେ
ସିଦ୍ଧ ସୁରେ ଆନନ୍ଦିତ ହେଲେ ସ୍ୱର୍ଗ ଆଳେ ।
ଗନ୍ଧର୍ବ କିନ୍ନର ଆଉ ଯେତେ ବିଦ୍ୟାଧର
ଯକ୍ଷ ରକ୍ଷ ଋଷିଗଣ ଆନନ୍ଦ ଅପାର ।
ଜୟ ଜୟ କୃଷ୍ଣ ବୋଲି ଉଚ୍ଚେ ଧ୍ୱନି କଲେ
ଆନନ୍ଦ ମାନସେ କୃଷ୍ଣ ଗୁଣ ଘୋଷି ହେଲେ
ଏହିରୂପେ ପରଂବ୍ରହ୍ମ ଦେବ ଯଦୁପତି
ହେଳାରେ ହେଲେ ସକଳ ଦୁଷ୍ଟଙ୍କୁ ଦୁର୍ଗତି
ସେ ପାପୀମାନଙ୍କୁ ବିନାଶିବା ଅର୍ଥେ
ସାଧୁଜନ ମାନଙ୍କୁ ସେ ତାରିବା ନିମନ୍ତେ ।
ଅବନୀ ମଣ୍ଡଳେ ଧର୍ମ ସ୍ଥାପିବାର ପାଇଁ
ଯୁଗେ ଯୁଗେ ଅବତୀର୍ଣ୍ଣ ହୋନ୍ତି ଭବଗ୍ରାହୀ ।
ଶାଲ୍ୱ, ଦନ୍ତବକ୍ର, ବିଦୁରଥ ଯହୁଁ ମଲେ
ଦ୍ୱାରକାବାସୀଏ ଉଦବେଗ ଘୁଞ୍ଚାଇଲେ ।
ଯାଦବ ଯୋଦ୍ଧା ସକଳେ ରଣ ବେଶ ତେଜି
ମହା ସୁଖରେ ରହିଲେ ଶାନ୍ତ ଭାବ ଭଜି ।
ତଦନ୍ତେଣ ବଳରାମ ତୀର୍ଥ ଯାତ୍ରା କଲେ
ଅବହେଳେ ସେହି କାଳେ ବଲ୍ୱଳ ବଧିଲେ
ଏମନ୍ତେ ସୂତ ମହର୍ଷି ପୁରାଣ ବକତା
ସଂକ୍ଷେପେ କହିଲେ ବଳଦେବ ତୀର୍ଥ କଥା ।
ଶ୍ରବଣ କରି ଶୌନକ ଆଦି ମୁନିଗଣ
ଆନନ୍ଦ ସାଗରେ ସର୍ବେ ହୋଇଲେ ମଗନ
ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡ ଯେ ପ୍ରକାଶ
ଦୁର୍ଗାଙ୍କ ଚରଣ କରେ କ୍ଷେତ୍ରବାସୀ ଆଶ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଦନ୍ତବକ୍ର,
ବିଦୁରଥ ବଧ କଥନଂ ନାମ
ପଞ୍ଚଷଷ୍ଟିତମୋଽଧ୍ୟାୟ ।

—•—

## ୬୬ ଷଷ୍ଟିତମ ଅଧ୍ୟାୟ
## ସୁଦାମା ଚରିତ ବର୍ଣ୍ଣନ

ଶୌନକ ଉବାଚ

ସୂତ ମହର୍ଷି ପୁଚ୍ଛନ୍ତି ଶୁନକ ତନୟ
କହ ପୌରାଣିକ ଏବେ କଥା ସୁଧାମୟ ।
ପରମ ବ୍ରହ୍ମ କୃଷ୍ଣଙ୍କ କୀର୍ତ୍ତି ମନୋହର
ଶ୍ରବଣେ ମାନସ ତୃପ୍ତ ହୁଅଇ ସତ୍ୱର ।
କୃଷ୍ଣ କଥାମୃତ ଆମ୍ଭେ ଯେତେ କରୁଁ ପାନ
ପୁନଃ ପୁନଃ ବଳବତୀ ଇଚ୍ଛା ହୁଏ ଜାଣ ।
ଯେଉଁ ବାକ୍ୟେ କୃଷ୍ଣଗୁଣ ବର୍ଣ୍ଣିତ ସଦାହିଁ
ତାହାହିଁ ପ୍ରକୃତ ବାକ୍ୟେ ଏଥି ଭୁଲନାହିଁ ।
ଯେଉଁ ହସ୍ତେ କୃଷ୍ଣ କର୍ମ ହୁଏ ସମ୍ପାଦିତ
ତାହାହିଁ ପ୍ରକୃତ ହସ୍ତ ସଂଶୟ ନାହିଁତ ।
ଯେଉଁ ମନ କୃଷ୍ଣେ ସଦା କରଇ ସ୍ମରଣ
ତାହାର ପ୍ରକୃତମନ ଜାଣନ୍ତି ସୁଜନ ।
କୃଷ୍ଣ କଥା ଯେଉଁ କର୍ଣ୍ଣେ ଶୁଣେ ନିରନ୍ତର
ପ୍ରକୃତ କର୍ଣ୍ଣ ତାହାର ଶୁଣ ଋଷିବର ।
ଶ୍ରୀକୃଷ୍ଣଙ୍କର ଚରଣେ ଯେ ଶିର ନମଇଁ
ପ୍ରକୃତ ଶିର ତାହାର ଶୁଣ ମନଦେଇ ।
କୃଷ୍ଣ ରୂପ ଯେଉଁ ଚକ୍ଷୁ କରଇ ଦର୍ଶନ
ସେହି ଯେ ପ୍ରକୃତ ଚକ୍ଷୁ କହନ୍ତି ସୁଜନ ।
ଏମନ୍ତ କହନ୍ତେ ମୁନି ଶୌନକ ତକ୍ଷଣ
କୃଷ୍ଣପଦେ ମଗ୍ନମତି ଶୁଣ ତପୋଧନ ।
କୃଷ୍ଣ ପ୍ରେମେ ମତ୍ତ ହୋଇ ଯେ ପୁରାଣ ବକ୍ତା
ମୁନି ମଣ୍ଡଳେ କହନ୍ତି କୃଷ୍ଣ ଗୁଣ ଗାଥା ।

ସୂତ ଉବାଚ

ଶୁଣ ଆହେ ଋଷିଗଣ ଅପୂର୍ବ ଭାରତୀ
ଅତ୍ୟନ୍ତ ପବିତ୍ର ଅଟେ କୃଷ୍ଣଲୀଳା ଗୀତି ।
କୃଷ୍ଣଙ୍କର ଏକ ବାଲ୍ୟ କାଳ ସଖାଥିଲା
ଜାତିରେ ବ୍ରାହ୍ମଣ କୃଷ୍ଣେ ମନ ବିକିଥିଲା ।
ବିଶେଷରେ ଅଟେ ତାର କୃଷ୍ଣରେ ଭକତି
କୃଷ୍ଣଙ୍କ ସଙ୍ଗରେ ତାର ଅକପଟ ପ୍ରୀତି ।
ପରମ ଧାର୍ମିକ ସେହୁ ବେଦଜ୍ଞ ବ୍ରାହ୍ମଣ
ଜିତେନ୍ଦ୍ରିୟ ଶାନ୍ତମତି କାମ ଗନ୍ଧ ଶୂନ୍ୟ ।
ସ୍ୱଧର୍ମେ ତାହାର ମତି ଗୃହାଶ୍ରମେ ଥାଇ
ସୁଦାମା ତାହାର ନାମ ଶୁଣ ମନଦେଇ ।
ବେଳକୁ ବେଳ ସେ ବଡ଼ ଦରିଦ୍ର ହୋଇଲା
ଭିକ୍ଷା ମାଗି ତାର ପେଟ ସର୍ବଦା ପୋଷିଲା ।
ପତିବ୍ରତା ପତ୍ନୀ ତାର ପରମା ସୁନ୍ଦରୀ
ସୁମତୀ ତାହାର ନାମ ଶୁଣ ତପସ୍ୱୀ ।
ପ୍ରତିଦିନ ଭିକ୍ଷାକରି ବିପ୍ର ଆସେ ଘରେ
ସୁଖେ ରହିଥାନ୍ତି ସେହୁ ଆନନ୍ଦ ମନରେ ।

ଏହିରୂପେ ଦୁଇପ୍ରାଣୀ ଭିକ୍ଷା ଅନ୍ନ ଖାନ୍ତି
ଉଦର ପୂରାଇ ସେହୁ ଆହାର ନ ପାନ୍ତି ।
ଏକଦିନେ ସୁଦାମାକୁ ତା ନାରୀ କହିଲା
ସହି ନପାରେ କାନ୍ତ ମୁଁ କେଡ଼େ ପେଟଜ୍ୱାଳା ।
କ୍ଷୁଧାନଳେ ଦବାନଳି ଜଳଇ ଉଦର
କେତେ କଲବଲ ହେବ କହ ପ୍ରାଣେଶ୍ୱର ।
ଏକ ଉପାୟ କହୁଛି ଶୁଣ ମହାମତି
ତୁମ୍ଭର ଯେ ବାଲ୍ୟସଖା ଅଟନ୍ତି ଶ୍ରୀପତି ।
ପରମ ଦୟାଳୁ ସେହି ଶୁଣିଛୁ କର୍ଣ୍ଣରେ
ଯଦୁକୁଳେ ଶ୍ରେଷ୍ଠ ଖ୍ୟାତ ଅଟନ୍ତି ସଭିଁରେ ।
ସକଳେ ଜାଣନ୍ତି ସେହୁ ଦୟାରବତାର
ବଡ଼ ବଡ଼ ରାଜାମାନେ ଅଧୀନ ତାଙ୍କର ।
ଏବେ ଯେ ନିବାସ ତାଙ୍କ ଅଟେ ଦ୍ୱାରାବତୀ
ଥରେ ଯେ ତାହାଙ୍କ ପାଶେ ଯାଅ ପ୍ରାଣପତି
ତୁମ୍ଭଙ୍କୁ ଦେଖିଲେ ପ୍ରଭୁ ସୁଦୟା କରିବେ
ସମାଦର କରି ବହୁ ଧନ ଯାଚି ଦେବେ ।
ଯାହାଙ୍କ ଚରଣେ ସଦା ମନ ଥାଏ ଯାର
ଦାରୁଣ ବିପତ୍ତି ପାଶେ ନ ଆସେ ତାଙ୍କର ।
ଭକ୍ତ ଭାବେ ତାଙ୍କ ପାଦେ ନ ଆସେ ଶରଣ
ଆପଣା ପରାଣ ତାଙ୍କୁ ଯେ କରେ ଅର୍ପଣ ।
ନ ଲଭେ ଦୁଃଖ ତାହାଙ୍କୁ ଯେ କରେ ଦର୍ଶନ
ସିଦ୍ଧି ଦାତା କଳ୍ପତରୁ ପ୍ରଭୁ ଜନାର୍ଦ୍ଦନ ।
ମଳିନତା ନ ରହଇ ଶୁଦ୍ଧ ହୁଏ ଚିତ୍ତ
ଥରେ ତାହାଙ୍କ ନିକଟେ ଯାଅ ଆହେ ନାଥ
ସୁମିଷ୍ଟ ବଚନ ଶୁଣି ଭାବେ ବିପ୍ରବର
ହୋଇବ ପରମ ଲାଭ ଦର୍ଶନେ ତାଙ୍କର ।
ଏମନ୍ତେ ସୁଦାମା ଦ୍ୱିଜ ଭାବେ ମନେ ମନେ
ପ୍ରିୟାକୁ କହଇ ଅତି ମଧୁର ବଚନେ ।
ତେବେ ଭେଟିଦ୍ରବ୍ୟ କିଛି ମୋତେ ଦିଅ ବାଳୀ
ନୋହିଲେ ତାହାଙ୍କ ପାଶେ କେହ୍ନେ ଯିବି ଖାଲି
ତୁଚ୍ଛା ହାତେ ମୁହିଁ ଯେବେ ଯିବଇଁ ଦ୍ୱାରକା
ଦେଖିଣ ମୋତେ ବୋଲିବେ କିସ ମୋରସଖା,
ଯଦି କିଛି ଥାଏ ଗୋଟି ଦିଅ ମୋର ହାତେ
ବନ୍ଧୁଙ୍କୁ ମୁଁ ଭେଟାଇବି ତାଦେଇ ନିଶ୍ଚିନ୍ତେ
ସ୍ୱାମୀ କଥା ଶୁଣି ସତୀ ଚଳିଲା ବହନ
ଯଦ୍ୱୋଶୀଙ୍କ ଘରୁ ଭିକ୍ଷା କଲା ସେହିକ୍ଷଣ ।

ସ୍ୱରିମୁଠି ଚୂଡ଼ା ଖୁଦ ମାଗି ସେ ଆଣିଲା
ଯତନ କରି ଭ୍ରିଜଣ କନାରେ ବାନ୍ଧିଲା ।
ତାହାଘେନି ଦ୍ୱିଜବର କରିଲା ଗମନ
ଭାବି ଭାବି ପଥେ ଯାଏ ଦ୍ୱାରକା ଭୁବନ ।
ଯେତେକ ପାଇବି ମୁହିଁ କୃଷ୍ଣ ଦରଶନେ
ମୂଢ଼ମତି ସହଜେତ ଦରିଦ୍ର ବ୍ରାହ୍ମଣ ।
ଯେତେକ ମୋ ପ୍ରିୟ ସଖା କରିବ ଆଦର
ଘୁଞ୍ଚାଇବେ ସତେ ମୋର ଦୁଃଖ ଦଶା ଘୋର
ଏହିପରି ଭାଳି ଭାଳି ପଥ ବାହିଗଲା
ଯାଇ ସେ ଦ୍ୱାରକା ନଗ୍ରେ ପ୍ରବେଶ ହୋଇଲା
ପୁରମଧ୍ୟେ ମିଳିଲା ସେ ଅତି ହର୍ଷମନେ
ବାରଣ ନକଲେ ଦ୍ୱିଜ ଦେଖି ଦୂତମାନେ ।
ସୁଦାମା ଦେଖିଲା ପୁର ଯତନେ ନିର୍ମିତ
ରୁକ୍ମିଣୀଙ୍କ ଆବାସରେ ମିଳିଲା ତୁରିତ ।
ମନ୍ଦିର ଭିତରେ ପଶି ଆନନ୍ଦେ ମଜ୍ଜିଲା
କୃଷ୍ଣଙ୍କୁ ଦେଖି ସୁଦାମା ଉନମତ୍ତ ହେଲା ।
ଦୂରରୁ ସଖାକୁ ଚାହିଁଦେଲେ ଜନାର୍ଦ୍ଦନ
ରୁକ୍ମିଣୀଙ୍କ ସଙ୍ଗେ ପଶା ଖେଳୁଥିଲେ ଜାଣ ।
ବିଳାସ ଭୁବନୁ କୃଷ୍ଣ ସେକ୍ଷଣି ଉଠିଲେ
ଦ୍ୱାର ନିକଟକୁ ବେଗ ହୋଇ ଚାଲିଗଲେ ।
ସଖା ବୋଲି ଡାକି ବିପ୍ରେ କଲେ ଆଲିଙ୍ଗନ
ହାତ ଧରି ଘେନିଗଲେ କରି ସନମାନ ।
ରତ୍ନପୀଠେ ବିପ୍ରପାଦ ସ୍ୱହସ୍ତେ ଧୋଇଲେ
ପତ୍ନୀ ସହିତେ ସେ ଜଳ ଅଙ୍ଗରେ ସିଞ୍ଚିଲେ ।
ରତନ ଆସନେ କୃଷ୍ଣ ବସାନ୍ତି ବ୍ରାହ୍ମଣେ
ପୁଲକିତ ବିପ୍ର ତନୁ କୃଷ୍ଣଙ୍କ ସ୍ପର୍ଶନେ ।
ଏକ ଚିତ୍ତେ କୃଷ୍ଣରୂପ କରେ ସେ ଦର୍ଶନ
ଯତନେ ପଲଙ୍କେ ବସାଇଲେ ଭଗବାନ ।
ଆପଣେ ଶ୍ରୀହରି ସଖା ପାଦ ମଞ୍ଜାଳିଲେ
ସର୍ବାଙ୍ଗେ ତାହାର ଗନ୍ଧ ଚନ୍ଦନ ଲେପିଲେ ।
ତଦନ୍ତେ ପୂଜିଲେ କୃଷ୍ଣ ନାନା ଉପଚାରେ
କୁଙ୍କୁମ ଅଗୁରୁ ବୋଳି ଦେଲେ ତା ଅଙ୍ଗରେ
ଏହିରୂପେ ଦ୍ୱିଜବର କଲେ ସେ ସେବନ
କର୍ପୂର ବଡ଼ିଆ ମୁଖେ ଦେଲେ ଜନାର୍ଦ୍ଦନ ।
ଅତି କ୍ଷୀଣ ଦେହ ତାର ଦେଖି ଚକ୍ରଧର
ନୟନ ଯୁଗଳୁ ଅଶ୍ରୁ ବହେ ଧାର ଧାର ।

ମଧୁର ବଚନେ ଧୀରେ କଲେ ସମ୍ଭାଷଣ
ପଚ୍ଛରି ଲଗିଲେ ଦୁଃଖ ସୁଖ କଥାମାନ ।
ପାଟରାଣୀ ରୁକ୍ମିଣୀ ଯେ ଧରିଣ ବଞ୍ଜଣୀ
ସଧୀରେ ବିଞ୍ଚନ୍ତି ହୋଇ ମାନସ ଫୁଲଣି ।
ଦରିଦ୍ର ବିପ୍ର ସୁଦାମା ଅସ୍ଥି ଚର୍ମ ଦେହ
ମାତ୍ର ପୂର୍ବ କୃତ ପୁଣ୍ୟ ଥିଲା ତା ସଞ୍ଚୟ ।
ତେଣୁ ସେ ତ୍ରୈଲୋକ୍ୟନାଥ ପ୍ରଭୁ ନାରାୟଣ
ରତ୍ନ ଆସନେ ବସାନ୍ତି କରି ସନମାନ ।
ସୁଦାମାର ଭାଗ୍ୟ କି କହିବି ହେ ଶୌନକ
କୃଷ୍ଣ ଦରଶନେ ପାଶୋରିଲା ଦୁଃଖପାକ ।
ତାହାପରେ ଦାମୋଦର ସହାସେ କହିଲେ
ଗୁରୁକୁଳ କଥାମାନ ମିତ୍ରେ ପଚ୍ଛରିଲେ ।
କହ ସଖା ମୋ ଆଗରେ ପୂର୍ବର କଥନ
ଗୁରୁ ଗୃହରୁ ଘରକୁ କରିଣ ଗମନ ।
ବିଭା ହେଲ ଯେ ନାରୀକି କିବା ରୂପ ତାର
କହ ପରିବାରଙ୍କର ଶୁଭ ସମାଚାର ।
ମୁହିଁ ମନେ ପଡେ ଟିକି ଥାଇ ସ୍ୱଗୃହରେ
ଗୁରୁପତ୍ନୀ ବାକ୍ୟ ଅଛିଟିକି ହେ ମନରେ ।
ଏକଦିନ ଗୁରୁପତ୍ନୀ ଆମ୍ଭ ଦୁଇଜଣେ
କହିଲେ ଯେ କୁଶ, କାଷ୍ଠ ସଂଗ୍ରହ କାରଣେ ।
ତାହାଙ୍କ ବଚନ ପାଳି ଆମ୍ଭେ ଦୁଇଜଣ
ଘୋର ବନେ କରିଲୁଁ ଯେ କାଳେ ଗମନ ।
କାଠ ହାଣି ଆଣିବାର ସମୟରେ ସଖା
ପ୍ରବଳ ଝଡ଼ ପବନ ଆସି ଦେଲା ଦେଖା ।
ଭୀଷଣ ବରଷା ହେଲା ହୋଇ ଘନ ଘନ
ତହିଁକି ଯେ ଭୟଙ୍କର ମେଘ ଗରଜନ ।
ସେତେବେଳେ ଆମ୍ଭେ ଦୁହେଁ ଥାଇ ବୃକ୍ଷତଳେ
ଝଡ଼ ବର୍ଷା ସହିଲୁଁ ଜୀବନ ବିକଳେ ।
କ୍ରମେ କ୍ରମେ ହେଲା ସଖା ଦିବା ଅବସାନ
ମେଘ ଅନ୍ଧକାରେ ଦିଗଦିଗ ଆଚ୍ଛାଦନ ।
ସନ୍ଧ୍ୟାକାଳ ପ୍ରବେଶନ୍ତେ ଘୋଟିଲା ଅନ୍ଧାର
ଦେଖାଗଲା ନାହିଁ ଦିଗ ବିଦିଗ ଆବର ।
ସେହିବନେ ଆମେ ଦୁହେଁ ହେଲୁଁ ବ୍ୟାକୁଳ
ହାତ ଧରାଧରି ହୋଇ ଭ୍ରମଣି କେବଳ ।
ଘୋର ଅନ୍ଧକାରେ ନ ଦିଶିଲା ବନ ପଥ
ହୋଇଲା ଅନେକ ରାତ୍ରି ସ୍ଥିର ନୁହେଁ ଚିତ୍ତ ।
ତହୁଁ ମୁନି ସାନ୍ଦୀପନି କଲେ ଅନ୍ୱେଷଣ
ଆମ୍ଭ ଦୁହିଁଙ୍କର ନ ଦେଖିଲେ ଚିହ୍ନ ବର୍ଣ୍ଣ ।
ଡାକ ଛାଡ଼ିଲେ ଯେ ଗୁରୁ କରି ଉଚ୍ଚ ସ୍ୱର
ବନ ମଧ୍ୟରୁ ପାଇଲେ ଆମ୍ଭର ଉତ୍ତର ।
ଶବ୍ଦ ଅନୁସରି ତହୁଁ ଆମ୍ଭେ ଦୁଇ ମିତ
ମୁନିଙ୍କ ପାଖକୁ ଗତି କଲୁ ଯେ ତ୍ୱରିତ ।
ବିହିତ ଯେ ଆଶୀର୍ବାଦ କରି ଗୁରୁଦେବ
ଆମ୍ଭ ଦୁହିଙ୍କୁ ସେ ବର ଦେଲେ ଛାଡ଼ି କ୍ଷୋଭ
ବୋଇଲେ ତୁମ୍ଭେ ଦୁହେଁ ମୋ ଶିଷ୍ୟଙ୍କପ୍ରଧାନ
ଏକାନ୍ତ ମନେ କରୁଛ ଗୁରୁଙ୍କୁ ପୂଜନ ।
ମୋହର ନିମନ୍ତେ ଯାଇ ଦୁର୍ଗମ କାନନେ
ବିଷମ କ୍ଳେଶ ଲଭିଲ ଘୋର ବରଷଣେ ।
ତୁମ୍ଭେ ଦୁଇ ଶିଷ୍ୟ ଅଟ ବଡ଼ ଶୁଦ୍ଧମତି
ବନରେ ଲଭିଲ ଯାହା ଦାରୁଣ ଦୁର୍ଗତି ।
ଏଣୁ ତୁମ୍ଭେ ଦୁହେଁ ଶୁଣ ବଚନ ମୋହର
ମନରଥ ପୂର୍ଣ୍ଣ ହେବ ତୁମ୍ଭ ଦୁହିଁଙ୍କର ।
ଚଉଷଠି ବିଦ୍ୟା ତୁମ୍ଭେ ସୁଲଭେ ଶିଖିବ
ମୋହର ବଚନ ମାତ୍ର ଅନ୍ୟଥା ନୋହିବ ।
ଯେ ଯାହା ଗୃହକୁ ଯାଅ ବଚନେ ମୋହର
ସେହି କଥା ଭାବ ତୁମ୍ଭେ ମନରେ ତୁମ୍ଭର ।
ସେ ସବୁ ଘଟଣା ଗୁରୁ ଗୃହେ ଘଟିଅଛି
ହେ ସଖା ସବୁକି ତୁମ୍ଭ ମନରେ ରହିଛି ।
ସୁଦାମା ବୋଇଲା ସଖା କି କହିବ ଆଉ
ତୁମ୍ଭେତ ଜଗତନାଥ ବଳିଆର ବାହୁ ।
ତୁମ୍ଭେ ସତ୍ୟ ସନାତନ ଆହେ ଶ୍ରୀନିବାସ
ଲୀଳା ଲାଗି କରି ସିନା ଗୁରୁଗୃହେ ବାସ ।
ଏଥୁଅନନ୍ତରେ ଶୁଣ ଅପୂର୍ବ କଥନ
ମିତ୍ରଙ୍କ ସଙ୍ଗରେ ପ୍ରଭୁ କମଳ ଲୋଚନ ।
ପାଟରାଣୀ ତୁଲେ କେତେ କରି ପରିହାସ
ବ୍ରାହ୍ମଣଙ୍କୁ ନିରେଖିଲେ ହୋଇଣ ଉଲ୍ଲାସ ।
ଦରହସା ମୁଖେ କୃଷ୍ଣ ସଖାକୁ କହନ୍ତି
ଶୁଣ ପ୍ରିୟସଖା ମୋର କହିବା ଭାରତୀ ।
ମୋ ନିମନ୍ତେ ସଖା ତୁମ୍ଭେ କି ଦ୍ରବ୍ୟ ଆଣିଛ
କାହିଁ ପାଇଁ ତାହା ମୋତେ ଯାଚି ନ ଦେଉଛ ।
କଉତୁକ କଥାମାନ ଶୁଣ ମୁନିବର
ଯେଉଁ ଖୁଦ ନେଇଥିଲା ବ୍ରାହ୍ମଣ ସଙ୍ଗର ।

ଲଜ୍ୟାରେ ସୁଦାମା ତାହା କାଖରେ ଯାକଛି ।
ପ୍ରଭୁଙ୍କ ସମ୍ପଦ ଦେଖି ସେହୁ ନ ଦେଉଛି ।
ତେଣୁ ଲଜ୍ୟାଭରେ ସେହି ସୁଦାମା ବ୍ରାହ୍ମଣ
କାଖରୁ ପୁଟୁଳି ସେ ନ କାଢ଼ିଲା ବଦନ ।
କୃଷ୍ଣଙ୍କ ଧନ ସମ୍ପଦ କରି ଅନୁମାନ
ମନେ ମନେ ଦ୍ୱିଜବର କରଇ ଚିନ୍ତନ ।
ଚୂଡ଼ା ଖୁଦ ପୁଞ୍ଜାକ ବା ଦେବଇଁ କେମନ୍ତେ
ଭାବି ଭାବି ବିପ୍ର ତାହା ରହିଛି ଗୁପତେ ।
ଛିଣ୍ଡାକନା ପୁଟୁଳି ତା କାଖ ମଧ୍ୟେ ଥିଲା
ଅନ୍ତରେ ଜାଣିଲେ ତାହା ପ୍ରଭୁ ନନ୍ଦବଳା ।
ଭକତ ବତ୍ସଳ ହରି କରୁଣା ସାଗର
ହସି ହସି ବ୍ରାହ୍ମଣଙ୍କୁ କହିଲେକ ଗୀର ।
ମୋ ଲଗି କେବଣ ଦ୍ରବ୍ୟ ଶ୍ରଦ୍ଧାରେ ଆଣିଛ
କିସ ମନେ ଭାବି ତାହା ଲୁଚାଇ ରଖିଛ ।
ଭକ୍ତିଭାବେ ଯେଉଁ ଭକ୍ତ ଯାହା ମୋତେ ଦିଏ
ତହିଁରେ ମୁହିଁ ଅତ୍ୟନ୍ତ ଆନନ୍ଦିତ ହୁଏ ।
ଭକ୍ତି ଚିତ୍ତେ ଭକ୍ତ ଯାହା ଅର୍ପଣ କରଇ
ଆନନ୍ଦ ମନରେ ମୁହିଁ ଭକ୍ଷଣ କରଇ ।
କିଞ୍ଚିତ ଦ୍ରବ୍ୟ ଭକ୍ତର ମଣେ ମୁଁ ଅପାର
ଅଭକ୍ତ ଦ୍ରବ୍ୟକୁ ସଦା କରେ ପରିହାର ।
ଏମନ୍ତେ ହସି କହିଲେ ଯହୁଁ ଭଗବାନ
ଅଧୋମୁଖେ ରହିଲେକ ସେ ଦ୍ୱିଜ ତକ୍ଷଣ ।
ସବୁ ଜାଣି ପାରିଲେ ସେ ଦେବକୀର ବଳା
ଖୁଦ ଭଜାକୁ ସୁଦାମା ଦେଇ ନ ପାରିଲା ।
ସର୍ବ ଅନ୍ତର୍ଯାମୀ କୃଷ୍ଣ ସର୍ବ ଦେବ ସାର
ଭାବିଲେ ସେ ଭକ୍ତ କୃପା କରିବି ବିସ୍ତାର ।
ଧନ ଲୋଭେ ଆସିଛି ଏ ଦରିଦ୍ର ବ୍ରାହ୍ମଣ
ଅପାର ଧନ ଏହାକୁ ଦେବଇଁ ମୁଁ ପୁଣ ।
ଦୁର୍ଲ୍ଲଭ ମଦ ଏ ଦ୍ୱିଜେ କରିବି ଅର୍ପଣ
ଚିତ୍ତେ ଭାବି ପ୍ରଭୁ ଅନ୍ତର୍ଯାମୀ ନାରାୟଣ ।
ଖୁଦ ପୁଟୁଳି ଯେ ଥିଲା ସୁଦାମା କାଖରେ
ହସି ହସି ଯଦୁପତି ବ୍ରାହ୍ମଣେ କହିଲେ ।
ଆହେ ସଖା କି ପଦାର୍ଥ ଯାକିଛ କାଖରେ
ନଦେଇ କପଟ କିମ୍ପା କରୁଛ ମୋ ପରେ ।
କୁହ କୁହ କି ଦରବ ଶ୍ରଦ୍ଧାରେ ଆଣିଛ
ଏତେ ବୋଲି କଉତୁକେ ନନ୍ଦଙ୍କର ବତ୍ସ ।

ଖୁଦ ପୁଟୁଳି କାଖରୁ ଛଡ଼ାଇ ନେଲେ
କରିଆ କନା ଖଣ୍ଡିକୁ ଫିଟାଇ ଦେଖିଲେ ।
ଦରଭଜା ଖଇ ଚୂଡ଼ା ଖୁଦ ଗୁରିମୁଠି
ତା ଦେଖି ବ୍ରାହ୍ମଣେ କୃଷ୍ଣ କହିଲେ କୁହାଟି ।
ବଡ଼ ପ୍ରିୟ ପଦାର୍ଥ ଏ ଅଟଇ ମୋହର
ଏତେବୋଲି ମୁଠିଏ ଭକ୍ଷିଲେ ଚକ୍ରଧର ।
ପୁଣି ଏକ ମୁଠା କୃଷ୍ଣ ଖାଇବା ନିମନ୍ତେ
ଖୁଦ ପୁଟୁଳିରେ ନିଜ ହାତକୁ ପୂରାନ୍ତେ ।
ତତକ୍ଷଣେ ହାତ ଧରି କମଳା ବଦନ
ବୋଇଲେ ହେ ପ୍ରଭୁ ଆଉ ନ କର ଭକ୍ଷଣ
ବିନା ମୂଲ୍ୟେ ବନ୍ଧା ମୁଁ ରହିବି ଦ୍ୱିଜଘରେ
ସତ୍ୟ କହୁଅଛି ନାଥ ତୁମ୍ଭର ଆଗରେ ।
ଲକ୍ଷ୍ମୀଙ୍କ ବଚନେ ତହୁଁ କମଳ ଲୋଚନ
ସେ ଚୂଡ଼ା ଖୁଦକୁ ଆଉ ନ କଲେ ଭକ୍ଷଣ ।
ଅତ୍ୟନ୍ତ ଆଦର କରି ଦେବ ନାରାୟଣ
ବିଧି ମତେ କରାଇଲେ ବିପ୍ରକୁ ଭୋଜନ ।
ସେ ରଜନୀ ଦ୍ୱାରକାରେ ସୁଖରେ ବଞ୍ଚିଲା
ପ୍ରଭାତ ହୁଅନ୍ତେ ବିପ୍ର ନିଜ ଗୃହେ ଗଲା ।
ମେଲାଣି ହୋଇ ସୁଦାମା କୃଷ୍ଣ ନିକଟରେ
ଚିନ୍ତାର୍ଥୀ ମାନସେ ପଥେ ଯାଏ ଧୀରେ ଧୀରେ
ମନେ ମନେ ଭାବେ ସେହି ସୁଦାମା ବ୍ରାହ୍ମଣ
କୃଷ୍ଣ ପାଶେ ଆସିଥିଲି ପାଇବାକୁ ଧନ ।
ମାତ୍ର ସଖା କୃଷ୍ଣ ମୋର ଦାରିଦ୍ର୍ୟ ଦେଖିଲେ
ତେଣୁ କିଛି ଧନ ମୋତେ ଯାଚି ତ ନଦେଲେ
ପୁଣି ନିଜ ମନେ ମନେ ଭାବେ ଦ୍ୱିଜବର
ଧନ ଯେ ମାଗିଲି ମୁହିଁ ନିକଟେ ତାଙ୍କର ।
ସେ ହେତୁ ନ ଦେଲେ ଧନ ଦ୍ୱାରକାବିହାରୀ
ପଥେ ଚାଲିଯାଏ ଦ୍ୱିଜ ଚିନ୍ତି ଏହିପରି ।
ତଦନ୍ତେ ବ୍ରାହ୍ମଣ ହେଲା ଚିନ୍ତାରେ ମଗନ
ପୁଣି ହେଲା ଆଉ ଏକ ଅପୂର୍ବ ଘଟନ ।
କି ଆଶ୍ଚର୍ଯ୍ୟ ଅଟେ ସେହି ଲୀଳା ବିଧାତାର
ହେଲେ ମୋତେ ଦାନ ଦେଲେ କି ଭାଗ୍ୟ ମୋହର
ଦରିଦ୍ର ଭାବି ସେ ମୋତେ ଘୃଣା ତ ନକଲେ
ଆପଣା ଶ୍ରୀଭୁଜେ ଭିଡ଼ି ଆଲିଙ୍ଗନ କଲେ ।
ସେ ଯେ ପ୍ରଭୁ ନାରାୟଣ ଜଗତର ସାର
ମୁହିଁ ନରାଧମ ଅଟେ ପାପୀ ଦୁରାଚାର ।

ବ୍ରହ୍ମାଣ୍ଡର ନାଥ ସେହ୍ନ ଦୟାମୟ ହରି
ମୋତେ କୋଳକଲେ ସ୍ନେହେ ଅନୁଗ୍ରହକରି
ଅସମ୍ଭବ ଅଟେ ଏହା ବିଚିତ୍ର ଘଟନ
ମହାଦେବୀ ଲକ୍ଷ୍ମୀ ମୋତେ କଲେ ଯା ସେବନ
ଶାନ୍ତ ଦୂର କଲେ ମୋର ଆଲଟେ ବିଞ୍ଚଣ
ମୋର ପାଦ ଧୌତ କଲେ ଲକ୍ଷ୍ମୀନାରାୟଣ
ଯେହ୍ନେ କୃଷ୍ଣପଦ ଜୀବ କରି ସୁ ସେବନ
ସ୍ୱର୍ଗ ଅପବର୍ଗ ଲାଭ କରେ ଅନୁକ୍ଷଣ ।
କୃଷ୍ଣ ଏଥିଲାଗି ମୋରେ ଦେଲେ ନାହିଁ ଧନ
ଏହା ବିଚାରଣ ବିପ୍ର କରଇ ଗମନ ।
ନିଜ ଗୃହ ଥିଲା ଯହିଁ ହେଲା ଉପସ୍ଥିତ
ଗୃହକୁ ନ ଦେଖି ଦ୍ୱିଜ ମନେ ବିପରୀତ ।
ଆପଣା କୁଟୀର ଗୋଟି ନ ଦେଖି ବ୍ରାହ୍ମଣ
ମନେ ମନେ ଆଚମ୍ଭିତ ହେଲା ତତକ୍ଷଣ ।
ପୁଷ୍ପର କାନନ ଆଉ ଉଦ୍ୟାନ ସୁନ୍ଦର
ଦେଖି ଶଙ୍କିତ ହୋଇଲା ତହିଁ ଦ୍ୱିଜବର ।
ଦେଖିଲା ବିଚିତ୍ର ପୁରୀ ବିରାଜେ ସେଠାରେ
କେତେ ଦାସଦାସୀମାନେ ଛନ୍ତି ତା ମଧ୍ୟରେ
ଇନ୍ଦ୍ର ଭୁବନକୁ ଜିଣି ଅତି ମନୋହର
ତା ଦେଖି ବିସ୍ମୟ ଜାଗେ ବ୍ରାହ୍ମଣ ମନର ।
କୁଆଡ଼େ ବ୍ରାହ୍ମଣୀ ମୋର କଲାଣି ଗମନ
ମୋ ଭାଗ୍ୟରେ ଆଜ ହେଲା ଏ କିସ ଘଟନ
କାହିଁ ମୋ କୁଡ଼ିଆ ଘର କାହିଁ ମୋ ଘରଣୀ
ଦ୍ୱିଜବର ଶଙ୍କାଯୁକ୍ତ କରି ଏ ଭଲେଣି ।
ଏମନ୍ତେ ଭାବଇ ଦ୍ୱିଜ ସେ ପୁରି ବାହାରେ
ସେକାଳେ ତାହାର ପତ୍ନୀ ଦେଖିଲା ନେତ୍ରରେ
ଦୂରରୁ ନିଜ ପତିଙ୍କ କରି ଦରଶନ
ବାହାରକୁ ଆସିଲା ସେ ଦାସୀ ସଙ୍ଗତେଣ ।
ମହା ଆନନ୍ଦରେ ମଜ୍ଜି ସୁମତୀ ବ୍ରାହ୍ମଣୀ
ପତି ଦରଶନେ ତୋଷ ହେଲା ସୁଲକ୍ଷଣୀ ।
ବହୁ ବୃନ୍ଦ ଦାସୀ ସଙ୍ଗେ ଦାଣ୍ଡକୁ ଆସିଲା
ନାନା ଗୀତ ବାଦ୍ୟ ତୁଲେ ହୁଳହୁଳି ଦେଲା
ପରମା ସୁନ୍ଦରୀ ରୂପ ପାଇଅଛି ତାର
ଅଙ୍ଗେ ଭୂଷଣ ହୋଇଛି ନାନା ଅଳଙ୍କାର ।
ପତି ପାଖରେ ହରଷେ ପରବେଶ ହେଲା
ପତି ପାଦ ଦରଶନେ ଭକ୍ତି ଆଚରିଲା ।

ବିଶେଷେ ବ୍ରାହ୍ମଣୀ ହୋଇ ଆନନ୍ଦିତ ମନ
ସାଷ୍ଟାଙ୍ଗେ ପତି ଚରଣେ ଓଳଗିଲା ପୁଣ ।
ସକଳ ନେତ୍ରେ ସୁମତୀ ଉଲ୍ଲାସ ରହିଲା
ବିଦ୍ୟାଧରୀ ସମ ରୂପ ବ୍ରାହ୍ମଣ ଦେଖିଲା ।
ବିସ୍ମୟ ମଣି ବ୍ରାହ୍ମଣ ସାଥେ ତାର ନାରୀ
ସେହିକ୍ଷଣି ପୁରୀ ମଧ୍ୟେ ନେଲା ହାତଧରି ।
ଅପୂର୍ବ ପୁରୀ ସେ ଶୋଭା ରତନେ ଗଠିତ
ଶତ ଶତ ମଣି ଖମ୍ବ ତହିଁ ସୁଶୋଭିତ ।
ରତନ ପଲଙ୍କ କାନ୍ତି ଦିଶେ ଝଲମଲ
ଝରା ବଉଳ ତହିଁରେ ବିଚିତ୍ର ଉଜ୍ଜଳ ।
ନ ନା ପ୍ରକାର ହୀରା ସେ ହୋଇଛି ଖଚିତ
ଗୃହରେ ସ୍ୱର୍ଣ୍ଣ ଆସନମାନ ଅଗଣିତ ।
ମୁକୁତା ଝଲର ଲମ୍ବି ଅଛି କେରି କେରି
ପ୍ରବାଳର ଶ୍ରେଣୀ ମାନ ବିଚିତ୍ର ମାଧୁରୀ ।
ଦିବ୍ୟ ପାତ୍ରଙ୍କ ସମୂହ ସ୍ଫଟିକେ ଗଠିତ
ପଦ୍ମରାଗ ମଣିରେ ଯେ ଅଟଇ ଶୋଭିତ ।
ହଂସତୁଳୀ ଶଯ୍ୟା ଯେ ହାତୀ ଦାନ୍ତ ପଲଙ୍କରେ
ଦାସ ଦାସୀଏ ଚାମର ପକାନ୍ତି ସଧୀରେ ।
ହେମ ଦଣ୍ଡର ଆଲଟ ବିଞ୍ଚଣୀକ ଧରି
ଠାବେ ଠାବେ ଉଭା ହୋଇଛନ୍ତି ତତପରି ।
ସୁବର୍ଣ୍ଣ କଳସମାନ ଅଟ୍ଟାଳ ମଣ୍ଡିତ
ଦରପଣ ବାଡ଼ମାନ ତହିଁ ସୁଶୋଭିତ ।
ସେ ବିଭବ ଦେଖି ବିପ୍ର ମନରେ ଭାବଇ
ଆପଣାକୁ ବାର ବାର ଧିକାର କରଇ ।
ଭାବେ ମୋ ସମାନ ହତଭାଗ୍ୟ କେହି ନାହିଁ
ବିଷୟୀ ବିଷରେ ପ୍ରଭୁ ଦେଲେ ଯେ ଭୁଲାଇ
କେବା ଅଛି ଏଡ଼େ ଧନବନ୍ତ ମୋହପରି
ଜଗତ ନାଥ ପରମ ଦୟାଳୁ ଶ୍ରୀହରି ।
ମୁଠାଏ ମାତ୍ରକ ଖୁଦ କରିଣ ଭକ୍ଷଣ
ତାହାର ବଦଳେ ଦେଲେ ମୋତେ ଏତେଧନ
ଜଗତ ଜୀବନ ଦୁଃଖୀ ଜନଙ୍କ ଆଶ୍ରୟ
ମୋତେ ଏଡ଼େ କୃପା କଲେ ସେ କରୁଣାମୟ
ସେ ଯେ ଅଟନ୍ତି ମୋହର ବାଲ୍ୟକାଳ ବନ୍ଧୁ
ଜନ୍ମେ ଜନ୍ମେ ପାଏଯେହ୍ନେ ପାଦରେଣୁ ବିନ୍ଦୁ
ସେ ଅଭୟ ପାଦ ପଦ୍ମେ ଯେହ୍ନେ ରହେ ଭକ୍ତି
ଏତିକ ମାତ୍ର ମୋହର ଅଟଇ ଆପତ୍ତି ।

ବିଷମ ବିଷୟ ମଦେ ମତ୍ତ ନ ହୋଇବ
ତାହାଙ୍କ ଶ୍ରୀପାଦେ ସେହ୍ନେ ସଦା ବନ୍ଧାଥିବ
ସେ ପାଦ ପଦ୍ମରୁ ମନ ନ ହେଉ ପାଶୋର
ଏହିବର ଦିଅ ମୋତେ ହେ କରୁଣା କର ।
ନିରତେ କରିବି ତବ ଚରଣ ସେବନ
ଏହି କୃପାକର ମୋତେ ଭକ୍ତ ପ୍ରାଣଧନ ।
ଏହିପରି ଅନୁତାପ କରି ଦ୍ୱିଜବର
ଅତୁଳ ସମ୍ପଦେ ହେଲା ସେହୁ ଗାଧୀଶ୍ୱର ।
ସଦା କୃଷ୍ଣ ପାଦପଦ୍ମେ ରଖିଣ ସେ ଧ୍ୟାନ
କୃଷ୍ଣ ନାମ ସଙ୍କୀର୍ତ୍ତନେ ବିତାଇଲା ଦିନ ।
ଇହକାଳେ ଭୋଗ କଲା ଅତୁଳ ସମ୍ପଦ
ପରକାଳରେ ଲଭିଲା ସେହୁ ମୋକ୍ଷପଦ ।
କୃଷ୍ଣ ସଖା ହୋଇ କୃଷ୍ଣ ଚରଣ ସେବିଲା
ଅସାର ସଂସାରେ ଆଉ ଜନ୍ମ ନ ହୋଇଲା
ପତ୍ନୀ ସହିତରେ କଲା ବଇକୁଣ୍ଠେ ବାସ
ବିଳସିଲା ଶ୍ରୀହରିଙ୍କ ପାଶେ ହୋଇ ଦାସ ।
ଧନ୍ୟ ସେ ସୁଦାମା ଧନ୍ୟ ଘରଣୀ ତାହାର
କୃଷ୍ଣଙ୍କର ସେବାକରି ଭବୁଁ ହେଲା ପାର ।
ଏକମନେ ସେହୁ ଶୁଣେ ସୁଦାମା ଚରିତ
କୃଷ୍ଣପାଦ ପାଏ ସେହି ମହା ପୁଣ୍ୟବନ୍ତ ।
ଶ୍ରଦ୍ଧାରେ ଯେ ଜନ ଏହା କରଇ ଶ୍ରବଣ
ଅଥବା ଅନ୍ୟଙ୍କୁ ଭଲେ ଶୁଣାଏ ଯେ ଜନ ।
ରୋଗ ଶୋକ ତା ଅଙ୍ଗରେ ତିଳେ ନ ରହଇ
ସକଳ ବିପତ୍ତି ତାର ଯାଏ ଦୂର ହୋଇ ।
ଏମନ୍ତେ କହିଣ ମୁନି ହୋଇଲେ ମଉନ
ଗୀତ ଛନ୍ଦେ ବିରଚିଲା କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ ସୁତ
ଶୌନକ ସମ୍ବାଦେ ସୁଦାମା ଦରିଦ୍ରଭଞ୍ଜନଂ
ନାମ ଷଟ୍ ଷଷ୍ଟିତମୋଽଧ୍ୟାୟଃ ।



## ସପ୍ତ ଷଷ୍ଟିତମ ଅଧ୍ୟାୟ
## ପଞ୍ଚକତୀର୍ଥର ସମାପ୍ତି ଓ ପ୍ରଭାସ ତୀର୍ଥେ ମିଳନ ବ୍ୟବସ୍ଥା ବର୍ଣ୍ଣନ

ସୁତ ଉବାଚ

ଶୁଣ ଆହେ ଋଷିଗଣ ଦେଇ ମନକର୍ଣ୍ଣ
ଏ ରୂପେ ଲୀଳା କରନ୍ତି ଜଗତ ଜୀବନ ।
ଲୀଳା ଶେଷ କଥା ଜାଣି କୃଷ୍ଣ ସଙ୍କର୍ଷଣ
ତୀର୍ଥ ଯାତ୍ରାରେ ଆପଣେ ବଳାଇଲେ ମନ ।
ସର୍ବ ଗ୍ରାସ ତପନର ହେବ ଉପରାଗ
କଲ୍ପାକ୍ଷୟ ମନେ ମନେ ହେଜି ମହାଭାଗ ।
ଏହାର ଆଗରୁ କଲେ ତୀର୍ଥକୁ ଗମନ
ଦ୍ୱାରକା ନିବାସୀ ଯେତେ ଗଲେ ସଙ୍ଗତେଣ
ସାନନ୍ଦ ମନେ ସକଳେ ଶୁଭେ ଚଳିଗଲେ
ସ୍ୟମନ୍ତ ପଞ୍ଚକ ତୀର୍ଥେ ଯାଇ ପହୁଞ୍ଚିଲେ ।
ଭୃଗୁରାମ କରିଥିଲେ ଯେ ତୀର୍ଥ ନିର୍ମାଣ
ସେହି କଥା କହୁଅଛି ସାବଧାନେ ଶୁଣ ।
କ୍ଷତ୍ରି ଶୂନ୍ୟ କଲେ ଧରା ଏକୋଇଶ ଥର
ପଞ୍ଚ ହ୍ରଦ ନିର୍ମାଣିଲେ ରୁଧିରେ ତାଙ୍କର ।
ତୀର୍ଥଜଳେ ସେହିସ୍ଥଳେ ପ୍ରଭୁ ହଳଧର
ଯଜ୍ଞ ଆଦି ନାନା କର୍ମକଲେ ଯେ ବିସ୍ତାର ।
ଲୋକ ଉଦ୍ଧାର ନିମନ୍ତେ ପତିତ ପାବନ
ସେହି ତୀର୍ଥେ କଲେ ସର୍ବ ପାପ ବିନାଶନ ।
ପ୍ରଭାସ ତାହାର ନାମ ସର୍ବ ତୀର୍ଥ ସାର
ସେ ତୀର୍ଥକୁ ସର୍ବେ ଗଲେ ଆନନ୍ଦେ ଅପାର ।
ଦ୍ୱାରକା ନିବାସୀ ଯେତେ ଚଳିଲେ ସମସ୍ତେ
ଆନନ୍ଦ ନୀରେ ମଜ୍ଜିଲେ ହରଷିତ ଚିତ୍ତେ ।
ଉଦ୍ଧବ ଆଦି ସକଳେ ସେହିଠାକୁ ଗଲେ
ବୃଷ୍ଣି ବଂଶୀ ଯେତେ ଜନ ସେ ସର୍ବେ ଚଳିଲେ
ଅକ୍ରୁର ଆଦି ସମସ୍ତେ ଗଲେ ମନ ସୁଖେ
ବାହ୍ଲିକ ଆଦି ଯେ ରାଜବଂଶ ଭକ୍ତ ଲୋକେ
ବାସୁଦେବ ଆଦିଆଉ ଯଦୁବଂଶୀ ଦଳେ
ପାପ ବିମୋଚନ ହେତୁ ଚଳିଲେ ସକଳେ ।
କୃଷ୍ଣ ପୁତ୍ରମାନେ ସର୍ବେ ଆନନ୍ଦେ ଧାଇଁଲେ
ଶାମ୍ବ ଗଦ ଆଦିକରି ଯେତେପୁତ୍ରଥିଲେ ।

ପ୍ରଦ୍ୟୁମ୍ନ ସୁଚନ୍ଦ୍ର ଅନିରୁଦ୍ଧ ଆଦି ବୀର
ଶୁକ ସାରଣ ସହିତେ ଚଳିଲେ ସତ୍ୱର ।
କୃତବର୍ମା ଗଲେ ସୈନ୍ୟ ସହିତରେ ଜାଣ
କେହି ଗଜେ କେହି ଅଶ୍ୱେ କରି ଆରୋହଣ
ରଥପରେ ବସି କେହି ଆନନ୍ଦରେ ଯାନ୍ତି
କେହୁ ଓଟପରେ ପୁଣି ପାଦେ କେ ଚଳନ୍ତି ।
କେହି ଶକଟ ଉପରେ ବସିଯାନ୍ତି ଚଳି
କେହି ପାଲିଙ୍କିରେ ଚଢ଼ି ଗଲେ ହରିବୋଲି
ନାନା ପରକାର ଯାନେ ଗଲେ ସର୍ବ ଜନ
ପିନ୍ଧି ନାନା ଅଳଙ୍କାର ବସନ ଭୂଷଣ ।
ଅସଂଖ୍ୟ ଯାଦବଗଣ ଯାନ୍ତି ହର୍ଷ ଚିତ୍ତେ
ଅଇଲେ ଦେବତା ଯେହ୍ନେ କଳସ ସହିତେ ।
ଉପସ୍ଥିତ ହେଲେ ସର୍ବେ ପ୍ରଭାସର କୂଳେ
ସେହି ତୀର୍ଥେ ସ୍ନାନ ସାରି ଉପବାସ କଲେ ।
ବିପ୍ରମାନଙ୍କୁ ଆନନ୍ଦେ ଦାନକଲେ କେତେ
ସୁବର୍ଣ୍ଣ ରଜତ ଧେନୁ ବହନ ସହିତେ ।
ରାମହ୍ରଦ ଜଳେ ସ୍ନାନ ସାରି ସର୍ବଜନ
ବ୍ରାହ୍ମଣମାନଙ୍କୁ ଦେଲେ ବିଶେଷରେ ଦାନ ।
ଏହିମତେ ସ୍ନାନ ଦାନ ଅନେକ ସେ କଲେ
ଆନନ୍ଦ ସଲିଳେ ସର୍ବେ ନିମଗ୍ନ ହୋଇଲେ ।
ପରେ ବୃକ୍ଷମୂଳେ ବସି ଯଦୁବଂଶୀ ଗଣ
ସେଠାକୁ ଅଇଲେ ଥୋକେ ଆତ୍ମୀୟ ସ୍ୱଜନ
ପୃଥିବୀର ରାଜା କେତେ ଅଇଲେ ସମସ୍ତ
ପ୍ରଭାସ ତୀର୍ଥରେ ସର୍ବେ ହୋଇଲେ ଏକତ୍ର ।
କେତେ ଯେ ଆସିଲେନୃପେ ସଂଖ୍ୟା ନାହିଁ ତାର
ସଙ୍ଗରେ ଅନେକ ସୈନ୍ୟ ଦେଲେ ଆଗୁଁ ସାର
ଉଶୀନର ମତ୍ସ୍ୟ କୁରୁ ବିଦର୍ଭ ସୃଞ୍ଜୟ
କାମ୍ବୋଜ ଆବର୍ତ୍ତ କୁନ୍ତୀ କେରଳ କେକୟ
କୌଶଳ ମଦ୍ର ଇତ୍ୟାଦି ଯେତେ ରାଜାଥିଲେ
ସର୍ବେ କୃଷ୍ଣଙ୍କ ବାନ୍ଧବ ସେଠାକୁ ଆସିଲେ ।
କେତେ ନୃପତି ମିଳିଲେ କେବା କହିପାରେ
ନନ୍ଦ ଆଦି ଗୋପାଳେ ଯେ ଅଇଲେ ସତ୍ୱରେ
ଆନନ୍ଦ ମନେ ଧାଇଁଲେ ସର୍ବ ଗୋପଗୋଷ୍ଠ
କୃଷ୍ଣ ଦରଶନ ଲାଗି ଉନ୍ମାଦିନୀ ହୋଇ ।
ତୀର୍ଥ ଯାତ୍ରା ଛଳେ କଲେ ତହିଁ ଆଗମନ
ସାଦରେ ସେ ପରସ୍ପରେ କଲେ ସମ୍ଭାଷଣ ।

ଗୋପୀମାନେ ଆନନ୍ଦିତ କୃଷ୍ଣ ଦରଶନେ
ଶ୍ରୀହରି ତୋଷିଲେ ତାଙ୍କୁ ମଧୁର ବଚନେ ।
ସଭିଙ୍କ ନେତ୍ରୁ ଆନନ୍ଦେ ଅଶ୍ରୁବାରି ଝରେ
ତୋଷିଲେ ଶ୍ରୀହରି ତାଙ୍କୁ ମଧୁର ବାକ୍ୟରେ
ରାଧିକା ଲଳିତା ଆଦି ଗୋପୀକା ସୁନ୍ଦରୀ
କୃଷ୍ଣ ମୁଖ ଦରଶନେ ଆନନ୍ଦ ସବୁରି ।
ପରେ କୁନ୍ତୀ ଭ୍ରାତୃଗଣେ କୃଷ୍ଣ ଭଗବାନ
ଅପୂର୍ବ ଆନନ୍ଦ ମନେ କଲେ ସମ୍ଭାଷଣ ।
ଯୁଧିଷ୍ଠିର ଭୀମ ଅରଜୁନ ଆଦି ସର୍ବେ
ପରସ୍ପରେ କଥାବାର୍ତ୍ତା ହେଲେ ଏକଠାବେ ।
ବସୁଦେବଙ୍କୁ ସେ କୁନ୍ତୀ କହିଲେ ବୁଝାଇ
ଅନର୍ଗଳ ଅଶ୍ରୁ ତାଙ୍କ ନେତ୍ରୁ ଯାଏ ବହି ।
ବୋଇଲେ ଭାଇ ତୁମ୍ଭ ଚିତ୍ତେ ଦୟା ନାହିଁ
ଏତେବଡ଼ ବିପଦରେ ପଡ଼ିଲି ଯେ ମୁହିଁ ।
ଥରେ ମାତ୍ର ଭଗ୍ନୀ ବୋଲି ତୁମ୍ଭେ ନ ପୁଚ୍ଛିଲ
ଦେଖିଲ ମୋ ପୁତ୍ରେ ହେଲେ କେତେ କଲବଲ
ଭଗିନୀକୁ ବସୁଦେବ ବୋଇଲେ ପ୍ରବୋଧି
ନକାନ୍ଦ ଭଉଣୀ ଆଉ ହୋଇଯାଅ ତୁନି ।
ମାୟାମୟ ଖେଳଘର ଅଟେ ଏ ଜଗତ
ମାୟାରେ ସକଳ ପ୍ରାଣୀ ହୋନ୍ତି ଆତଯାତ ।
ମାୟାମୟ ଖେଳଘର ଅଟେ ଏ ସଂସାର
ଆମ୍ଭେମାନେ କ୍ରୀଡ଼ା ପୁତଳିକା ତାହାଙ୍କର ।
ଈଶ୍ୱରଙ୍କ ବଶେ ସର୍ବ କାର୍ଯ୍ୟମାନ ହୁଏ
ସେ ଯାହା କରନ୍ତି ତାହା ପାଳନ୍ତି ସଭିଏ
କଂସଭୟେ ଆମ୍ଭେମାନେ ଲଭିଲୁ କଷଣ
ଶ୍ରୀହରି ସଂହାରେ ତାରେ ରକ୍ଷାକଲେ ଜାଣ
ଦୈବଯୋଗେ ଆଜହେଲା ଆମ୍ଭର ମିଳନ
କଂସ ଥିଲେ ହୋଇଣ ନଥାନ୍ତା କଦାଚନ ।
ଏହାଶୁଣି କୁନ୍ତୀଦେବୀ ଆନନ୍ଦିତ ହେଲେ
ଭାଇ ଭଗିନୀଙ୍କ ଲୀଳା ସକଳେ ଦେଖିଲେ ।
ଆନ ଯେତେ ନରପତି ଗଣ ତହିଁ ଥିଲେ
ପରସ୍ପର ମଧ୍ୟେ ସର୍ବେ କଥାବାର୍ତ୍ତା ହେଲେ ।
କୃଷ୍ଣଙ୍କୁ ଦର୍ଶନ କରି ସର୍ବେ ହେଲେ ତୋଷ
କିଏବା ବର୍ଣ୍ଣି ପାରିବ ସେ କାଳର ଦୃଶ୍ୟ ।
ଋଷି ବ୍ରାହ୍ମଣ ସହିତେ ଯେତେ ଆସିଥିଲେ
ଶ୍ରୀକୃଷ୍ଣଙ୍କ ଦରଶନେ ମୁକତି ଲଭିଲେ ।

ସମସ୍ତଙ୍କୁ ସମ୍ଭାଷଣ କଲେ ଯଦୁଗଣ
ବୋଲନ୍ତି ଯେ ମହାଭାଗ୍ୟ ଆମ୍ଭରଟି ପୁଣ ।
କେତେ ଭାଗ୍ୟ ସଭିଙ୍କର କେବା କହିପାରେ
କୃଷ୍ଣଙ୍କର ପାଦ ଯେଣୁ ପାଅ ଦେଖିବାରେ ।
ଯୋଗୀମାନଙ୍କର ଅଟେ ଯେ ଦୁର୍ଲ୍ଲଭ ଧନ
ଅନାୟାସେ ତୁମ୍ଭେ ତାହା କଲ ଦରଶନ ।
ଯାହାଙ୍କ ପାଦ ସ୍ମରଣେ ପାପ କ୍ଷୟ ହୁଏ
ଯାଙ୍କ ପାଦଜଳ ଧାରା ସୁଧବସ ମଧ୍ୟେ ।
ଅନୁକ୍ଷଣେ ସୁଖେ ଥାଅ ତାଙ୍କ ଦରଶନେ
ତୁମ୍ଭମାନଙ୍କ ସୌଭାଗ୍ୟ କହିବୁ କେସନେ ।
ପରମ କାରଣ କୃଷ୍ଣ ଜଗତ ଆଧାର
ତାଙ୍କ ଦରଶନେ ସର୍ବେ ଆନନ୍ଦ ଅପାର ।
ହରିକଥା ଏମନ୍ତେ କହନ୍ତି ସର୍ବଜନ
ପରସ୍ପର ସକଳେ ଯେ ଆନନ୍ଦେ ମଗନ ।
ଆଲିଙ୍ଗନ କଲେ ସର୍ବେ ଯଦୁଗଣ ସଙ୍ଗେ
ରାମକୃଷ୍ଣେ ଆଲିଙ୍ଗନ କଲେ ପୁଣି ରଙ୍ଗେ ।
ତଦନ୍ତେ ନନ୍ଦ ରାଜନ ଆନନ୍ଦ ଚିତ୍ତରେ
ଯଦୁଗଣ ସଙ୍ଗେ ମିଳି ସମ୍ଭାଷଣ କଲେ ।
କୃଷ୍ଣ ରାମଙ୍କର ରୂପ କରି ଦରଶନ
ପ୍ରେମାନନ୍ଦେ ନେତ୍ରୁ ନୀର ବହେ ଘନ ଘନ ।
କାନ୍ଦଣ ଆକୁଳ କଣ୍ଠେ ବଚନ ନ ସ୍ଫୁରେ
ତିନ୍ତିଯାଏ କୃଷ୍ଣବକ୍ଷ ତାଙ୍କ ନେତ୍ର ନୀରେ ।
ତଦନ୍ତରେ ଯଶୋମତୀ କୃଷ୍ଣେ କୋଳେ ନେଲେ
ତାଙ୍କ ବସନ ତିନ୍ତିଲା ନୟନର ଜଳେ ।
ଚିରଦିନ ଶୋକ ତାପ ହେଲା ଦୂରୀଭୂତ
ରୋହିଣୀ ଯଶୋଦା ଦୁହେଁ ଅତି ଆନନ୍ଦିତ ।
ଦେବକୀ ଦେବୀ ଆସିଣ ତାହାଙ୍କର କତି
ପରସ୍ପରେ ସମ୍ଭାଷଣ ଯେତେକ କରନ୍ତି ।
ଗଳା ଧରାଧରି ହୋଇ ହେଲେ କେତେକଥା -
ସୁଖେ ମଗ୍ନ ହେଲେ ସର୍ବେ ଗଲା ମନୋବ୍ୟଥା
ମାତାମାନେ କୃଷ୍ଣରୂପ କରି ନିରୀକ୍ଷଣ
ଅନୁରାଗେ ହୃଦ ଫୁଲେ ସଜଳ ନୟନ ।
ଅନାଇଁ ଶ୍ରୀକୃଷ୍ଣରୂପ ସର୍ବ ଗୋପୀଗଣ
ଆନନ୍ଦ ସାଗର ଜଳେ ହୋଇଲେ ମଗନ ।
ପ୍ରିୟତମା ଗୋପିମାଙ୍କୁ ଦେଖି ବନମାଳୀ
ପ୍ରେମ ଅଶ୍ରୁ ନୟନରୁ ପକାଇଲେ ଗାଳି ।

ଆନନ୍ଦ ଭରେ ଭାଳିଲେ ଗୋପିକା ରମଣ
ଗୋପୀମାନଙ୍କର ଭାବ ହୋଇଲା ଯେସନ ।
କୃଷ୍ଣଙ୍କ ପାଖକୁ ସର୍ବ ଗୋପୀମାନେ ଗଲେ
ମୃଦୁ ମୃଦୁ ହସି କୃଷ୍ଣ ତାହାଙ୍କୁ କହିଲେ ।
ଶୁଣ ଗୋପାଙ୍ଗନାମାନେ ମୋହର ବଚନ
ମନେ କରୁଥାଅ ଟିକି ମୋତେ ସବୁଦିନ ।
ବନ୍ଧୁଙ୍କର ପ୍ରୟୋଜନ ସାଧିବାକୁ ସିନା
ତୁମ୍ଭମାନଙ୍କୁ ମୁଁ ଛାଡ଼ି ଅଇଲି ନବୀନା ।
ମୋର ଅକୃତଜ୍ଞ ତୁମ୍ଭେ ନଭାବ ଗୋ ମନେ
ଅବଜ୍ଞା ନକର ମୋତେ ଏ ସବୁ କାରଣେ ।
ପବନ ଗତିରେ ମେଘ ଯେଉଁପରି ହୁଏ
ତୃଣ ତୂଳା ଧୂଳିକଣା ଯେତେ ସମୁଦାୟେ ।
ସଂଯୋଗ ବିଯୋଗ କରେ ଯେସନ ପବନେ
ପ୍ରାଣୀଗଣେ ଭଗବାନ କରନ୍ତି ତେସନେ ।
ମୋ ପ୍ରତି ସ୍ନେହ ସବୁରି ଭାଗ୍ୟର କାରଣ
ତହିଁରେ ମୋତେ ଯେ ବଶ କରି ଅନୁକ୍ଷଣ ।
ତୁମ୍ଭମାନଙ୍କର ପ୍ରେମେ ବଶ ମୁଁ ନିଶ୍ଚୟ
ମୋତେ ଲାଭ କରିଅଛ ଗୋପିମା ସମୂହ ।
ତୁମ୍ଭମାନଙ୍କ ପରି ମୋ ଭକ୍ତ କେହି ନାହିଁ
ଗୋପିକା ଭକତି ସର୍ବସାର ମୁଁ ମଣଇ ।
ନବଧା ଭକ୍ତି ଉପରେ ଶ୍ରେଷ୍ଠ ଗୋପୀଭକ୍ତି
ସର୍ବ ଶାସ୍ତ୍ର ପୁରାଣରେ ରହିବ ଏ ଭକ୍ତି ।
ଅଧିକ ମୁଁ କି କହିବି ଆଗୋ ପ୍ରିୟମାନେ
କେଳି ତୁଳନା ନୁହନ୍ତି ତୁମ୍ଭର ସମାନେ ।
ସବୁରି ଆତ୍ମାଟି ମୁହିଁ ଅନ୍ତର ବାହାର
ସମସ୍ତଙ୍କ ଆଦି ମୁହିଁ ଅଟେ ନିରନ୍ତର ।
ପରମ ପୁରୁଷ ମୁହିଁ ସବୁରି ଆଶ୍ରୟ
ତିଳାର୍ଦ୍ଧ ମାତ୍ର ଏଥିରେ ନାହିଁନା ସଂଶୟ ।
ଦେହ ଆତ୍ମା ମୋଠାରୁହିଁ ପ୍ରକାଶିତ ହୁଏ
ପ୍ରାଣୀମାନଙ୍କ ପ୍ରାଣ ମୁଁ ଜାଣ ଗୋ ନିଶ୍ଚୟେ
ଏମନ୍ତ ବାଣୀ କହିଲେ ଯହୁଁ ଜନାର୍ଦ୍ଦନ
ଗୋପୀଏ କହିଲେ ତହୁଁ ଶୁଣି ସେ ବଚନ ।
ସକଳେ ଲାଗିଲେ କହି ଅନୁରାଗ ଭରେ
ହୃଦୟରେ ଭାବ ସେହି ଦେବ ଯୋଗେଶ୍ୱରେ
ଚିନ୍ତନ୍ତି ପରମ ପଦ ଗୋପକୁଳ ବାଳା
ତୁମ୍ଭଙ୍କୁ ସ୍ମରଣ କଲେ ଘୁଞ୍ଚେ ଭବଜ୍ୱାଳା ।

ଶୁଣ ଆହେ କୃପାମୟ କୃତାର୍ଥ ଆଳୟ
ତବ ପଦ କରୁ ସଦା ମାନସେ ଉଦୟ ।
ଗୋପାଙ୍ଗଣୀ ନାରୀ ଆମ୍ଭେ ଗୃହବାସୀ ଜନ
ଆମ୍ଭର ବାସନା ଶୁଣ ଶ୍ରୀନନ୍ଦ ନନ୍ଦନ ।
ଯେ ପାଦ ଧ୍ୟାନ କରନ୍ତି ଯୋଗୀ ଋଷିଗଣ
ଯେଉଁ ପାଦପଦ୍ମ ସଦା ମୋକ୍ଷର କାରଣ ।
ଆଉ କ କହିବ ତୁମ୍ଭଙ୍କୁ ହେ ପଦ୍ମନାଭ
ସେ ଚରଣ ପଦ୍ମ ଯେବେ ସଦା କରୁଁ ଲଭ ।
ଏମନ୍ତେ ଗୋପିକାମାନେ କୃଷ୍ଣଙ୍କୁ କହନ୍ତି
କୃଷ୍ଣଗତ ପ୍ରାଣ ସେହି ବରଜ ଯୁବତୀ ।
ଗୋପୀଙ୍କର ମନ ଜାଣି ଶ୍ରୀମଧୁସୂଦନ
କେତେ କଥା ସୁମଧୁରେ କଲେ ସମ୍ଭାଷଣ ।
ପ୍ରଭାସ ମିଳନ କଥା ସୁଧାହୁଁ ମଧୁର
ଆସ୍ୱାଦନେ ପାପ ତାପ ହୋଇଯାଏ ଦୂର ।
ସୂତମହର୍ଷି ଭାଷନ୍ତି ମୁନିଗଣ ପାଶ
କ୍ଷେତ୍ରମୋହନ ଗୀତରେ କରିଲି ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତରଖଣ୍ଡେ ସୂତ
ଶୌନକ ସମ୍ବାଦେ ପ୍ରଭାସ ମିଳନ କଥନଂ
ନାମ ସପ୍ତଷଷ୍ଟିତମୋଽଧ୍ୟାୟଃ ।



## ଅଷ୍ଟଷଷ୍ଟିତମ ଅଧ୍ୟାୟ
## ଶ୍ରୀକୃଷ୍ଣଙ୍କର ଅଷ୍ଟପାଟରାଣୀଙ୍କ ପରିଚୟ

ସୂତ ଉବାଚ

କହନ୍ତି ଯେ ପୌରାଣିକ ଶୁକ ମୁନିଗଣ
ଗୋପିମାନଙ୍କୁ ଶ୍ରୀହରି କରି ସମ୍ଭାଷଣ ।
ସେ ଉତ୍ତାରୁ ବାସୁଦେବ ଯୁଧିଷ୍ଠିର ପ୍ରତି
ପଚାରିଲେ ଧୀରେ ତାହାଁ କୁଶଳ ଭାରତୀ ।
କୃଷ୍ଣ ପଦେ ଧର୍ମରାଜ କରି କୃତାଞ୍ଜଳି
କୁଶଳ ବାର୍ତ୍ତା କହିଲେ ହୋଇ କୌତୁହଳୀ
ଶୁଣ କୃଷ୍ଣ କହୁଛି ମୁଁ ପ୍ରକୃତ ବଚନ
ସୁଧାବାଣୀ ଶୁଣେ ତବ ମୁଖୁଁ ଯେଉଁ ଜନ ।
ତବ ପାଦୋଦକ ଯେଉଁ ପ୍ରାଣୀ ପାନ କରେ
ତବ ଲୀଳାଗାଥା ଯେହୁ ଶୁଣଇ କର୍ଣ୍ଣରେ ।
ନାହିଁ ଅମଙ୍ଗଳ ତାର ସଙ୍କଟରେ ସ୍ଥିତି
ତବ ପାଦପଦ୍ମେ ସଦା ଥାଏ ଯାର ମତି ।
ବୈକୁଣ୍ଠ ତେଜିଣ ମର୍ତ୍ତ୍ୟ ମଣ୍ଡଳେ ଆସିଲ
ଧରଣୀର ମହାଭାର ଉଶ୍ୱାସ କରିଲ ।
ତୁମ୍ଭେ ପ୍ରଭୁ ପରଂବ୍ରହ୍ମ ସଚ୍ଚିଦାନନ୍ଦ ରୂପ
ଅଖଣ୍ଡ ଅଚ୍ୟୁତ ମହାଆନନ୍ଦ ସ୍ୱରୂପ ।
ଯୋଗମାୟା ଲାଗି ତୁମ୍ଭେ ନାନା ରୂପଧର
ପରମହଂସମାନଙ୍କ ଗତି ଯେ ସତ୍ତ୍ୱର ।
ଏହିପରି କେତେକଥା ହୋନ୍ତି ଦୁଇଜନେ
କୌରବମାନଙ୍କକଥା ପଡ଼େ ସେହି ସ୍ଥାନେ ।
କୃଷ୍ଣଙ୍କ ଗୃହିଣୀ ପାଶେ ପାଣ୍ଡବ ପ୍ରେୟସୀ
କରଯୋଡ଼ି ବୋଇଲେକ ମନେ ହୋଇ ଖୁସି
ଶୁଣ ଗୋ ରୁକ୍ମିଣୀ ଭଦ୍ରା ଦେବୀ ଜାମ୍ବବତୀ
ସତ୍ୟଭାମା ଆଦି ସର୍ବେ ଶୁଣ ମୋ ଭାରତୀ ।
ସଭିଁର ଭର୍ତ୍ତା ଶ୍ରୀକୃଷ୍ଣ ଜଗତ ଜୀବନ
କି ରୂପେ କାହାର ସ୍ୱାମୀ ଅଟନ୍ତି ସେ ପୁଣ ।
ସେହିକଥା କହ ମୋତେ କରିବି ଶ୍ରବଣ
ଏକେ ୨ ତୁମ୍ଭର ଗୋ ବିବାହ କଥନ ।
ଶ୍ରବଣେ ହୃଦରେ ମୋର ହୋଇବ ଆନନ୍ଦ
ତାଙ୍କ ବଚନେ ରୁକ୍ମିଣୀ ମନେ ବହି ମୋଦ ।
ଶୁଣ ଶୁଣ ଆମ୍ଭମାନଙ୍କର ପୂର୍ବକଥା
ଆନନ୍ଦ ଲଭିବ ଶୁଣି ମୋ ବିବାହ ବାର୍ତ୍ତା ।
ମୋତେ ବିବାହ କରିବା ପାଇଁ ଶିଶୁପାଳ
ଅନେକ ସୈନ୍ୟ ଘେନିଣ ମିଳିଲା ତତ୍କାଳ
ଏକା ଏହି ଜାଣି ଶ୍ୱେର ତାହାଙ୍କୁ ହଟାଇ
ଦେବୀ ମନ୍ଦିରରୁ ମୋତେ ଆଣିଲେ ଶ୍ୱେରାଇ
ପିତାଳୟେ ଆଉ ମୋର ବିଭାଘର ନୋହି
ଦ୍ୱାରକା ପୁରରେ ହେଲା ଶୁଣ ଆଗୋ ସହି
ତାହାଙ୍କ ପାଦରେ ମୁହିଁ ସେବିକା ପଣରେ
ଦିବାନିଶି ଖଟୁଅଛି ଆନନ୍ଦ ମନରେ ।
ଏତିକି ମାତ୍ର ପ୍ରାର୍ଥନା ଅଟଇ ମୋହରି
ସଦା ଦୟା ରଖିଥାନ୍ତୁ ଏ ସେବିକାପରି ।
ତୁମ୍ଭ ଆଗେ ମନ କଥା କହିଲି ଫିଟାଇ
ବୁଝି ଘେନ ଗୋ ଦ୍ରୌପଦୀ ସଂଶୟ ତୁଟାଇ ।
ତହୁଁ ସତ୍ୟଭାମା ଦେବୀ କହିଲେ ସଧୀରେ
ମୋର ବିଭାଘର କଥା ଶୁଣ ମନ ସ୍ଥିରେ ।

ଜଗତ ଜୀବନ ଦୟା ସାଗର ଶ୍ରୀହରି
ଯାଆଁଳେ ଜାମ୍ବବାନକୁ ପରାଜିତ କରି ।
ସ୍ୟମନ୍ତକ ମଣି ଗୋଟି ଆଣି ସେହିକ୍ଷଣ
ସମର୍ପିଲେ ମୋ ପିତାଙ୍କୁ ଜଗତ ଜୀବନ ।
ତେଣୁ ମୋପିତା ତାହାଙ୍କପରେ ତୋଷହୋଇ
ଉପହାର ସ୍ୱରୂପରେ ବିଭା ଦେଲେ ନେଇ ।
ଏହାପରେ ବୋଇଲେକ ଦେବୀ ଜାମ୍ବବତୀ
ମୋହର ବିବାହ ଗାଥା ଶୁଣ ଆଗୋ ସତୀ ।
ଦିନେ ଦୁଇଦିନ ନୁହେଁ ସତାଇଶ ଦିନ
ସମର କଲେ ମୋ ପିତା ସଙ୍ଗେ ପ୍ରାଣଧନ ।
ଦୁହିଁଙ୍କ ମଧ୍ୟରୁ କେହି ପରାସ୍ତ ନୋହିଲେ
ବେଳକୁ ବେଳ ପ୍ରବଳ ଭାବରେ ଲଢ଼ିଲେ ।
ପରେ ପିତା ଜାଣି ପାରି ପରଂବ୍ରହ୍ମ ନାଥ
ତାହାଙ୍କ ହସ୍ତରେ ମୋତେ କରିଲେ ଅର୍ପିତ
କାଳନ୍ଦୀ ବୋଇଲେ ଶୁଣ ମୋହର ବଚନ
ଯେଉଁପରି ବିଭାହେଲେ ମୋତେ ଜନାର୍ଦ୍ଦନ
ଯମୁନା କୂଳେ ମୁଁ ତପ କରୁଥିଲି ବସି
କିପରି ମୋ ପ୍ରାଣନାଥ ହେବେ ଗୋପଶଶୀ
ମୋର ମନକଥା ଜାଣି ପାରି ଜଗନ୍ନାଥ
ଭ୍ରମୁ ପତି ପାର୍ଥ ସଙ୍ଗେ ମିଳିଣ ତୁରିତ ।
ସେହିଠାରେ ପ୍ରଭୁ ମୋତେ ବିବାହ କରିଲେ
ରଥେ ବସାଇ ଦ୍ୱାରକା ପୁରେ ଘେନଗଲେ
ଭଦ୍ରା ବୋଇଲେ ହରାଇ ମୋ ସ୍ୱର ଭାଇଙ୍କୁ
ମୋତେ ବିବାହ ହୋଇଣ ଆଣିଯେ ପୁରକୁ
ସତ୍ୟବତୀ କହେ ଶୁଣ ମୋହର ବଚନ
ମୋର ପିତାଙ୍କର ବରି ପ୍ରତିଜ୍ଞା ଭଞ୍ଜନ ।
ନୃପତିମାନଙ୍କ ଶକ୍ତି କଳନା ନିମନ୍ତେ
ମୋହର ଜନକ ଏକ ବୁଦ୍ଧି ପାଞ୍ଚି ଚିତ୍ତେ ।
ମହାବଳବାନ ସାତଗୋଟି ତରୁଇର
ଯତନେ ରଖିଣ ଥିଲେ ନଅର ମଧ୍ୟର ।
ସେ ସପ୍ତ ବୃଷକୁ ସ୍ୱାମୀ ପରାଜୟ କରି
ବିବାହ ହୋଇଲେ ମୋତେ ଶୁଣ ଗୋସୁନ୍ଦରୀ
ଯେତେ ରାଜା ଆସିଥିଲେ ବିଭା ନିମନ୍ତେଣ
ତାହାଙ୍କ ସଙ୍ଗରେ କୃଷ୍ଣଚନ୍ଦ୍ର କଲେ ରଣ ।
ଅବହେଳେ ନୃପତିଙ୍କି ଜିଣି ଯଦୁପତି
ମୋତେ ବିବାହ କରିଲେ ନେଇ ଦ୍ୱାରାବତୀ

ମିତ୍ରବିନ୍ଦା କହେ ଶୁଣ ମୋ ବିଭା ବାରତା
ଦିବା ନିଶି ଭାବୁଥାଏ ମୁହିଁ ତାଙ୍କ କଥା ।
ମୋର ପିତା କୃଷ୍ଣ ହସ୍ତେ କଲେ ସମର୍ପଣ
କହିଲିଟି ସଖି ମୋର ପୂର୍ବର କଥନ ।
ଏବେ ମୋ ପ୍ରାର୍ଥନା ଯାହା ଶୁଣ ଗୁଣବତୀ
ଜନ୍ମେ ଜନ୍ମେ କୃଷ୍ଣ ଯେହ୍ନେ ହୁଅନ୍ତୁ ମୋ ପତି
ଲକ୍ଷଣା କହଇ ଶୁଣ ଦ୍ରୌପଦୀ ସୁନ୍ଦରୀ
ମୋ ପିତା ବିବାହ ଦେଲେ ମହାପଣ କରି ।
ମହାଧନୁ ଗୋଳ ଯେହୁ ବଳରେ ଭାଙ୍ଗିବେ
ତାହାଙ୍କୁ ମୋହର ପିତା କନ୍ୟାଦାନ ଦେବେ
ମାତ୍ର ମୁଁ କୃଷ୍ଣଙ୍କ ରୂପ କରିଣ ଶ୍ରବଣ
ତାଙ୍କୁ ପତି କରିବାରେ ବଳାଇଲି ମନ ।
ଏହା ଶୁଣି ପିତା ମୋର ବଡ଼ ସ୍ନେହ କଲେ
ମତ୍ସ୍ୟ ଗୋଟିଏ ନିର୍ମାଣି ଉପରେ ରଖିଲେ ।
ଦେଖିବା ନିମନ୍ତେ ଜଳ ରଖିଲେ ତଳରେ
ଜଳକୁ ଚାହିଁ ଯେ ଜନ ଶର ବିନ୍ଧପାରେ ।
ସେ ନିଶ୍ଚେ ଲଭିବ ମୋର ଦୁହିତା ରତନ
ଏମନ୍ତ ପ୍ରତିଜ୍ଞା ଶୁଣି ଯେତେ ନୃପଗଣ ।
ମୋତେ ଲଭିବାକୁ ରାଜା ଅନେକ ଆସିଲେ
ସମାଦରେ ପିତା ମୋର ସଭିଙ୍କି କହିଲେ ।
ଧନୁଶର ଘେନି ମତ୍ସ୍ୟ ବିନ୍ଧିବନା ଥରେ
ସେ ଧନୁ କୁ କେହି ଟେକି ନ ପାରିଲେ କରେ
ଧନୁରେ ଗୁଣ ଚଢ଼ାଇ ନ ପାରିଲେ କେହି
କଚ୍ଛୁଡ଼ି ହୋଇ ଭୂମିରେ ପଡ଼ିଲେକ ତହିଁ ।
ପରାଭବ ମାନିଲେ ଯେ ମହାବୀରଗଣ
ଜରାସନ୍ଧ ଶିଶୁପାଳ ରାଜା ଦୁର୍ଯ୍ୟୋଧନ ।
କର୍ଣ୍ଣବୀର ଆଦି ଆଉ ଭୀମ ମହାବୀର
ବହୁକ୍ଲେଶେ ଟେକି ନ ପାରିଲେ ଧନୁବର ।
କେବଳ ଅର୍ଜ୍ଜୁନ ଯେଉଁ ବାଣ ନିକ୍ଷେପିଲା
ସେହି ବାଣ ଖାଲି ମତ୍ସ୍ୟ ଦେହକୁ ଛୁଇଁଲା ।
କିନ୍ତୁ କେହି ସେ ମତ୍ସ୍ୟକୁ ବିନ୍ଧି ଯେ ନପାରେ
ତେଣୁ ବୀରମାନେଯେତେ ନଲଭିଲେ ମୋରେ
ଆନନ୍ଦ ମନରେ ତଦନ୍ତରେ ଯଦୁସାଇଁ
କୌତୁକେ ଧନୁ ଧରିଲେ ସଭାମଧ୍ୟେ ଯାଇ ।
ସକଳ ନୃପତି ଗଣେ ରହି ଦେଖୁଥାନ୍ତି
ମଉସିଂହ ଠାଣିରେ ଏ ଉଭାହୋଇ ଥାନ୍ତି ।

ବାମହସ୍ତେ ଧନୁଧରି ଟେକିଲେ ହେଳାରେ
ସେ ମତ୍ସ୍ୟକୁ ଲକ୍ଷକଲେ ଜଳର ଛାୟାରେ ।
ତହିଁରେ ମତ୍ସ୍ୟ ଦେହକୁ ଦେଖି ବନମାଳୀ
ନିମିଷକ ମଧ୍ୟେ ଶର ସନ୍ଧି ଦେଲେ ଗୁଳି ।
ମତ୍ସ୍ୟ ଦେହେ ଶର ବାଜି ଯାଆନ୍ତେ ଖରତରେ
କାଟି ପଡ଼ିଲା ସେ ସଭାର ମଧ୍ୟରେ ।
ବେନି ଖଣ୍ଡ ହୋଇ ମତ୍ସ୍ୟ ପଡ଼ନ୍ତେ ସତ୍ୱର
ବାଜିଲା ଦୁନ୍ଦୁଭି ବାଦ୍ୟ ସ୍ୱର୍ଗେ ମନୋହର ।
ଦେବଗଣ ଆନନ୍ଦରେ କଲେକ ନର୍ତ୍ତନ
ଜୟ ଶବଦେ ଉଚ୍ଛୁଳି ପଡ଼େ ତ୍ରିଭୁବନ ।
ମହା ଆନନ୍ଦରେ ଦେବେ ପୁଷ୍ପ ବରଷିଲେ
କୃଷ୍ଣ ଗଳେ ରତ୍ନମାଳା ଦେଲି ମୁଁ ସେକାଳେ
ଶଙ୍ଖ ଭେରୀ ତୁରୀ ଆଦି ନାନା ବାଦ୍ୟ ବାଜେ
ଇନ୍ଦ୍ରନୀଳମଣି କାନ୍ତି କୃଷ୍ଣଙ୍କ ବିରାଜେ ।
ସେ ସଭା ମଧ୍ୟରେ ରହିଥିଲେ ଯେତେ ଜନ
ସେତେବେଳେ ସଭିଙ୍କର ଆନନ୍ଦିତ ମନ ।
ନର୍ତ୍ତକୀମାନେ ନାଚନ୍ତି ଉଲ୍ଲାସରେ ଅତି
ଗାୟକମାନେ ମଧୁରେ ସଙ୍ଗୀତ ଗାଆନ୍ତି ।
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଦ୍ୱିଜ ସର୍ବେ
ମହାକୁତୁହଳୀ ଜନେ ସେ ବିଭା ଉତ୍ସବେ ।
କାମବାଣେ ବିମୋହିତ ଯେତେ ନୃପଗଣ
ବାହୁଡ଼ିଲେ ଲଜ୍ୟାଭରେ ଶୁଖାଇ ବଦନ ।
ତହୁଁ ଭୁବନ ମୋହନ ମୂରତି ଶ୍ରୀହରି
ଆନନ୍ଦରେ ମୋତେ ନେଲେ ବିମାନ ଉପରି
ପଦ୍ମହସ୍ତେ ଚକ୍ରପାଣି ମୋତେ ଘେନି କୋଳେ
ରଥ ଚଳା ବୋଲି ସାରଥିକି ଆଜ୍ଞା ଦେଲେ
ଦାରୁକ ସାରଥି ତହୁଁ ହୋଇ ଆନନ୍ଦିତ
ଦ୍ୱାରକା ପଥରେ ବେଗେ ଚଳାଇଲା ରଥ ।
ପଥ ମଧ୍ୟେ ରାଜାମାନେ ଚୌଦିଗେ ଘେରିଲେ
ମୋତେ ଛଡ଼ାଇ ନେବାକୁ ମନେ ବିଚାରିଲେ
ବିପକ୍ଷ ହୋଇ ଯେତେକ ନରପତିଗଣ
କୃଷ୍ଣଙ୍କ ସଙ୍ଗେ ସେଠାରେ ଆରମ୍ଭିଲେ ରଣ ।
ଏକା ପ୍ରାଣନାଥ ସବୁ ରାଜାଙ୍କୁ ହଟାଇ
ମୁଖେ ଚୂନକାଳି ମାରି ଦେଲେ ବାହୁଡ଼ାଇ
ମୃଗନ୍ଧ୍ରେ ଯେସନେ ସିଂହ କରଇ ପରାସ୍ତ
ସେସନେ ନୃପଙ୍କ ମଧ୍ୟେ ପ୍ରଭୁ ଜଗନ୍ନାଥ ।
ମହା ପରାକ୍ରମ ବଳେ ସମରେ ଜିଣିଲେ
ମୂର୍ଖ ନୃପ ସର୍ବେ ଭୟେ ପଳାଇଲେ ।
ହୁଅନ୍ତେ ଭୀଷଣ ରଣ ତାହାଙ୍କ ସଙ୍ଗରେ
ପ୍ରାଣଘେନି ପଳାଇଲେ ଯେ ଯାହା ପଥରେ
ତହୁଁ ନାଥ ଦ୍ୱାରକାକୁ ଆନନ୍ଦେ ଚଳିଲେ
ମୋର ପିତା ଶ୍ରୀହରିଙ୍କୁ ସନମାନ କଲେ ।
ଯେତେ ସ୍ୱଜନ ବାନ୍ଧବ ଥିଲେ ତାହାଙ୍କର
ସଭିଙ୍କୁ ପୂଜିଲେ ପିତା ଦେଇ ବସ୍ତ୍ର ହାର ।
ବହୁ ଦାସୀ ପରିବାରୀ ମୋର ସଙ୍ଗେ ଦେଲେ
ହସ୍ତୀ ଅଶ୍ୱ ରଥ ଅଗଣନ ସମର୍ପିଲେ ।
ପୁଣି ବସନ ଭୂଷଣ ଦେଲେକ ଅପାର
ବର୍ଣ୍ଣିନାକରିବ ତାହା ନୁହେଁ ଶକ୍ତି କାର ।
ଏରୂପେ ଅଟଇ ମୋର ବିବାହ ଚରିତ
ତୁମ୍ଭ ଆଗେ କହିଲଇଁ ଠିକେ ଠିକେ ତଥ୍ୟ ।
କେତେ ଯୁଗ ତପକରି ଅର୍ଜିଥିଲି ପୁଣ୍ୟ
ତେଣୁ ଦାସୀରୂପେ ବରିନେଲେ ଭଗବାନ
ଆଉ ଏକ କଥା ସଖୀ ଶୁଣ ମନଦେଇ
ନରକ ରାଜାଙ୍କୁ ପ୍ରାଣେ ନାଶି ପ୍ରାଣସାଇଁ ।
ଷୋଳ ସହସ୍ର କନ୍ୟାକୁ ତାରି ବିଭାହେଲେ
ଆନନ୍ଦରେ ସେହୁ ପାଦେ ଶରଣ ପଶିଲେ ।
ଆମ୍ଭମାନଙ୍କର ଭାଗ୍ୟ ଅଟେ ବଳୀୟାର
ତେଣୁ ଅଭୟ ପୟର ସେବିଲୁ ପ୍ରଭୁର ।
ପତି ପଦେ ଲଭିକରି ଜଗତ ନାଥଙ୍କୁ
ଧନ୍ୟ ମଣୁଅଛୁ ଆମ୍ଭ ଜନ୍ମ ଜାତକକୁ ।
ଗୋପକାଙ୍କ ବାଞ୍ଛୁଛନ୍ତି ଯେଉଁ ଶ୍ରୀଚରଣ
ହେଲେ ସେହି ପାଦେ ଆମ୍ଭେ ପଶିଛୁ ଶରଣ
ଏମନ୍ତେ ଭବ ସମୁଦ୍ରେ ସୁଖେ ଭାସି ଭାସି
କହିଲେ ପାଞ୍ଚାଳୀ ଆଗେ କୃଷ୍ଣଙ୍କ ପ୍ରେୟସୀ
ଅଷ୍ଟ ପାଟବଂଶୀଙ୍କର ପରିଚୟ ଗାଥା
ବଖାଣିଲେ ପୌରାଣିକ ସୁତ ସବୁକଥା ।
ବ୍ରହ୍ମ ପୁରାଣ ଆଖ୍ୟାନ ସୁଧାମୟ ରସ
ଶୁଣି ଶୌନକାଦି ମୁନି ହୋଇଲେ ହରଷ ।
ପରଂବ୍ରହ୍ମ ଶ୍ରୀହରିଙ୍କ କଥା ଯେଉଁ ଜନ
ଶ୍ରବଣ କରଇ ଚିତ୍ତ ଦେଇ ମନ ଧ୍ୟାନ ।
ସକଳ ପାତକ ମାନ ନାଶ ହୁଏ ତାର
ଜୀବନାନ୍ତେ ନରକରୁ ହୁଏ ସେ ଉଦ୍ଧାର ।

ତେଣୁ ଆମ୍ଭେ ମୁନିଜନେ ଯେସନ ମୋ ବଚନ
ଅଭ୍ୟସ୍ତ ପସୃତ ଚଳେ ସଦା ରଖ ମନ ।
ଶୟନେ ସ୍ୱପନେ ଧ୍ୟାନେ କିବା ଜାଗରଣେ
ଶ୍ରୀହରିଙ୍କ ନାମ ଭଜ କ୍ଷେତ୍ରବାସୀ ଭଣେ ।
ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଅଷ୍ଟପାଠ-
ବଂଶୀକର ପରିଚୟ କଥନେ ନାମ
ଅଷ୍ଟ ଷଷ୍ଟିତମୋଽଧ୍ୟାୟଃ ।

—※—

## ଏକୋନ ସପ୍ତତିତମ ଅଧ୍ୟାୟ

## ପ୍ରଭାସ ଯଜ୍ଞ ସଂଗ୍ରହ ବର୍ଣ୍ଣନ

### ସୂତ ଉବାଚ

ପୌରାଣିକ ସୂତବର ଆନନ୍ଦ ମନରେ
ବୋଇଲେ ମୁନିମାନଙ୍କୁ ଅନାଇ ସଧୀରେ ।
କୁନ୍ତୀ ଗାନ୍ଧାରୀ ଆବର ଦ୍ରୌପଦୀ ସହିତେ
ରାଜପତ୍ନୀ କୃଷ୍ଣପତ୍ନୀ ଆଦି ଥିଲେ ଯେତେ ।
ଏ ସକଳେ କୃଷ୍ଣ କଥା କରି ଆଳାପନ
କୃଷ୍ଣ ପ୍ରେମ ଜଳଧିରେ ହୋଇଲେ ମଗନ ।
ନେତ୍ରୁ ଅଶ୍ରୁବାରି ବହେ ପ୍ରେମେ ପୁଲକିତ
ପ୍ରେମ ଆବେଶେ ତାହାଙ୍କ ଜ୍ଞାନ ହୁଏ ଲୁପ୍ତ ।
ସେହିକାଳେ ରାମକୃଷ୍ଣଙ୍କର ଦରଶନେ
ପ୍ରବେଶ ହୋଇଲେ ଆସି ସର୍ବ ମୁନି ଜନେ ।
ବିଶ୍ୱାମିତ୍ର ଶତାନନ୍ଦ ଆଉ ବେଦବ୍ୟାସ
ନାରଦ ଚ୍ୟବନ ଆଦି ଋଷିଙ୍କର ଈଶ ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କୁ ଦରଶନ କରିବାକୁ
କୁତୁହଳରେ ଆସିଲେ ଯେ ଇନ୍ଦ୍ରପ୍ରସ୍ଥକୁ ।
ଅଇଲେ ସତ୍ୟରେ ଭରଦ୍ୱାଜ ଗଉତମ
ଶିଷ୍ୟଙ୍କୁ ଘେନି ପ୍ରବେଶ ହେଲେ ପର୍ଶୁରାମ ।
ଭୃଗୁ ଅଙ୍ଗିରା ବଶିଷ୍ଠ ସହିତେ ଆସିଲେ
ପୁଲସ୍ତ୍ୟ କଶ୍ୟପ ଆସି ସେଠାରେ ମିଳିଲେ ।
ମାର୍କଣ୍ଡ ଆବର ବୃହସ୍ପତି ମହାମତି
ପ୍ରବେଶିଲେ ଶନକଙ୍କ ସହ ପୁଣି ଅତି ।
ପ୍ରବେଶିଲେ ଯାଜ୍ଞବଳ୍କ୍ୟ ସନତ କୁମାର
ଅଗସ୍ତ୍ୟ ପୁଲହ ବାମଦେବ ଋଷିବର ।
ଜାବାଳ ସୁମନ୍ତ ଆଦି ତାପସ ନିକରେ
ପରବେଶ ହେଲେ ସର୍ବେ ମହା ଆନନ୍ଦରେ ।
ପ୍ରଭାସରେ ମିଳି ଅତି ପ୍ରଫୁଲ୍ଲ ମାନସେ
ପରସ୍ପରେ ସମ୍ଭାଷଣ ହେଲେ ଯେ ବିଶେଷେ ।
ଆନନ୍ଦ ସାଗରେ ସର୍ବେ ହୋଇ ନିମଗନ
କୃଷ୍ଣ ପାଦପଦ୍ମ ଶୁଭେ କଲେ ଦରଶନ ।
ଋଷିମାନଙ୍କ ଦର୍ଶନେ ସଭାଜନ ସର୍ବେ
ରାମକୃଷ୍ଣ ପାଣ୍ଡୁସୁତେ ଆଉ ନୃପେ ତେବେ
ସମ୍ଭ୍ରମେ ଉଠି ସକଳେ ପ୍ରଣିପାତ କଲେ
ଯଥା ବିଧିରେ ସକଳେ ସଭିଙ୍କି ପୂଜିଲେ ।
ପାଦ୍ୟ ଅର୍ଘ୍ୟ ଦେଲେ କରି ପରମ ଯତନେ
ବସିବାରପାଇଁ ଦେଲେ ଦିବ୍ୟ କୁଶାସନ ।
ତହୁଁ ଋଷିଗଣେ ଡାକ ପ୍ରଭୁ ଦାମୋଦର
ବିନୟ ବଚନେ କଲେ ଅତି ସମାଦର ।
କି କହିବି ଭାଗ୍ୟ କଥା ଜନମ ସଫଳ
ସାର୍ଥକ ଜୀବନ ଦେଖି ଚରଣ କମଳ ।
ଦେବତାଦୁର୍ଲ୍ଲଭ ତୁମ୍ଭେ ମୁନି ଋଷିଗଣ
ସମସ୍ତଙ୍କ ପଦ ଏବେ କଲି ମୁଁ ଦର୍ଶନ ।
ସଂସାର ଦେବତା ଯେତେ ଗଠିତ ପାଷାଣେ
ଆଉ ଯେତେ ଦେଖାଯାଏ ମୃତ୍ତିକା ନିର୍ମାଣେ
ଯେତେକ ତୀର୍ଥ ସବୁ ଅଛି ଜଗତ ମଧ୍ୟର
ସେହୁ ପବିତ୍ର କରନ୍ତି ପ୍ରାଣୀଙ୍କ ଅନ୍ତର ।
ବହୁକାଳେ ହୁଏ ତାହା ଜାଣନ୍ତୁ ନିଶ୍ଚୟ
କିନ୍ତୁ ସାଧୁ ଦରଶନେ ସଦ୍ୟ ମୁକ୍ତିଚୟ ।
ଚନ୍ଦ୍ର ସୂର୍ଯ୍ୟ ତାରା ପୃଥ୍ୱୀ ଜଳ ହୁତାଶନ
ପାପରବିନାଶ ଏହୁ କଲେଟି ସେବନ ।
ମୋହ ଅନ୍ଧ ହୋଇ ପ୍ରାଣୀଯେତେ ପାପକରେ
ବହୁକାଳେ ନାମେ ନାଶ ଏହି ଭୁବନରେ ।
ସାଧୁଙ୍କ ସେବା କରଇ ଯେ ଜନ ଭକ୍ତିରେ
ସକଳ ପାତକରାଶି ନାଶ ଯାଏ ତାରେ ।
ଦରଶନେ ପାପରାଶି ବିନାଶ ହୁଅଇ
ସାଧୁଙ୍କ ଦର୍ଶନେ ଜୀବେ ଦୁର୍ଲ୍ଲଭ ଅଟଇ ।
କୃଷ୍ଣଙ୍କ ମୁଖରୁଁ ଏ ବାଣୀ ଶୁଣି ମୁନିଗଣ
ଶୁଦ୍ଧମନେ କୃଷ୍ଣ ଗୁଣ କରନ୍ତି କୀର୍ତ୍ତନ ।
ବୁଦ୍ଧି ଭ୍ରମ ସମସ୍ତଙ୍କ ସହର୍ଷ ବଚନେ
ମନେ ମନେ ବିଚାରିଲେ ସର୍ବେ ସେହିକ୍ଷଣେ

ଦେବ ଚନ୍ଦ୍ରାମଣି ଭାବ ଅନ୍ତରେ ଜାଣିଲେ
କୃତାଞ୍ଜଳି ହୋଇ ତହୁଁ କହିବ ଲାଗିଲେ ।
ଶୁଣ ଜଗନ୍ନାଥ ଆମ୍ଭମାନଙ୍କ ବଚନ
ତୁମ୍ଭର ମାୟାରେ ମୁଗ୍ଧ ଜଗତର ଜନ ।
ଜଗତ ସୃଜନ ହେତୁ ଅଧିପତି ଯେତେ
ତୁମ୍ଭ ଅଧୀନ ଅଟନ୍ତି ସକଳେ ନିରତେ ।
ଏକମାତ୍ର ମୂଳ ତୁମ୍ଭେ ଅଟ ସର୍ବେଶ୍ୱର
ଏକରୂପେ ବହୁମୂର୍ତ୍ତି ଧରି ଦାମୋଦର ।
ସୃଷ୍ଟି ସ୍ଥିତି ପ୍ରଳୟର ତୁମେହିଁ କାରଣ
ଭକ୍ତଙ୍କୁ ରଖିବା ପାଇଁ ମର୍ତ୍ତ୍ୟେ ଆଗମନ ।
ଅବନୀ ଭାର ହରଣେ ତବ ଅବତାର
ଜଗତ ରକ୍ଷଣେ କର ଦୁଷ୍ଟଙ୍କୁ ସଂହାର ।
ବ୍ରହ୍ମା ଶିବ ଅଟନ୍ତି ଯେ ହୃଦୟ ତୁମ୍ଭର
ବ୍ରହ୍ମଜ୍ଞାନ ଯୋଗ ଶାସ୍ତ୍ର ତବ ଆତ୍ମା ସାର ।
ତୁମ୍ଭେ ପ୍ରଭୁ ଶାସ୍ତ୍ର ଯୋନି ଶ୍ରେଷ୍ଠ ସକଳର
ବ୍ରାହ୍ମଣଙ୍କ ଅଗ୍ରଗଣ୍ୟ ଅଟ ବିଶ୍ୱମ୍ଭର ।
ମଙ୍ଗଳ ଆକାର ତୁମ୍ଭେ ଆହେ ନାରାୟଣ
ତୁମ୍ଭର ମହିମା ବୁଝିପାରେ କେଉଁଜନ ।
ଆମ୍ଭର ଜନମ ଆଜ ସଫଳ ହୋଇଲା
ଏ ପାପ ନୟନ ତବ ଚରଣ ଦେଖିଲା ।
ନମୋ ନମୋ ଜଗନ୍ନାଥ ପରମ କାରଣ
ନମୋ ନମୋ ଯୋଗେଶ୍ୱର ବ୍ରହ୍ମା ସନାତନ
ପରମାତ୍ମାରୂପୀ ହରି ଜଗତ ପ୍ରଧାନ
ଅନନ୍ତ ମହିମା ତବ ବେଦରେ ବଖାଣ ।
ଏହିରୂପେ ମୁନିମାନେ ସ୍ତୁତି କଲେ କେତେ
ବାରମ୍ବାର କୃଷ୍ଣପଦେ ନମିଲେ ସମସ୍ତେ ।
ସେ କାଳରେ ବସୁଦେବ ତହିଁ ପ୍ରବେଶିଲେ
କୃତାଞ୍ଜଳି ହୋଇ ସମସ୍ତଙ୍କୁ ପ୍ରଣମିଲେ ।
ବେନିକର ଯୋଡ଼ିକରି ସଭିଙ୍କର ପ୍ରତି
ବୋଇଲେ ମୁନିମାନଙ୍କୁ କରିଣ ପ୍ରଣତି ।
ହେ ସର୍ବଜ୍ଞ ବ୍ରହ୍ମମୁନି ଜଗତ ତାରଣ
ତୁମ୍ଭଲାଗି ଚଳୁଅଛି ଏ ଧରଣୀ ଜାଣ ।
ଯଦ୍ୟପି ନଥାନ୍ତ ତୁମ୍ଭେମାନେ ବ୍ରହ୍ମାଣ୍ଡରେ
ରସାତଳେ ପଡ଼ନ୍ତାଣି ଏ ପୃଥ୍ୱୀ ସତ୍ତ୍ୱରେ ।
ନାନା ଯଜ୍ଞ ନାନା କର୍ମମାନ କରି ତୁମ୍ଭେ
ପାପଙ୍କୁ ବିନାଶ କରୁଅଛ ଏହି ଭବେ ।

ବସୁଦେବଙ୍କର ବାଣୀ ଶୁଣି ଋଷିଗଣ
ହସି ହୋଇଲେ ସକଳେ କଥୋପକଥନ ।
ବସୁଦେବଙ୍କୁ ପୁଚ୍ଛିଲେ ଆପଣା ମଙ୍ଗଳ
ବୋଇଲେ ନିକଟେ ଥାଇ ଜାହ୍ନବୀର ଜଳ ।
ନଚିହ୍ନି ପାରଣ ତାକୁ କରି ଅନାଦର
ଆଜ ବୁଲୁଅଛ କାହିଁ ହେବାକୁ ନିସ୍ତାର ।
ଯେଉଁ କୃଷ୍ଣ ବଳରାମ ତୁମ୍ଭର ନନ୍ଦନ
ସାକ୍ଷାତେ ସେ ପରଂବ୍ରହ୍ମ ଜଗତ ଜୀବନ ।
ତାହାଙ୍କୁ ଅନ୍ତର ମଧ୍ୟେ ମଣି ପୁତ୍ର ସମ
ବୁଲୁଛ ଏ ମାୟା ମୋହେ ହୋଇ ତୁମ୍ଭେଭ୍ରମ
ଆମ୍ଭମାନଙ୍କ ବଚନ ଶୁଣ ହେ ସୁମତି
ରାମ କୃଷ୍ଣ ବେନିଜନେ ଅନାଦି ମୂରତି ।
ଆହୁରି ଏକଇ ଗାଥା ଶୁଣ ଯଦୁବୀର
କର୍ମରେ କର୍ମର କ୍ଷୟ ସାଧୁଙ୍କର ଗୀର ।
ମାନବମାନେ କରିଣ ଯଜ୍ଞ ଆଦିକରି
ପରମ ଆଦରେ ଯେବେ ସେବନ୍ତି ମାଧବ ।
ସେକର୍ମ ସାଧନେ କର୍ମ ଭୋଗକୁ ନାଶନ୍ତି
ସାଧୁଜନମାନେ ଏହିପରି କହିଛନ୍ତି ।
ଏହି ଯୋଗ ମହାସିଦ୍ଧି ପରମ କାରଣ
ଗୃହୀମାନେ ସିଦ୍ଧ ହେବେ ସ୍ତନ୍ୟ କରି ପାନ ।
ଭକତଭାବରେ ସର୍ବେ କୃଷ୍ଣଙ୍କୁ ଭଜନ୍ତି
ଧନଆଦି କ୍ଷୟ ହେଲେ ଧର୍ମବଳେ ମ...
ହରିଙ୍କ ପଦ ଭାବନ୍ତି ଏକାନ୍ତରେ ଜାଣ
ତପସ୍ୟାକରି କରନ୍ତି ହରି ଆରାଧନ ।
ଦେବଋଣ ପିତୃଋଣ କଦାପି ନ ରହେ
ତୁମ୍ଭଙ୍କୁ ଏ କଥା ଆମ୍ଭେ କହିଲୁ ନିଶ୍ଚୟେ ।
ଆବାଲ୍ୟ କାଳରୁ ତୁମ୍ଭେ ହରିଙ୍କୁ ସେବିଲ
କୃଷ୍ଣସହ ରାମଙ୍କର ହ୍ରଦେ ସ୍ନାନ କଲ ।
ଦ୍ୱିଜଗଣ ଦାନ କରି ଏକାନ୍ତ ମନରେ
ହରିଙ୍କୁ ଲଭିଲ ତୁମ୍ଭେ ପୁତ୍ର ପରକାରେ ।
ତୁମ୍ଭର କର୍ମ ବନ୍ଧନ ଆଉ ନ ରହିଲା
ଛେଦିଲ ବନ୍ଧନ ସୁଖ ସୌଭାଗ୍ୟ ଉଇଁଲା ।
ମଧୁର ବଚନେ ବସୁଦେବଙ୍କୁ ଏମନ୍ତ
କହିଲେ ସକଳ ମୁନି ହୋଇ ଆନନ୍ଦିତ ।
ତାହାଶୁଣି ବସୁଦେବ ଆନନ୍ଦ ମନରେ
ନମିଲେକ ବାରମ୍ବାର ମୁନିଙ୍କ ପାଦରେ ।

ତହୁଁ ଏକ ମହାଯଜ୍ଞ ଯହିଁ ଆରମ୍ଭିଲେ
ସକଳ ଋଷିମାନଙ୍କୁ ବରଣ କରିଲେ ।
ଆନନ୍ଦରେ ଋଷିଗଣ ଯଜ୍ଞେହେଲେବ୍ରତୀ
ଦେଖି ସନ୍ତୋଷ ହୋଇଲେ ଯାଦବ ସନ୍ତତି
ହରଷ ମାନସେ କରି ସ୍ନାନଆଦି କର୍ମ
ବିଚିତ୍ର ନବ ବସନ ମଣ୍ଡି ହେଲେ ସର୍ବ ।
ନାନା ଅଳଙ୍କାର ମାନ ଅଙ୍ଗେ ମଣ୍ଡି ହେଲେ
ବିବିଧ ଭୂଷଣେ ସେହୁ ଭୂଷିତ ହୋଇଲେ ।
ଯଦୁକୁଳ ରମଣୀଏ ହରଷ ଅନ୍ତରେ
ପିନ୍ଧିଲେ ବିଚିତ୍ର ନବ ବସନ ତୋଷରେ ।
ଯଜ୍ଞଶାଳକୁ ସକଳ କରିଲେ ଗମନ
ସୁମଧୁର ବାଦ୍ୟମାନ ବାଜେ ଘନ ଘନ ।
ନର୍ତ୍ତକୀମାନେ ନାଚିଲେ ଅଭିନୟ କରି
କିନ୍ନରଗଣ ଗାଆନ୍ତି ଗୀତ ପାଳିଧରି ।
ଗାଆଣ ବାଆଣ ଭାଟ ବନ୍ଦିମାନେ ଯେତେ
ମନୋହର ସୁମଧୁରେ ଗାଇଲେ ସମସ୍ତେ ।
ମୁନିଗଣମାନେ ହର୍ଷେ ଯଜ୍ଞାହୁତି ଦେଲେ
ସେକାଳରେ ରାମକୃଷ୍ଣ ସେଠାକୁ ଅଇଲେ ।
ବନ୍ଧୁ ବାନ୍ଧବଙ୍କୁ ଧେନ ହରି ପ୍ରବେଶିଲେ
ସେମାନଙ୍କ ସାଥେ ଧେନ ମନ୍ତ୍ର ଜପକଲେ ।
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ରମା ଶୋଭନ
ତେସନେ ଯଜ୍ଞେ ଶୋଭନ୍ତି ପ୍ରଭୁ ଜନାର୍ଦ୍ଦନ
ଆନନ୍ଦ ମନରେ ବସୁଦେବ ଦଣ୍ଡଧର
ଦକ୍ଷିଣା ପ୍ରଦାନ କଲେ ଋଷିଙ୍କ ହସ୍ତର ।
ବ୍ରାହ୍ମଣମାନଙ୍କୁ ମଧ୍ୟ ବହୁ ଦାନ ଦେଲେ
ଗାଈ ସ୍ୱର୍ଣ୍ଣ ଭୂମି ଯେହୁ ଯା ମାଗିଲେ ଦେଲେ
ରାମହ୍ରଦ ମଧ୍ୟେ ତହୁଁ ପଶି ସ୍ନାନକଲେ
ବସନ ଭୂଷଣ ବିପ୍ରମାନଙ୍କୁ ବାଣ୍ଟିଲେ ।
ରଖିଲେ ସମ୍ମାନ ଏକେ ଏକେ ସଭିଙ୍କର
ଯେତେ ଯେତେ ନରପତି ଥିଲେ ସେଠାବରେ
ମୁନି ଋଷି ଆଦି ସର୍ବେ ଆନନ୍ଦ ମନରେ
କୃଷ୍ଣଙ୍କପାଶେ ପ୍ରବେଶି ହେଲେ କୁଶଳରେ ।
ପ୍ରଶଂସା କଲେ ସକଳେ ଯଜ୍ଞର କାରଣ
ଧୃତରାଷ୍ଟ୍ର ଆଦି ଥିଲେ ଯେତେ ନୃପଗଣ ।
ସମସ୍ତେ ସାନନ୍ଦ ଚିତ୍ତେ ଯେଝା ଗୃହେ ଯାନ୍ତି
କୃଷ୍ଣ ଅଦର୍ଶନ ହେତୁ ବଡ଼ ଦୁଃଖପାନ୍ତି ।

ମନୋରଥ ପୂର୍ଣ୍ଣ ହେଲା ବସୁଦେବଙ୍କର
ନନ୍ଦଙ୍କୁ ଚର୍ଚ୍ଚିଲେ ଗୋପାଳଙ୍କ ସହିତର ।
ତଦନ୍ତରେ ବସୁଦେବ ନନ୍ଦନ କୋଳାଇ
କେତେ କଥା କହିଲେ ସେ ବ୍ୟାକୁଳିତହୋଇ
ଥରକୁ ଥର ନନ୍ଦଙ୍କୁ ଆଲିଙ୍ଗନ କଲେ
ହସ୍ତକୁ ଧରି ସରାଗେ ତକ୍ଷଣେ କହିଲେ ।
ଈଶ୍ୱରଙ୍କ ସ୍ନେହ ନାମେ ଅଛି ପାଶ ଯାହା
ଛେଦନ କରି ନପାରେ କେବେ କେହି ତାହା
ତୁମ୍ଭେମାନେ ଅତି ସାଧୁ ଜାଣି ମନେ ମନେ,
ଆମ୍ଭେମାନେ ଅକୃତଜ୍ଞ ଅଟୁଁ ଏ ଭୁବନେ ।
ସୌଭାଗ୍ୟ ମଦରେ ମତ୍ତ ହୋଇ ବର୍ତ୍ତମାନ
ବୋଧହୁଏ ତୁମ୍ଭଙ୍କୁ ମୁଁ କରିଛି ହେଳନ ।
ବସୁଦେବ ଏହି କଥା କହୁ କହୁ ତହିଁ
ମିତ୍ରତା ସୁମରି କାନ୍ଦି ପକାଇଲେ ସେହି ।
ସାନନ୍ଦ ଚିତ୍ତରେ ତହୁଁ ସେ ନନ୍ଦରାଜନ
ଗୋପାଳଙ୍କ ସଙ୍ଗେ ତଥା କଲେ ଅବସ୍ଥାନ ।
ଆନନ୍ଦରେ ତିନିମାସ ରହିଲେ ସେଠାରେ
ଗୋପ ଗୋପୀସହ ନିଜ ଦେଶେ ଗଲେ ପରେ
ରାମ କୃଷ୍ଣ ଆଦିଙ୍କର ସମ୍ମତି ଘେନିଲେ
ମହା ଆନନ୍ଦରେ ନନ୍ଦ ବ୍ରଜକୁ ଫେରିଲେ ।
ବସୁଦେବ ରଖିଲେ ଯେ ନନ୍ଦଙ୍କ ସମ୍ମାନ
ଉଗ୍ରସେନ ଆଦି କଲେ କୁଶଳ ବିଧାନ ।
ଯତନେ ଗୋପାଳମାନେ ଘେନିଲେ ମେଲାଣି
ସନମାନ ପାଇ ସର୍ବେ ବ୍ରଜେ ଗଲେ ପୁଣି ।
ଯାଦବ ଗୋପାଳଙ୍କର ଅକୃତ୍ରିମ ପ୍ରୀତି
ରାମ କୃଷ୍ଣ ଅଟନ୍ତି ଯେ ସବୁରି ସନ୍ତତି ।
କିଏ କହେ ରାମ କୃଷ୍ଣ ନନ୍ଦର ନନ୍ଦନ
ପୁଣି ବସୁଦେବ ପୁତ୍ର ବଖାଣନ୍ତି ଜନ ।
ଗୋପରି ଗୋପାଳବୋଲିକେକେହିବୋଲନ୍ତି
ଯଦୁକୁଳ ସାର କାହା ମୁଖରେ ଭଣନ୍ତି ।
ପ୍ରକୃତରେ କୃଷ୍ଣ ଚନ୍ଦ୍ର ଗୋପିକା ମୋହନ
ନନ୍ଦ ଯଶୋମତୀଙ୍କର ନୟନ ଅଞ୍ଜନ ।
ଶୁଣ ଆହେ ମୁନିଗଣ ଅପୂର୍ବ କଥନ
କୃଷ୍ଣପାଦେ ଗୋପୀମାନେ ରଖି ମନ ପ୍ରାଣ
ଅନ୍ତରେ ଅତି ବିରସ ହୋଇଣ ସକଳେ
କାତର ଭାବେଣ ବ୍ରଜପୁରକୁ ଚଳିଲେ ।

ଯଦୁବଂଶୀଙ୍କର ଅତି ଆନନ୍ଦିତ ମନ
ବର୍ଷ । ଆଗତେ ଧରାରେ ଜଳ ବରଷଣ ।
ଦ୍ୱାରକା ନଗରେ ସର୍ବେ ବାହୁଡ଼ିଲେ ଭଲେ
ବସୁଦେବ ଯଜ୍ଞ କୀର୍ତ୍ତି ଜାଣନ୍ତି ସକଳେ ।
ପ୍ରଭାସ ଯଜ୍ଞ ପ୍ରସଙ୍ଗ ସୁଧାମୟ ରସ
ଗୀତରେ କ୍ଷେତ୍ରମୋହନ କରିଲା ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ତୀର୍ଥଯାତ୍ରା
ପ୍ରସଙ୍ଗେ ପ୍ରଭାସ ଯଜ୍ଞ କଥନଂ ନାମ
ଏକୋନସପ୍ତତିତମୋଽଧ୍ୟାୟଃ ।

—୍—

## ସପ୍ତତିତମ ଅଧ୍ୟାୟ
## ଭଗବାନଙ୍କ ବସୁଦେବଙ୍କୁ ତତ୍ତ୍ୱ ଓ ଦେବକୀର ମୃତପୁତ୍ର ଆନୟନ

ସୁତ ଉବାଚ

ଏଥୁଅନ୍ତେ କହନ୍ତି ଯେ ସୁତ ମୁନିବର
ଆହେ ମୁନିମାନେ ଏବେ ଶୁଣ ମୋର ଗୀର ।
ଏକ ଦିନ ବଳରାମ ସଙ୍ଗେ ଜନାର୍ଦ୍ଦନ
ଅପୂର୍ବ ଲୀଳା ଆପଣେ କଲେକ ଭିଆଣ ।
ଯେବଣ ସ୍ଥାନରେ ବସିଥିଲେ ତାତ ମାତ
ସେହି ସ୍ଥାନରେ ମିଳିଲେ ଶ୍ରୀରାମ ଅଚ୍ୟୁତ ।
ବସୁଦେବ ଦେବକୀଙ୍କ ଚରଣ ବନ୍ଦିଲେ
ତହୁଁ ବସୁଦେବ ସ୍ନେହେ କୃଷ୍ଣଙ୍କୁ କହିଲେ ।
ମୁନି ମୁଖୁଁ ଶୁଣିଥିଲେ କୃଷ୍ଣ ବିବରଣ
ତେଣୁ କୃଷ୍ଣଙ୍କୁ ବୋଇଲେ ପ୍ରକୃତ ବଚନ ।
ହେ ଶ୍ରୀହରି ମହାଯୋଗୀ ଦେବ ଗଦାଧର
ତୁମ୍ଭେ ସାରା ଜଗତର ପିତା ଯଜ୍ଞେଶ୍ୱର ।
ବ୍ରହ୍ମ ସନାତନ ସର୍ବ ପ୍ରାଣୀଙ୍କ ଆଶ୍ରୟ
ଯୋଗୀଙ୍କ ଜୀବନ ଧନ ଅଟ ସୁନିଶ୍ଚୟ ।
ତୁମ୍ଭଠାରୁ ଏ ଜଗତ ସୃଜନ ହୁଅଇ
ତୁମ୍ଭେ ପରମ ସୁନ୍ଦର ଅଟ ବେନିଭାଇ ।
ଜଗତର ମୂଳ ଅଟ ଜାଣୁ ଆମ୍ଭେମାନେ
ବିଶ୍ୱ ବୀଜ ବୋଲି ଜାଣି ଅଛନ୍ତି ସୁଜନେ ।
ତୁମ୍ଭର ଠାରୁ ସଂସାର ସୃଜନ ହୁଅଇ
ପାଳନ ଆଉ ସଂହାର ତୁମ୍ଭ ଯୋଗେ ହୋଇ ।

ସବୁରି ନିଦାନ ତୁମ୍ଭେ ପରମ ଈଶ୍ୱର
ତୁମ୍ଭେ ଜଳ ତୁମ୍ଭେ ସ୍ଥଳ ତୁମ୍ଭେ ଜଳଧର ।
ଶାନ୍ତି ତେଜ ଆଦି ସବୁ ଶକ୍ତି ବହିଅଛ
ଚନ୍ଦ୍ର ସୂର୍ଯ୍ୟ ତାରା ନଭ ଆଦି ଯେ ସର୍ଜିଛ ।
ପଞ୍ଚ ଆତ୍ମାରୂପେ ତୁମ୍ଭେ ହୁଅ ବିରାଜିତ
ଷଡ଼ରିପୁ ମଧ୍ୟେ ଶ୍ରେଷ୍ଠ ଅଟ ଆହେ ନାଥ ।
ଇନ୍ଦ୍ରିୟ ରୂପରେ ଥାଅ ପ୍ରାଣୀଙ୍କ ଶରୀରେ
ଅମର ସ୍ୱରୂପେ ଥାଅ ଅମର ନଗରେ ।
ଯୋଗୀରୂପେ ଯୋଗ ସାଧ ତୁମ୍ଭେ ଇଚ୍ଛାମୟ
ସତ୍ତ୍ୱ ରଜଃ ତମୋ ଗୁଣ ତୁମ୍ଭଠୁ ଉଦୟ ।
ତୁମ୍ଭେ ପରମ ପୁରୁଷ ଅଖିଳର ନାଥ
ଏ ସାର ସଂସାର ତୁମ୍ଭ ମାୟାରେ ମୋହିତ
ଜଗତେ ପୂଜିତ ତୁମ୍ଭେ ଅନନ୍ତ ଅଜେୟ
ଗୁଣର ସାଗର ଦୋହେଁ ଗୁଣେ ଅପ୍ରମେୟ ।
ସବୁରି ପ୍ରଧାନ ଅଟ ତୁମ୍ଭେ ମୂଳାଧାର
ପୁତ୍ର ରୂପେ ମୋର ଘରେ ହେଲ ଅବତାର
ଧରା ଭାର ହରଣରେ ଅଇଲ ହେ ନାଥ
ମୋର ଭାଗ୍ୟ ବଳେ ହେଲ ମୋହରୂପେ ପୁତ୍ର
ସଦା ମନ ମଧ୍ୟେ ଭାବେ ତବ ଶ୍ରୀ ଚରଣ
ଆହେ ଦେବ କର ମୋର ଦୁଃଖ ବିମୋଚନ
ରିପୁ ବଶେ ମାୟା ମୋହେ କଟାଇଲି କାଳ
ତୁମ୍ଭଙ୍କୁ ପୁତ୍ର ମଣି ଯା ଘଟିଲା ଜଞ୍ଜାଳ ।
ଯୁଗେ ଯୁଗେ ଧର୍ମ ରକ୍ଷାକର ନାରାୟଣ
ସୂତିକା ଗୃହେଁ କହିଛ ସର୍ବ ବିବରଣ ।
ନାନାଦି ଭାବରେ ଅଟେ ଗ ି ଯେ ତୁମ୍ଭର
ନୁହେଁ ଏକ ମୂର୍ତ୍ତି ତୁମ୍ଭେ ନାନା ରୂପଧର ।
କେ ଜାଣେ ତବ ମହିମା ଅନନ୍ତ ଅବ୍ୟକ୍ତ
ହେ ଦୟା ନିଧାନ ତୁମ୍ଭେ ପ୍ରାଣ ପଞ୍ଚଭୂତ ।
ବସୁଦେବ ମୁଖୁଁ ଶୁଣି ଏମନ୍ତ ବଚନ
ହସି ବୋଇଲେ ଶ୍ରୀହରି ନୁଆଇଁ ବଦନ ।
ଆହେ ପିତା ଶୁଣ ଏବେ ବଚନ ମୋହର
ମୋତେ ଯେଉଁ ପୁତ୍ର ଜ୍ଞାନ ହୋଇଲା ତୁମ୍ଭର ।
ସାମାନ୍ୟ ନୁହଇଁ ତାହା ଶୁଣ ଦେଇ ମନ
ତତ୍ତ୍ୱ ଜ୍ଞାନରେ ସେ ବୁଦ୍ଧି ହୁଅଇ ଉତ୍ଥାନ ।
ସ୍ନେହରେ ମୁଁ ବଶୀଭୂତ ନିଶ୍ଚୟ ଜାଣିବ
ଭକ୍ତର ଅଧୀନ ମୁହିଁ ମନରେ ମଣିବ ।

ମୁହିଁ ତୁମ୍ଭେ ବଳଦେବ ଅଖିଳ ସଂସାର
ବ୍ରହ୍ମରୂପେ ବିବେଚନା କର ଅନିବାର ।
ଏମନ୍ତେ ଶ୍ରୀ ବସୁଦେବ ହସି କହନ୍ତେଣ
ଆନନ୍ଦ ଗାରେ ମଜ୍ଜିଲା ତାହାଙ୍କର ମନ ।
ଅତି ପ୍ରୀତ ମନେ ମୌନଭାବ ସେ ଧଇଲେ
ଆଉ କିଛିକ୍ଷଣ ଯାଏ ବାକ୍ୟ ନ ଭଣିଲେ ।
ଛନ୍ଦନ୍ତେ ମାତ ଦେବକୀ ବୋଇଲେ ବଚନ
ମୁଁ ଯାହା କହୁଛି ତାହା ମନଦେଇ ଶୁଣ ।
ଆହେ କୃଷ୍ଣ ବଳରାମ ମୋ ଜୀବନ ଧନ
ତୁମ୍ଭ ଗୁଣ ଗାଉଥାନ୍ତି ମୁନି ଋଷିଗଣ ।
ସକଳ ଜଗତ ତୁମ୍ଭଠାରୁ ଉତପତି
ବିସ୍ମୟ ହୁଏ ମୋ ମନେ ଶୁଣି ଏ ଭାରତୀ ।
ଆଉ କି କହିବି କୃଷ୍ଣ ତୁମ୍ଭଙ୍କୁ ଯେ ମୁହିଁ
ଗୁରୁ ପୁତ୍ର ଆଣି ଦେଲ ପର ବେନିଭାଇ ।
ମୃତ ସନ୍ତାନକୁ ତାର ଗୃହେ ଆଣିଦେଲ
ଗୁରୁ ପତ୍ନୀର ଆନନ୍ଦ ବର୍ଦ୍ଧନ କରିଲ ।
ଜଗତ ଜନଙ୍କ ମୁଖରୁଁ ଶୁଣି ଏହି ଗିର
ମନ ମଧ୍ୟରେ ଆଶ୍ଚର୍ଯ୍ୟ ହୁଏ ମୁଁ ଅପାର ।
ମୋହର ମାତ୍ର କଥାଏ ଯେନ ବାପ ଧନ
ଛଅ ପୁତ୍ରଙ୍କୁ ମୋ କଂସ କରୁଛି ନିଧନ ।
ମୋର ମନ ଦୁଃଖ କିସ କହିବିରେ ଧନ
ସନ୍ତାନଙ୍କ ଦୁଃଖେ ହୃଦ ହେଉଛି ଦହନ ।
ସ୍ତନ କ୍ଷୀର ଦାନରେ ମୁଁ ହୋଇଲି ବିରତ
ସେ ଦୁଃଖେ ଜଳୁଛି ସଦା ହୃଦ ଅବିରତ ।
ତୁମ୍ଭେ ଦୁଇ ଭାଇ ଅଟ ଜଗତ କାରଣ
ପୁରୁଷ ପ୍ରଧାନ ଦେବ ବିଶ୍ୱ ବିମୋହନ ।
ଅନାଦି ଅନନ୍ତ ତବ ମହିମା ଅପାର
ଭୂଭାର ହରଣ ଲାଗି ହେଲ ଅବତାର ।
ମୋହର ଗର୍ଭରେ ଆସି ଲଭିଲ ଜନମ
ତିନି ଭୁବନ କରତା ପୁରୁଷ ଉତ୍ତମ ।
ତୁମ୍ଭର ମହିମା ଅବା କେହୁ ଜାଣିପାରେ
ସଭିଁର ଆଶ୍ରୟ ତୁମ୍ଭେ ଅଟ ଜଗତରେ ।
ମଲା ପୁତ୍ର ଗୁରୁପାଶେ ଆଣିଦେଲ ଯେବେ
ଶୁଣି ମୁଁ ବିକଳ ଚିତ୍ତ ହୋଇଲିଁ ତେବେ ।
ମୋ ଛଅ ପୁତ୍ରଙ୍କୁ କଂସ ପକାଇଛି ମାରି
ତାଙ୍କୁ ଦେଖିବାକୁ ଶ୍ରଦ୍ଧା ହେଉଛି ମୋହର ।

ମାତୃ ମୁଖରୁ ଏହା ଶୁଣି କୃଷ୍ଣ ହଳଧର
ମନେ ମନେ ଧ୍ୟେଇ କାଳେ କଲେକ ବିଚାର
ଉତ୍ତମ ପ୍ରକାରେ ଦୁହେଁ ଯୁକ୍ତି କରି ଶେଷେ
ଅବିଳମ୍ବେ ଚଳିଗଲେ ବଳିରାଜ ଦେଶେ ।
ମାୟାର ପ୍ରଭାବେ ଯାନ୍ତି ପାତାଳ ନଗର
କୃଷ୍ଣ ଦରଶନେ ବଳି ସାନନ୍ଦ ଅନ୍ତର ।
ଆଗୁଁସାର ହୋଇ କୃଷ୍ଣ ଚରଣେ ନମିଲା
ରତନ ଆସନ ଆଣି ବସିବାକୁ ଦେଲା ।
ପବିତ୍ର ଜଳେ ଧୋଇଲା ସେ ପଦ୍ମ ଚରଣ
ସର୍ବପୁରଜନେ ସେହି ଜଳ କଲେ ପାନ ।
ସମାଦରେ ପୂଜେ ବଳି କୃଷ୍ଣ ସଙ୍କର୍ଷଣେ
ସର୍ବାଙ୍ଗ ଚର୍ଚ୍ଚିତ କଲା କର୍ପୂର ଚନ୍ଦନେ ।
ଦିବ୍ୟମାଲ୍ୟ ଅଳଙ୍କାର ଗଳେ ପିନ୍ଧାଇଲା
ବିବିଧ ବିଧାନେ ରାମକୃଷ୍ଣଙ୍କୁ ସେବିଲା ।
ତହୁଁ ମହାଦାନୀ ବଳି ଯୋଡ଼ି ବେନିପାଣି
କହି ଆରମ୍ଭିଲା ଭଲେ କେତେ ସ୍ତୁତିବାଣୀ ।
ନମସ୍ତେ ବିଧାତା କୃଷ୍ଣ ଅନନ୍ତ ମୂରତି
ନମୋ ନମୋ ନାରାୟଣ ଜଗତର ପତି ।
ନମୋ ନମୋ ବ୍ରହ୍ମା ଆତ୍ମା ଅଖିଳ ଈଶ୍ୱର
ତବ ଦରଶନେ ନେତ୍ର ପବିତ୍ର ମୋହର ।
ମହାଯୋଗେ ଯୋଗୀମାନେ ତୁମ୍ଭଙ୍କୁ ନ ପାନ୍ତି
ମୋର ଭାଗ୍ୟେ ଆଜ ପ୍ରଭୁ ବିଜେକଲ ଏଥି
ଧ୍ୟାନେ ଋଷିମାନେ ପାନ୍ତି ଦର୍ଶନ ତୁମ୍ଭର
ଅସୁର ବଂଶରେ ଅଟେ ଜନମ ମୋହର ।
ସତ୍ତ୍ୱଗୁଣମୟ ତୁମ୍ଭେ ଦେବ ନାରାୟଣ
ତମୋଗୁଣେ ବୈରୀଭାବ ହୁଅ ଅନୁକ୍ଷଣ ।
ଏଣୁ ମୋରେ ସୁପ୍ରସନ୍ନ ହୁଅ ଚକ୍ରଧର
ଏ ଭବ ସାଗରୁ କରି ଦିଅ ଯେ ଉଦ୍ଧାର ।
କେମନ୍ତେ ଜାଣିବି ମୁହିଁ ତବ ଗୁଣମାନ
ଏ ଭବ କୂପରୁ ନାଥ ଉଦ୍ଧର ବହନ ।
ନିରନ୍ତରେ ତବ ପାଦପଦ୍ମେ ଥାଏ ଚିତ୍ତ
ଏହି ଦୟାକର ବାରେ ମାତ୍ର ଜଗନ୍ନାଥ ।
ବଳି ରାଜା ମୁଖରୁଁ ଶୁଣି ଏମନ୍ତ ବଚନ
ମଧୁର ସ୍ୱରେ କହିଲେ କମଳଲୋଚନ ।
ଶୁଣ ଆହେ ବଳିରାଜ ବଚନ ମୋହର
ସାର କଥା କହୁଅଛି ମୁଁ ତୁମ୍ଭ ଆଗର ।

ମରୀଚଙ୍କ ଛଅପୁତ୍ର ଊର୍ଣ୍ଣାର ଉଦରେ
ବ୍ରହ୍ମାଙ୍କର ନାତି ସେହୁ ଆଦ୍ୟ ମନ୍ୱନ୍ତରେ ।
କାମରେ ପୀଡ଼ିତ ବ୍ରହ୍ମା ଦୁହିତାଙ୍କୁ ଦେଖି
ଚଞ୍ଚଳେ ଗମନ କଲେ ତାହାର କିକ ।
ତାହା ଦେଖି ହାସ୍ୟ କଲେ ସେହି ଛଅଜଣେ
ଅସୁରୀ ଯୋନିରେ ଜନ୍ମ ହେଲେ ସେ କାରଣେ
ଗୁରୁଙ୍କ ଅବଜ୍ଞା ହେତୁ ଏ ଦଶା ଘଟନ
ଅସୁର କୁଳରେ ତେଣୁ ଲଭିଲେ ଜନମ ।
ହିରଣ୍ୟାକ୍ଷ ପୁତ୍ର ଅଟନ୍ତି ଯେ ଛଅଜଣ
ଇନ୍ଦ୍ର ବଜ୍ରାଘାତେ ସର୍ବେ ହୋଇଲେ ନିଧନ
ସେ ପୁଣି ଜନମ ହେଲେ ଦେବକୀ ଉଦରେ
ନିଧନ ହୋଇଲେ କଂସରାଜାର ହାତରେ ।
ଏହି ସ୍ଥାନେ ଅଛନ୍ତି ସେ ଜାଣ ହେ ବିଶେଷେ
ମାତୃ କୋଳେ ଦେବ ତାଙ୍କୁ ନେଇ ମୁଁ ହରଷେ
ଜନନୀ ହୃଦୟ ହେବ ଆନନ୍ଦେ ମଗନ
ଲୋତକ ଶୂନ୍ୟ ହୋଇବ ତାହାଙ୍କ ନୟନ ।
ମୋହ କର ଲଗିଲେ ସେ ଶାପୁଁ ମୁକ୍ତ ହେବେ
ନିଜରୂପେ ନିଜସ୍ଥାନେ ଗମନ କରିବେ ।
କହିଲଟି ସାର କଥା ହେ ବଳି ରାଜନ
ମୋରଯୋଗୁଁ ମୋକ୍ଷପଦ ପାଇବେ ସେ ଜାଣ
ବଳି ରାଜାଙ୍କୁ ଏ କଥା କହନ୍ତେ ଶ୍ରୀପତି
ତହୁଁ ବଳି ସେ ଛଅଙ୍କୁ ଆଣେ ଶୀଘ୍ରଗତି ।
ଶ୍ରୀହରିଙ୍କ ନିକଟରେ କଲା ସମର୍ପଣ
ଦେବକୀ ଛଅ ପୁତ୍ରଙ୍କୁ ଘେନି ଜନାର୍ଦ୍ଦନ ।
ମହା ଆନନ୍ଦ ମନରେ ତହୁଁ ବାହୁଡ଼ିଲେ
ଦ୍ୱାରକା ଭୁବନେ ଶୁଭେ ପ୍ରବେଶ ହୋଇଲେ
ହରଷରେ ନମିଲେ ସେ ଜନନୀ ପୟରେ
ଛଅ ପୁଅଙ୍କୁ ସମର୍ପି ଦେଲେ ଆନନ୍ଦରେ ।
ତାଙ୍କୁ ଦେଖି ମାତାଙ୍କର ଆନନ୍ଦ ବଢ଼ିଲା
ସ୍ତନ ଯୁଗଳରୁ କ୍ଷୀର ଧାର ବହିଗଲା ।
ଏକ ଏକ କରି ପୁତ୍ରମାନଙ୍କୁ କୋଳରେ
ଧରିଲେ ଦେବକୀ ଦେବୀ ଆନନ୍ଦ ମନରେ ।
ସମସ୍ତଙ୍କୁ ସ୍ତନୁ କ୍ଷୀର ପିଆଇଲେ ମାତ
ସେ ଷଡ଼ଭାଇ ନମିଲେ କୃଷ୍ଣ ପାଦଗତ ।
ତାପରେ ପିତା ଜନନୀ ଚରଣେ ନମିଲେ
ବିନୟ ହୋଇଣ ତାଙ୍କୁ ବଚନ ବୋଇଲେ ।
ଆମ୍ଭେମାନେ ଦେବ ଅଂଶୀ ଅଟୁ ଆଗୋ ମାତ
ପ୍ରଭୁଙ୍କ ଲାଗି ପ୍ରସ୍ତୁତ କରୁଥିଲୁ ପଥ ।
ତୁମ୍ଭପରି ଜନନୀର ଗର୍ଭେ ଜନମି
କେତେ ଯେ ପୁଣ୍ୟ ଅର୍ଜିଛୁ କି କହିବୁ ଭାବି ।
ଆଉ ମଧ୍ୟ ତୁମ୍ଭର ବା କିବା ଦରକାର
ଜଗତ କରତା ପ୍ରଭୁ ଯାହାର କୁମର ।
ତିନିପୁର ମଧ୍ୟେ ଯେତେ ଦେବ ନାଗ ନର
ସଭିଙ୍କ ଜନନୀ ତୁମ୍ଭେ ମନରେ ବିଚାର ।
ଏମନ୍ତ କହିଣ ସେହି ଷଡ଼ ଗୋଟି ଭାଇ
ସ୍ୱରଗ ପୁରକୁ ଗଲେ ଆନନ୍ଦିତ ହୋଇ ।
ଦେଖିଣ ଦେବକୀ ଦେବୀ ଆନନ୍ଦିତା ହେଲେ
ବାର ବାର କୃଷ୍ଣେ କୋଳେଧରି ଚୁମ୍ବ ଦେଲେ
କୃଷ୍ଣଙ୍କ ଚରିତ ଅବା କେବା ବୁଝିପାରେ
ସହସ୍ର ମୁଖରେ ବ୍ରହ୍ମା ନ ପାରେ ଯାହାରେ
ଏକମାତ୍ର ଭକ୍ତ ବିନା ଆନ କେ ନ ପାନ୍ତି
ଭକତ ବାନ୍ଧବ ଭକ୍ତଲାଗି ଜାତ ହୋନ୍ତି ।
କର୍ଣ୍ଣଭରି ଯେହୁ ଶୁଣେ ନାମ ଶ୍ରୀକୃଷ୍ଣର
ଯମଦଣ୍ଡ ନ ଲାଗଇ ତାହା ମାତର ।
ସକଳ ପାପ ତାହାର ଖଣ୍ଡନ ହୁଅଇ
ଦିନୁଁ ଦିନ କୃଷ୍ଣପାଦେ ଭକତି ବଢ଼ଇ ।
ସୁତ ମୁନି ନାମରେ ଯେ ପୌରାଣିକ ବର
ପ୍ରକାଶିଲେ ଏହା ମୁନିମାନଙ୍କ ଆଗର ।
ବ୍ରହ୍ମ ପୁରାଣ ଆଖ୍ୟାନ ଅମୃତ ବାରିଧି
ପାଠ କରି ଶୁଣି ନର ନାରୀ ଲଭି ସିଦ୍ଧି ।
ଜଗତ ଜନନୀଙ୍କର ପାଦ ପଦ୍ମ ଧ୍ୟାୟି
ଅଧମ କ୍ଷେତ୍ର ମୋହନ ଭାବ ଯ୍ୱା ଲେଖଇ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତରଖଣ୍ଡେ ସୁତ
ଶୌନକ ସମ୍ବାଦେ କୃଷ୍ଣଙ୍କ ଦ୍ୱାରା
ଦେବକୀ ମୃତ ପୁତ୍ର ଆନୟନଂ
କଥନ ନାମ
ସପ୍ତତିତମୋଽଧ୍ୟାୟଃ ।



## ଏକ ସପ୍ତତିତମ ଅଧ୍ୟାୟ

## ସୁଭଦ୍ରାହରଣ ଓ ଶ୍ରୁତଦେବଙ୍କ ଚରିତ୍ର ବର୍ଣ୍ଣନ

### ଶୌନକ ଉବାଚ

ଶୁଣ ଶୁଣ ସୁଜ୍ଞଜନେ ଅପୂର୍ବ ଚରିତ
ସୁତ ମୁନିଙ୍କୁ ପୁଚ୍ଛିଲେ ସର୍ବ ତପୋବନ୍ତ ।
ଆହେ ପୌରାଣିକ ବର କୁହନ୍ତୁ ଆମ୍ଭରେ
ହରିବଂଶ ଗାଥା ଶୁଣି ବସିବୁ ଅମରେ ।
ସୁଭଦ୍ରା ନାମେଣ ଯେଉଁ ଭଗ୍ନୀ କୃଷ୍ଣଙ୍କର
ତାହାଙ୍କୁ ବିବାହ ହେଲେ ପାର୍ଥ ବୀରବର ।
ମଧ୍ୟମ ପାଣ୍ଡବ ସେହି ବୀର ଧନଞ୍ଜୟ
ସୁଭଦ୍ରାକୁ ହରି ଯେହ୍ନେ କଲେ ପରିଣୟ ।
ସେହି କଥା ଶୁଣିବାକୁ ବଳିଅଛି ମନ
ପ୍ରକାଶ କରି ଆମ୍ଭର ଆଗେ ତପୋଧନ ।
ଋଷିମାନଙ୍କ ମୁଖରୁ ଶୁଣି ଏହି ଗିର
ବଖାଣିଲେ ସୁତ ମୁନି ଆନନ୍ଦ ମନର ।
ବୋଇଲେ ଶୁଣ ହେ ମୁନିଗଣ ମନ ଦେଇ
ଯାହା ପଚ୍ଛରିଲ ତାହା ଦେଉଛି ବୁଝାଇ ।
ଶୁକ ମୁନି କହିଥିଲେ ପରୀକ୍ଷିତ ଆଗେ
ତାହା ପ୍ରକାଶ କରିବି ମୁହିଁ ତବ ଆଗେ ।
କୁନ୍ତୀଙ୍କର ସୁତ ଯେଉଁ ବୀର ଅରଜୁନ
ତୀର୍ଥ କରିବା ନିମନ୍ତେ କରିଲେ ଗମନ ।
ବ୍ରହ୍ମାଣ୍ଡ ମଧ୍ୟରେ ଯେତେ ସାରତୀର୍ଥ ଅଛି
ସକଳ ସ୍ଥାନେ ଭ୍ରମିଲେ ପଣ୍ଡୁଙ୍କର ବଳି ।
ପରିଶେଷେ ପ୍ରଭାସକୁ କରିଲେ ଗମନ
ସୁଭଦ୍ରାର ପରିଣୟ ଶୁଣିଲେ ସେ କର୍ଣ୍ଣ ।
ଯେ ସମ୍ବନ୍ଧ ବଳରାମ କଲେକ ନିଶ୍ଚୟ
ଦୁର୍ଯ୍ୟୋଧନେ ବିଭା ଦେବେ ମନେ କଲେଥୟ
ଅର୍ଜ୍ଜୁନ ବୀର ତା ଶୁଣି ଭାବଇ ମନରେ
ନିଶ୍ଚୟ ଯିବଇଁ ମୁହିଁ କନ୍ୟା ସ୍ୱୟମ୍ବରେ ।
ଯୋଗୀ ବେଶକୁ ଧାରଣ କରି ପାର୍ଥବୀର
ଦଣ୍ଡ କମଣ୍ଡଳୁ ଆଦି ଧରଣ ହାତର ।
ଅତିଥି ରୂପରେ ତହିଁ ରହେ ଧନଞ୍ଜୟ
ସ୍ୱକାର୍ଯ୍ୟ ସାଧନ ହେତୁ ତୀର୍ଥର ଆଶ୍ରୟ ।
ଏକଦିନେ କଉତୁକୀ ପ୍ରଭୁ ଜନାର୍ଦ୍ଦନ
ନିମନ୍ତ୍ରଣ କଲେ ପାର୍ଥେ ଆତିଥ୍ୟ କାରଣ ।
ପାର୍ଥ ଆଗମନ ନଜାଣନ୍ତି ହଳଧର
ପାର୍ଥଙ୍କୁ ରଖିଲେ କୃଷ୍ଣ ଆପଣା ପାଖର ।
ନିମନ୍ତ୍ରି ନିଜ ସଦନେ ଆଣି ଯଦୁପତି
ଯତନେ ସେ ଅର୍ଜ୍ଜୁନଙ୍କୁ ଭୋଜନ କରାନ୍ତି ।
ଆନନ୍ଦିତ ମନେ ପାର୍ଥ ସାରିଣ ଭୋଜନ
ସୁଭଦ୍ରା ସୁନ୍ଦରୀଙ୍କ ସେ ଦେଖିଲେ ତକ୍ଷଣ ।
ମନୋହର ଶୋଭା ତାର ପାର୍ଥ ଦେଖିକରି
ବିଶେଷ ଭାବରେ ସେହୁ କାମେ ହେଲା ଘାରି
ଆଗରେ ସୁଭଦ୍ରା ରୂପ କରି ବିଲୋକନ
ଅସ୍ଥିର ଅନ୍ତର ତାର ବ୍ୟାକୁଳିତ ମନ ।
ସୁଭଦ୍ରା ରୂପରେ ପାର୍ଥ ମୋହିତ ହୋଇଲା
ଅଧୈର୍ଯ୍ୟ ହେତୁରୁ ଅଙ୍ଗ ସଘନେ କମ୍ପିଲା ।
କଟାକ୍ଷ ଶର ଗୁଳନ୍ତେ ବୀର ଅରଜୁନ
ସୁଭଦ୍ରା ସେହି ଆଡ଼କୁ ଢ଼ାଳିଲା ନୟନ ।
ଗୁରିନେନେ ଏକାବେଳେ ହୋଇଲା ମିଳନ
କାମ ଜଳଧିରେ ଦୁହେଁ ହୋଇଲେ ମଗନ ।।
ଏଥୁଅନ୍ତେ ସମାଚାର ଶୁଣ ଆହେ ମୁନି
ଦେବୀ ଯାତ୍ରା ମହୋତ୍ସବ ଶୁଭବେଳା ଜାଣି ।
ବାହାରେ ଆସିଲେ ଯେତେ କୃଷ୍ଣ ପାଟରାଣୀ
ତାହାଙ୍କ ମେଳରେ ଥିଲା ସୁଭଦ୍ରା ତରୁଣୀ ।
ପଥମଧ୍ୟେ ସୁଭଦ୍ରାକୁ ଅର୍ଜ୍ଜୁନ ହରନ୍ତେ
କୃଷ୍ଣ ଅଭିପ୍ରାୟ ଏହା ଜାଣିଲେ ସମସ୍ତେ ।
ବାଟରେ କନ୍ୟା ହରିଲା ପାଣ୍ଡୁଙ୍କ ନନ୍ଦନ
ଶୁଣି ମହା କ୍ରୋଧୀ ହେଲେ ଯଦୁବଂଶୀଗଣ ।
ଯଦୁ ସେନାମାନେ ଯେତେ ପାର୍ଥଙ୍କୁ ଘେରିଲେ
ଧନୁରେ ବାଣକୁ ସନ୍ଧି ଯୁଦ୍ଧ ଆରମ୍ଭିଲେ ।
ଅତି କ୍ରୋଧଭରେ ତହୁଁ ବୀର ଧନଞ୍ଜୟ
ଅବହେଳେ ସମସ୍ତଙ୍କୁ କଲା ପରାଜୟ ।
ମୃଗପଲ୍ଲି ଯେହ୍ନେ ସିଂହ ପରାଜୟ କରେ
ଦେଲା ଯଦୁଗଣେ ପରାଭବ-ସେ ପ୍ରକାରେ ।
ସୁଭଦ୍ରାକୁ ଘେନି ପାର୍ଥ ଚଳିଲା ବହନ
ତାହାଶୁଣି ବଳଦେବ ଆରକ୍ତ ନୟନ ।
କ୍ରୋଧରେ ତାହାଙ୍କ ଅଙ୍ଗ କମ୍ପେ ଥରହର
ସିନ୍ଧୁ ତରଙ୍ଗ ଉଚ୍ଛୁଳେ ବାତେ ଯେ ପ୍ରକାର ।
ମହାକୋପେ ହଳଧର କମ୍ପିତ ଅନ୍ତର
ତା ଦେଖି ଚିନ୍ତାର୍ଥୀ ହେଲେ ରୁକ୍ମିଣୀଙ୍କ ବର

ଆପଣେ ପଡ଼ିଲେ ବଳରାମଙ୍କ ଚରଣେ
ତାହାଙ୍କୁ ତୋଷିଲେ ହରି ବିନୟ ବଚନେ ।
ବିଧିମତେ ଗଦାଧର ସାନ୍ତ୍ୱନା ଯେ କଲେ
ତଦନ୍ତରେ ହଳଧର ପ୍ରସନ୍ନ ହୋଇଲେ ।
ଯୌତୁକ କାରଣ ପାର୍ଥେ ବହୁଧନ ଦେଲେ
କୃଷ୍ଣ ଇଚ୍ଛା ଭାବି ମନେ ଆନନ୍ଦ ହୋଇଲେ ।
ଦାସ ଦାସୀ ଧନ କୃଷ୍ଣ ଦେଲେ ଅଗଣନ
ତଦନ୍ତେ ଇନ୍ଦ୍ରପ୍ରସ୍ଥକୁ ଗଲେ ଅରଜୁନ ।
ଏଥୁଅନ୍ତେ ଶୁଣ ମୁନି କୃଷ୍ଣଙ୍କ ଆଖ୍ୟାନ
ଶ୍ରବଣ ମାତ୍ରେ ପବିତ୍ର ହୁଏ ମନ ପ୍ରାଣ ।
ଶ୍ରୁତଦେବ ନାମେ ଥିଲା ଏକ ଦ୍ୱିଜବର
କୃଷ୍ଣଭକ୍ତ ଅଟେ ସେହି ମିଥିଳାରେ ଘର ।
ଋପୁଜୟୁକାରୀ ବିପ୍ର ଅତି ଶୁଦ୍ଧ ମତି
ଶ୍ରୀହରି ସେବାରେ ସେହୁ ବଞ୍ଚେ ଦିବାରାତି ।
ଲୋଭଶୂନ୍ୟ ଦ୍ୱିଜବର ଶାନ୍ତ ବିଦ୍ୟାବନ୍ତ
ନଥିଲା ତା ଅହଙ୍କାର ଅଭିମାନ ମାତ୍ର ।
ଦୈବଯୋଗେ ଯାହା ଯେବେ ତାହାକୁ ମିଳଇ
ତହିଁରେ ସେ ପ୍ରତିଦିନ ସନ୍ତୋଷ ହୁଅଇ ।
ବହୁଳାଶ୍ୱ ନାମେ ଥିଲା ମଥୁରା ଭୂପତି
କୃଷ୍ଣଭକ୍ତ ସେହି ନୃପ ସଦା କୃଷ୍ଣେ ମତି ।
କୃଷ୍ଣଭକ୍ତ ପରାୟଣ ସେ ଯେ ଦୁଇଜଣ
କୃଷ୍ଣଙ୍କର ପ୍ରିୟପାତ୍ର ଥିଲେ ଅନୁକ୍ଷଣ ।
ପ୍ରସନ୍ନ ହୋଇ ଶ୍ରୀହରି ସେ ଦୁହିଁଙ୍କଠାରେ
ମିଥିଳାପୁରେ ଚଳିଲେ ବସି ରଥପରେ ।
ଅନେକ ମୁନି ତାହାଙ୍କ ସଙ୍ଗରେ ଚଳିଲେ
ନାରଦ ପର୍ବତ ଆଦି ବ୍ରହ୍ମର୍ଷିକୁଳେ ।
କାମଦେବ ଅସି ମୁନି ଗଲେ ହରଷେଣ
ମହାର୍ଷି ମହାଜ୍ଞାନୀ ଅଦିତି ଅରୁଣ ।
ଆନନ୍ଦେ ଚଳିଲେ ସଙ୍ଗେ ଋଷି ବୃହସ୍ପତି
ଚୈବନ ମୈତ୍ରେୟ ମହାମୁନି ମହାଯତି ।
କୃଷ୍ଣ ସଙ୍ଗରେ ଚଳିଲେ ଏହି ପରକାରେ
ବହୁଦେଶ ଅତିକ୍ରମ କରିଲେ ତୋଷରେ ।
ଏମନ୍ତେ ଶ୍ରୀ ଜନାର୍ଦ୍ଦନ ମିଥିଳାକୁ ଗଲେ
ସେଠା ପୁରବାସୀ ଶୁଣି ଆନନ୍ଦେ ମଜ୍ଜିଲେ ।
ଶ୍ରୁତଦେବ ଭକ୍ତବର ମୈଥିଳ ନୃପତି
ଭକ୍ତିଭରେ ଅଇଲେ ଯେ ଶ୍ରୀକୃଷ୍ଣଙ୍କ କତି ।
କୃଷ୍ଣଙ୍କୁ ଦର୍ଶନ କରି ଆନନ୍ଦିତ ହେଲେ
ଅଭୟ ପାଦ ପଦ୍ମରେ ଶରଣ ପଶିଲେ ।
ସକଳ ମୁନିଙ୍କ ପାଦେ କଲେ ନମସ୍କାର
ଜଗତନାଥ ଦର୍ଶନେ ହେଲେ ତୋଷଭର ।
ଜନକ ରାଜନ ଶ୍ରୁତଦେବ ଦ୍ୱିଜବର
କରଯୋଡ଼ି ଶ୍ରୀକୃଷ୍ଣଙ୍କୁ କହନ୍ତି ସଧିର ।
ହେ ଜଗତ ନାଥ ଶୁଣ ଆମ୍ଭର ବଚନ
ମୁନିଗଣ ସଙ୍ଗେ କରି ଆତିଥ୍ୟ ଗ୍ରହଣ ।
ତା ଶୁଣି ସ୍ୱୀକାର କଲେ ପ୍ରଭୁ ଗଦାଧର
ଦୁହିଁଙ୍କର ନିମନ୍ତ୍ରଣ ଘେନିଲେ ସାଦର ।
ଏକାବେଳେ ଭକ୍ତ ଦୁହେଁ ନମସ୍କାର କଲେ
ବେନି ଜନଙ୍କର ମନ ଶ୍ରୀକୃଷ୍ଣ ଜାଣିଲେ ।
ଦୁଇ ଭକ୍ତଙ୍କର ରଖିବାକୁ ସନମାନ
ଅଲକ୍ଷିତେ ଦୁଇ ମୂର୍ତ୍ତି ହେଲେ ଭଗବାନ ।
ବେନି ଭକ୍ତଙ୍କର ଆଗେ ସେ ବନ୍ଧା ଅଟନ୍ତି
ଦୁହିଁଙ୍କ ଗୃହରେ ବିଜେ କଲେ ଦୁଇ ମୂର୍ତ୍ତି ।
ଶ୍ରୁତ ଦେବ ଦ୍ୱିଜବର ଜନକ ରାଜନ
କୃଷ୍ଣଙ୍କୁ ଘେନି ଚଳିଲେ ଯେ ଯାହା ଭୁବନ
ବିଚିତ୍ର ଆସନ ପରେ ବସାଇ ଯତନେ
ଅଦ୍ଭୁତ ଭକତି ଭାବ ଜାଣେ ତାଙ୍କ ମନେ ।
ପ୍ରଣମି କୃଷ୍ଣ ଚରଣ କରି ପ୍ରକ୍ଷାଳନ
ସକୁଟୁମ୍ବେ ଆନନ୍ଦରେ କରନ୍ତି ଭୋଜନ ।
ଜନକ ନୃପତି ବର ବିବିଧ ବିଧାନେ
ପୂଜିଲା କୃଷ୍ଣଙ୍କ ପାଦ ଆନନ୍ଦିତ ମନେ ।
ଗନ୍ଧ ପୁଷ୍ପ ଧୂପ ଦୀପ ବସ୍ତ୍ର ଅଲଙ୍କାର
ଭକ୍ତି ଭାବେ ପୂଜାକଲା କୃଷ୍ଣଙ୍କ ପୟର ।
ତଦନ୍ତେ କୋମଳ ବାକ୍ୟେ ପ୍ରାର୍ଥନା କରଇ
ଭାବେ ଗଦ ଗଦ ହୋଇ ଚରଣ ଧରଇ ।
ବୋଇଲା ଜନକ ରାଜା ଅତି ହରଷରେ
ବଚନ ଭାଷିଲା ବେଳେ ନେତ୍ର ନୀରଝରେ ।
ଝରନ୍ତି ଯାଏ ତାର ସ୍ତୁତି ଆନନ୍ଦ ଲୋତକେ
ସ୍ତୁତି ଆରମ୍ଭିଲା ରାଜା କୃତାଞ୍ଜଳି ବାକ୍ୟେ ।
ତୁମ୍ଭେ ସକଳ ଜୀବନ ଆତ୍ମା ଜନାର୍ଦ୍ଦନ
ସର୍ବ ଜୀବେ ସମଭାବ ଜଗତ କାରଣ ।
ଯୋଗୀମାନେ ଯୋଗେ ଯା ଚିନ୍ତନ୍ତି ଅବିରତ
ସେହି ପାଦ ପଦ୍ମତଳେ ମୋର ଦଣ୍ଡବତ ।

ଭାଗ୍ୟବଳେ ଶ୍ରୀଚରଣ କଲି ଦରଶନ
ତବପାଦ ଯୁଗେ ସଦା ଥାଉ ମୋର ମନ ।
ଅଧମ ଜାଣି ମୋହରେ କୃପା ବରଷିଲ
ସ୍ନେହଭରେ ଆହେ ନାଥ ଦରଶନ ଦେଲ
ତବ ପାଦ ଯେଉଁ ଜନ ଦରଶନ କରେ
ସେ ଜନ ଏକା ମୁକତି ଲଭେ ଏ ସଂସାରେ
ଏମନ୍ତ ପଦାରବିନ୍ଦ ପାଇ ସୁଭାଗ୍ୟରେ
କେଉଁ ଭକ୍ତ ଜନ ଅବା କେହ୍ନେ ଛାଡ଼ିପାରେ
ସବୁରି ବାଞ୍ଛିତ ଏହି ଯୁଗଳ ଚରଣ
ମୁନି ଜନମାନେ ସଦା କରୁଥାନ୍ତି ଧାନ ।
ତୁମ୍ଭେ ସର୍ବମୟ ପ୍ରଭୁ ଆତ୍ମା ସଭିଙ୍କର
ହେ କୃପାଳୁ ଯଦୁ କୁଳେ ହେଲ ଅବତାର ।
ତୁମ୍ଭେ ଆସି ଭୂମି ତଳେ ଜନମ ଲଭିଲ
ତ୍ରିଲୋକର ପାପ ତାପ ବିନାଶ କରିଲ ।
ଜଗତେ ତୁମ୍ଭର ଯଶ ସକଳେ ଗାଆନ୍ତି
ଅସୁର ବିନାଶ ଲାଗି ଜନ୍ମିଲେ ଧରଣୀ ।
ପରମ କରୁଣାମୟ ଜଗତ ଜୀବନ
ନିତ୍ୟ ନିରଞ୍ଜନ ହରି ସତ୍ୟ ସନାତନ ।
ଯଦି କୃପାକରି ମୋର ଗୃହକୁ ଆସିଲ
କିଛିଦିନ ମୋହ ପୁରେ ରୁହ ଆଦିମୂଳ ।
ମୁନିମାନଙ୍କ ସହିତେ ରହିଥାଅ ଏଥି
ଦ୍ୱିଜମାନଙ୍କ ସଙ୍ଗରେ ଥାଅ ଜଗନ୍ନାଥ ।
ଆନନ୍ଦ ମନରେ ପ୍ରଭୁ ଏଥି କର ବାସ
ପବିତ୍ର କର ମୋ ବଂଶ ଏହି ଅଭିଳାଷ ।
ଶିରେ ପଦ ଧୂଳି ଦିଅ ହେ ପଦ୍ମ ଲୋଚନ
ନିମି ବଂଶର ଦୁଷ୍କୃତ କର ବିମୋଚନ ।
ଏହିରୂପେ ଭକ୍ତ ଭାବେ କହନ୍ତେ ଜନକ
ସେଠାରେ ରହିଲେ ପ୍ରଭୁ ରୁକ୍ମିଣୀ ନାୟକ
ଭକତ ବତ୍ସଳ ହରି ଦୀନଜନ ବନ୍ଧୁ
ଶରଣ ରକ୍ଷଣ ଦେବ କରୁଣାର ସିନ୍ଧୁ ।
ଅତି ଆନନ୍ଦେ ଜନକ ଭୁବନେ ରହିଲେ
ସେହି ଭକ୍ତ ରାଜାଠାରେ କରୁଣା ବହିଲେ
ଏଥୁଅନ୍ତେ ଶୁଣ ମୁନି ଅପୂର୍ବ କଥନ
ଶ୍ରୁତଦେବ ଶ୍ରୀହରିଙ୍କ ପାଇ ତୋଷ ମନ ।
ମହା ଆନନ୍ଦରେ ମତ୍ତହେଲା ଦ୍ୱିଜବର
ଭକ୍ତିଭାବେ ପଦପାଦେ କଲା ନମସ୍କାର ।
ବସିବା ପାଇଁକି ଦେଲା କୁଶର ଆସନ
ପତ୍ନୀତୁଲେ କଲା କୃଷ୍ଣ ଚରଣ ବନ୍ଦନ ।
କୃଷ୍ଣ ପାଦ ପଖାଳିଲା ହରଷ ଚିତ୍ତରେ
ପୂଜାକଲା କୃଷ୍ଣ ପାଦ ଅତି ସମାଦରେ ।
ସୁଗନ୍ଧିତ ଜଳେ କୃଷ୍ଣ କରାଇଲା ସ୍ନାନ
ମାନସେ ମଣିଲା ମୋର ମନୋରଥ ପୂର୍ଣ୍ଣ ।
ତୁଳସୀ ପତ୍ରେ ପୂଜିଲା ସେ ପଦ୍ମ ଚରଣ
ଭୋଜନ ନିମନ୍ତେ କଲା ଦ୍ରବ୍ୟ ଆୟୋଜନ ।
ଫଳ ମୂଳ ଜଳ ଆଣି ସମର୍ପଣ କଲା
ଶକ୍ତି ଅନୁସାରେ ସେ ମଣୋହି କରାଇଲା ।
ଯେବଣ ଚରଣ ଅଟେ ସର୍ବ ତୀର୍ଥମୟେ
ସେ ପାଦ ପୂଜଇ ବିପ୍ର ସାନନ୍ଦ ହୃଦୟେ ।
ପରମ ଆନନ୍ଦ ରସେ ହୋଇ ନିମଗନ
ଅନ୍ତର ଗତରେ ଚିନ୍ତେ ଶ୍ରୀକୃଷ୍ଣ ଚରଣ ।
ପତ୍ନୀ ପୁତ୍ରଙ୍କ ସହିତେ ସେହି ଦ୍ୱିଜବର
ପ୍ରାର୍ଥନା କରଇ ରହି କୃଷ୍ଣଙ୍କ ଛାମୁର ।
କେତେ ପୁଣ୍ୟ ପାଇଲି ମୁଁ ତବ ଦରଶନ
ଏବେ ଶୁଣ ଦୟାନିଧି ମୋର ନିବେଦନ ।
ତୁମ୍ଭ ନାମ ଗୁଣ ଥରେ ଶୁଣେ ଯେଉଁ ନର
ତୁମ୍ଭ ଯଶ କୀର୍ତ୍ତିଗାନ କରେ ନିରନ୍ତର ।
ତୁମ୍ଭ ଯୁଗଳ ପୟର ସେବେ ଯେଉଁ ଜନ
ଭକ୍ତିଭାବେ କରେ ତୁମ୍ଭ ଚରଣ ବନ୍ଦନ ।
ପାପଶୂନ୍ୟ ଅଙ୍ଗ ତାର ତକ୍ଷଣେ ହୁଅଇ
ମୁକ୍ତିପଦ ଅନାୟାସେ ସେ ଜନ ଲଭଇ ।
ସେ ମାନବ କର୍ମଫଳ କରଇ ଛେଦନ
ନମୋ ନମୋ ମହାଯୋଗୀ ଜଗତ ମୋହନ
ପରଂବ୍ରହ୍ମ ପରମାତ୍ମା ସର୍ବ ଭୂତେଶ୍ୱର
ଦୟାକରି ବିଜେକର ମୋର ନିଜପୁର ।
ପୂର୍ବ ଜନ୍ମକୃତ ପୁଣ୍ୟ ଥିବାରୁ ସଞ୍ଚିତ
ତେଣୁ ଆଜ ମୋ କୁଟୀରେ ବିଜୟେ ଶ୍ରୀନାଥ
ଶ୍ରୀ ପୁରୁଷୋତ୍ତମ ଜଗଦୀଶ ନାରାୟଣ
ମାୟାରେ କରିଛ ସଦା ଦୃଷ୍ଟି ଆବରଣ ।
ଆମ୍ଭେ ହେ ସକଳ ନିତ୍ୟ କିଙ୍କର ତୁମ୍ଭର
କି କାର୍ଯ୍ୟ କରିବି ପ୍ରଭୁ କହ ବେଗକରି ।
ଯେ ପର୍ଯ୍ୟନ୍ତ ତୁମ୍ଭଙ୍କୁ ନ ପାନ୍ତି ହୃଷୀକେଶ
ତେତେ ଦିନ ଜୀବଗଣ ପାଉଥାନ୍ତି କ୍ଳେଶ ।

ଦ୍ୱିଜର ବଚନେ ଭକ୍ତ ପ୍ରିୟ ଭଗବାନ
ମନେ ହସିଣ ତାହାଙ୍କୁ କହିଲେ ତକ୍ଷଣ ।
ଭକ୍ତ ବିପ୍ର ହସ୍ତ ଧରି କହନ୍ତି ଶ୍ରୀପତି
ତୁମ୍ଭ ଅନୁ ଗ୍ରହ ହେତୁ ଅଇଲି ମୁଁ ଏଥି ।
ସର୍ବ ଦେବମୟ ବିପ୍ର ବେଦରେ ବଖାଣେ
ସର୍ବଦେବ ବୋଲି ମୁହିଁ କହେ ସେ କାରଣେ
ମୋ ଶକ୍ତି ଧରନ୍ତି ଭବେ ବ୍ରାହ୍ମଣ ସମୂହ
ବିପ୍ରଙ୍କର ସେବା କଲେ ମୋ ସେବା ନିଶ୍ଚୟ
ଏମନ୍ତେ କୃଷ୍ଣ କହନ୍ତି ଭକ୍ତ ଦ୍ୱିଜବରେ
କହିଲେ ଏହି ସମ୍ବାଦ ଜନକ ଗୋଚରେ ।
ଦୁହିଙ୍କ ଭକ୍ତି-ରଜ୍ଜୁରେ ଶ୍ରୀ ମଧୁସୂଦନ
ବନ୍ଧନ ହୋଇ ରହିଲେ ତହିଁ କଛୁଦିନ ।
ଗରିବ ବ୍ରାହ୍ମଣ ଭକ୍ତ ସଦନେ ଶ୍ରୀହରି
ମହା ସୁଖରେ ରହିଲେ ଭକ୍ତ ଅନୁସରି ।
ଏମନ୍ତେ ଭକ୍ତ ବତ୍ସଳ କରୁଣା ନିଧାନ
ଦୁଇଭକ୍ତଙ୍କର ମନବାଞ୍ଛା କରି ପୂର୍ଣ୍ଣ ।
ପୁଣି ବାହୁଡ଼ା ବିଜୟ ଦ୍ୱାରକା ନଗରେ
ମୁନିମାନେ ହର୍ଷ ମନେ ଅଇଲେ ସଙ୍ଗରେ ।
ବ୍ରହ୍ମ ପୁରାଣ ଆଖ୍ୟାନ ଅମୃତ ବାରିଧି
ପଢ଼ି ଶୁଣି ସୁଜ୍ଞଜନ ଲଭ ସର୍ବ ସିଦ୍ଧି ।
ଏହା କହି ସୂତମୁନି ହୋଇଲେ ମଉନ
ଗୀତଛନ୍ଦେ ବିରଚିଲ କ୍ଷେତ୍ରବାସୀ ହୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଶ୍ରୁତ ଦେବ
ଚରିତ କଥନଂ ନାମ ଏକ
ସପ୍ତତିତମୋଽଧ୍ୟାୟଃ ।

—•—

## ଦ୍ୱିସପ୍ତତିତମ ଅଧ୍ୟାୟ
## ରୁଦ୍ର ମୋକ୍ଷଣ ଓ ଶ୍ରୀକୃଷ୍ଣଙ୍କ ମହିମା ବର୍ଣ୍ଣନ

ଶୌନକ ଉବାଚ

ଏଥୁ ଅନନ୍ତରେ ଶୁଣ ଆନକଥାମାନ ।
ସୂତ ମୁନିଙ୍କୁ ପୁଚ୍ଛିଲେ ଶୌନକ ସୁଜାଣ ।
ବୋଇଲେ ହେ ପୌରାଣିକ କହିଲେ ଯେଗିରି
ଶ୍ରବଣ ମାତ୍ରକେ ପାପ ଘୁଞ୍ଚିଲା ଆମ୍ଭର ।
ଏବେ ଆଉ ଏକ କଥା କୁହନ୍ତୁ ବୁଝାଇ
ଏହି ଜଗତର ଜନମାନେ କାହିଁ ପାଇଁ ।
ଧନ ଜନ ବିଦ୍ୟା ଲାଗି ଶିବଙ୍କ ପୟରେ
କର୍ମୀ ଭଜନ୍ତି ନ ଭଜ ବିଷ୍ଣୁଙ୍କ ସତ୍ତରେ ।
ଯେଉଁ ପ୍ରଭୁଠାରୁ ଗତ ମୁକତି ଲଭନ୍ତି
ଶିବ ମଧ୍ୟ ଦିବା ନିଶି ଯାହାଙ୍କୁ ଭଜନ୍ତି ।
ଏମାନେ କର୍ମୀ ପୂଜନ୍ତି ଶିବଙ୍କ ପୟର
ତାହା ବୁଝାଇଣ କୁହ ଆମ୍ଭ ଅଗ୍ରତର ।
ଶୌନକ ବଚନ ଶୁଣି ବୋଲନ୍ତି ସେ ସୂତ
ପଚାରିଲ ଯେଉଁ କଥା ଶୁଣ ତା ଉଦନ୍ତ ।
ସତ ରଜ ତମ ଗୁଣି ଅଟନ୍ତି ଶଙ୍କର
ଶ୍ରୀହରି ଅଟନ୍ତି ସେ ନିର୍ଗୁଣ ନିରାକାର ।
ଦୃଷ୍ଟି ଅଗୋଚରେ ସର୍ବ ଜନଙ୍କୁ ଦେଖନ୍ତି
ଏହିଲାଗି ଶଙ୍କରଙ୍କୁ ସକଳେ ଭଜନ୍ତି ।
ଅଶ୍ୱମେଧ ଯଜ୍ଞ ସମାପନ ସମାପ୍ତରେ
ଯୁଧିଷ୍ଠିର ପୁଚ୍ଛିଥିଲେ ଦେବ ଚକ୍ରଧରେ ।
ଧର୍ମ ନନ୍ଦନ ବଚନ ଶୁଣି ଦାମୋଦର
ଆନନ୍ଦରେ ଦେଇଥିଲେ ତାହାଙ୍କ ଉତ୍ତର ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ମୋହର ବଚନ
ଯେ ପ୍ରାଣୀ ଏକାନ୍ତ ମୋତେ କରଇ ଭଜନ
ପ୍ରଥମେ ତା ଧନ ପୁତ୍ର ମୁଁ ହରଣ କରେ
ଜାଣ ହେ ରାଜନ ପରେ ତାକୁ ଦୟା କରେ
ପରିଜନ ଶୂନ୍ୟ ହୋଇ ନ ଥାଏ ତା ମାୟା
ବନ୍ଧୁ ଶୂନ୍ୟ ହୁଏ ହୃଦ ଶୁଣି ହୁଏ କାୟା ।
ତଦନ୍ତରେ ଯୋଗମାନେ କରି ସେ ଗମନ
ଏକାନ୍ତହୋଇ କରଇ ମୋ ପାଦେ ସେବନ
ନିର୍ବିକାର ମନେ ମୋତେ ଭଜନ ଯେ କରେ
ମାୟା ଶୂନ୍ୟ ହୋଇମୋତେ ଭଜେ ନିରନ୍ତରେ
ସେ ପ୍ରାଣୀ ମାୟା କୂପରୁ ଉଦ୍ଧାର ଲଭଇ
ମୋତେ ଛାଡ଼ି ଆନ ଦେବ କେବେ ନ ଭଜଇ
ଆଶ୍ୱରିକ ଭାବ ସଦା ଯେ ଜନ ଆଚରେ
ମହେଶ୍ୱରଙ୍କ ପାଦରେ ସେ ଭଜନ କରେ ।
ଧନ ପୁତ୍ର ଲାଗି ସଦା କାମନା ତାହାର
ରାଜ୍ୟ ଧନ ବରଦ୍ୟନ୍ତି ତାକୁ ମହେଶ୍ୱର ।
ମାତ୍ର ଅହଙ୍କାରେ ସେହୁ ସଦା ରତ ଥାଏ
କହିଲନ୍ତି ସାର କଥା ଶୁଣ ତପିରାୟେ ।

ଆହୁରି ଏକଇ କଥା କହୁଅଛୁ ଶୁଣ
ବ୍ରହ୍ମା ବିଷ୍ଣୁ ଶିବ ଏହି ତିନି ଯେ ପ୍ରଧାନ ।
ସତଗୁଣେ ବିଷ୍ଣୁ ରଜୋଗୁଣେ ବେଦବର
ତମଗୁଣରେ ଯେ ଶିବ କରନ୍ତି ସଂହାର ।
କାହାକୁ ଶାପ ନ ଦିଅନ୍ତି ପ୍ରଭୁ ଚକ୍ରପାଣି
ଶୁଣ ଶୁଣ ତୁମ୍ଭେ ଏକ ପ୍ରାଚୀନ କାହାଣୀ ।
ବୃକାସୁର ନାମେ ଥିଲା ଏକଇ ଅସୁର
ଶିବଙ୍କ ନିକଟେ ତପ କରିଲା ସେ ଘୋର ।
ବରଦେଇ ମହାଦେବ ସଙ୍କଟେ ପଡ଼ିଲେ
ଅତ୍ୟନ୍ତ ବିଚିତ୍ର ଏହା ଶୁଣ କୁତୁହଳେ ।
ଶୌନକ ବୋଇଲେ ବାରେ ମୁନି ଦୟାକରି
ଆମ୍ଭଅଗ୍ରତରେ ତାହା କୁହନ୍ତୁ ବିସ୍ତରି ।
ସୁତ ମୁନି ବୋଲନ୍ତି ଯେ ଶୁଣ ମନଦେଇ
ବୃକାସୁରକୁ ସକଳେ ଜାଣନ୍ତି ଯେ ତହିଁ ।
ଶକୁନିର ପୁତ୍ର ସେହୁ ଅତି ଖଳ ମତି
ନାରଦଙ୍କ ନିକଟକୁ ଶୀଘ୍ର କଲା ଗତି ।
ପୁଚ୍ଛିଲେ ତକ୍ଷଣ ମିଳି ଋଷିଙ୍କ ପାଶରେ
ପ୍ରଧାନ ଅଟନ୍ତି କିଏ ତିନିଙ୍କ ମଧ୍ୟରେ ।
ବୋଇଲେ ଦେବର୍ଷି ତହୁଁ ଶୁଣ ଦୈତ୍ୟସାଇଁ
ତିନିଙ୍କ ମଧ୍ୟରେ ଶିବ ଶ୍ରେଷ୍ଠ ଯେ ବୋଲାଇ ।
କାମନା ସିଦ୍ଧହୋଇବ ଭଜ ପଶୁପତି
ଅଳ୍ପକାଳେ ମନବାଞ୍ଛା ସିଦ୍ଧ ହେବ ଅତି ।
ବାଣାସୁର ନୃପ ଆଉ ରାଜା ଦଶାନନ
ସ୍ତବରେ ସନ୍ତୋଷ କରି ଦେବ ତ୍ରିଲୋଚନ ।
ପାଇଲେ ଐଶ୍ୱର୍ଯ୍ୟ ଯେତେ କେବାକହିପାରେ
ଶିବ ତାଙ୍କୁ ବର ଦେଲେ ପ୍ରସନ୍ନ ଭାବରେ ।
ଏଣୁ ଭଜ ଦୈତ୍ୟବର ଦେବ ମହେଶ୍ୱର
ଅତୁଳ ଐଶ୍ୱର୍ଯ୍ୟ ହେ ପାଇବ ସତ୍ୱର ।
ନାରଦଙ୍କ ବାଣୀ ଶୁଣି ସେହି ଦୈତ୍ୟପତି
ଶଙ୍କରଙ୍କୁ ଧ୍ୟାନକରେ ଭକ୍ତିଭରେ ଅତି ।
ଆପଣା ଦେହରୁ ମାଂସଖଣ୍ଡ କାଟି କରି ନିଏ
ସେହି ମାଂସକୁ ଅଗ୍ନିରେ ଆହୁତି ସେ ଦିଏ ।
ଏହିମତେ ସାତଦିନ୍ୟ କରେ ଦୁଷ୍ଟମତି
ତଥାପି ଦେଖା ନ ଦିଅନ୍ତି ପାର୍ବତୀଙ୍କ ପତି ।
ମନେ ମନେ ବୃକାସୁର ଭାବି ତଦନ୍ତେଣ
ମସ୍ତକ କାଟିବା ପାଇଁ ଉଦ୍ୟତ ତକ୍ଷଣ ।

ଅଦଭୁତ କଥା ଶୁଣ ହେ ମୁନି ସମୂହେ
ଯେତେବେଳେ ନିଜ ଶିର କାଟିବାକୁ ଯାଏ
ସେକ୍ଷଣି ଶଙ୍କର ତାକୁ କହିଲେ ସାକ୍ଷାତେ
ମହା ତପସ୍ୟାରେ ତୁହି ତୋଷକଲୁ ମୋତେ
ଇଚ୍ଛା ଅନୁଯାରେ ଏବେ ବରମାଗି ନେନ
ବୃକାସୁର କହେ ଶୁଣି ଶିବଙ୍କ ବଚନ ।
ମୋହର ପ୍ରାର୍ଥନା ଶୁଣ ଆହେ ତ୍ରିଲୋଚନ
ଯହିଁରେ ହୁଅଇ ଲୋକ ଭୟ ନିବାରଣ ।
ମୋ ପ୍ରତି ସଦୟ ହୋଇ ସେହି ବର ଦିଅ
ଯେପରି ମୋହର ହେବ ବିଶେଷରେ ଶ୍ରେୟ
ଯାହାର ମୁଣ୍ଡେ ମୁଁ ହାତଦେବିଯେତେବେଳେ
ଭସ୍ମ ହୋଇ ଯିବ ସେହି ଜନ୍ତୁ ତତକାଳେ
ଶିବଙ୍କ ପାଶେ ଏ ବର ମାଗନ୍ତେ ସେ ଦୈତ୍ୟ
ତାହା ଶୁଣି ମହେଶ୍ୱର ହୋଇଲେ ଚିନ୍ତିତ ।
କିଛିକ୍ଷଣ ସ୍ଥିରଭାବେ ରହିଲେ ଶଙ୍କର
ସେ ଉତ୍ତାରୁ ଦୟାକର ତାକୁ ଦେଲେ ବର ।
ବର ଦେଇ ସାରି ହର ପାଞ୍ଚିଲେ ତକ୍ଷଣ
ସର୍ପେ ସୁଧା ଦାନ ସମ ହୋଇଲାଟି ଜାଣ ।
ଏଥୁଅନ୍ତେ ଯାହା ହେଲା ଶୁଣ ତପୋଧନ
ବର ପାଇ ଦୈତ୍ୟ ନିଜ ବିଗିଡ଼ିଲା ମନ ।
ଆଗ ଶିବଙ୍କ ମଥାରେ ମୁହିଁ ହସ୍ତ ଦେବି
କେମନ୍ତ ସେ ବର ମୁହିଁ ପରୀକ୍ଷା କରିବି ।
ତହୁଁ ସେ ଦୁଷ୍ଟ ଅସୁର ହସ୍ତକୁ ଉଠାଇ
ଧାଇଁଲା ଶିବଙ୍କ ଶିରେ ଲଦିବାର ପାଇଁ ।
ସେତେବେଳେ ସଦାଶିବ ଅତି ଭୀତ ମନେ
ପଳାନ୍ତି ସେହି ଠାବରୁ କମ୍ପିଣ ସଘନେ ।
ଅସୁର ଭୟରେ ଅଙ୍ଗ ହୁଏ ଥରି ହର
ପଳାଇଲେ ଡରି ତାଙ୍କୁ ହୋଇ ଖରତର ।
ଆଗେ ଆଗେ ଭୋଳାନାଥ ଗମନ୍ତି ସଭୟେ
ତାଙ୍କ ପଛେ ୨ ଦୈତ୍ୟ ସେକାଳେ ଗୋଡ଼ାଏ
ସ୍ୱର୍ଗ ମର୍ତ୍ତ୍ୟ ରସାତଳ କଲେ ସେ ଭ୍ରମଣ
ସାଗର ଜଳ ମଧ୍ୟରେ ହୋଇଲେ ମଗନ ।
ପୁଣି ଶିବ ଅନ୍ତରୀକ୍ଷରେ ତହୁଁ ବାହାରିଲେ
ଭୟେ ଥରି ଥରି ଅତି ବେଗରେ ଧାଇଁଲେ
ନଦ ନଦୀ ଗିରି ଗୁହା ଯହିଁ ଶିବ ଯାନ୍ତି
ପଛେ ପଛେ ଗୋଡ଼ାଇଛି ଦୁଷ୍ଟ ଦୈତ୍ୟପତି

ପରିତ୍ରାଣ ନ ପାଇଲେ କାହିଁ ମହେଶ୍ୱର
ବୈକୁଣ୍ଠ ପୁରକୁ ଗଲେ ଯହିଁ ଚକ୍ରଧର ।
ରତ୍ନ ସିଂହାସନେ ବିଜେ କରିଥିଲେ ହରି
ଭୋଳାନାଥ ପ୍ରବେଶିଲେ ଭୟେ ଥରି ଥରି ।
ଜଣାଇଲେ ଶ୍ରୀଛାମୁରେ ଆପଣେ ଶଙ୍କର
ଏ ମହା ବିପଦୁ ନାରାୟଣ ରକ୍ଷାକର ।
ଆହେ ଦେବ ସର୍ବାଶ୍ରୟ କରୁଣା ନିଧାନ
ସଙ୍କଟେ ପଡ଼ିଛୁ ଏବେ ରଖ ଜନାର୍ଦ୍ଦନ ।
ଶରଣ ରକ୍ଷଣ ହରି ବିପଦ ଭଞ୍ଜନ
ସନ୍ଥ ପାଳନ ହେ ଦୁଷ୍ଟ ଗରବ ଗଞ୍ଜନ ।
ରକ୍ଷାକର ଏତେବେଳେ ଆହେ ରମାପତି
ବିଷ୍ଣୁଙ୍କ ପାଦ ଧଇଲେ କହି ଏ ଭାରତି ।
ଭକ୍ତ ଚିନ୍ତାମଣି ହରି ଅନ୍ତରେ ଜାଣିଲେ
ଶିବଙ୍କୁ ଭୟାକ୍ତ ଦେଖି ଯୋଗୀରୂପ ହେଲେ ।
ମହା ତେଜବନ୍ତ ମୂର୍ତ୍ତି କଲେ ସେ ଧାରଣ
ଯେସନେ କୋଟି ଦିବାକର ଦେବ ହୁତାଶନ ।
ଅକ୍ଷମାଳା ଦଣ୍ଡ କୁଶ କରିଣ ଧାରଣ
ସଧୀରେ କହିଲେ ବୃକାସୁରକୁ ବଚନ ।
ମୋହର ବଚନ ଶୁଣ ଆହେ ମହାମତି
ଅତି ଶ୍ରାନ୍ତ ହୋଇ କେଣେ କରୁଅଛ ଗତି ।
ଝାଳରେ ବସନ ତିନ୍ତି ଯାଇଛି ତୁମ୍ଭର
କେଣିକି ଯାଉଛ ସାରି କୁହ ମୋ ଆଗର ।
ବିଷ୍ଣୁଙ୍କ ବଚନ ମଣି ଅମୃତ ସମାନ
କହିଲା ସକଳ କଥା ବୃକାସୁର ଜାଣ ।
ମାୟାଧରଙ୍କର ମାୟା ବୁଝି ନ ପାରିଲା
ଅନ୍ତର କଥା ଖୋଲିଣ ତାହାଙ୍କୁ କହିଲା ।
ବୋଇଲା ଶିବଠୁ ବର ପାଇଅଛି ମୁହିଁ
ଯାହାମୁଣ୍ଡେ ହାତଦେବି ଜଳିଯିବ ସେହି ।
ଆଦ୍ୟରେ ତାହା ପରୀକ୍ଷା କରିବା ନିମନ୍ତେ
ବର ଦାତା ମୁଣ୍ଡେ ହାତ ଦେବି ଭାବି ଚିତ୍ତେ
ଲୁହନ୍ତେ ଶିବଙ୍କୁ ସେହୁ କରି ପଳାୟନ
ଏହି ପଂଥେ ଯାଇଛି ମୁଁ କରେ ଅନ୍ୱେଷଣ ।
ଦୈତ୍ୟବର ମୁଖୁ ଶୁଣି ଏମନ୍ତ ବଚନ
ଦୟାମୟ ଜନାର୍ଦ୍ଦନ ବୋଇଲେ ବଚନ ।
କିମ୍ପା ବୃଥା ପରିଶ୍ରମ କର ଦୈତ୍ୟବର
ମୋହର ବିଶ୍ୱାସ ନାହିଁ ତା କଥାର ।

ସେ ଶିବର ସବୁକଥା ଅଟଇ ଯେ ମିଥ୍ୟା
ଦକ୍ଷ ଶାପରେ ପାଗଳ ହୋଇଛି ତା ମଥା ।
ସଦା ସେହୁ ଭୂତ ପ୍ରେତ ସଙ୍ଗେ ଭ୍ରମୁଥାଏ
ତାହା କଥାକୁ କେ ତିଳେ ପରତେ ନ ଯାଏ
ଏଣୁ ତାର ଦେବା ବର ନୁହେଁ ତିଳେ ସତ୍ୟ
ବୃଥା ପରିଶ୍ରମ କରି ଧାଆଁ ଏତେ ପଥ ।
ଭଣ୍ଡାଇ ଦେଇଛି ବୋଲି କହି ମିଥ୍ୟା ଗୀର
ତେଣୁ ଭୟ ପାଇ ପଳାଇଛି ସେହି ସ୍ଥିର ।
ବୃଥାଟାରେ ଏତେଶ୍ରମ କରି ତପ କଲ
ନିମିଷେ ମାତ୍ରକ ଜାଣ ନ ପାଇବ ଫଳ ।
ଏ ହେତୁ କହୁଛି ମୁହିଁ ତୁମ୍ଭଙ୍କୁ ବୁଝାଇ
ମୋହ କଥାମାନ କାର୍ଯ୍ୟ କଲେ ଫଳପାଇ ।
ଏ କଥା ସତ କି ମିଛ ବୁଝିବ ଏକ୍ଷଣେ
ହାତ ଦିଅ ନିଜ ଶିରେ ପରୀକ୍ଷା କାରଣେ ।
ସତ୍ୟ ମିଥ୍ୟା ଏହିକ୍ଷଣି ସମସ୍ତ ଜାଣିବ
ଶଙ୍କର ବଚନ ମିଛ ବୋଲି ବିଚାରିବ ।
ତାପରେ ଉଚିତ ଦଣ୍ଡ ଦେଇ ସେ ଭଣ୍ଡକୁ
ଉପଯୁକ୍ତ ଶିକ୍ଷାଦେବ ସେହି ପାଗଳାକୁ ।
ଅତଏବ ହାତଦିଅ ଆପଣାର ଶିରେ
ଶିବ ବର ସତ ମିଛ ବୁଝିବ ଏଠାରେ ।
ବିଷ୍ଣୁଙ୍କ ବଚନେ ଦୈତ୍ୟ ବୁଦ୍ଧି ନାଶହେଲା
ନିଜର ହିତ ଅହିତ ଜାଣି ନ ପାରିଲା ।
ବିପରୀତ ବୁଦ୍ଧି ତାର ହୋଇଲା ଚଞ୍ଚଳେ
ମାୟାରେମୋହିତ ସେହୁହେଲା ସେତେବେଳେ
ସତ ମଣି ଯହୁଁ ନିଜ ଶିରେ ହାତ ଦେଲା
ହୁଉ ହୁଉ ହୋଇ ସାଥେ ସାଥେ ଜଳିଗଲା ।
ଜୟ ଜୟ ଧ୍ୱନି ହୋଇ ଉଠିଲା ସ୍ୱର୍ଗ ପୁରେ
ପୁଷ୍ପ ବରଷିଲେ ଦେବେ ବିଷ୍ଣୁଙ୍କ ଉପରେ ।
ସର୍ବ ଋଷିଗଣେ ହେଲେ ଆନନ୍ଦେ ମଗନ
ବିଷ୍ଣୁଙ୍କୁ ସକଳେ ତହିଁ କଲେ ଧନ୍ୟ ଧନ୍ୟ ।
ଅସୁର ହାତରୁ ଶିବ ପାଆନ୍ତେ ଉଦ୍ଧାର
କହିଲେ ତାହାଙ୍କୁ ପ୍ରଭୁ କମଳାର ବର
ଏମନ୍ତେ କରିବା ତବ ଉଚିତ ନୁହଇଁ
ବୁଝି ସୁଝି ବରଦେବା ବିଧାନ ଅଟଇ ।
ତା ଶୁଣି ଆପଣା ମନେ କରି ଅନୁତାପ
ବିଷ୍ଣୁଙ୍କ ପାଦେ ନମିଲେ କୈଳାସ ନାୟକ

ପୂର୍ବର କାହାଣୀ ଶୁଣିଲୁଁ ତପୋଧନ
ଏ କଥନ ଯେଉଁ ଜନ କରଇ ଶ୍ରବଣ ।
ସକଳ ପାପରୁ ସେହୁ ନିସ୍ତାର ହୁଅଇ
ଅନ୍ତଃକାଳେ ବଇକୁଣ୍ଠେ ଯାଇଣ ବସଇ ।
ମହାପାପୀ ଦୁରାଚାର ଥିବ ଯେଉଁଜନ
ଏକାନ୍ତରେ ଏହା ଯଦି କରଇ ଶ୍ରବଣ ।
ନରକ ଯନ୍ତ୍ରଣା କେଭେ ତାରେ ନ ଘଟଇ
ଏଣୁ ସର୍ବେ ଶ୍ରୀବିଷ୍ଣୁଙ୍କୁ ଭଜ ମନ ଦେଇ ।
କଠୋର ଜଠର ଜ୍ୱାଳା ତାର ନ ରହିବ
ଇହକାଳେ ପରକାଳେ ସେ ସୁଖ ଲଭିବ ।
ଭାବୁକ ଭକତ ଯେତେ ଅବନୀ ମଣ୍ଡଳେ
ଏ ବ୍ରହ୍ମ ପୁରାଣ ଯେବେ ଶୁଣେ କୁତୁହଳେ ।
ଅଷ୍ଟାଦଶ ପୁରାଣର ଆଦ୍ୟ ଗ୍ରନ୍ଥ ଏହି
ପଢ଼ି ଶୁଣି ଏ ସଂସାର ମଧ୍ୟୁ ପାଅ ତ୍ରାହି ।
ଏହି ପୁରାଣ ଅଟଇ କଳ୍ପ ଦ୍ରୁମ ପରି
ଭକ୍ତଙ୍କ ଅମୃତ ଫଳ ଦିଏ ଦାନ କରି ।
ଭକ୍ତିରେ ଆଳୟ ଏ ଯେ ରସର ସାଗର
ପରମ ବ୍ରହ୍ମ ହରିଙ୍କ ଲୀଳା ସୁଧାସାର ।
ଏକ ମନେ ଏ ରସ ଯେ କରେ ଆସ୍ୱାଦନ
ଅନୁକ୍ଷଣ ବିଷ୍ଣୁପଦେ ରହେ ତାର ମନ ।
ବ୍ୟାସ ଦେବଙ୍କର ମୂଳ ଶ୍ଳୋକ ଅନୁବାଦେ
କ୍ଷେତ୍ରମୋହନ ଭଣଇ ଭାଷା ପଦବନ୍ଧେ ।

ଇତି ଶ୍ରୀବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ରୁଦ୍ର
ମୋକ୍ଷଣ କଥନେ ନାମ
ଦ୍ୱିସପ୍ତତିତମୋଽଧ୍ୟାୟଃ ।



## ତ୍ରିସପ୍ତତିତମ ଅଧ୍ୟାୟ
## ନର ନାରାୟଣଙ୍କ ଦ୍ୱିଜପୁତ୍ର ଆନୟନ ବୃତ୍ତାନ୍ତ

ସୂତ ଉବାଚ

ଏଥୁଅନ୍ତେ ହେ ତାପସେ ଶୁଣ ଏବେ ଧୀରେ
ମୁନିଏ ଯଜ୍ଞ କରନ୍ତି ସରସ୍ୱତୀ ତୀରେ ।
ସମବେତ ହୋଇ ତହିଁ ସର୍ବ ମୁନିଗଣ
ପରସ୍ପରେ ଏହି କଥା କଲେ ଉଥାପନ ।
ବ୍ରହ୍ମା ବିଷ୍ଣୁ ଆଦିର ଯେ ଦେବ ତ୍ରିଲୋଚନ
ଏହାଙ୍କ ମଧ୍ୟରେ କେହୁ ଅଟନ୍ତି ପ୍ରଧାନ ।
ଭୃଗୁଙ୍କୁ କହନ୍ତି ସର୍ବେ କରଣ ବିନୟ
ମହାତେଜସ୍ୱୀ ଆପଣ ବ୍ରହ୍ମାଙ୍କ ତନୟ ।
ଏଣୁ ଦିଅ ହେ ମହାତ୍ମା ସ୍ୱରୂପ ଉତ୍ତର
କେବଣ ଦେବ ଶ୍ରେଷ୍ଠ ଏ ବ୍ରହ୍ମାଣ୍ଡ ଭିତର ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବ ତିନି ମୂର୍ତ୍ତି
ଏଥୁଁ କିଏ ଶ୍ରେଷ୍ଠ ଦେବ କହ ହେ ଭାରତୀ ।
ଏହାର ସିଦ୍ଧାନ୍ତ ଭଲେ ଆପଣ ଜାଣିବେ
ତଥ୍ୟ ବୁଝିସାର ପୁଣି ଆମ୍ଭଙ୍କୁ କହିବେ ।
ମୁନିଙ୍କ ବଚନେ ଭୃଗୁ କଲେକ ଗମନ
ଉପସ୍ଥିତ ହେଲେ ବ୍ରହ୍ମାଙ୍କର ସନ୍ନିଧାନ ।
ସତ୍ତ୍ୱଗୁଣ ପରଖିବା ପାଇଁକ ସତ୍ୱର
ପ୍ରଣାମ ନକରି ଠିଆ ହେଲେ ତପୀବର ।
ଦେଖି ସୃଷ୍ଟି ପତି ତାହା ଅତି କ୍ରୋଧହୋଇ
କାଳାଗ୍ନି ସମ ପ୍ରଜ୍ୱଳ ହୋଇଗଲେ ତହିଁ ।
ମହା କ୍ରୋଧେ ଭୃଗୁ ଆଡ଼େ ଡାଳିଲେ ନୟନ
ଯେସନ୍ତେ ଅଗ୍ନିକଣା ରାଶି ହୁଏ ବରଷଣ ।
ପଳାଇଲେ ଭୃଗୁ ଦେଖି କ୍ରୋଧ ବ୍ରହ୍ମାଙ୍କର
ପ୍ରବେଶ ହୋଇଲେ ଯାଇ କୈଳାସ ଶିଖର
ପାର୍ବତୀଙ୍କ ସଙ୍ଗେ ଯହିଁଛନ୍ତି ପଶୁପତି
ସେଠାରେ ମିଳିଲେ ବେଗେ ଭୃଗୁ ମହାମତି
ମୁନିଙ୍କି ଦେଖି ସେକାଳେ ଦେବ ପଞ୍ଚାନନ
ଭ୍ରାତା ସମ୍ବୋଧନେ କଲେ ପାଶକୁ ଗମନ ।
କିନ୍ତୁ ଭୃଗୁ ତାଙ୍କୁ ତହିଁ କଲେ ତିରସ୍କାର
ନାନା କଟୁବାକ୍ୟ ଯେ କହିଲେ ବାରମ୍ବାର
ମହା କ୍ରୋଧଭରି ଶିବ ସେ କଥା ଶ୍ରବଣେ
ରକ୍ତବର୍ଣ୍ଣ ତିନି ନେତ୍ର କଲେ ସେହିକ୍ଷଣେ ।
ତ୍ରିଶୂଳ ଧରିଲେ ହାତେକୋପେ ତ୍ରିଲୋଚନ
କରିବାକୁ ମହା ଋଷି ଭୃଗୁଙ୍କୁ ନିଧନ ।
ବ୍ୟଥିତ ହୋଇଲା ତହୁଁ ପାର୍ବତୀଙ୍କ ମନ
ପାଦ ଧରି ଶଙ୍କରଙ୍କୁ କଲେ ନିବାରଣ ।
ମିନତି କରି ଶିବଙ୍କୁ ଶାନ୍ତ କଲେ ଖରେ
ତହୁଁ ଭୃଗୁ ଚଳିଗଲେ ବୈକୁଣ୍ଠ ନଗରେ ।
ପୁରୀମଧ୍ୟେ ପହଞ୍ଚିଲେ ସେ ବ୍ରହ୍ମା ନନ୍ଦନ
ଶୟନେ ଅଛନ୍ତି ଯହିଁ ପ୍ରଭୁ ନାରାୟଣ ।

ରତ୍ନ ପଲଙ୍କରେ ଲକ୍ଷ୍ମୀ ସଙ୍ଗେ ଛନ୍ତି ହରି
ସେହିଠାରେ ମିଳିଲେ ଯେ ଭୃଗୁ ତପସ୍ୱୀ ।
ବ୍ରହ୍ମା ଶଙ୍କରଙ୍କ ପାଶେ ଯାଇ ପ୍ରାଣେ ବ୍ୟଥା
ଭୃଗୁ ମହା ଋଷିବର ଉପସ୍ଥିତ ତଥା ।
ଅନ୍ତରେ ହୋଇଲା ତାଙ୍କ କ୍ରୋଧର ଉଦୟ
କୋପ ଅନଳ ଉଠିଲା କମ୍ପିତ ହୃଦୟ ।
ବୈକୁଣ୍ଠରେ ଋଷିବର ଯେବେ ଉପଗତ
ଏକାବେଳେ ଜ୍ଞାନ ଶୂନ୍ୟ ବିଚାର ରହିତ ।
କୋପାନଳେ ତନୁ ଜଳେ ମୂର୍ତ୍ତି ଭୟଙ୍କର
ବିଷ୍ଣୁ ବକ୍ଷେ ପଦାଘାତ କଲେ ଋଷିବର ।
ପହୁଡ଼ିଥିଲେ ଶ୍ରୀହରି ଚମକି ଉଠିଲେ
ଭୃଗୁ ଋଷିଙ୍କ ସେଠାରେ ଦେଖି ପକାଇଲେ
ତହୁଁ ଦେବ ନାରାୟଣ ସ୍ୱଭକ୍ତ ରକ୍ଷକ
ଶିଷ୍ଟଙ୍କ ପାଳନ କର୍ତ୍ତା ଦୁଷ୍ଟ ସଂହାରକ ।
ତରତର ହୋଇ ଉଠି ତହୁଁ ଉଭାହେଲେ
ଲକ୍ଷ୍ମୀଙ୍କ ସହିତେ କର ଯୋଡ଼ିଣ କହିଲେ ।
ପ୍ରଣତି କଲେ ବିପ୍ରଙ୍କୁ ଧରି ପାଦ ଦୁଇ
ବିନୟେ କହିଲେ ମୃଦୁ ବଚନେ ବୁଝାଇ ।
ପାଦତଳେ ଯେଉଁ ଅପରାଧ କରିଅଛୁ
ଆହେ ଋଷି ଅପରାଧ କ୍ଷମା ମୁଁ ମାଗୁଛୁ ।
କ୍ରୋଧ ପରିହରି ଦେବ କରୁଛୁ ବିନତି
ନଜାଣି ମୁଁ ଅପରାଧ ଅରଜିଛୁ ଏଥି ।
ପୁଣି ଭୃଗୁଙ୍କର ପାଦ ଧରିଣ କହନ୍ତି
କେତେ ତପବଳେ ପାଦ ସ୍ପର୍ଶେ ହେଲି ମୁକ୍ତି
ତବ ପଦାଘାତେ ମୋର ବହୁ ପୁଣ୍ୟ ହେଲା
ସପ୍ତ କୁଳ ଉଦ୍ଧରିଲେ ସର୍ବ ରିଷ୍ଟ ଗଲା ।
ତୀର୍ଥର ପବିତ୍ରକାରୀ ପାଦରେଣୁ ଦେଇ
ଆହେ ତପୀ ସୁପବିତ୍ର କଲ ମୋର ଦେହି ।
ତବ ପାଦଲାଗି ତୀର୍ଥବର ଧନ୍ୟ ହୁଏ
ମୁହିଁ ତବ ଅନୁଗତ ଜାଣ ହେ ନିଶ୍ଚୟେ ।
ଯେଉଁ ଚରଣ ପ୍ରହାର କଲି ମୋ ଅଙ୍ଗରେ
ତହିଁରେ ମୋ ବଂଶମାନେ ବସିଲେ ସ୍ୱର୍ଗରେ
ଏଣୁ ଏହି ପାଦ ଚିହ୍ନ ହୃଦରେ ବହିବି
ବ୍ରହ୍ମାଣ୍ଡରେ ତବଗୁଣ ପ୍ରଚାର କରିବି ।
ପାଦ ଲାଗି ପାପ ମୋର ହୋଇଲା ମୋଚନ
ମୋ ବକ୍ଷରେ ଯେଣୁ କଲ ପାଦ ପ୍ରହାରଣ ।
ମୋହର ପାଷାଣ ବକ୍ଷେ କରିଣ ପ୍ରହାର
କେତେ କଷ୍ଟ ପାଇଥିବ ପାଦକୁ ତୁମ୍ଭର ।
ଆହା ଏ କୋମଳ ପାଦେ ହେଲା କେତେ ବ୍ୟଥା
ଏହା କହି ମଞ୍ଜାଳିଲେ ଜଗତ କରତା ।
ସୁତମୁନି କହନ୍ତି ଯେ ଶୁଣ ତପୋଧନ
ଏମନ୍ତେ ବିନୟ ବାଣୀ କହୁଁ ନାରାୟଣ ।
ତହୁଁ ସ୍ଥିରମତି ହେଲେ ଭୃଗୁ ମହାଶୟ
କ୍ରୋଧ ପରିହରି ପାନ୍ତି ଅନ୍ତରରେ ଭୟ ।
କାତର ପରାଣେ ଲଜ୍ୟା ପାଇ ଋଷିବର
ବସିଲେ ସୁସ୍ଥିର ମନେ ଆନନ୍ଦେ ସେଠାରେ
ତଦନ୍ତରେ ଋଷିଙ୍କର ଭକ୍ତି ଉପୁଜଇ
ସଜଳ ନୟନେ ଉତଫୁଲ ହେଲା ତହିଁ ।
ମନେ ମନେ ବିଷ୍ଣୁ ପାଦେ ନମିଲେ ସେକ୍ଷଣ
ତା ଉତ୍ତାରୁ ଯଜ୍ଞସ୍ଥାନେ କଲେ ସେ ଗମନ ।
କହିଲେ ମୁନିଗଣଙ୍କୁ ସମସ୍ତ କାରଣ
ଶୁଣି ସକଳ ତାପସେ ବିସ୍ମୟେ ମଗନ ।
ସତ୍ତ୍ୱଗୁଣେ ଭଗବାନ ଭକ୍ତେ ଦୟାକଲେ
ଅନ୍ତର ମଧ୍ୟେ ସେମାନେ ବିଷ୍ଣୁଙ୍କୁ ଭଜିଲେ ।
କୃଷ୍ଣ ଗୁଣ ଗାନକଲେ ଆନନ୍ଦ ମନରେ
ଶାନ୍ତମୂର୍ତ୍ତି କୃଷ୍ଣଙ୍କୁ ସେ ପୂଜିଲେ ଯତ୍ନରେ ।
କୃଷ୍ଣଙ୍କ ନିର୍ମଳ ଯଶ ସକଳେ କହନ୍ତି
ଶାନ୍ତିର କାରଣ ଧର୍ମରାୟ ସେ ଅଟନ୍ତି ।
ଯାହାଙ୍କ ଦୟାରୁ ପ୍ରାଣୀମାନେ ପାନ୍ତି ଜ୍ଞାନ
ବୈରାଗ୍ୟ ଉଦୟ ହୁଏ ଯେ ହେଲେ ପ୍ରସନ୍ନ
ସେହି ସର୍ବ ସିଦ୍ଧି ଦାତା ଅଧମ ତାରଣ
ସାଧୁଙ୍କ ହିତରେ ମର୍ତ୍ତ୍ୟେ ହେଲେ ଉତପନ ।
ଏମନ୍ତେ ମୁନିମାନଙ୍କ ସଂଶୟ ମୋଚନ
ତହୁଁ ସକଳେ ଭଜିଲେ ଶ୍ରୀହରି ଚରଣ ।
ତଦବଧି କୃଷ୍ଣ ପାଦେ ଦୃଢ଼ ଭକ୍ତିହେଲା
ଭୃଗୁଙ୍କ ବଚନେ ସର୍ବ ସଂଶୟ ଘୁଞ୍ଚିଲା ।
ବିଷ୍ଣୁଙ୍କୁ ଶ୍ରେଷ୍ଠ ଭାବନ୍ତି ସର୍ବ ମୁନିଗଣେ
ନିରତେ ଧ୍ୟାନ କରନ୍ତି ତାହାଙ୍କ ଚରଣେ ।
ଏହିପରି ସୁତମୁନି ଋଷିଙ୍କ ଅଗ୍ରତେ
କହିଲେ ଶ୍ରୀକୃଷ୍ଣ ଗୁଣ ଆନନ୍ଦିତ ଚିତ୍ତେ ।
ଆଉ ଏକ କଥା ସର୍ବେ ଶୁଣ ଦେଇ ମନ
ଥିଲା ଏକ ବ୍ରାହ୍ମଣ ଦ୍ୱାରକା ଭୁବନ ।

ନିଜ ପତ୍ନୀପାଶେ ମିଳେ କୃଷ୍ଣଙ୍କ ସମ୍ମୁଖରେ
କହିଲା ସେ ଦ୍ୱିଜବର ଅତ୍ୟନ୍ତ କାତରେ ।
ମୋ ପତ୍ନୀ ଉଦରେ ହେଲେ ଯେତେକ ସନ୍ତାନ
ଜନ୍ମ ହେଲା ମାତ୍ରେ ହେଲା ତାହାଙ୍କ ମରଣ ।
ଭୂମିଷ୍ଠ ମାତ୍ରକେ ମୃତ୍ୟୁ ଲଭିଲେ କୁମର
ଏକ ଏକ ହୋଇକରି ଆଠଟି ମାତର ।
ଏହି ପରକାରେ ହୋନ୍ତି ସନ୍ତାନ ନିଧନ
ଏହିକଥା କହି ଦ୍ୱିଜ କରଇ କ୍ରନ୍ଦନ ।
ଶୋକଭରେ ପୁନ ପୁନ ବହୁ ଗାଳିଦିଏ
ଅନୁତାପେ ତାର ନେତ୍ରୁ ନୀରଧାର ବହେ ।
ଏମନ୍ତେ ଗାଳି ଦିଅଇ ରାଜା ସମ୍ବୋଧିନେ
ଦ୍ୱିଜଦ୍ରୋହୀ ମହାରାଜ ଜାଣିଲି ମୁଁ ମନେ ।
ବୁଝିଲି ଅତ୍ୟନ୍ତ ଲୋଭୀ ରାଜନ ଅଟଇ
ନଜାଣେ ପ୍ରଜାଙ୍କ ଦୁଃଖ ବିଷୟାରେ ବାଇ ।
ମହାପାପୀ ନରପତି ଜାଣିଲି ଏଥର
ରାଜାର ପାପରେ ପ୍ରଜା କଷ୍ଟପାନ୍ତି ଘୋର ।
ଜାଣିଲି ମୁଁ ବହୁ ପାପ କରେ ଦଣ୍ଡଧାରୀ
ସେହି ହେତୁ ମୋର ପୁତ୍ରମାନେ ଯାନ୍ତି ମରି ।
ଅଧର୍ମୀ ଦୁଃଶୀଳ ଅଟେ ରାଜ୍ୟର ନୃପତି
ଅନୁକ୍ଷଣ ରିପୁବଶ କୁକର୍ମରେ ମତି ।
ନିଶ୍ଚୟ ବୁଝିଲି ରାଜା ହିଂସାର କାରଣ
ରାଜା ପାପେ ମହାଦୁଃଖ ପାନ୍ତି ପ୍ରଜାଗଣ ।
ଏହିରୂପେ ସେ ବ୍ରାହ୍ମଣ କାନ୍ଦି ଗାଳିଦେଲା
ବାରମ୍ବାର ସେହି ସ୍ଥାନେ ବୋବାଳି ଛାଡ଼ିଲା
ଏକଥା ବ୍ରାହ୍ମଣ କାନ୍ଦି କାନ୍ଦି କହନ୍ତେଣ
କୃଷ୍ଣଙ୍କ ପାଖରେ ଥିଲା ବୀର ଅରଜୁନ ।
ଯହୁଁ ମହାବୀର ପାର୍ଥ ସେ ଗାଳି ଶୁଣିଲା
ଅତଏବେ ସେହି ବିପ୍ରେ ତକ୍ଷଣେ କହିଲା ।
ଶୁଣ ମୋହର ବଚନ ହେ ଦୁଃଖୀ ବ୍ରାହ୍ମଣ
ତେଡ଼େ ଧନୁର୍ଦ୍ଧର ଏଥି ନାହିଁ କେଉଁ ଜନ ।
ଭୃତ୍ୟର ଦୁଃଖରେ ଯେ କି ହୋଇବ କାତର
ବିପ୍ର ଦୁଃଖେ ଦୁଃଖୀ ନୁହେଁ ଯେଉଁ ନୃପବର
ବିଫଳ ଜୀବନ ତାର ବୃଥା ରାଜ୍ୟ ଧନ
ଧୈର୍ଯ୍ୟ ଧରି ନିଜ ଗୃହେ କର ହେ ଗମନ ।
ତୁମ୍ଭ ଦୁଃଖ ନିବାରଣ କରିବଇଁ ମୁହିଁ
ତୁମ୍ଭ ମଲା ପୁତ୍ରଙ୍କୁ ମୁଁ ଦେବି ହେ ବଞ୍ଚାଇ ।
ଯେବେ କରି ନ ପାରିବି ପ୍ରତିଜ୍ଞା ପାଳନ
ଅଗ୍ନିରେ ପଶି ନିଶ୍ଚୟ ତେଜିବି ଜୀବନ ।
ନେନେ ଅଶ୍ରୁଭରି ଦ୍ୱିଜ କହିଲା ସେକ୍ଷଣ
ମହାବଳବନ୍ତ ବାସୁଦେବ ସଙ୍କର୍ଷଣ ।
ଅନିରୁଦ୍ଧ ପ୍ରଦ୍ୟୁମ୍ନ ସହିତେ ବୀର ଯେତେ
କାର୍ଯ୍ୟସିଦ୍ଧି ନୁହେଁ କେବେ ଏମାନଙ୍କ ହାତେ
କେହି ନ ପାରିବେ ବଞ୍ଚାଇବାକୁ ମୋ ପୁତ୍ରେ
କେମନ୍ତେ ତୁମ୍ଭେ ବଞ୍ଚାଇବ ନୁହେଁ ମୋ ପରତେ
ଯେଉଁ କର୍ମ ନାରାୟଣ କରି ନ ପାରନ୍ତି
କିରୂପେ ହୋଇବ ତାହା ତୁମ୍ଭରେ ସମ୍ପ୍ରତି ।
ତୁମ୍ଭ କଥାରେ ମୋହର ନ ହୁଏ ପ୍ରତ୍ୟୟ
ଅଶ୍ରଦ୍ଧା ଜନମେ ତୁମ୍ଭ ବାକ୍ୟେ ଧନଞ୍ଜୟ ।
ଏହା ଶୁଣି ବୀର ପାର୍ଥ କ୍ରୋଧିତ ହୋଇଲା
ମହାଗର୍ବ ପ୍ରକାଶି ସେ କହି ଆରମ୍ଭିଲା ।
ଆହେ ଦ୍ୱିଜବର ଶୁଣ ମୋହର ବଚନ
ମୁହିଁ ନୁହଁଇଟି ସେହି ଦେବ ସଙ୍କର୍ଷଣ ।
ନୁହଁଇ ମୁଁ ବାସୁଦେବ ଆହେ ମହାଶୟ
ମୁଁ ନୁହେଁ ପ୍ରଦ୍ୟୁମ୍ନ ସେହି କୃଷ୍ଣଙ୍କ ତନୟ ।
ପାଣ୍ଡୁ ରାଜାଙ୍କ କୁମର ଧନଞ୍ଜୟ ମୁହିଁ
ମୋର ବାକ୍ୟରେ ତୁମ୍ଭର ଅଶ୍ରଦ୍ଧା ହୁଅଇ ।
ଗାଣ୍ଡୀବ ନାମରେ ଧନୁ କରେ ମୁଁ ଧାରଣ
ମୋର ବଳ ଜାଣନ୍ତି ସେ ଦେବ ତ୍ରିଲୋଚନ
ମୋର ପରାକ୍ରମେ ତୋଷ ଦେବତା ଶଙ୍କର
ତେଣୁ ପାଶୁପତ ଅସ୍ତ୍ର ଦେଲେ ସେ ମୋ କର
ଯମକୁ ଜିଣି ଆଣିବି ମୁଁ ତୁମ୍ଭ ତନୟ
ମୋର ଏ ବାକ୍ୟ ଅନ୍ୟଥା ନୋହିବ ନିଶ୍ଚୟ
ପ୍ରସବକାଳେ ସମ୍ବାଦ ଦେବ ତୁମ୍ଭେ ମୋତେ
ଦେଖାଯିବ ତେବେ କେ ମାରିବ ତୁମ୍ଭ ପୁତ୍ରେ
ଯଦି ତୁମ୍ଭ ପୁତ୍ରେ କରି ନ ପାରେ ରକ୍ଷଣ
ତେବେ ମୁଁ ଆପଣା ପ୍ରାଣ ଦେବି ବିସର୍ଜ୍ଜନ ।
ଅଗ୍ନିକୁଣ୍ଡ କରି ପ୍ରାଣ ତହିଁରେ ତେଜିବି
କ୍ଷଣମାତ୍ର ହୀନ ପ୍ରାଣ ଆଉ ନ ରଖିବି ।
ଏହି ପ୍ରତିଜ୍ଞା ମୋହର ଜାଣ ଦ୍ୱିଜବର
ଏହା ଶୁଣନ୍ତେ ସନ୍ତୋଷ ହେଲା ଦ୍ୱିଜବର ।
ନିଜ ଗୃହକୁ ଚଳିଲା ହରଷ ମନରେ
ନିଶ୍ଚିନ୍ଦନ ରହିଲା ସେ ଅର୍ଜ୍ଜୁନ କଥାରେ ।

ଏହିମତେ ଥୋକେ ଦିନ ହୁଅନ୍ତେଣ ଗତ
ପ୍ରସବର କାଳ ଆସି ହେଲା ଉପସ୍ଥିତ ।
ପତ୍ନୀ ସଙ୍ଗେ ଗଲା ଦ୍ୱିଜ ଅର୍ଜୁନ ଗୋଚରେ
ବୋଲେ ରକ୍ଷାକର ପାର୍ଥ ମୋହର କୁମରେ
ଦ୍ୱିଜର ବଚନେ ତହୁଁ ବୀର ଅରଜୁନ
ଏକାନ୍ତରେ ଭାବିଲା ସେ ଦେବ ତ୍ରିଲୋଚନ ।
ତଦନ୍ତେ ଗାଣ୍ଡୀବ ଧନୁ ହସ୍ତରେ ଧଇଲା
ଦିବ୍ୟ ଅସ୍ତ୍ରମାନ ସନ୍ଧି ବରଷଣ କଲା ।
ବାଣେ ବାଣେ ଆଚ୍ଛାଦିଲା ସୂତିକା ଗୃହକୁ
ଅଧଃ ଊର୍ଦ୍ଧ୍ୱ ମଧ୍ୟ ଆଉ ତାଙ୍କେ ଚୌଦିଗକୁ
ବାଣ ଜାଳେ ଏକାବେଳେ ଚୌଦିଗ ରୁନ୍ଧିଲା
ଦଣ୍ଡଦିଗପାଳ ସେହୁ ଘୋଡ଼ାଇଣ ଦେଲା ।
ତଦନ୍ତରେ ଦ୍ୱିଜନାରୀ ପୁତ୍ର ପ୍ରସବିଲା
ଜନମ ମାତ୍ରକେ କିଏ ହରି ନେଇଗଲା ।
ଗୃହୁଁ ଗୃହୁଁ ସେହିକାଳେ ହେଲା ଅନ୍ତର୍ଦ୍ଧାନ
ଦେହଟି ତାହାର ତହିଁ ନ ରହିଲା ଚିହ୍ନ ।
ସନ୍ତାନ ଶୋକରେ ଦ୍ୱିଜ କରି ହାହାକାର
କାନ୍ଦି କାନ୍ଦି ଅର୍ଜୁନକୁ କଲା ତିରସ୍କାର ।
ଆହେ ପାର୍ଥ ତୁମ୍ଭର ଏ କି ଅଟେ ବେଭାର
ତୁମ୍ଭଲାଗି ଆଜ ଏହି ଦଶା ହେଲା ମୋର ।
କେ ବୋଲେ ପୁରୁଷତୋତେ କ୍ଳୀବ ଅଟୁ ତୁହି
ବୃଥାରେ ଖାଲି ସିନା ତୁ କରୁଛୁ ବଡ଼ାଇ ।
ଯହିଁରେ ଆଶକ୍ତ ଯଦୁବଂଶ ପୁତ୍ରଗଣ
ରଖି ନ ପାରିଲେ ଯାକୁ କୃଷ୍ଣ ସଙ୍କର୍ଷଣ ।
ଧିକ ଧିକ ପାର୍ଥ ତୁହି ଅଟୁ ମୂଢ଼ମତି
ତୋହର ବଚନ ମିଥ୍ୟା ଜାଣିଲି ମୁଁ ଏଥି ।
ମିଛରେ ଖାଲି ଦାଣ୍ଡରେ କରୁଛୁ ବଡ଼ାଇ
ଆଉକି କହିବି ତୋର ମୁଖେ ଲଜ୍ୟା ନାହିଁ
ତଦନ୍ତେ ଶ୍ରୀକୃଷ୍ଣ ପାଶେ ଯାଇଣ ବହନ
ଅତି ସନ୍ତାପ ମନରେ କହିଲା ବ୍ରାହ୍ମଣ ।
ମୁହିଁ ହୀନସ୍ଥାନ ଦ୍ୱିଜ ଆହେ ଚକ୍ରଧର
ପାର୍ଥ କଥାରେ ବିଶ୍ୱାସ କରି ହରିବର ।
ତିଳେମାତ୍ର ପୁରୁଷତ୍ୱ ତାହାଠାରେ ନାହିଁ
କ୍ଳୀବ ବୋଲି ଜାଣିଥିଲେ ସ୍ତ୍ରୀ ଆଗରୁ ମୁହିଁ ।
କଦାପି ତାହାକୁ ନେଇ ନଥାନ୍ତି ସେଠାକୁ
ତାହାଲାଗି ହରାଇଲି ଆଜ ସନ୍ତାନକୁ ।

ଯଦୁବଂଶ ବୀରମାନେ ନ ପାରିଲେ ଯାହା
ସ୍ଥିର କ୍ଳୀବ ପାର୍ଥ କିବା ସାମରଥ ତାହା ।
ଧିକ ଧିକ ସେ ଅର୍ଜୁନ ଧିକ ଜନାର୍ଦ୍ଦନ
ଏହାଶୁଣି ଅତି ଦୁଃଖୀ ହେଲେ ନାରାୟଣ ।
ଏହାଶୁଣି ଅତି ଦୁଃଖେ ବୀର ଅରଜୁନ
ଯମପୁରରେ ଯାଇଣ ମିଳିଲା ବହନ ।
ସେଠାରେ ଦ୍ୱିଜର ପୁତ୍ରମାନଙ୍କୁ ନ ପାଇ
ପାତାଳପୁରରେ ବୀର ଖୋଜିଲାକ ଯାଇ ।
ସେଠାରେ ନ ପାଇ ତିନି ଭୁବନ ଖୋଜିଲା
କୌଣସିଠାରେ ନ ପାଇ ନିରାଶେ ଫେରିଲା
ଅତି ଲଜ୍ଜିତ ହୋଇଣ ପ୍ରତିଜ୍ଞା ଭଙ୍ଗରେ
ବାହାର ହୋଇଲା ପଶିବାକୁ ସେ ଅଗ୍ନିରେ ।
ଅତିବେଗେ ସେ ଅନଳ ଜାଳିଲା ଯତନେ
ଉଦ୍ୟତ ହେଲା ଅଗ୍ନିରେ ପଶିବା କାରଣେ ।
ତାହାଦେଖି ପ୍ରଭୁ ତାକୁ କଲେ ନିବାରଣ
ବୋଇଲେ କିମ୍ପା ବୃଥାରେ ହରାଉଛ ପ୍ରାଣ ।
ମୋହର ବଚନ ମାନ ଆହେ ବୀରବର
ଦ୍ୱିଜ ସୁତକୁ ଆଣିବା ଖୋଜିଣ ସତ୍ୱର ।
ଏତେବୋଲି ଅର୍ଜୁନର ସାଥେ ଜଗନ୍ନାଥ
ଦିବ୍ୟ ରଥ ଆରୋହଣ ଚଳିଲେ ତ୍ୱରିତ ।
ପଶ୍ଚିମ ଦିଗକୁ ଦୁହେଁ କରିଲେ ଗମନ
ବିନ୍ଧ୍ୟ ଆଦି ଗିରିମାଳ କଲେ ସେ ଲଙ୍ଘନ ।
କେତେ ଗିରି ବନ ଟପିଗଲେ ସେ ରଥରେ
ଲୋକାଲୋକ ଗିରି ଯହିଁ ମିଳିଲେ ସେଠାରେ
ସେଠାରେ ଦେଖିଲେ ମାତ୍ର ଘୋର ଅନ୍ଧକାର
ନଚଳେ ବିମାନ ମାର୍ଗ ନ ମିଳେ ସେଠାର ।
ଅନ୍ଧାର ଘୋଟାନ୍ତି ମେଘମାଳାମାନେ ତହିଁ
ସେହିପଥେ ରଥବର ଚଳି ନ ପାରଇ ।
ତାହାଦେଖି ନାରାୟଣ ଭାବି ମାନସରେ
ସୁଦର୍ଶନେ ଆଜ୍ଞାଦେଲେ ତମ ନାଶିବାରେ ।
ଆଜ୍ଞାପାଇ ଧାଇଁ ବେଗେ ଚକ୍ର ସୁଦର୍ଶନ
ସହସ୍ର ସୂର୍ଯ୍ୟର ତେଜ ପ୍ରକାଶେ ବହନ ।
ଚୌଦିଗେ ତକ୍ଷଣ ହେଲା ଆଲୋକ ଉଦୟ
ପଛେ ପଛେ ଚଳେ ରଥ ଶୀଘ୍ର ଅତିଶୟ ।
ଅତିକ୍ରମ କଲେ ସେହି ଅନ୍ଧକାର ସ୍ଥାନ
ମହାଦୀପ୍ତିରେ ଧାମଇଁ ଆଗେ ସୁଦର୍ଶନ ।

ଅନ୍ଧକାର ଭେଦକରି ପ୍ରଭୁ ଜନାର୍ଦ୍ଦନ
ସେଠାରେ ଦେଖିଲେ ଏକ ଅଦଭୁତ ସ୍ଥାନ ।
ଘୋର ଜଳରାଶି ତହିଁ ଅଛି ସୁନିର୍ମଳ
ତା ମଧ୍ୟରେ ଏକ ପୁରୀ ଦେଖିଲେ ତତ୍କାଳ ।
ମହା ମନୋହର ପୁରୀ ଅଛି ବିଦ୍ୟମାନ
ନାନା ରତନରେ ତାହା ହୋଇଛି ନିର୍ମାଣ ।
ତା ମଧ୍ୟେ ଅଛନ୍ତି ଏକ ଦିବ୍ୟ ମହାକାୟ
ବିରାଟ ମୂରତି ସେ ଯେ ଶୋଭା ଅତିଶୟ ।
ଶୋଭେ ଅତି ଗୁରୁ ସହସ୍ର ମସ୍ତକ ଫଣାରେ
ମୋହ ହୋନ୍ତି ସୁରଗଣମାନେ ଦର୍ଶନରେ ।
ବସିଛନ୍ତି ସିଂହାସନେ ପରମ ପୁରୁଷ
ନବଘନ ଆଭା ତାଙ୍କ ମୋହୁଛି ନିଦେଶ ।
ସହାସ୍ୟ ବଦନ ପୀତବାସ ପରିଧାନ
ସିତ ପଙ୍କଜକୁ ଜିଣି ଯୁଗଳ ନୟନ ।
ମଣି ମୁକ୍ତାରେ କିରୀଟ ଶୋହେ ମସ୍ତକରେ
ମକର କୁଣ୍ଡଳ ଲୁଳେ ଗଣ୍ଡ ମଣ୍ଡଳରେ ।
ଦୁଇ ହସ୍ତ ଶୋଭା ପାଏ ଆଜାନୁଲମ୍ବିତ
କୌସ୍ତୁଭ ଶ୍ରୀବତ୍ସ ଚିହ୍ନ ବକ୍ଷେ ବିମଣ୍ଡିତ ।
ଗଳେ ରମ୍ୟ ବନମାଳା ଦୋଳେ ମନୋହର
ସୁନନ୍ଦ ନନ୍ଦ ଆଦି ସେ ପାଶେ ସହଚର ।
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜଇ କରେ
ମହାଲକ୍ଷ୍ମୀ ବସିଛନ୍ତି ତାହାଙ୍କ ବାମରେ ।
ଏରୂପେ କୃଷ୍ଣ ଅର୍ଜ୍ଜୁନ କଲେ ଦରଶନ
ଦେଖିଲେ ସେଠାରେ ଛନ୍ତି ଦ୍ୱିଜପୁତ୍ରଗଣ ।
ସେ ବିରାଟ ମହାକାୟ ଦେଖି କୃଷ୍ଣ ପାର୍ଥ
ପାଦପଦ୍ମ ତଳେ ଦୁହେଁ ନମିଲେ ତୁରିତ ।
ସେ ମହାକାୟ ପୁରୁଷ ପ୍ରେମାନନ୍ଦ ଭୋଳେ
ହସି ହସି ସେହି କାଳେ କୃଷ୍ଣଙ୍କୁ କହିଲେ ।
ଶୁଣ କୃଷ୍ଣ ଅରଜୁନ ମୋ ବାଣୀ ସମ୍ପ୍ରତି
ଏଥି ମୁଁ ଆଣି ରଖିଛି ଦ୍ୱିଜର ସନ୍ତତି ।
ତୁମ୍ଭ ଦୁହିଁଙ୍କି ମୁଁ କରିବାକୁ ଦରଶନ
ସେ ହେତୁ ଦ୍ୱିଜ ପୁତ୍ରଙ୍କୁ କରିଛି ହରଣ ।
ତୁମ୍ଭେ ନର ନାରାୟଣ କୃଷ୍ଣ ଅରଜୁନ
ଦୁହିଙ୍କର ଏକବର୍ଣ୍ଣ ବଚନ ଶୋଭନ ।
ଅଭେଦ ଆତ୍ମାଯେ ତୁମ୍ଭେ ମହୀ ମଣ୍ଡଳରେ
ତୁମ୍ଭର ମହିମା କିଏ ଅବା ଜାଣି ପାରେ ।
ତୁମ୍ଭେ ଅଟ ନାରାୟଣ ପୂର୍ଣ୍ଣ ଅବତାର
ଆସିଅଛ ହରିବାକୁ ଅବନୀର ଭାର ।
ଧର୍ମରକ୍ଷା ଲାଗି ତୁମ୍ଭେ ଧରଣୀ ମଧ୍ୟର
ମୋହର ଅଂଶରେ ହୋଇଅଛ ଅବତାର ।
ଧରଣୀର ଭାର ଆଉ ଅସୁରଙ୍କୁ ନାଶି
ଅବସ୍ଥାନ କର ପୁଣ ଏହିଠାରେ ଆସି ।
ଆହେ ନର ନାରାୟଣ ଲୋକଶିକ୍ଷା ପାଇଁ
ଧର୍ମ ଆଚରୁଛ ପୃଥିବୀରେ ସଦା ରହି ।
ଦୁଷ୍ଟ ବିନାଶନେ ସାଧୁଜନ ପରିତ୍ରାଣେ
ଧରଣୀ ମଣ୍ଡଳେ ପୁଣି ଧର୍ମ ସଂସ୍ଥାପନେ ।
ଘେନୁଅଛି ଯୁଗେ ଯୁଗେ ନର କଳେବର
ଭଲେ ଜାଣିଥାଅ ତୁମ୍ଭେ ଅଂଶ ଯେ ମୋହର
ଏତେ କହି ସେହି ମହା ସତ୍ତ୍ୱଗୁଣୀ ମୂର୍ତ୍ତି
ଶ୍ରୀକୃଷ୍ଣଙ୍କ ପଦ ଭାବେ କରିଲେ ପ୍ରଣତି ।
ପାର୍ଥ ବାସୁଦେବ ଦୁହେଁ ତାଙ୍କୁ ସନ୍ତୋଷିଲେ
ବାରମ୍ବାର ସେ ଚରଣେ ନମସ୍କାର କଲେ ।
ଦ୍ୱିଜପୁତ୍ରମାନଙ୍କୁ ସେ ନେଇ ଆନନ୍ଦରେ
ଚଞ୍ଚଳେ ବିଜୟ କଲେ ବସି ରଥପରେ ।
ଦ୍ୱାରକା ନଗରେ ଯାଇ ପାର୍ଥ ହୃଷୀକେଶ
ନିଜ ନବରେ କୁଶଳେ ହେଲେ ପରବେଶ ।
ଡକାଇ ଥିଲା ସେ ଦ୍ୱିଜ କରି ଦୁଃଖ ମନ
ତାହାକୁ ଡକାଇ ଆଣି ପ୍ରଭୁ ଜନାର୍ଦ୍ଦନ ।
କୁମରମାନଙ୍କୁ ତାର ସମର୍ପିଣ ଦେଲେ
ଅର୍ଜ୍ଜୁନଙ୍କର ପ୍ରତିଜ୍ଞା କୃଷ୍ଣ ରକ୍ଷା କଲେ ।
ସେକାଳରେ ବୀରବର ଅର୍ଜ୍ଜୁନର ମନ
ବିସ୍ମୟ ସିନ୍ଧୁ ସଲିଳେ ହୋଇଲା ମଗନ ।
ଏମନ୍ତେ କେତେ ମହିମା ଦେଖାନ୍ତି ଶ୍ରୀହରି
ଯଶବାନା ଉଡ଼ାଇଲେ ନାନା କୀର୍ତ୍ତି କରି ।
ଅନୁ ଗ୍ରହେ ବହୁ ଯଜ୍ଞ କଲେ ଅନୁଷ୍ଠାନ
ଅନ୍ନ ବସନେ ତୋଷନ୍ତି ଦରିଦ୍ରଙ୍କ ମନ ।
ବିପ୍ରଜନ ପ୍ରିୟ ପ୍ରଭୁ ଶ୍ରୀମଧୁସୂଦନ
ଧନରତ୍ନ ଦାନେ ସନ୍ତୋଷନ୍ତି ଦ୍ୱିଜଗଣ ।
ମହା ପାପୀ ଥିଲେ ଯେତେ ଜଗତ ଯାକରେ
ଆଉ ଯେତେ ଥିଲେ ଧର୍ମହୀନ ନୃପବରେ ।
ଅର୍ଜ୍ଜୁନ ଆଦି ବୀର ଯେ ନିମିତ୍ତ ମାତର
ସକଳ କାର୍ଯ୍ୟର କର୍ତ୍ତା ଏକା ଚକ୍ରଧର ।

ପରମ ଦୟାଳୁ ହରି କମଳ ଲୋଚନ
ସବୁ ପାପୀଙ୍କର କଲେ ପାପ ବିମୋଚନ ।
ଏକାବେଳେ ଅଧର୍ମକୁ ହେଳେ ବିନାଶିଲେ
ଅଖିଳ ଜଗତେ ବିଜେ ଧର୍ମକୁ ସ୍ଥାପିଲେ ।
ଅନନ୍ତ ଅବ୍ୟୟ ପରଂବ୍ରହ୍ମ ଜଗଦୀଶ
ସେହି ପ୍ରଭୁ ସମସ୍ତଙ୍କ ଗତି ଅହର୍ନିଶ ।
ଅନନ୍ତ କାରଣ ହରି ଜଗତର ସାର
ସେହି ପ୍ରଭୁ ଭଗବାନ ସବୁରି ଈଶ୍ୱର ।
ଏମନ୍ତେ ଯେ ପୌରାଣିକ ସୂତ ମୁନି ମେଳେ
ନୈମିଷ ଅରଣ୍ୟେ ପ୍ରକାଶିଲେ ଯଥାକାଳେ
ପରମ ଅମୃତମୟ ଅଟଇ ଏ ବାଣୀ
କ୍ଷେତ୍ରମୋହନ କହଇ ତାର ନାମ ଗୁଣି ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ନର
ନାରାୟଣ କଣ୍ଠିକ ଦ୍ୱିଜପୁତ୍ର
ଆନୟନ କଥନେ ନାମ
ତ୍ରିସପ୍ତତିତମୋଽଧ୍ୟାୟଃ ।

—❖—

## ଚତୁଃସପ୍ତତିତମ ଅଧ୍ୟାୟ
## କୃଷ୍ଣଙ୍କର କାମିନୀ ବିଳାସ ପ୍ରସଙ୍ଗେ ବଂଶ ବିସ୍ତାର ବର୍ଣ୍ଣନ

ସୂତ ଉବାଚ

ଶୁଣ ଆହେ ମୁନିଗଣ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ବସୁଦେବ ମହା ସୁଖେ ଦ୍ୱାରକା ନଗରେ
ରହିଥାନ୍ତି ପରିଜନମାନଙ୍କ ସଙ୍ଗରେ ।
ପରମ ସମ୍ପଦ ପଦ ଲକ୍ଷ୍ମୀର ପୂଜିତ
ଆପେ ଲକ୍ଷ୍ମୀ ଠାକୁରାଣୀ ଯହିଁଥାନ୍ତି ନିତ୍ୟ ।
କୃଷ୍ଣଙ୍କର ପତ୍ନୀଗଣେ ପରମା ସୁନ୍ଦରୀ
ଅତ୍ୟନ୍ତ ସୁନ୍ଦର କାନ୍ତି ଅଟେ ମନୋହାରୀ ।
ବିଜୁଳିକୁ ଜିଣି ଆଭା ରାଜଇ ତାଙ୍କର
ଆନନ୍ଦେ ବିହାର ସେହୁ କରନ୍ତି ସଭିଏଁ ।
ରଥ ଗଜ ଅଶ୍ୱ ରଥୀ କଳନା ନ ଯାଏ
ସେ ପୁର ମହିମା କେଉଁ କଳନା ନ ଯାଏ ।
କେତେ ଦିବ୍ୟବନ ଉପବନ ବିରାଜଇ
ସୁବାସ କୁସୁମ ବାସେ ଦିଗ ଚମକଇ ।
ଅଟ୍ଟାଳି ମଣ୍ଡପମାନ ଦିଶେ ଜକ ଜକ
ହୀରା ନୀଳା ମାଣିକ୍ୟ ଯେ ଖେଞ୍ଚା ଚଉପାଖ ।
ତରୁଲତାମାନେ ଫଳ ପୁଷ୍ପଭରେ ନତ
ମଧୁପାନେ ମଧୁକର ସଦା ଉନମତ ।
ଶୁକ ଶାରୀ ଡାଳେ ଡାଳେ ବସିଣ ବିହନ୍ତି
ସୁମଧୁର ତାନେ ସେହୁ ସ୍ୱର ତୋଳୁଥାନ୍ତି ।
ଦ୍ୱାରକା ନଗର ଶୋଭା ବରଣୀ ନ ହୁଏ
ଏମନ୍ତ ସୁନ୍ଦର ପୁର କାହିଁ ଯେ ନଥାଏ ।
କୃଷ୍ଣଙ୍କ ଇଚ୍ଛାରେ ତାହା ହୋଇଛୁ ନିର୍ମାଣ
ସ୍ୱୟଂ ବିଶ୍ୱକର୍ମା ପୁଣି କରିଛୁ ଗଠନ ।
ତହିଁ ପୁର ନାରୀଗଣ ଘେନି ସଙ୍ଗତରେ
ଭ୍ରମଣ କରନ୍ତି କୃଷ୍ଣ ଆନନ୍ଦ ମନରେ ।
କେବେ ସଉଧ ସଦନେ କରନ୍ତି ବିହାର
କେବେ କେଳିପୁରେ କେବେ ରତ୍ନ ମହଲର ।
ପୁଣି ପୁଷ୍କରିଣୀ ତଟେ କେବେ ବା ଭ୍ରମନ୍ତି
କେବେ ଜଗତି ଉପରେ ମୋଦରେ ବସନ୍ତି ।
ଏହିପରି ନାନା ସ୍ଥାନେ ପ୍ରଭୁ ଚକ୍ରପାଣି
ବିଳସନ୍ତି ଆନନ୍ଦରେ ପ୍ରିୟାଗଣ ଘେନି ।
ଷୋଳ ସହସ୍ର ଯୁବତୀ ଏକୁ ଏକ ବଳି
ତାହାଙ୍କୁ ଘେନିଣ ପ୍ରଭୁ କରୁଥାନ୍ତି କେଳି ।
ଯେତେନାରୀ ତେତେକୃଷ୍ଣ ଅପୂର୍ବ ଶୋଭନ
ସଭିଙ୍କ ସଙ୍ଗେ ବିହାର କରନ୍ତି ବିମୋହନ ।
ପୁଷ୍କରିଣୀ ମଧ୍ୟେ ସର୍ବେ ଜଳକେଳି ପାଇଁ
ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ନେଇ ବିଳସନ୍ତି ସହି ।
ସେହିଜଳେ କୁତୁହଳେ ପ୍ରଭୁ ଜଗନ୍ନାଥ
ସ୍ନାନ କରାନ୍ତି ପ୍ରିୟାଙ୍କୁ ସୁଖେ ଘେନି ସାଥ ।
ତଦନ୍ତେ ଦିବ୍ୟବସନ କରି ପରିଧାନ
ଶ୍ରୀଅଙ୍ଗେ ଲଗି ହୁଅନ୍ତି କୁଙ୍କୁମ ଚନ୍ଦନ ।
ସେଠାକୁ ଆସି କିନ୍ନର କିନ୍ନରୀ ସମସ୍ତେ
ମୃଦଙ୍ଗ ବୀଣା ବଜାନ୍ତି ସୁମଧୁର ଗୀତେ ।
ସୂତ ମାଗଧ ବନ୍ଦୀ ଯେ ମିଳି ସେହି ସ୍ଥଳେ
ମନୋହର ସ୍ୱରେ ସ୍ତବ କରନ୍ତି ସକଳେ ।
ତହିଁ ଜଳକେଳି ରସେ ମତ୍ତ ଜନାର୍ଦ୍ଦନ
ଅଷ୍ଟପାଟ ରାଣୀ ସଙ୍ଗେ କ୍ରୀଡ଼ାରେ ମଗନ ।
ଆନନ୍ଦେ କାମିନୀଗଣ ଉନ୍ମାଦ ହୁଅନ୍ତି
ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଅଙ୍ଗେ ସଲିଳ ସିଞ୍ଚନ୍ତି ।

କୃଷ୍ଣଚନ୍ଦ୍ର ଉରହାସେ ସେ ଜଳ ମଧ୍ୟରେ
ନୀର ସିଞ୍ଚୁଥାନ୍ତି ପ୍ରିୟମାନଙ୍କ ଅଙ୍ଗରେ ।
ଯକ୍ଷୀଣି ସଙ୍ଗରେ ଯକ୍ଷ ଖେଳେ ଯେଉଁପରି
ଶ୍ରୀକୃଷ୍ଣ ବାମାଙ୍କ ସଙ୍ଗେ ଖେଳନ୍ତି ସେପରି ।
ଛଦଳେ କୃଷ୍ଣ ହରନ୍ତି ସବୁରି ବସନ
ଅପୂର୍ବ ରୂପ ଲାବଣ୍ୟ କରନ୍ତି ଦର୍ଶନ ।
ରମାଙ୍କ କାନ୍ତି ଦର୍ଶନେ ସାନନ୍ଦ ଶ୍ରୀଧର
ଯେତେନାରୀ ତେତେ ରୂପ ହୋନ୍ତି ପୀତାମ୍ବର
ଏକ ଏକ ରୂପେ ଏକ ନାରୀଙ୍କି ସ୍ପର୍ଶନ୍ତି
ସମସ୍ତଙ୍କୁ ଏକାବେଳେ ଆଲିଙ୍ଗନ ଦ୍ୟନ୍ତି ।
ହାସ୍ୟାମୁଖୀ ବାଳାମାନେ ଆନନ୍ଦେ ମଗନ
କୃଷ୍ଣ ଅଙ୍ଗେ ମିଶିଯାନ୍ତି ଭାବେ ପ୍ରିୟାଗଣ ।
ଜଳ ଫିଙ୍ଗା ଫିଙ୍ଗି ହୋଇ ପରମକୌତୁକେ
ସେ କାଳର ଶୋଭା ଯାହା ବର୍ଣ୍ଣିପାରିବ କେ
ଯଥା ମତ୍ତହସ୍ତୀ ସଙ୍ଗେ ହସ୍ତିନୀ ସକଳେ
କୁତୂହଳେ ବିହରନ୍ତି ସରୋବର ଜଳେ ।
ସେହିମତେ କୃଷ୍ଣ ତୁଲେ ତାଙ୍କ ପ୍ରିୟାଗଣ
ଜଳକ୍ରୀଡ଼ାରେ ସମସ୍ତେ ଆନନ୍ଦିତ ମନ ।
କୃଷ୍ଣର ମୁଖାରବିନ୍ଦେ ନୟନକୁ ଢାଳି
ମହା ଆନନ୍ଦେ ମଜ୍ଜନ୍ତି ସେ ରାଜ-ଦୁଲାଳୀ ।
କୃଷ୍ଣ ଆଲିଙ୍ଗନେ ସର୍ବେ ମହାସୁଖ ପାନ୍ତି
ଏକେ ଏକେ ଶ୍ରୀହରିଙ୍କି ଆଲିଙ୍ଗନ ଦ୍ୟନ୍ତି ।
ଏହିରୂପେ ଭଗବାନ ଦ୍ୱାରକା ଭୁବନେ
ବିମୋହିତ କରୁଥାନ୍ତି ନିଜ ପତ୍ନୀଗଣେ ।
ଉନ୍ମାଦିନୀ ପ୍ରାପ୍ତ ହୋଇ ଶ୍ରୀକୃଷ୍ଣ କାରଣେ
ପ୍ରଳାପରି ସମ ବାକ୍ୟ କହନ୍ତି ସେମାନେ ।
ହେ ସଖୀ କୁରରୀ କହ କେବଣ କାରଣେ
ରଜନୀ କାଳରେ କରୁନାହଁ ଯେ ଶୟନ ।
ପ୍ରାଣନାଥ କୃଷ୍ଣ ଏବେ ନିଦ୍ରେ ଅଚେତନ
ତାଙ୍କ ନିଦ୍ରାଭଙ୍ଗ ଆମ୍ଭେ କରୁଁ ପତ୍ନୀଗଣ ।
ଜାଣୁ ଏହି ଚିନ୍ତା ମନେ ହୋଇଲା ଉଦୟ
ତେଣୁ ବୁଝିପାରୁ ରାତ୍ରେ ତୁମ୍ଭେ ଯେ ନ ଶୁଅ
ଆଗୋ ଚକ୍ରବାକୀ ତୁ ତ କରୁଛୁ ବିଳାପ
କହ କହ କାହିଁ ପାଇଁ ତୋ ମନେ ସନ୍ତାପ ।
କୃଷ୍ଣପଦ ସେବିବାକୁ ଇଚ୍ଛା କି ଗୋ ମନେ
ତେଣୁ କ୍ରନ୍ଦନ କରୁଛୁ ଆକୁଳ ପରାଣେ ।

ଆହେ ଜଳଧି ତୁମ୍ଭେ ତ ଅଛ ଜାଗରଣେ
ମନ ବିକ୍ଷୋଭିତ କି ହେ କୃଷ୍ଣଙ୍କ ଦର୍ଶନେ ।
ଆହେ ଶଶଧର ତୁମ୍ଭେ କେଉଁ ରୋଗ ଫଳେ
ବିରାଜୁଛ କ୍ଷୀଣଭାବ ଗଗନ ମଣ୍ଡଳେ ।
ହେ ଅନିଳ ହେ କୋକିଳ ହେ ନଗ ଭୂଧର
କୃଷ୍ଣଚିନ୍ତା ସର୍ବେ କରୁଅଛ କି ବିସ୍ତାର ।
ଏମନ୍ତେ କୃଷ୍ଣଙ୍କୁ ଭାବନ୍ତି ସେ ଅନୁକ୍ଷଣ
ଅନ୍ତର ବ୍ୟାକୁଳ ହୁଏ କୃଷ୍ଣଙ୍କ କାରଣ ।
କୃଷ୍ଣ କୃଷ୍ଣ ବୋଲି ସର୍ବେ ଡାକନ୍ତି ଉଚ୍ଚରେ
ଏହିରୂପେ କୃଷ୍ଣ ନାରୀ ଗାଆନ୍ତି କୃଷ୍ଣରେ ।
ସୂତ ମହର୍ଷ କହନ୍ତି ଶୁଣ ହେ ସୁମନ୍ତ
ଏସନେ ଭାବନ୍ତି କୃଷ୍ଣେ ସକଳ ଯୁବତୀ ।
ଅନ୍ତର୍ଗତେ କୃଷ୍ଣପ୍ରେମ ହୁଏ ଜାଗରଣ
ଏକାନ୍ତ ମନେ ସେବନ୍ତି କୃଷ୍ଣଙ୍କ ଚରଣ ।
କୃଷ୍ଣ ପଦ ନିଜ ବକ୍ଷେ ଧରି ଅବିରତ
କାନ୍ତ ଜ୍ଞାନେ କୃଷ୍ଣ ନାମ ଭଜନ୍ତି ନିରତ ।
ସେମାନଙ୍କ ତପ କଥା କି ରୂପେ କହିବି
ବାକ୍ୟାତୀତ ପୁଣ୍ୟ ଯେତେ କେସନେ ବର୍ଣ୍ଣିବି
ସେହିକାଳେ ଦ୍ୱାରକାରେ ଦେବକୀ ନନ୍ଦନ
ବେଦମତେ ଗୃହ ଧର୍ମ କରନ୍ତି ସ୍ଥାପନ ।
ଷୋଳ ସହସ୍ର ଯେଉଁ କୃଷ୍ଣଙ୍କ ରମଣୀ
ତାଙ୍କ ମଧ୍ୟେ ଯେ ପ୍ରଧାନ ଶୁଣିଛ ତ ମୁନି ।
ରୁକ୍ମିଣୀ ଆଦିକରି ଯେ ଅଷ୍ଟ ପାଟେଶ୍ୱରୀ
ସେମାନଙ୍କ ପ୍ରେମେ ବନ୍ଧା ଆପଣେ ଶ୍ରୀହରି ।
ଦଶ ଦଶ ସଂଖ୍ୟା ହେଲେ ସବୁରି ତନୟ
କୃଷ୍ଣଙ୍କ ସମାନ ବଳ ବୀର୍ଯ୍ୟେ ଅତିଶୟ ।
ଅସଂଖ୍ୟ ସେ ଯଦୁବଂଶୀ କେ କରେ ଗଣନ
ଅନିରୁଦ୍ଧ ଭାନୁବୀର ପ୍ରଦ୍ୟୁମ୍ନ ରାଜନ ।
ଶାମ୍ବ ମଧୁ ବୃଷଭାନୁ ବୃନ୍ଦ ମହାବୀର
ଦେବବାହୁ ଶ୍ରୁତକେତୁ ଆବର ପୁଷ୍କର ।
ଏହିରୂପେ କେତେ ନାମ କହିବି କିପରି
ପୁତ୍ର ନାତି ଯେ ଅନେକ ହେଲେ ଏ ସବୁରି ।
କୃଷ୍ଣବଂଶୀଙ୍କର ସଂଖ୍ୟା କେ କଳି ପାରିବ
ପ୍ରଦ୍ୟୁମ୍ନ ପ୍ରଥମ ପୁତ୍ର ଯେହୁ କାମଦେବ ।
ରୁକ୍ମିଣୀ ଦେବୀଙ୍କ ଗର୍ଭୁ ହୋଇଥିଲା ଜାତ
ମହାବଳବନ୍ତ ପୁଣି ସୁନ୍ଦର ଅତ୍ୟନ୍ତ ।

ରୁକ୍ମିଣୀ ଘଇର କନ୍ୟା ଅତି ରୂପବନ୍ତି
ତାର ଶୋଭା କ କହିବ ନାମ ତାର ରତି ।
ସେହି ପ୍ରଦ୍ୟୁମ୍ନ ଘରଣୀ ପରମା ସୁନ୍ଦରୀ
ଅନିରୁଦ୍ଧ ନାମେ ପୁତ୍ର ଅଟଇ ତାହାର ।
ଅନିରୁଦ୍ଧର ସନ୍ତାନ ନାମ ବଜ୍ରଧର
ସୁବାହୁ ନାମେଣ ପୁତ୍ର ଅଟଇ ତାହାର ।
ସୁବାହୁ ତନୟ ନାମ ଅଟେ ଉଗ୍ରସେନ
ଏହିପରି ଯଦୁବଂଶେ ଜନ୍ମିଲେ ନନ୍ଦନ ।
ନାତି ଆଉ ଅଣନାତି ଯେତେ କୃଷ୍ଣଙ୍କର
ସର୍ବେ ମହାବଳବନ୍ତ ପୁଣି ଧୁରନ୍ଧର ।
ତାହାଙ୍କୁ ଗଣିବାପାଇଁ କାର ସାଧ ନାହିଁ
ପ୍ରବଳ ଭାବରେ ବଂଶ ବର୍ଦ୍ଧନ ହୁଅଇ ।
ଯଦି କେହୁ କାଳ କାଳ କରଇ ଗଣନା
ସଂଖ୍ୟା କରି ନ ପାରିବ ଆହେ ମହାମନା ।
ଖଣ୍ଡୀକାରମାନେ ଲେଖି ବସିବେଟି ଯେବେ
ବହୁକାଳ ବିତିଯିବ ଲେଖି ନ ପାରିବେ ।
ଷୋଳ ସହସ୍ର ରମଣୀମାନଙ୍କ ଉଦରେ
କୁମାରମାନେ ଜନ୍ମିଲେ ଏହି ପରକାରେ ।
କୃଷ୍ଣଙ୍କର ଦଶ ଦଶ ପୁତ୍ର ପ୍ରତି ନାରୀ
ପ୍ରସବକଲେ ସକଳେ ଜାଣ ତପସ୍ବିନୀ ।
ଅତି ଧାର୍ମିକ ହୋଇଲେ ତାହାଙ୍କ କୁମର
ତଳେ ମାତର ନଥାଏ କାହାକୁ ଖାତର ।
ସେ ଯଦୁବଂଶର ସଂଖ୍ୟା କହିବ କପର
ସ୍ୱୟଂ ଗଣପତି ନ ପାରିବେ ସଂଖ୍ୟାକରି ।
ଯଦୁବଂଶରେ ଯେ ପ୍ରାଣୀ ଲଭଇ ଜନମ
ଆପଣେ ଆଶ୍ରୟ ତାର ଶ୍ରୀ ପୁରୁଷୋତ୍ତମ ।
ଶାନ୍ତମତି କୃଷ୍ଣେ ଭକ୍ତ କୃଷ୍ଣଗତ ପ୍ରାଣ
କୃଷ୍ଣଙ୍କ ସ୍ୱରୂପ ଲଭେ ଭକ୍ତିର କାରଣ ।
ଯାର ନାମେ ଅନୁକ୍ଷଣେ ବିଘ୍ନ ନାଶ ହୁଏ
ଯା ନାମ ଶ୍ରବଣେ ପାପମାନ ପୁଞ୍ଜିଯାଏ ।
ସେହି ଜୟଶୀଳ କୃଷ୍ଣଜଗତ କାରଣ
ଦେବକୀ ଦେବୀ ଉଦରୁ ଯାହାଙ୍କ ଜନମ ।
ପାପ ତାପ ସଂସାରରୁ ବିନାଶ କରିଲେ
ଧାର୍ମିକମାନଙ୍କ ଆପଦକୁ ଦୂର କଲେ ।
ଗୋପାଙ୍ଗନାମାନଙ୍କର ଭାଗ୍ୟ ବଳୟାର
ପ୍ରେମ ଭକ୍ତିରେ ବାନ୍ଧିଲେ ଜଗତ ଈଶ୍ୱର ।

ଏମନ୍ତେ ପ୍ରେମିକ କୃଷ୍ଣ ନାମ ଚମତ୍କାର
ଛଡାଇ ଦିଅଇ ମନୁ ଗର୍ବ ଅହଙ୍କାର ।
ପୂର୍ଣ୍ଣବ୍ରହ୍ମ ସନାତନ କୃଷ୍ଣ ଭଗବାନ
ସ୍ୱନାମର ଟେକରଖି ଅଛନ୍ତି ଆପଣ ।
ଶ୍ରୀକୃଷ୍ଣ ନାମ ସଦା ଯେ କରଇ ଭଜନ
ଅନ୍ତର ମଧ୍ୟରେ ଯେବା ଗାଏ ଅନୁକ୍ଷଣ ।
କୃଷ୍ଣ କୃଷ୍ଣ ବୋଲି ଯେହୁ ଡାକେ ଉଚ୍ଚସ୍ୱରେ
ଶମନ ଦଣ୍ଡ କେବେହେଁ ନ ଲାଗେ ତାହାରେ
ନିରବଧି କୃଷ୍ଣ ଚିନ୍ତା କରେ ଯେଉଁ ଜନ
କୃଷ୍ଣପ୍ରେମେ ଭୋଳ ହୋଇ କରଇ ନର୍ତ୍ତନ ।
କୃଷ୍ଣ ପ୍ରେମ କୃଷ୍ଣ ନାମ ଯାହାର ଜୀବିକା
କୃଷ୍ଣଙ୍କର ପାଦପଦ୍ମେ ଯାର ମଥା ବିକା ।
କୃଷ୍ଣକଥା ଶ୍ରବଣରେ ଅନୁରାଗ ଯାର
ତା ଦୁଃଖ ଦୂର କରନ୍ତି କମଳାଙ୍କ ବର ।
କୃଷ୍ଣ ଭକ୍ତିରସେ ନିମଜ୍ଜଇ ଯେଉଁଜନ
ତା ଦୁଃଖ ଦୂର କରନ୍ତି ଜଗତ ଜୀବନ ।
ସବୁ ଗୁଣ୍ଡ ସେ ପଦ୍‌ମ ଯେହୁ ଆଶ୍ରାକରେ
ବୈରାଗ୍ୟ ଉଦୟ ହୁଏ ତାହାର ଅନ୍ତରେ ।
ମହା ଅରଣ୍ୟେ ସେ ଜନ କରଇ ଗମନ
ଅନୁରାଗେ ସଦା ନାମ କରଇ ଭଜନ ।
କୃଷ୍ଣ ନାମାମୃତେ ସେହୁ ନ ଜାଣଇ କ୍ଷୁଧା
ଅତିକ୍ରମ କରେ ସେହୁ ସବୁ ବିଘ୍ନ ବାଧା ।
କୃଷ୍ଣ ନାମ ଔଷଧରେ ସର୍ବ ବ୍ୟାଧି ହରେ
କଳୁଷରାଶି ନ ରହେ ତଳେ ତା ଅଙ୍ଗରେ ।
କୃଷ୍ଣଗୁଣ ଭୋଳ ହୁଏ ସଦା ଯେଉଁ ଜନ
ଆପଣେ ଶ୍ରୀକୃଷ୍ଣ ବଢ଼ାବନ୍ତି ତାର ମାନ ।
କୃଷ୍ଣ କଥାରେ ରସଇ ଯେ ପ୍ରାଣୀର ଚିତ୍ତ
ସକଳ ସୌଭାଗ୍ୟ ତାର ହୁଅଇ ବର୍ଦ୍ଧିତ ।
କୃଷ୍ଣ ପ୍ରେମ ତରଙ୍ଗିଣୀ ଏ ବ୍ରହ୍ମ ପୁରାଣ
ପୂର୍ଣ୍ଣବ୍ରହ୍ମ କୃଷ୍ଣଙ୍କର ଲୀଳା ବିବରଣ ।
ବ୍ୟାସ ବିରଚିତ ଶ୍ଳୋକ ଦଶମ ହଜାର
ସୁତ ମୁନି ହୋଇଲେ ଯେ ବକତା ଏହାର ।
କହିଣ ଅଛନ୍ତି ସେହି ପୌରାଣିକ ଋଷି
ଏ ଗ୍ରନ୍ଥ ମହାପାତକମାନ ଦିଏ ନାଶି ।
ଅଖିଳ ଜନଙ୍କ ହିତେ ହରି ନାମ ସାର
ଭବସିନ୍ଧୁ ତରିବାକୁ ଅଟେ କର୍ଣ୍ଣଧାର ।

କୃଷ୍ଣ ନାମ ମୋକ୍ଷଦାତା ଜାଣହେ କେବଳ
କୃଷ୍ଣନାମ ବିନେ ନାହିଁ ଜୀବନ ମଙ୍ଗଳ ।
ଏଣୁ ବନ୍ଧୁ ମିତ୍ର ପୁଅ ଆତ୍ମୀୟ ସ୍ୱଜନ
ପିତାମାତା ଭ୍ରାତ ଆଦି ମିଳି ସର୍ବଜନ ।
ସକଳେ ଭାବନା କର ଶ୍ରୀକୃଷ୍ଣ ଚରଣ
ଚରମେ ପାଇବ ନିଶ୍ଚେ ବିଷ୍ଣୁ ଧାମେ ସ୍ଥାନ ।
କୃଷ୍ଣପଦ ଚିନ୍ତି କୃଷ୍ଣ ପାରୁଶେ ରହିବ
ସଂସାର ଯାତନା ଆଉ ଭୋଗ ନ କରିବ ।
କଳିକାଳେ ନାମବିନୁ ଗତି ନାହିଁ ଆଉ
ଏହି ହେତୁ ସର୍ବ ତୁଣ୍ଡେ କୃଷ୍ଣନାମ ଥାଉ ।
କୃଷ୍ଣ ନାମ ଗାଇ ସର୍ବେ କର ମନ ବୋଧ
କୃତାଞ୍ଜଳି ଭାବେ କରେ ଏତେ ଅନୁରୋଧ ।
ପରମ ବ୍ରହ୍ମ ଶ୍ରୀଗୁରୁ ଚରଣ ସରୋଜେ
ଅଧମ କ୍ଷେତ୍ରମୋହନ ହରଷରେ ଭଜେ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନକ ସମ୍ବାଦେ ଯଦୁବଂଶ
ବିସ୍ତାର ବର୍ଣ୍ଣନଂ ନାମ
ଚତୁଃସପ୍ତତିତମୋଽଧ୍ୟାୟଃ ।

—*—

## ପଞ୍ଚସପ୍ତତିତମ ଅଧ୍ୟାୟ
## ଯଦୁବଂଶ ପ୍ରତି ବ୍ରହ୍ମଶାପ ବିବରଣ

### ଶୌନକ ଉବାଚ

ପୁଚ୍ଛନ୍ତି ଶୌନକ ମୁନି ସୂତ ମହାମୁନେ
କହ ଋଷି ଦୟାକର ଆମ୍ଭ ସନ୍ନିଧାନେ ।
ତୁମ୍ଭ ମୁଖୁଁ ଶୁଣି ହରିକଥା ସୁଧାମୟ
ଆନନ୍ଦ ରସରେ ମଜ୍ଜେ ଆମ୍ଭର ହୃଦୟ ।
ଏଥୁଅନ୍ତେ ମହାଶୟ ହେଲା କି ଘଟଣା
ସେ କଥା ବିସ୍ତାର କରି କୁହ ମହାମନା ।

### ସୂତ ଉବାଚ

ଶୁଣି ଶୌନକ ବଚନ ପୌରାଣିକ ସୂତ
କହି ଆରମ୍ଭିଲେ ଯଦୁବଂଶଙ୍କ ଚରିତ ।
ବୋଇଲେ ଶୁଣିବା ହେଉ ଆହେ. ମୁନିବର
ତୁମ୍ଭ ଆଗରେ କହୁଛି ଦିବ୍ୟ ସମାଚାର ।

ଏକଦିନେ ବାସୁଦେବ କଲେକ ବିଚାର
ଯଦୁଗଣ ସହିତରେ ସଙ୍ଗେ ହଳଧର ।
ହରଣ କରିବା ପାଇଁ ଅବନୀର ଭାର
ମାନସେ କଳହ ଜନ୍ମାଇଲେ ସବୁଙ୍କର ।
ଦୁଷ୍ଟ ଦୈତ୍ୟ ସମୂହଙ୍କୁ କରିଣ ନିଧନ
ଧରଣୀର ମହା ଭାର କଲେ ସେ ହରଣ ।
କପଟ ଦ୍ୟୂତକ୍ରୀଡ଼ା ଯେ କଲେ କୌରବଗଣ
ପୁଣି ଦ୍ରୌପଦୀର କେଶ ପାଶ ଆକର୍ଷଣ ।
ଏହିପରି ହୀନକର୍ମ କରି ଅବିରତେ
ପାଣ୍ଡବଙ୍କୁ ସେ କୌରବେ କଷ୍ଟଦେଲେ କେତେ
ଶତ୍ରୁଙ୍କ ବିସ୍ତାର ଦେଖି ପ୍ରଭୁ ଜନାର୍ଦ୍ଦନ
ଏକାବେଳେକେ ହୋଇଲେ କ୍ରୋଧଯୁକ୍ତ ମନ
ନିମିତ୍ତର ଭାଗୀ କରି ପାଣ୍ଡୁ କୁରୁ ଦଳେ
ଅବନୀ ଭାର ଶ୍ରୀହରି ହରିଲେ ସେ ଛଳେ ।
ଏମନ୍ତେଣ ନାରାୟଣ ଲୋକକ୍ଷୟ କରି
ଧରଣୀ ଭାର ଉଶ୍ୱାସ କଲେ ସେ ବିଚାରି ।
ଆପଣା ରକ୍ଷିତ ଆଉ ଯେତେ ଯଦୁଗଣ
ଅବନୀର ମହାଭାର ଯେତେକ ରାଜନ ।
ନୃପଗଣ ସେନା ଯେତେ ଥିଲେ ଏ ଧରିତ୍ରୀ
ସେମାନଙ୍କୁ ବିନାଶିଣ ଦେବ ଯଦୁପତି ।
ତେବେ ମନରେ ଭାବିଲେ କମଳ ଲୋଚନ
ଅବନୀଭାର ଏବେ ନ ହୁଏ ମୋଚନ ।
ଏରୂପେ ମନେ ବିଚାରି ପ୍ରଭୁ ଚିନ୍ତାମଣି
ବିସ୍ତୀର୍ଣ୍ଣ ଯାଦବକୁଳ ଅନ୍ତର୍ଗତେ ଜାଣି ।
ଅଗଣିତ ଯଦୁବଂଶୀ ଛନ୍ତି ବର୍ତ୍ତମାନ
ଅଜେୟ ଆଶ୍ରିତ ମନ ସବୁହିଁ ପ୍ରଧାନ ।
ମହାବଳବନ୍ତ ସର୍ବେ ଅତୁଳ ବିଭବ
କାହିଁରେ ଏହାଙ୍କ ନ ହୋଇବ ପରାଭବ ।
ଯଥା ବେଣୁବନ ଦଗଧ କରେ ହୁତାଶନେ
କରିବ ଯଦୁବଂଶଙ୍କୁ ତେସନ ନିଧନ ।
ମହା କଳହ ଲଗାଇ ଦେବ ନିଜମଧ୍ୟେ
ତାପରେ ବୈକୁଣ୍ଠଧାମେ ଚଳିବ ଆନନ୍ଦେ ।
ବିଚିତ୍ର କାହାଣୀ ଏହି ଶୁଣ ତପୋଧନ
ଏପରି ମନେ ଭାବି ଦେବକୀ ନନ୍ଦନ ।
ବ୍ରହ୍ମଶାପ ବଳେ ଯଦୁବଂଶ ଧ୍ୱଂସ କଲେ
ତାହାପରେ ନିଜଧାମେ ଗମନ କରିଲେ ।

ଶୌନକ ପୁଚ୍ଛନ୍ତି ପୁଣି ଶୁଣ ପୌରାଣିକ
ସେ ଅପୂର୍ବ ସମାଚାର କୁହନ୍ତୁ କେତେକ ।
ବ୍ରହ୍ମ ଭକ୍ତି ପର ସେହି ଯାଦବ ନନ୍ଦନ
କୃଷ୍ଣଙ୍କ ପାଦରେ ସଦା ରଖିଥାନ୍ତି ମନ ।
ସେମାନଙ୍କୁ ବ୍ରହ୍ମଶାପ ହେଲା କି ପ୍ରକାରେ
ସେ କଥା ବିସ୍ତାର ଭାବେ କୁହନ୍ତୁ ଆମ୍ଭରେ ।
କିପରି ହୋଇଲେ ଭେଦ ଯଦୁବଂଶ ଗଣେ
ଦୟାବହି ତାହା କୁହ ଆମ୍ଭଙ୍କୁ ଏ ସ୍ଥାନେ ।
ମୁନିମାନଙ୍କୁ ବିଶେଷ କରି ସମ୍ବୋଧନ
କହି ଆରମ୍ଭିଲେ ପୌରାଣିକ ତପୋଧନ ।
ଶୁଣ ଆହେ ମୁନିବର ଅପୂର୍ବ ବିଷୟ
କୃଷ୍ଣଙ୍କ ଇଚ୍ଛାରେ ସବୁ ଘଟଇ ନିଶ୍ଚୟ ।
ପରମ କାରଣ ସେହି ଜଗତର ପତି
ଧଇଲେ ବିବିଧ ରୂପ ସୁନ୍ଦର ମୂରତି ।
ଜଗତେ ମଙ୍ଗଳ କାର୍ଯ୍ୟ କରିଣ ସାଧନ
ମନେ ମନେ ଆପଣେ ଚିନ୍ତିଲେ ଜନାର୍ଦ୍ଦନ ।
ହରଣ କରି ମୁଁ ଅଛି ଅବନୀର ଭାର
ଏବେ ସକଳ ଯଦୁଙ୍କୁ କରିବି ସଂହାର ।
ଏତେ ଭାବି ବାସୁଦେବ ଦ୍ୱାରକା ନଗରେ
ଯେତେ ଯେତେ ତପିଥିଲେ ବସୁଦେବ ଘରେ
ବଂଶର ବିନାଶ ହେତୁ କରି ସମ୍ଭାଷଣ
କାଳରୂପୀ ଋଷିଗଣେ ହୋଇଲେ ତକ୍ଷଣ ।
ବୋଇଲେ ତାହାଙ୍କୁ ପ୍ରଭୁ ଏଠାରେ ନ ରହି
ନିଜ ନିଜ ସ୍ଥାନେ ତୁମ୍ଭେ ଯାଅ ହେ ପଳାଇ
କୃଷ୍ଣଙ୍କ ଆଜ୍ଞାରେ ସର୍ବେ ବାହାର ହୋଇଲେ
ବିଶ୍ୱାମିତ୍ର ଭୃଗୁ କଣ୍ୱ ଆଦି ଋଷିକୁଳେ ।
ଦୁର୍ବାସା ଅଙ୍ଗିରା ଅତ୍ରି ବାମଦେବ ଭୃଗୁଲେ
ବଶିଷ୍ଠ ନାରଦ ଆଦି ଯାନ୍ତି କୁତୁହଳେ ।
ଚଳନ୍ତି ସେ ପିଣ୍ଡାରକ ତୀର୍ଥେ ଆନନ୍ଦରେ
ମନ ଦେଇ ଶୁଣ ସର୍ବେ ଯା ହୋଇଲା ପରେ
ପଥ ମଧ୍ୟେ ରହିଥିଲେ କୃଷ୍ଣଙ୍କ ନନ୍ଦନେ
ଖେଳୁ ଖେଳୁ ଋଷିଙ୍କୁ ସେ ଦେଖିଲେ ନୟନେ
ପରିହାସ କରିବାକୁ ସେ ଋଷିବରଙ୍କୁ
ରମଣୀ ପରାଏ ବେଶ କରିଣ ଶାମ୍ବକୁ ।
ଗର୍ଭବତୀ ନାରୀ ପ୍ରାୟେ ହୋଇ ସେ କୁମର
ପ୍ରବେଶ ହୋଇଲା ଯାଇ ତପିଙ୍କ ଆଗର ।

ସକଳେ ବୋଇଲେ ଋଷିବରଙ୍କୁ ଅନାଇ
କୁହ କୁହ ଆହେ ଋଷିବର ଦୟା ବହି ।
ଏ ରମଣୀ ଗରଭରେ ରହି ଅଛି କିସ
ପୁତ୍ର କି ଦୁହିତା ଅଛି କରନ୍ତୁ ପ୍ରକାଶ ।
ଦଶମାସ ଗତ ହୋଇଲାଣି ଯେ ଏହାର
କିମ୍ପା ସନ୍ତାନ ପ୍ରସବ ନ କରେ ସତ୍ୱର ।
ଦୟାବହି କୁହ ଆହେ ତପିଙ୍କ ଉତ୍ତମ
କେଉଁ ଦିନ ଏହି ନାରୀ କରିବ ଜନମ ।
ଏହା ଶୁଣି ଋଷିବର କ୍ରୋଧଭର ହୋଇ
ବୋଇଲେ ଯେଉଁ ଦ୍ରବ୍ୟ ସ୍ତ୍ରୀ ଗର୍ଭେ ଅଛି ରହି
ସେ ପ୍ରଚଣ୍ଡ ଲୌହ ଘାତେ ସାରା ଯଦୁବଂଶ
ଅଳପ ଦିନରେ ମାତ୍ର ହୋଇବେ ବିନାଶ
କୌତୁକରେ ଆମ୍ଭ ସଙ୍ଗେ କଲ ଯେ ବେଭାର
ଭୋଗିବ ଅଳପ ଦିନେ ପରିଣାମ ତାର ।
ଜାଣିନାହଁ ଆମ୍ଭ କରାମତି ତୁମ୍ଭେମାନେ
ତେଣୁ ଆମ୍ଭଙ୍କୁ କହିଲ ଏମନ୍ତ ବିଧାନେ ।
ଯାହା ଅରଜନ ଆଜ କଲ ଏ ଠାବରେ
ନିଶ୍ଚୟ ଭୋଗିବ ତାର ଫଳ ଯେ ସତ୍ୟରେ
ଏହା କହି ମୁନିବର ତହୁଁ ଚାଲିଗଲେ
କୃଷ୍ଣଙ୍କ କୁମର ଶୁଣି ବ୍ୟାକୁଳ ହୋଇଲେ ।
ଯାଦବ ନନ୍ଦନମାନେ ବିସ୍ମିତ ହୋଇଣ
କୃତ୍ରିମ ଉଦର ତାର କରିଲେ ମୋଚନ ।
ପ୍ରକାଣ୍ଡ ମୂଷଳ ଏକ ସେଠାରେ ଦେଖିଲେ
ଲୌହମୟ ଦେଖି ତାହା ଚକିତ ମଣିଲେ ।
ବାତେ ରମ୍ଭା ପତ୍ରସମ ଥରି ହରି ହୋଇ
ବୋଲନ୍ତି ଏକି ଘଟିଲା ଜାଣି ନ ହୁଅଇ ।
ବଡ଼ମନ୍ଦ ବୁଦ୍ଧି ଆମ୍ଭେ ଯାଦବ ସନ୍ତାନେ
କି ବୋଲିବେଟି ସକଳ ଜଗତର ଜନେ ।
ଏତେ ବୋଲି କୃଷ୍ଣପୁତ୍ରେ କାନ୍ଦଣ ଲାଗିଲେ
ମୂଷଳକୁ ଘେନି ସଦନକୁ ବାହୁଡ଼ିଲେ ।
ଯହିଁ ବସିଛନ୍ତି ସେହି ଯାଦବଙ୍କ ପତି
ସେହି ସଭା ମଧ୍ୟେ ଗଲେ କୃଷ୍ଣଙ୍କ ସନ୍ତତି ।
ଭୟରେ ଆକୁଳ ସର୍ବେ ମଳିନ ବଦନ
କୃଷ୍ଣଙ୍କ ନିକଟେ ଯାଇ କହିଲେ ତକ୍ଷଣ ।
ବ୍ରହ୍ମଶାପ କଥା ଶୁଣି ଯେତେ ସଭାଜନ
ମୂଷଳକୁ ଦେଖି ହେଲେ ବିସ୍ମୟେ ମଗନ ।

ଭୟେ ଥରହର ହେଲେ ଦ୍ୱାରକାର ଜନେ
ଗୋଦନ କରନ୍ତି ସର୍ବେ ଆକୁଳିତ ମନେ ।
ଯଦୁରାଜନ ଆହୁର ସଭିଙ୍କି କହିଲେ
କମ୍ପା ଭୟାକୁ ହେଉଛ କହ ତାହା ଭଲେ
ସମୁଦ୍ର ତୀରକୁ ସର୍ବେ କର ହେ ଗମନ
ଏ ମୁଷଳ ଗୋଟା ନେଇ କର ଘରଷଣ ।
ଘଷଣେ ଏ ଲୌହଦଣ୍ଡ ନିର୍ମୂଳ ହୋଇବ
ତେବେ କିଛିହିଁ ଆଶଙ୍କା ଆଉ ନ ରହିବ ।
ତାହାଙ୍କ ବଚନେ ସହୁଁ ଯାଦବ ସକଳ
ସମୁଦ୍ର ତୀରକୁ ଗଲେ ଘେନି ସେ ମୁଷଳ ।
ପାଷାଣେ ସେ ମୁଷଳକୁ କଲେ ଘରଷଣ
କ୍ରମେ କ୍ଷୟ ହୁଏ ତାହା ଜାଣ ତପୋଧନ ।
ପରିଣାମେ ଅବଶେଷ ଯା କିଛି ରହିଲା
ସମୁଦ୍ର ଜଳେ ଫିଙ୍ଗିଲେ ସେ ଯାଦବବଳା ।
ମୁଷଳ ଘର୍ଷଣେ ଯେଉଁ ଫେଣ ବାହାରିଲା
ସମୁଦ୍ର ତୀରେ ଲାଗି ସେ କୁଶ ଜନମିଲା ।
ଏରକା ନାମେ ସେ କୁଶ ଅଟେ କଣ୍ଟାମୟ
ଦେଖିଲା ମାତ୍ରେ ମନରେ ଜନମଇ ଭୟ ।
ଶେଷଖଣ୍ଡ ଯାହା ଫିଙ୍ଗିଥିଲେ ସିନ୍ଧୁନୀରେ
ଏକ ମାଛ ଗିଳିଥିଲା ଆହାର ଆଶାରେ ।
ସେହି ମତ୍ସ୍ୟକୁ ଧୀବର ଜାଲରେ ଧରିଲା
ଜରା ନାମେଣ ଶବରେ ନେଇଣ ବିକିଲା ।
ସେ ମତ୍ସ୍ୟ ଗର୍ଭରୁ ଲୌହଖଣ୍ଡ ବ୍ୟାଧ ପାଇ
ତିଆରି କରିଲା ଦୁଇଗୋଟି ଶର ତହିଁ ।
ସର୍ବଜ୍ଞ କରତା ଦେବ ଦେବ ନାରାୟଣ
ଅକ୍ଳେଶେ କରି ପାରନ୍ତି ଶାପ ବିମୋଚନ ।
ତଥାପି ସେ ଜଗନ୍ନାଥ ଇଚ୍ଛା ପ୍ରକାଶିଲେ
କାଳରୂପୀ ବୋଲି ତାହା ଆପଣେ ଜାଣିଲେ
ଏ ପ୍ରସଙ୍ଗ ଯେଉଁ ଜନ କରିବ ଶ୍ରବଣ
ରୋଗ ଶୋକ ନ ରହିବ ତାର କଦାଚନ ।
ଅଶେଷ ପାତକରାଶି କ୍ଷୟ ହୋଇଯିବ
ଅନ୍ତଃକାଳେ ନିଶ୍ଚେ ପରଂବ୍ରହ୍ମେ ଲୀନ ହେବ
ଦ୍ୱାରକା ବିହାରୀଙ୍କର ଶେଷ ଲୀଳା କଥା
ଶୁଣିଲା ମାତ୍ରେ ହରଣ କରେ ଭବ ବ୍ୟଥା ।
ସୁତ ମହର୍ଷି ବଦନ୍ତି ମୁନିଗଣ ପାଶେ
ଶୌନକ ଆଦି ଶୁଣନ୍ତି ପରମ ବିଶ୍ୱାସେ ।

ବ୍ରହ୍ମ ପୁରାଣ ଆଖ୍ୟାନ ଅମୃତ ବାରିଧି
ପଢ଼ିଲା ଶୁଣିଲା ପ୍ରାଣୀ ଲଭେ ସର୍ବସିଦ୍ଧି ।
ସାଧୁଜନମାନେ ସଦା ଏଥି ଦିଅ ମନ
ଗୀତଛନ୍ଦେ ରାବ ଲେଖେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ଯଦୁବଂଶ
ପ୍ରତି ବ୍ରହ୍ମଶାପ ବିବରଣଂ ନାମ
ପଞ୍ଚସପ୍ତତିତମୋଽଧ୍ୟାୟଃ ।

—ଃ୦ଃ—

## ଷଟ୍‌ସପ୍ତତିତମ ଅଧ୍ୟାୟ
## ବସୁଦେବଙ୍କର ବ୍ରହ୍ମବୋଧ ପ୍ରସଙ୍ଗ

ସୁତ ଉବାଚ

ବଦନ୍ତି ଯେ ପୌରାଣିକ ମୁନିଙ୍କ ଆଗରେ
ଏଥୁଅନ୍ତେ ହେ ତାପସେ ଶୁଣ ସର୍ବାଗରେ ।
ଏକଦିନକରେ ଯେ ନାରଦ ମୁନିବର
ପ୍ରଫୁଲ୍ଲ ମନେ ମିଳିଲେ ଦ୍ୱାରକା ନଗର ।
ବିଶେଷ ଲାଳସା ତାଙ୍କ କୃଷ୍ଣ ଦରଶନେ
ଦେବର୍ଷିଙ୍କି ଦେଖି କୃଷ୍ଣ ବସାନ୍ତି ଆସନେ ।
ଅତି ସମାଦର ଭାବେ କରି ସମ୍ଭାଷଣ
ପାଦ୍ୟଅର୍ଘ୍ୟ ସଙ୍ଗେ ଦେଲେ କୁସୁମ ଚନ୍ଦନ ।
କୃଷ୍ଣଙ୍କୁ ଦେଖି ଅତ୍ୟନ୍ତ ହରଷ ନାରଦ
ସଦା ହୃଦୟେ ଭଜନ୍ତି ପରମ ସମ୍ପଦ ।
ଦେବକୀ ନନ୍ଦନମାନେ ଯେ ଜନ ଭଜଇ
କଦାପି ଦୁର୍ଦ୍ଦଶାମାନ ତାରେ ନ ଘଟଇ ।
ଭକ୍ତର ତେଜ ଅସୀମ ଜାଣନ୍ତି ସୁଜନେ
ଏହାପରେ ଆନଗାଥା ଶୁଣନ୍ତୁ ବିଧାନେ ।
ଶ୍ରୀକୃଷ୍ଣ ନାରଦଙ୍କର ପରେ ହୋଇ ତୋଷ
ରଖିଲେ ଦ୍ୱାରକାପୁରେ ଆପଣାର ପାଶ ।
ନାନା ପରକାରେ ମିଷ୍ଟ ଦରବ ଭୁଞ୍ଜାଇ
ଶାସ୍ତ୍ର ଆଲୋଚନା ସଦା କରନ୍ତି ମାଧୋଇ ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ପିତା ହୋଇଣ ହରଷ,
ଦେବର୍ଷିଙ୍କ ସନ୍ନିଧାନେ ହେଲେ ପରବେଶ
ତାହାଙ୍କ ଚରଣ ତଳେ ହୋଇ ପ୍ରଣିପାତ
କଥା ପ୍ରସଙ୍ଗରେ ପୁଚ୍ଛା କଲେ କୃଷ୍ଣ ତାତ ।
ଆହେ ଦେବ ତୁମ୍ଭ ପଦରଜ ଏହିପୁରେ
ପଡ଼ି ପବିତ୍ର କରିଲା ସର୍ବ ନାରୀନରେ ।

ତୁମ୍ଭ ଆଗମନେ ଆମ୍ଭେ ଅତ୍ୟନ୍ତ ଆନନ୍ଦ
ପିତା ଆଗମନେ ପୁତ୍ର ଲଭେ ଯେସନ୍ତେ ମୋଦ
ସେହିପରି ମୋର ମନ ହେଉଛି ହେ ଦେବ
ଅଧିକ କହିବି କିସ ତୁମ୍ଭେ ଜାଣ ସର୍ବ ।
ହେ ଦୀନବତ୍ସଳ ତୁମ୍ଭେ ମହା ଜ୍ଞାନବାନ
ଦୟାବହି ମୋତେ କର ବ୍ରହ୍ମଜ୍ଞାନ ଦାନ ।
ନିର୍ମଳ ହୁଅଇ ଚିତ୍ତ ଯାହା ଶ୍ରବଣରେ
ମୁକ୍ତି ଲଭି ଭବ ଭୟ ହଟିଯାଏ ଦୂରେ ।
ସେହି ବ୍ରହ୍ମଜ୍ଞାନ ଶୁଣିବାକୁ ବଳେ ମନ
ଦୟା ବହି ବାରେ ମାତ୍ର କୁହ ତପୋଧନ ।
ଦେବଙ୍କ ମାୟାରେ ସର୍ବେ ମୋହିତ ନିଶ୍ଚୟ
ସର୍ବସାର ଅଟନ୍ତି ଯେ ସଭିଙ୍କ ଆଶ୍ରୟ ।
ଜଗତ ନାଥଙ୍କୁ ପୁତ୍ରପ୍ରାୟ ମୁଁ ମଣିଲି
ମୋକ୍ଷ ହେବା ପାଇଁ ଯାହା ତଳେ ନ ଭାବିଲି
ଏଣୁ କୁହ ଆହେ ଋଷି ହୋଇଣ ସଦୟ
କିରୂପେ ଘୁଞ୍ଚିବ ମୋର ଏ ସଂସାର ଭୟ ।
ପୁଣି କେଉଁପରି ମୋର ମୁକତି ହୋଇବ
ବାରେ ମାତ୍ରେ କୁହ ଆହେ ମୁନିଙ୍କ ଉତ୍ତମ ।
ବସୁଦେବ ବାକ୍ୟେ ତୋଷ ହୋଇଣ ନାରଦ
ପ୍ରକାଶ କରିଲେ ମନ ମଧ୍ୟେ ବହି ମୋଦ ।
ହରି ଗୁଣ ଗାଇବାକୁ ଉନମତ୍ତ ହେଲେ
ବସୁଦେବଙ୍କୁ ଅନାଇ ଆରମ୍ଭ କରିଲେ ।
ବୋଇଲେ ହେ ବସୁଦେବ ତୁମ୍ଭେ ମହାମତି
ଯାଦବ କୁଳ ଚନ୍ଦନ ଧାର୍ମିକ ଯେ ଅତି ।
ଯେଉଁ ପରଂବ୍ରହ୍ମ ଗାଥା ପଚାରିଲ ମୋତେ
ବିସ୍ତାର ଭାବେ ପ୍ରକାଶ କରିବି ତୁମ୍ଭରେ ।
ପରଂବ୍ରହ୍ମ ଗାଥା ଅଟେ ପରମ କାରଣ
ଏ ଧର୍ମ ଯେ ପ୍ରାଣୀ ସୁଖେ କରଇ ଶ୍ରବଣ ।
କିବା ଏହି କଥାମାନ ପଠନ କରଇ
ଅତ୍ୟନ୍ତ ଆଦରେ ଧ୍ୟାନ ଦେଇଣ ଶୁଣଇ ।
ତା ଅଙ୍ଗ ଅତି ପବିତ୍ର ପାପୁଁ ହୁଏ ମୁକ୍ତ
ସାରକଥା କହିଲି ତୁମ୍ଭଙ୍କୁ ସମସ୍ତ ।
ତୁମ୍ଭ ଯୋଗୁଁ ଆଜ ମୋର ସୁଜ୍ଞାନ ଉଦୟ
ସ୍ମରଣ କରାଇ ଦେଲେ ହରି ଦୟାମୟ ।
ହୃଦ ବୋଧ କର ଏକ ପୂର୍ବ ଇତିହାସ
ଋଷଭ ପୁତ୍ରଙ୍କଠାରୁ ଯେ ସର୍ବ ପ୍ରକାଶ ।

ପ୍ରିୟବ୍ରତ ନାମେ ଥିଲା ମନୁଙ୍କ ନନ୍ଦନ
ଅଗ୍ନିଧ୍ର ତାହାର ପୁତ୍ର ମନଦେଇ ଶୁଣ ।
ତାହାର ପୁତ୍ରର ନାମ ନାଭିଦ୍ର ହୋଇଲା
ନାଭିଦ୍ର ନନ୍ଦନ ସେ ଋଷଭ ବୋଲାଇଲା ।
ମହାତେଜସ୍ୱୀ ସେ ପୁତ୍ର ସଂସାରେ ବନ୍ଦିତ
ନାରାୟଣଙ୍କର ଅଂଶେ ହୋଇଲା ସମ୍ଭୂତ ।
ଋଷଭର ଶତେ ପୁତ୍ର ଜନମ ଲଭିଲେ
ସର୍ବେ ଧର୍ମବନ୍ତ ବ୍ରହ୍ମ ପରାୟ ସେ ଥିଲେ ।
ଭରତ ନାମରେ ଜ୍ୟେଷ୍ଠ ତନୟ ତାହାର
ପରମ ତେଜସ୍ୱୀ ମହା ଧାର୍ମିକ ଆବର ।
ମିଥ୍ୟା ମାୟାରେ ମୋହିତ ଜାଣି ମାନସରେ
ତେଜିଲା ଏହି ସଂସାର ବୁଝିଣ ସତ୍ୱରେ ।
ତିନି ଖ୍ରାହ୍ମଯାଏ କରି ବ୍ରହ୍ମ ଆରାଧନ
ଶ୍ରୀବିଷ୍ଣୁ ସ୍ୱରୂପ ଲଭି କଲା ସେ ଧୀମାନ ।
ଆଉ ନଅଜଣ କଲେ ଦ୍ୱୀପ ଅଧିକାର
କର୍ମତନ୍ତ୍ର କୃତ ପୁତ୍ର ଏ କାଶୀ ଆବର ।
ଜଗତେ ପ୍ରସିଦ୍ଧ ସେହୁ ନାମରେ ବ୍ରାହ୍ମଣ
ହେ ବସୁଦେବ କହୁଛି ପୂର୍ବର କଥନ ।
ଆଉ ନଅଜଣ ପରମାର୍ଥ ପରାୟଣ
ଭାଗବତ ରୂପେ ବିଶ୍ୱ କରି ଦରଶନ ।
ଇଚ୍ଛାମତେ ସର୍ବସ୍ଥାନେ କରନ୍ତି ଭ୍ରମଣ
ଶୁଣ ଏକ ଦିନର ଯେ ଅପୂର୍ବ କଥନ ।
ଏକତ୍ର ହୋଇଣ ଯେ ଯାଜ୍ଞିକ ଋଷିଗଣ
କରନ୍ତି ମହାତ୍ମା ନିମି ଯଜ୍ଞ ସମ୍ପାଦନ ।
ସେଠାକୁ ସେ ନଅଜଣ କଲେ ଆଗମନ
ପରମ ବ୍ରହ୍ମଙ୍କ ଭାବେ ପ୍ରଫୁଲ୍ଲ ବଦନ ।
ପ୍ରବେଶ ହୋଇଲେ ଯାଇ ନିମି ଯଜ୍ଞସ୍ଥଳେ
ଦିବାକର ସମ କାନ୍ତି ଦେଖିଲେ ସକଳେ ।
ଉଠି ଉଭା ହେଲେ ତହିଁ ଯେତେ ସଭାଜନ
ସାଦରେ ନିମି ରାଜନ କଲେ ସମ୍ଭାଷଣ ।
କରଯୋଡ଼ି କହେ ରାଜା ନବମୁନି ପ୍ରତି
ସାର୍ଥକ ଜୀବନ ମୋର ହୋଇଲା ସମ୍ପ୍ରତି ।
ପବିତ୍ର ହେଲା ମୋ ପୁରୀ ତୁମ୍ଭ ପାଦ ଲାଗି
ଏତେ ବୋଲି ମୁନି ପାଦେ ହୋଇଲା ଓଳଗି
ବସିବାକୁ ଦେଲା ରାଜା ରତନ ଆସନ
ବିଧିମତେ ସେମାନଙ୍କୁ କଲା ସେ ଅର୍ଚ୍ଚନ ।

କୃତାଞ୍ଜଳି ହୋଇକରି ସେ ବିଦେହ ପତି
ସବିନୟେ ପୁଚ୍ଛାକଲା ମଧୁର ଭାରତୀ ।
ମୋହର ବଚନ ଶୁଣ ହେ ମୁନି ସମୂହେ
ହରିଙ୍କ ପାର୍ଷଦ ବୋଲି ମୋର ମନେ ହୁଏ ।
ପବିତ୍ର କରିବା ପାଇଁ ବିଷ୍ଣୁ ଭକ୍ତମାନେ
ଭ୍ରମଣ କରୁଛ ସର୍ବେ ଆନନ୍ଦିତ ମନେ ।
ଏହି ଯେ ମାନବ ଦେହ ପ୍ରିୟ ଅତିଶୟେ
ପଞ୍ଚଭୂତମୟ ମାତ୍ର ଚିର ସ୍ଥିର ନୁହେଁ ।
ତଥାପି ଏ ଦେହ ଅଟେ ସୁ ଦୁର୍ଲ୍ଲଭ ଅତି
ଅତଏବ କହ ଦେବ ମୋ ଆଗେ ସମ୍ପ୍ରତି ।
ଏମନ ପୟର କେହି ଦର୍ଶନ ନ ପାନ୍ତି
ଏଣୁକରି କହ କିଛି ମଙ୍ଗଳ ଭାରତୀ ।
ଏ ଜଗତେ ଜୀବ ଆସି କ୍ଷଣିକରେ ପାଇଁ
ସାଧୁ ସଙ୍ଗରୁ ଦୁର୍ଲ୍ଲଭ ଜନମ ଲଭଇ ।
ନିଧି ଲଭ କରି ଯେ ଆନନ୍ଦ ହୁଏ ମନେ
ତତୋଧିକ ସୁଖଜନ୍ମେ ସାଧୁ ଦରଶନେ ।
ଅତଏବ କୃପାକରି କହ ବର୍ତ୍ତମାନ
ପ୍ରସନ୍ନ ଜନର ପ୍ରତି ପ୍ରଭୁ ଜନାର୍ଦ୍ଦନ ।
ସେ ଧର୍ମ ଦାନ କରନ୍ତି ମନ ଆନନ୍ଦରେ
ସେହି ଭାଗବତ ଧର୍ମ ଏବେ କହ ମୋରେ ।
ବସୁଦେବଙ୍କୁ ନାରଦ କରି ସମ୍ବୋଧନ
ବୋଇଲେ ହେ ନୃପ ଶୁଣ ଅପୂର୍ବ କଥନ ।
ନିମି ରାଜାଙ୍କ ବଚନ ଶୁଣି ମୁନିଗଣ
ପ୍ରୀତି ସହକାରେ ନୃପେ କଲେ ସମ୍ଭାଷଣ ।
ସମସ୍ତଙ୍କ ଜ୍ୟେଷ୍ଠ ମୁନି କବି ତାଙ୍କ ନାମ
ନିମିଙ୍କୁ ସମ୍ବୋଧି ସେ କହିଲେ ରାଜା ଶୁଣ ।
ସଂସାରରେ ଜୀବ ଯେତେ ଜାଣ ସୁନିଶ୍ଚୟ
ଯେଉଁମାନଙ୍କର ଘଟେ ଜ୍ଞାନ ବିପର୍ଯ୍ୟୟ ।
ସେମାନେ ଯେବେ ସେବନ୍ତି ଅଚ୍ୟୁତ ଚରଣ
ସଂସାର ଭୟ ତାଙ୍କର ହୁଏ ନିବାରଣ ।
ଯେଉଁମାନେ ମହାଜ୍ଞାନ ନକରି ଗୋଚର
ହୀନମତି ହୋଇଥାନ୍ତି ଜଗତ ମଧ୍ୟର ।
ନାରାୟଣ ସେମାନଙ୍କ ଉଦ୍ଧାର କାରଣ
ସହଜେ କହିଲେ ଆଗେ ସେ ସବୁ ବଚନ ।
ଭାଗବତ ଧର୍ମ ତାହା ଜାଣିବ ଆଶ୍ରୟ
ଶୁଣାଇଲି ସାର କଥା ମୁହିଁ ସମୁଦାୟ ।

ଶୁଣ ପୁଣି ନୃପବର ଏବେ ଯା କହଇ
ଏହି ଧର୍ମକୁ ଯେ ପ୍ରାଣୀ ଆଶ୍ରୟ କରଇ ।
କେବେହେ ତାର ନହୁଏ ବିପଦ ଘଟନ
ଅପୂର୍ବ କାହାଣୀ ଏବେ କରସି ଶ୍ରବଣ ।
ଏକାନ୍ତ ମାନସ ଯାର ଭାଗବତ ପ୍ରତି
ସେହି ପ୍ରାଣୀ ଚକ୍ଷୁ ମୁଦି କରେ ଯେବେ ଗତି
ମର୍ତ୍ତ୍ୟରେ ସେ ପ୍ରାଣୀ କେବେ ନ ହୁଏ ପତିତ
ସେହି ତତ୍ତ୍ୱ କଥା ଏବେ ଶୁଣ ନରନାଥ ।
ଏ ଧର୍ମ ଆଶ୍ରୟକାରୀ ଜୀବ ଛନ୍ତି ଯେତେ
ସଂସାର କାର୍ଯ୍ୟରେ ଯେବେ ଥାନ୍ତି ଅନୁରତେ
ନାରାୟଣ ସମର୍ପଣ କରନ୍ତି ସମସ୍ତ
ତୁମ୍ଭଙ୍କୁ କହିଲି ଏହି ପ୍ରକୃତ ଉଦନ୍ତ ।
ଈଶ୍ୱର ବିମୁଖ ହୁଏ ଯେଉଁ ମୂଢ଼ଜନ
ମାୟାରେ ଆଚ୍ଛନ୍ନ ହୋଇ ରହେ ଅନୁକ୍ଷଣ ।
ତାହାର ହୃଦରେ ନୁହେଁ ଆନନ୍ଦ ଉଦୟ
ସମସ୍ତ କର୍ମେ ଘଟଇ ତାର ବିପର୍ଯ୍ୟୟ ।
ଯଦ୍ୟପି ସେ ନର କରେ ଈଶ୍ୱର ଭଜନ
ସର୍ବଦା ଭୟରେ ତାର ମନ ହୁଏ ଛନ୍ନ ।
ଏଣୁ କଲେ ଆପଣାର ମନକୁ ଦମନ
ଭୟହୀନ ହୁଏ ସଦା ସେହି ମୂଢ଼ଜନ ।
ଲୋକଙ୍କ ମଧ୍ୟରେ ସେହୁ ବୁଦ୍ଧିମାନ ହୁଏ
ଅବିରତେ ଈଶ୍ୱରଙ୍କ ଗାନ ଗାଉଥାଏ ।
ଚକ୍ରପାଣିଙ୍କର ନାମ କରଇ କୀର୍ତ୍ତନ
ଭକ୍ତିରେ ତାହାଙ୍କ ନାମମାନ କରେ ଗାନ ।
ପୁଣି ସଦା ହରିନାମ ଶ୍ରବଣ କରଇ
ହରିଙ୍କର ନାମମାନ ଗାଇ ଭ୍ରମୁଥାଇ ।
ଏରୂପେ ହୋଇବ ଯଦି ତା ପ୍ରେମ ଉଦୟ
ତାହାକୁ ଦୟା କରନ୍ତି ପ୍ରଭୁ ଦୟାମୟ ।
ଆନନ୍ଦେ ତା ମନ ମଗ୍ନ ହେବ ସେ କାଳରେ
କୀର୍ତ୍ତନ କରିବ ସାର ଭାବି ଜଗତରେ ।
ଏହାବେଳେ ହରିନାମେ ଯେ ଉନ୍ମତ୍ତ ହୁଏ
ବାହାର ଜ୍ଞାନ ତାହାର କିଛିହିଁ ନ ରହେ ।
କେବେହାସେକେବେଗାଏ କରେ ଯେ କ୍ରନ୍ଦନ
ଏହିରୂପେ ଆଚରନ୍ତି ହରିଭକ୍ତ ଜନ ।
ଆହୁରି କଥାଏ ରାଜା କହୁଅଛି ମୁହିଁ
ହରିଭକ୍ତ ଜନ ମନେ ଏମନ୍ତ ଜନ୍ମଇ ।

ପଞ୍ଚଭୂତ ଆତ୍ମା ଆଉ ପଞ୍ଚ ମହାକାଶ
ଦେଖିଣ ଭାବଇ ଯେହୁ ଶ୍ରୀହରି ସଦୃଶ୍ୟ ।
କୃଷ୍ଣ ଅଙ୍ଗ ଭାବ ସଦା କରଇ ପ୍ରଣତି
ଏହି ରୂପେ ହୁଏ ସଦା କୃଷ୍ଣ ଭକ୍ତ ମତି ।
କ୍ଷୁଧାତୁର ବ୍ୟକ୍ତ ଯେହ୍ନେ ପାଇଲେ ଭୋଜନ
ଅତି ଆନନ୍ଦେ ତା ମନ ହୁଅଇ ଉଦନ ।
ସେହିପରି କୃଷ୍ଣ ଭକ୍ତେ ଆନନ୍ଦ ଉଦୟ
ସଂସାର ବୈରାଗ୍ୟ ତାର ଜାଣିବ ନିଶ୍ଚୟ ।
ଏଥିଅନ୍ତେ ସାର କଥା ଶୁଣ ଦେଇ ମନ
ଯେବଣ ଜନ ସେବଇ ଶ୍ରୀହରି ଚରଣ ।
ସଦା ସେ ମାନବ ହୁଏ ଆନନ୍ଦିତ ଅତି
ଅନ୍ତରେ ଜନ୍ମଇ ତାର ଶ୍ରୀକୃଷ୍ଣ ଭକତି ।
ଶ୍ରଦ୍ଧାଭରେ ସେହୁ ଭଗବାନଙ୍କୁ ପୂଜଇ
ଶାନ୍ତିର ଆଳୟେ ସଦା ବାସକରି ଥାଇ ।
ଅନ୍ତିମେ ପରମ ଗତି ଯେହୁ ଲଭକରେ
ସାରକଥା କହିଲଟି ମୁଁ ତୁମ୍ଭ ଗୋଚରେ ।
ନିମି ରାଜା ହର୍ଷ ଅତି ଏ କଥା ଶ୍ରବଣେ
ପୁଣି କରଯୋଡ଼ି କହେ ମୁନି ସନ୍ନିଧାନେ ।
ଆହେ ମହାସତ୍ତ୍ୱ ତୁମ୍ଭେ ଜ୍ଞାନୀଙ୍କ ପ୍ରବର
ଭାଗବତ ଜନ କେବା ସଂସାର ମଧିର ।
ସେହିକଥା ବିସ୍ତାରିଣ କୁହ ମୁନିବର
ଆନନ୍ଦ ରସରେ ମଗ୍ନ ହେଉ ମୋ ଶରୀର ।
କେମନ୍ତ ସ୍ୱଭାବ ହରି ଭକ୍ତର ଅଟଇ
କିବା ଆଚରଣେ ସେହୁ ଜଗତେ କରଇ ।
କିପରି ଯେ ଧର୍ମ କର୍ମମାନ ତାହାଙ୍କର
ଦୟା କରି ପ୍ରକାଶନ୍ତୁ ମୋହ ଅଗ୍ରତର ।
ମୁନି ବୋଇଲେ ହେ ରାଜା କରସି ଶ୍ରବଣ
ପରମ ପବିତ୍ର ଗାଥା ଜାଣିବ ଏକ୍ଷଣ ।
ଅପୂର୍ବ କାହାଣୀ ଏକ ଶୁଣ ନରରାୟ
ଭାଗବତେ ବ୍ୟକ୍ତ ଯାହା ବେଦରେ ନିର୍ଣ୍ଣୟ ।
ସେହି କଥା କହିବଇଁ ମୁହିଁ ତୁମ୍ଭ ଆଗେ
ଏକମନ ହୋଇ ଏବେ ଶୁଣନ୍ତୁ ସରାଗେ ।
ପୌରାଣିକ ସୁତ ମୁନି ଆନନ୍ଦ ମନରେ
ଏହିକଥା ବଖାଣନ୍ତି ମୁନିଙ୍କ ମେଳରେ ।
ଶୁଣ ତୁମ୍ଭେମାନେ ଏକ ଅପୂର୍ବ କଥନ
ନିମିରାଜା ଆଗେ ଯାହା କରିଲେ ବର୍ଣ୍ଣନ ।
ତାହା ମୁଁ ସୂକ୍ଷ୍ମ ଭାବରେ କହୁଛି ତୁମ୍ଭଙ୍କୁ
ଶ୍ରବଣ କର ହେ ସ୍ଥିର କରି ମାନସକୁ ।
ବିଷ୍ଣୁ ସମ ତେଜବନ୍ତ ଭାଗବତ ଜନେ
ସର୍ବଜୀବେ ସମ ଦେଖୁଥାନ୍ତି ଭାବି ମନେ ।
ବ୍ରହ୍ମରୂପ ଆପଣାକୁ ଦର୍ଶନ କରନ୍ତି
ସର୍ବଭୂତେ ବ୍ରହ୍ମରୂପ ଅନ୍ତରେ ଭାବନ୍ତି ।
ଶ୍ରେଷ୍ଠ ଭାଗବତ ସେହି ଜାଣ ହେ ସୁମତି
ମୂର୍ଖ ଆଉ ଶତ୍ରୁମାନେ ଉପେକ୍ଷା କରନ୍ତି ।
ଈଶ୍ୱରଙ୍କ ପାଦତଳେ ଯାର ଭକ୍ତିଥାଏ
ସାଧୁଜନ ପ୍ରତି ସଦା ଦୟା ବହିଥାଏ ।
କୃପା ବିତରଣ କରେ ଅଜ୍ଞାନୀଙ୍କ ପ୍ରତି
ଦୋଷୀଙ୍କୁ ଦେଖି ଉପେକ୍ଷା କରଇ ଯେ ନିତି ।
କାହାକୁ ମଧ୍ୟମ ବୋଲି କରନ୍ତି ଗଣନ
ହେ ମୁନି ଆଉ କଥାଏ କରନ୍ତୁ ଶ୍ରବଣ ।
ଶ୍ରଦ୍ଧାଳୁ ହୋଇ ଯେ ଅବା ପ୍ରତିମାଙ୍କ ପ୍ରତି
ବିଷ୍ଣୁ ରୂପେ ପୂଜେ ତାକୁ ହୋଇ ସ୍ଥିର ମତି
ଅନ୍ୟ ରୂପେ କରିବାକୁ ଶ୍ରୀବିଷ୍ଣୁ ପୂଜନ
କାହିଁରେହିଁ ଭକ୍ତ ତାର ନୁହେଁ କଦାଚନ ।
ଅଧମ ବୋଲି ତାହାକୁ ଜାଣ ତପୋଧନ
ଏଥିରେ ସଂଶୟ ନାହିଁ କହିଲି ପ୍ରମାଣ ।
ଶ୍ରୀ ବାସୁଦେବଙ୍କ ଠାରେ ଆଶକ୍ତ ଯା ଚିତ୍ତ
ଇନ୍ଦ୍ରିୟମାନଙ୍କୁ କରେ ଭୋଗ ସୁଖେ ରତ ।
ବିଷ୍ଣୁମାୟା ଏ ଜଗତ ଭାବେ ଅବିରତ
କେବେ ତାର ମନେ ଦ୍ୱେଷ ନ ହୁଏ ଉଦିତ
କାର୍ଯ୍ୟରେ ତାର ଆନନ୍ଦ କେବେ ନ ଜନ୍ମଇ
ଉତ୍ତମ ଭାଗବତ ସେ ସର୍ବ ଶାସ୍ତ୍ରେ କହି ।
ଆଉ ଯେଉଁ ଜନ ବିଷ୍ଣୁ ଭାବଇ ଅନ୍ତରେ
ସ୍ମରଣ କାରଣେ ସେହି ପରମ ଈଶ୍ୱରେ ।
ଦେହ ପ୍ରାଣ ମନ ବୁଦ୍ଧି ଇନ୍ଦ୍ରିୟାଦି ଯେତେ
ସଂସାରର ଧର୍ମ କର୍ମ ଜାଣିବ ସନ୍ତତେ ।
କ୍ଷୁଧା ତୃଷ୍ଣା ଭୟ କ୍ଲେଶ ଜନମ ମରଣ
ଏ ସବୁରେ କେବେ ମୁଗ୍ଧ ନୁହେଁ ସେହିଜନ
ଭାଗବତ ଶ୍ରେଷ୍ଠ ବୋଲି ଜାଣିବ ତାହାକୁ
ଆଉରି କଥାଏ ମୁହିଁ କହିବି ତୁମ୍ଭଙ୍କୁ ।
କାମ୍ୟ କର୍ମେ ଇଚ୍ଛା ନାହିଁ ଯାହାର ମନରେ
ଏକମାତ୍ର ବାସୁଦେବ ଭାବେ ନିରନ୍ତରେ ।

ଭାଗବତ ଶ୍ରେଷ୍ଠ ବୋଲି ଖ୍ୟାତ ସେହି ଜନ
ଜନ୍ମ କର୍ମ ବର୍ଣ୍ଣ ହେତୁ ଶୁଣ ହେ ରାଜନ ।
ଆଶ୍ରମ ଜାତି ହେତୁରୁ ହୃଦୟେ ଯାହାର
କେଉଁରୂପେ ନ ହୁଅଇ ଗର୍ବ ଅହଙ୍କାର ।
ଶ୍ରୀହରିଙ୍କ ପ୍ରିୟ ବୋଲି ଜାଣିବ ସେ ଜନେ
ଆତ୍ମପର ଭେଦ ସେହୁ ନ କରଇ ମନେ ।
ଦେହ ଆଉ ଚିତ୍ତ ହେତୁ ଯେଉଁ ବିଜ୍ଞ ନର
ସର୍ବଭୂତେ ସମଜ୍ଞାନ ସର୍ବଦା ଯାହାର ।
ସେହି ଭାଗବତ ସାର ଜାଣ ମହାମତି
ଭଗବାନ ବିନୁ ଆଉ ନାହିଁ ଆନଗତି ।
ଶ୍ରୀହରି ଚରଣ ଏକା ଜଗତର ସାର
ସୁଦୃଢ଼ ବନ୍ଧନେ ବନ୍ଧିଅଛି ହୃଦୟର ।
ସର୍ବଦା ଶ୍ରୀହରି ନାମ କରଇ ଭଜନ
ହରି ବିନା ଏ ଜଗତେ ନଜାଣଇ ଆନ ।
ବୈଷ୍ଣବ ପ୍ରଧାନ ସେହି ଜାଣ ହେ ନିଶ୍ଚୟେ
ତାର ଚିତ୍ତ ବିଚଳିତ କାହିଁରେ ନ ହୁଏ ।
ଗଗନେ ଉଦିତ ଯେବେ ହୁଏ ନିଶାଚର
ସୂର୍ଯ୍ୟର ପ୍ରଭାବେ ସେହୁ ନ ହୁଏ ଗୋଚର ।
ସେହିପରି ଶ୍ରୀହରିଙ୍କ ଯୁଗଳ ଚରଣ
ବିରାଜିତ ଅଙ୍ଗୁଳିର ନଖର କିରଣ ।
ସେବକ ହୃଦୟେ ସେହି କାନ୍ତି ବିରାଜଇ
ତମ ଆଦି ତାପତ୍ରୟ ତହିଁରେ ନାଶଇ ।
ଯାହାଙ୍କର ନାମ ମୁଖେ କଲେ ଉଚ୍ଚାରଣ
ଅନାୟାସେ ହୁଏ ସର୍ବ ପାପ ବିମୋଚନ ।
ସେହି ହରି ସଦା ତାର ହୃଦୟ ଭିତରେ
ପ୍ରଣୟ ରଜ୍ଜୁରେ ବନ୍ଧା ଥାନ୍ତି ନିରନ୍ତରେ ।
ହରି ପାଦପଦ୍ମ ହୃଦେ ଯେ କରେ ଧାରଣ
ଭାଗବତ ଶ୍ରେଷ୍ଠ ଜାଣ ଅଟେ ସେହି ଜନ ।
କବି ମୁନି ମୁଖୁଁ ଶୁଣି ଏହି ସନ୍ତ ବାଣୀ
ନିମିରାଜ କହେ ପୁଣି ଯୋଡ଼ି ବେନିପାଣି ।
ତୁମ୍ଭ ପ୍ରସାଦେ ମୋ ଜ୍ଞାନ ହୋଇଲା ଉଦୟ
ଘୁଞ୍ଚାଅ ଏଣିକି ମୋର ମନରୁ ସଂଶୟ ।
କହ ମୋତେ ଦୟାକରି ମାୟାର କଥନ
ଯେଉଁ ବିଷ୍ଣୁ ମାୟା ଅଟେ ମୋହର କାରଣ
ସେ ମାୟାକୁ ଜାଣିବାରେ ଇଚ୍ଛା ଅତିଶୟ
ସଂସାର-ତାପେ ତପତ ଏ ମୋର ହୃଦୟ ।
ଏଣୁ ମୋତେ କହ ସୁଧାସମ ହରି କଥା
ଶୀତଳ ହୋଇବ ପ୍ରାଣ ଘୁଞ୍ଚିବ ବ୍ୟଥା ।
ଅନ୍ତରୀକ୍ଷ ନାମେ ମୁନି କହିଲେ ତକ୍ଷଣ
ଶୁଣ ଆହେ ନରପତି ଅପୂର୍ବ କଥନ ।
ଯେଉଁ କଥା ଶୁଣି ଜ୍ଞାନ ଲଭିବ ବିଶେଷ
ସେ କଥା ଶ୍ରବଣ କରି ହୁଅ ହେ ହରଷ ।
ବିଚିତ୍ର ମାୟାର ତତ୍ତ୍ୱ ତହିଁ ପ୍ରକାଶନ
ପ୍ରାଣୀ ମଧ୍ୟେ ଆତ୍ମା ରୂପୀ ଯେଉଁ ମହାଜନ ।
ଅନାଦି ପୁରୁଷ ସେହୁ ଅନନ୍ତ ମହାନ
ନିଜ ଅଂଶେ ଜୀବମଧ୍ୟେ କରେ ଅବସ୍ଥାନ ।
ବିଷୟ ଭୋଗ ଆବର ମୁକ୍ତିର କାରଣ
ମହାଭୂତେ କରିଲେ ଯେ ପ୍ରାଣର ସୃଜନ ।
ପଞ୍ଚ ମହାଭୂତେ ସୃଷ୍ଟି ଜୀବର ଅନ୍ତର
ଅନ୍ତର୍ଯ୍ୟାମୀ ରୂପେ ଥାନ୍ତି ତାହାର ଭିତର ।
ସଂସାର ବିଷୟ ଭୋଗ ଆନନ୍ଦିତ ହୋନ୍ତି
ମନ ଇନ୍ଦ୍ରିୟ ରୂପରେ ବିଭାଗ କରନ୍ତି ।
ଆତ୍ମ ଗୁଣରୁ ଯେ ସେହି ପ୍ରଭୁ ନାରାୟଣ
ବିଷୟ କରନ୍ତି ଭୋଗ ଆନନ୍ଦ କାରଣ ।
ଜଗତ ମଧ୍ୟରେ ଥାନ୍ତି ଯେତେ ଜୀବଗଣ
ଆତ୍ମବୋଧେ ସମାସକ୍ତ ତହିଁ ନାରାୟଣ ।
ଦେହଧାରୀ ଗୁଣ ଯେତେ ଜୀବ କଥା ତାର
ଇଚ୍ଛାମତେ କର୍ମ ସେ କରନ୍ତି ଅନିବାର ।
ତହିଁରେ ସେ ଅରଜନ୍ତି ଯେତେ କର୍ମଫଳ
ଦୁଃଖକର ହୁଏ ସେହି କର୍ମ ଅମଙ୍ଗଳ ।
ସେହି କର୍ମ ଫଳେ ଭବେ ଯେତେ ଜୀବଗଣ
ବାରମ୍ବାର ଏ ସଂସାରେ କରନ୍ତି ଭ୍ରମଣ
ଅମଙ୍ଗଳ କାର୍ଯ୍ୟରତ ଯେଉଁ ନରମାନେ
କର୍ମଫଳେ ଅବଶ ସେ ହୋନ୍ତି ଅନୁକ୍ଷଣେ ।
ତାହାର ଚରିତମାନ ଶୁଣ ନରପତି
ପ୍ରଳୟ ପର୍ଯ୍ୟନ୍ତ ଜାଣ ନୋହେ କେଉଁଗତି ।
ତେତେକାଳ ଘଟୁଥାଏ ଜନମ ମରଣ
ସାର କଥା ହେ ରାଜନ କରସି ଶ୍ରବଣ ।
ମହାଭୂତମାନଙ୍କର ନାଶ ସମୟରେ
ଉପସ୍ଥିତ ହୁଅନ୍ତି ଯେ ଅସୀମ କାଳରେ ।
ଅନାଦି ଅନନ୍ତ ତାହା ଜାଣି ତତକ୍ଷଣ
ସ୍ଥୂଳ ସୂକ୍ଷ୍ମାତ୍ମକ କାର୍ଯ୍ୟ କରେ ଆକର୍ଷଣ ।

ସେକାଳେ ଜାଣିବ ତୁମ୍ଭେ ଆହେ ନରବର
ଶତବର୍ଷ ଅନାବୃଷ୍ଟି ହେବ ଭୟଙ୍କର ।
ସେ ଅନାବୃଷ୍ଟି କାଳେ ଜାଣ ହେ ରାଜନ
ସୂର୍ଯ୍ୟର କିରଣ ବୃଦ୍ଧି ହେବ ବିଶେଷଣ ।
ତ୍ରିଲୋକର ପ୍ରାଣୀ ଦଗ୍ଧ ହେବେ ସମୁଦାୟ
ଅନନ୍ତ ମୁଖରୁ ଅଗ୍ନି ହୋଇବ ଉଦୟ ।
ପାତାଳ ଭୁବନରୁ ଯେ ସେହି ହୁତାଶନ
ସ୍ୱରଦିଗ ଦଗ୍ଧ କରି ଉଠିବ ଗଗନ ।
ପବନ ଆଘାତେ ସେହି ଅନଳ ଜଳିବ
ଭୟଙ୍କର ଭାବେ ଦଶଦିଗ ଦଗ୍ଧ ହେବ ।
ତାହାପରେ ମେଘମାନ ବରଷିବେ ଜଳ
ଚଉଦ ବ୍ରହ୍ମାଣ୍ଡ ହେବ ତହିଁରେ ମଗନ ।
ନିର୍ଗୁଣ ପୁରୁଷ ସେହି ଗୁଣର ଭିତର
ବିରାଟ ଶରୀର ଗୁଡ଼ ହେବ କ୍ଷୁଦ୍ରତର ।
କାଷ୍ଠଶୂନ୍ୟ ଅଗ୍ନିସମ ହୋଇ ତତକ୍ଷଣ
ସୂକ୍ଷ୍ମ କାରଣର ମଧ୍ୟେ ହୋଇଯିବ ଲୀନ ।
ଆଉ ଯେ ଏ ଧରା ଯାହା ଅପୂର୍ବ ଦର୍ଶନ
ହୃଦଗନ୍ଧ ଜଳମୟ କରିବ ପବନ ।
ସେହି ଜଳ ରସହୀନ ହେବ ଜ୍ୟୋତିର୍ମୟ
ସାରକଥା କହିଲିଟି ଜାଣ ନରରାୟ ।
ଅନ୍ଧକାରେ ସେହି ଜ୍ୟୋତି ହୁତ ରୂପ ହେବ
ପୁଣି ସେହୁ ଯାଇ ବାୟୁ ମଧ୍ୟରେ ମିଶିବ ।
ଆକାଶେ ଲୀନ ହୋଇବ ଯାଇ ସେ ତପନ
ତାହାର ଗୁଣ ନାଶିବ ବାୟୁ ସେ ବହନ ।
ଈଶ୍ୱର ବିଲୀନ ହେବ ପରେ ସେ ବିଧାନ
ପୁଣି ତା ଉତ୍ତରୁ ଶୁଣ ଅପୂର୍ବ ବିଧାନ ।
ମନ ବୁଦ୍ଧି ସହିତରେ ଇନ୍ଦ୍ରିୟ ସମସ୍ତ
ବୈକାରିକ ଦେବଗଣେ ମିଳିବେ ଭୂରିତ ।
ପରେ ଅହଂତତ୍ତ୍ୱ ମଧ୍ୟେ ପ୍ରବେଶ ହୋଇବ
ସେହି ଅହଂତତ୍ତ୍ୱ ମହତତ୍ତ୍ୱେ ପ୍ରବେଶିବ ।
ଶୁଣିଲେ ଅପୂର୍ବ କଥା ଆହେ ନରରାୟ
ବିଭୂକୃତ ଅଟେ ଏହି ସୃଷ୍ଟି ସ୍ଥିତି ଲୟ ।
ତାହାକୁ ତ୍ରିଗୁଣ ମାୟା କଲି ମୁଁ ବର୍ଣ୍ଣନ
ଭାଗବତ କଥା ଅଟେ ଅମୃତ ବିଧାନ ।
ମୁନିଗଣେ ରାଜା କହେ କୃତାଞ୍ଜଳି କରି
ଆନନ୍ଦ ହୋଇଲି ଏହା ମୁହିଁ ଶୁଣିକରି ।
କହ ମୁନି ଦୟାକରି ମୋତେ ବର୍ତ୍ତମାନ
ବଶୀଭୂତ ନୁହେଁ ଯେଉଁମାନଙ୍କର ମନ ।
ସେହି ସ୍ଥୂଳ ବୁଦ୍ଧି ପ୍ରାଣୀମାନେ କିପ୍ରକାରେ
ଅତି ଦୁରନ୍ତ ଈଶ୍ୱରୀ ମାୟା ତରିପାରେ ।
ସେହି କଥାକହ ମୁନି ହୋଇଣ ସଦୟ
ତହିଁରେ ଚିତ୍ତ ଆନନ୍ଦ ହେବ ଅତିଶୟ ।
ପ୍ରବୁଦ୍ଧ ମୁନି ବୋଲନ୍ତି ଶୁଣ ହେ ରାଜନ
ସ୍ତ୍ରୀ ପୁରୁଷ ସମ୍ବନ୍ଧରେ ବଦ୍ଧ ଯେଉଁଜନ ।
ଦୁଃଖନାଶ ହେତୁ କାର୍ଯ୍ୟେ ସଦା ପ୍ରବର୍ତ୍ତନ୍ତି
ସୁଖ କାରଣ କର୍ମରେ ସଦା ରତ ଥାନ୍ତି ।
ପାଆନ୍ତି ସେ ଜନ ଅତି ବିପରୀତ ଫଳ
ଅତ୍ୟନ୍ତ ପୀଡ଼ା ପାଆନ୍ତି ସେ ଜନ ତତ୍କାଳ ।
ଯେଉଁ ଧନ ଲାଗି ଜନ ନାନା କର୍ମକରେ
ମରଇ ସେ ଧନ ଲାଗି ଜାଣ ସୁଚିତ୍ତରେ ।
ଚଞ୍ଚଳ ଏ ଗୃହ ପୁତ୍ର ବନ୍ଧୁ ପରିଜନ
ପ୍ରାପ୍ତ ହୋଇ ପ୍ରୀତି ନ ଲଭଇ ସେହି ଜନ ।
ଅନିତ୍ୟ ଏସବୁ ଅଟେ ଜଗତ ଅସାର
ଜଗତର କାର୍ଯ୍ୟ ଯେତେ ଅତି ଚମତ୍କାର ।
ମଙ୍ଗଳ ଜାଣିବା ପାଇଁ ଇଚ୍ଛେ ଯେଉଁଜନ
ପରମ ବ୍ରହ୍ମରେ ସଦା ହୁଏ ନିମଗନ ।
ଗୁରୁଙ୍କୁ ସ୍ମରଣ କରେ ଯେଉଁ ମହାମତି
ଗୁରୁଙ୍କୁହିଁ ଆତ୍ମା ଭାବେ ଆନନ୍ଦରେ ଅତି ।
ଦେବତା ମଣି ଗୁରୁଙ୍କୁ କରଇ ସେବନ
ଭାଗବତ ଧର୍ମ ଶିକ୍ଷା କରେ ଅନୁକ୍ଷଣ ।
ଯେଉଁ ସବୁ କାର୍ଯ୍ୟେ ହରି ସନ୍ତୋଷ ହୁଅନ୍ତି
ସେହି ସବୁ କର୍ମ ଶିକ୍ଷା କରେ ସେ ସୁମତି ।
ପ୍ରଥମେ ନିଜ ମନକୁ କରି ବଶୀଭୂତ
ତାହାପରେ ସାଧୁସଙ୍ଗ କରିବା ଉଚିତ ।
ଯଥୋଚିତେ ଦୟାବାନ ହେବ ପ୍ରାଣୀଗଣେ
ବ୍ରହ୍ମଚର୍ଯ୍ୟ ସରଳତା ଦେବ ଅଧ୍ୟୟନେ ।
ନିରନ୍ତରେ ବୃଥା ବାକ୍ୟ ସେହି ଯେ ନ କହେ
ଅହିଂସା ହୃଦୟରେ ଯାର ସମଭାବ ରହେ ।
ଆତ୍ମାଦୃଷ୍ଟି ଭିନ୍ନ ଦୃଷ୍ଟି ସମାନ ତାହାର
ଗୃହାଦିରେ ଅଭିମାନ ଶୂନ୍ୟ ସେହି ନର ।
ସର୍ବକାଳେ ସର୍ବସ୍ଥାନେ ଥାଏ ସେହି ଜନ
ଯଦି ବାସ କରେ ସେହି ପ୍ରଦେଶ ନିର୍ଜ୍ଜନ ।

ଛିନ୍ନ ବସ୍ତ୍ର ସଦା ଯଦି ପରିଧାନ କରେ
ତଥାପି ସନ୍ତୋଷ ସଦା ଲଭଇ ଅନ୍ତରେ ।
ଭାଗବତ ଶାସ୍ତ୍ରେ ଶ୍ରଦ୍ଧାକରି ଅନୁଦିନ
ଅନ୍ୟ ଶାସ୍ତ୍ରକୁ ନ ନିନ୍ଦେ କେବେ ସେହିଜନ ।
କାୟ ମନ ବାକ୍ୟେ ସେ ଯେ ହୁଏ ସୁସଂଯତ
ସତ୍ୟ ଶମ ଦମେ ବଶ ହୁଏ ଅବିରତ ।
ପୁଣି ଭାବେ ସର୍ବମୟ ଜଗତ ଈଶ୍ୱର
ହରି ଗୁଣ ଶୁଣିବାକୁ ସର୍ବଦା ତତ୍ପର ।
ସକଳ କାର୍ଯ୍ୟ କରଇ ହରିଙ୍କ ଉଦ୍ଦେଶ୍ୟେ
ସଦା ରତ ଥାଏ ହରି କାର୍ଯ୍ୟେ ଅବଶେଷେ ।
ଯେତେକ ମଙ୍ଗଳ କାର୍ଯ୍ୟ ଜୀବ ହିତ ପାଇଁ
ତହିଁରେ ହିଁ ଅନୁକ୍ଷଣେ ରତ ଥାଏ ସେହି ।
ଦାରସୁତ ଗୃହ ପ୍ରାଣ ଆଦି ସର୍ବକ୍ଷଣ
ଈଶ୍ୱରଙ୍କ ପାଦତଳେ କରଇ ଅର୍ପଣ ।
କୃଷ୍ଣମୟ ଆତ୍ମା ଆଉ କୃଷ୍ଣ ନାମ ସାର
ତାଙ୍କର ସଙ୍ଗେ କରିବ ମିତ୍ର ବ୍ୟବହାର ।
ସ୍ଥାବର ଜଙ୍ଗମ ପୁଣ ଏହି ଦୁଇସ୍ଥଳେ
ମାନବ ସକଳେ ଆଉ ଯେତେ ସାଧୁ କୁଳେ
ଏହାଙ୍କ ମଧ୍ୟରେ ହରି ଭକ୍ତ ଯେତେ ଜନ
ସେମାନଙ୍କୁ ଅନୁକ୍ଷଣେ କରିବ ପୂଜନ ।
ଅନୁରାଗ ସନ୍ତୋଷ ଯେ ପବିତ୍ର କଥନ
କରିବାକୁ ସର୍ବ ଦୁଃଖ ଆତ୍ମାର ମୋଚନ ।
ଏ ସବୁ କରିବ ଶିକ୍ଷା ଭକତ ସହିତ
ହରି ସ୍ମରଣ କରିବା ତାହାର ଉଚିତ ।
ଯେତେବେଳେ ହେବ କୃଷ୍ଣ ଅନୁଗତ ମନ
କେବେହାସ୍ୟ କେବେନୃତ୍ୟକେବେବାକ୍ରନ୍ଦନ
କେବେ ବା କରିବ ମନେ ଆନନ୍ଦ ପ୍ରକାଶ
ଅଲୌକିକ ରୂପେ କେବେ କହୁଥିବ ଭାଷ ।
କେବେ କରିବ ସୁଖରେ ହରି ଅଭିନୟ
କୃଷ୍ଣର ସହିତ ପ୍ରେମେ ହେବ ବାକ୍ୟ ବ୍ୟୟ
ଏରୂପେ ପାଇବ ସେହି ପତିତପାବନ
ଅନ୍ତରେ ସନ୍ତୋଷ ସଦା କରିବ ଧାରଣ ।
ଏହିପରି ଭାଗବତ ଧର୍ମ କର୍ମ ଯେତେ
ଶିକ୍ଷାକରି କୃଷ୍ଣ ଅନୁଗତ ହେବ ନିତ୍ୟେ ।
ତେଣୁଟି ଦୁସ୍ତର ଭବସିନ୍ଧୁ ହେବ ପାର
ଆହେ ନରପତି ଯେନ ବାକ୍ୟ ସୁଧାସାର ।

ନାରଦଙ୍କ ମୁଖୁଁ ଶୁଣି ଏମନ୍ତ ବଚନ
ବସୁଦେବ ଆନନ୍ଦିତ ହେଲେ ତତକ୍ଷଣ ।
ଅସାର ସଂସାର ଏକା ହରି କଥା ସାର
ବୁଝିଲେ ଘୁଞ୍ଚି ପଳାଏ ଭବ ଅନ୍ଧକାର ।
ସୂତ ମହର୍ଷି କହନ୍ତି ଏଥୁ ଅନନ୍ତରେ
ଶୁଣ ଆହେ ମୁନିମାନେ ପ୍ରସନ୍ନ ଚିତ୍ତରେ ।
ବସୁଦେବଙ୍କର ବ୍ରହ୍ମ ବୋଧ ନିମନ୍ତେଣ
ଯାହା ଯାହା କହିଲେ ସେ ବ୍ରହ୍ମାଙ୍କ ନନ୍ଦନ ।
ସେହି ସୁଧାମୟ କଥା ଶୁଣନ୍ତି ଶ୍ରବଣେ
ନିମିରାଜା ପୁଚ୍ଛାକରେ ଆନନ୍ଦିତ ମନେ ।
ବ୍ରହ୍ମବେତ୍ତାଙ୍କର ମଧ୍ୟେ ତୁମ୍ଭେ ଅଟ ସାର
ଅତି ଜ୍ଞାନମନ୍ତ ମୁନି ଯେ ଧରା ତଳର ।
ଯେଉଁରୂପେ ପରଂବ୍ରହ୍ମ ପଦେ ନିଷ୍ଠାହେବ
ସେହି ଉପଦେଶ ମୋତେ ବତାଅ ହେ ଦେବ
ବ୍ରହ୍ମ ସମ୍ବନ୍ଧରେ ତୁମ୍ଭେ ଜାଣ ସର୍ବ ତଥ୍ୟ
କହି ମୋର ଅମଙ୍ଗଳ ଘୁଞ୍ଚାଅ ତୁରିତ ।
ଯାହାଙ୍କଠାରୁ ଏ ବିଶ୍ୱ ହୋଇଛି ସୃଜନ
ଯେ ଅଟନ୍ତି ସୃଷ୍ଟି ସ୍ଥିତି ପ୍ରଳୟ କାରଣ ।
କାରଣ ବିହୀନ ଯେହୁ ଅଟେ ସର୍ବମୟ
ସ୍ୱପ୍ନ ଜାଗରଣ ଆଉ ସୁସୁପ୍ତି ବିଷୟ ।
ଅନ୍ତରେ ବାହାରେ ସଦା ଯେ ବିରାଜମାନ
ଯାଠାରୁ ଜୀବିତ ମୋର ଇନ୍ଦ୍ରିୟ ପ୍ରାଣ ।
ସକଳେ ଯାହାଙ୍କଠାରୁ ନିଜ କର୍ମେ ରତ
ପରମ ତତ୍ତ୍ୱ ଜ୍ଞାଣ ହେ ଜାଣିବ ସମସ୍ତ ।
ପ୍ରବେଶି ନ ପାରେ ମନ ଭିତରେ ଏହାର
ଯେସନେ ସ୍ଫୁଲିଙ୍ଗ ପ୍ରଭା କରଣ ବିସ୍ତାର ।
ଅଗ୍ନିକ କେବେହେଁ କରି ନ ପାରେ ଦହନ
ତେସନେ ବଚନ ଚକ୍ଷୁ ଆଉ ବୁଦ୍ଧି ମନ ।
ଇନ୍ଦ୍ରିୟ ଗଣର କ୍ରିୟା ଶକ୍ତି ଯାହା ଅଛି
ତତ୍ତ୍ୱଜ୍ଞାନ ବୁଝିବାକୁ ପାରେ ନାହିଁ କିଛି ।
ଜଗତେ କାର୍ଯ୍ୟ କାରଣମାନ ଯେତେ ହୁଏ
ବ୍ରହ୍ମ ପ୍ରକାଶିତ ଭଲେ ଶୁଣ ତପିରାୟେ ।
ଆଦିରେ ଯେ ଏକବ୍ରହ୍ମ ଜାଣିବ ନିଷ୍ଟୟେ
ସତ୍ତ୍ୱ ରଜ ତମ ଗୁଣେ ପ୍ରକୃତି ବୋଲାଏ ।
ସୂତ୍ରନାମ ହୁଏ କ୍ରିୟାଶକ୍ତି ହେତୁ ତାର
ମହତ ବୋଲାଏ ଜ୍ଞାନଶକ୍ତି ଲାଗି ତାର ।

ଏଥିଅନ୍ତେ ହେ ରାଜନ ଶୁଣ ମନ ଦେଇ
ସେ ମହତ ମୁଁ ଶବ୍ଦରେ ଖ୍ୟାତ ହେଉଥାଇ ।
ଜୀବର ଉପାଧି ପ୍ରାପ୍ତ ନାମ ଅହଙ୍କାର
ଚରଣ ସେଇଟି ହୁଏ ବ୍ରହ୍ମରେ ପ୍ରସ୍ଥର ।
ଜନମ ମରଣ ତାର କେବେ ନ ହୁଅଇ
ବିଶେଷତଃ କେବେ ତାର କ୍ଷୟ ବୃଦ୍ଧି ନାହିଁ
ଏହାପରେ କହେ ଶୁଣ କାରଣ ତାହାର
ଜନ୍ମ ବିନାଶନ ବସ୍ତୁ ଯେ ସକଳ ସାର ।
ସାକ୍ଷୀରୂପେ ତାହାଙ୍କର କରେ ଅବସ୍ଥାନ
ଇନ୍ଦ୍ରିୟରେ ରହିଥାଏ ଯେସନେକ ପ୍ରାଣ ।
ସେହିମନେ ବ୍ରହ୍ମଜ୍ଞାନ ଅଟେ ଭଲ ଜାଣ
କଳ୍ପିତ ବିବିଧ ରୂପେ ଶୁଣ ବିବରଣ ।
ଶୁଣି ପୁଣି ମୁହିଁ କହେ ବ୍ରହ୍ମର ଆଧାର
ଅଣ୍ଡଜ ଜରାୟୁ ସ୍ୱେଦ ଉଦ୍ଭିଦ ଆଦିର ।
ଜୀବର ସେ ପ୍ରାଣ ସଦା ଅନୁଗତ ହୁଏ
ଇନ୍ଦ୍ରିୟ ସମୂହ ନିଦ୍ରାଯୁକ୍ତ ସେ ବୋଲାଏ ।
ସେ କାଳେ ସେ ଆତ୍ମା ଅଛି ଆଶ୍ରୟ ନ ପାଏ
ଅହଂତତ୍ତ୍ୱ ସେତେବେଳେ ବିନାଶିତ ହୁଏ ।
ଶ୍ରୀକୃଷ୍ଣ ଚରଣ କୃପା ହୁଏ ସେହି ଜନେ
ଚିତ୍ତମନ ନାଶ ତାର ଜାଣିବ ସେ କ୍ଷଣେ ।
ନିର୍ମଳ ହୋଇଲେ ଯେହ୍ନେ ହୁଏ ଦରଶନ
ପ୍ରକାଶିତ ହୁଏ ଯଥା ସୂର୍ଯ୍ୟର କିରଣ ।
ସେହିପରି ଆତ୍ମତତ୍ତ୍ୱ ଜାଣିବ ନିଶ୍ଚୟ
ସାରକଥା ବଖାଣିଲି ଆହେ ନରରାୟ ।
ରାଜା କହେ କହ ମୁନି କର୍ମ ଯୋଗ ଗାଥା
ବ୍ରହ୍ମଜ୍ଞାନ ଲଭିବାକୁ ହେବ ସାମରଥା ।
ପ୍ରାଣୀର ନିର୍ମଳ ଚିତ୍ତ ହୁଏ ଯେଉଁଥିରେ
ବ୍ରହ୍ମ ଲୋକ କର୍ମ ଯେତେ ବିକାଶିତ କରେ ।
ବିସ୍ତାର ଭାବରେ ତାହା କହ ମୁନିବର
ଯହିଁରେ ଆନନ୍ଦ ଜାତ ହୋଇବ ମୋହର ।
ସନକାଦିମାନଙ୍କର ଆଗେ ମୁଁ ପୂର୍ବରେ
ଏହି ପ୍ରଶ୍ନ କରିଥିଲି ଆନନ୍ଦ ମନରେ ।
ମୋହର ପ୍ରଶ୍ନର ଉତ୍ତର ନ ଦେଲେ ସେମାନେ
ତାହାର କାରଣ କୁହ ମୋହ ସନ୍ନିଧାନେ ।
ମୁନି ବୋଲନ୍ତି ହେ ରାଜା ଶୁଣ ମନଦେଇ
ଅକର୍ମ ବିକର୍ମ ଆଦି ଭେଦାଭେଦ ଯହିଁ ।

ଏହା ଅଟେ ବେଦ ବାକ୍ୟ ନିଶ୍ଚୟ ଜାଣିବ
ଏ ନୁହେଁ ପୁରୁଷ ବାକ୍ୟ ଆହେ ନରଧବ ।
ଈଶ୍ୱର ଭକ୍ତ ବୋଲିଣ କହନ୍ତି ପଣ୍ଡିତ
ତହିଁରେ ଏକାନ୍ତେ ସର୍ବେ ହୋନ୍ତି ବିମୋହିତ
ପରୋକ୍ଷବାଦୀଙ୍କ ବେଦ କହିଲୁ ଏକ୍ଷଣ
ପରେ ବଖାଣ କରିବୁ ସେହି ବିବରଣ ।
ପିତା-ମାତାମାନେ ଯେହ୍ନେ ବାଳକଙ୍କ ପ୍ରତି
ଶାସନ କରି ଔଷଧ ପ୍ରଦାନ କରନ୍ତି ।
ସେହିପରି କର୍ମ ମୋକ୍ଷ କରିବାର ପାଇଁ
ଜୀବଗଣେ ଉପଦେଶ ମାନ ଯେ ଦିଅଇ ।
ଅଜ୍ଞାନୀ ହୁଅଇ ରିପୁ ବଶରେ ସେ ଜନ
ନ କରେ ଯଦ୍ୟପି ସେହୁ ବେଦ ଆଚରଣ ।
କର୍ମ ଅନାଚାର ହେତୁ ଅଧର୍ମ ସଞ୍ଚଇ
ପୁଣ ପୁଣ ଜନ୍ମ ମୃତ୍ୟୁ ଅବଶ୍ୟ ଲଭଇ ।
ଯଦ୍ୟପି ପୁରୁଷଗଣ ହୋଇ ସଙ୍ଗହୀନ
ଆପଣା ଅଙ୍ଗର କରି ସେ ଈଶ୍ୱରେ ଲୀନ ।
ବେଦ ଉକ୍ତ ଚର୍ମକୁ କରନ୍ତି ସମାଧାନ
କର୍ମଯୋଗ ଲଭି ତାଙ୍କ ହୁଏ ସେହିକ୍ଷଣ ।
ଛେଦିବାର ପାଇଁ ଜୀବାତ୍ମାର ଅହଙ୍କାର
ମଦ ମଧ୍ୟେ ଅନୁକ୍ଷଣ ଇଚ୍ଛାହୁଏ ଯାର ।
ଏଥର କହୁଛି ଶୁଣ ତାହାର ବିଧାନ
ବୈଦିକ ବିଧି ସହିତ ତନ୍ତ୍ର ବିଧି ପୁଣ ।
ଏକତ୍ରରେ ଦୁଇ ବିଧି କରିଣ ମିଳନ
ସର୍ବଦା କରିବ ସେହି କେଶବେ ଅର୍ଚ୍ଚନ ।
ଗୁରୁ କୃପା ବିନ୍ଦୁ ତେବେ ମାନବ ନିକରେ
ଦର୍ଶନ କରିବେ ସେହି ଜଗତ ଈଶ୍ୱରେ ।
ନିଜ ଅଭିମତ ମୂର୍ତ୍ତି ମାନସେ ଛିଆରି
ଅର୍ଚ୍ଚନା କରିବ ସେହି ପରମାତ୍ମା ହରି ।
ପ୍ରତିମା ଆଗରେ କରି ଦେହକୁ ନିର୍ମଳ
ପ୍ରାଣାୟାମ ଆଦି କରି ହୋଇ ଅଚଞ୍ଚଳ ।
ଭୂତ ଶୁଦ୍ଧି ଆଦି କରି ଶରୀର ଶୋଧିବ
ତଦନ୍ତରେ ସର୍ବମୟ ହରିଙ୍କି ପୂଜିବ ।
ପ୍ରତିମା ଆଗରେ କିମ୍ବା ଆପଣା ହୃଦସ୍ଥେ
ଅର୍ଚ୍ଚନା କରିବ ହରି ମୂଳମନ୍ତ୍ର ଚସ୍ଥେ ।
ଅଙ୍ଗ ଉପାଙ୍ଗ ଆଦିର ସହ ପରିବାର
ବାଦ୍ୟ ଅର୍ଘ୍ୟଦାନେ ପୂଜା କରିବ ନିକର ।

ଧୂପ ଦୀପ ପୁଷ୍ପ ଆଉ ସୁଗନ୍ଧ ଚନ୍ଦନ
ଆତପ ତଣ୍ଡୁଳ ଅନ୍ନ ନୈବେଦ୍ୟ କାରଣ ।
ନିଜ ନିଜ ମୂଳ ମନ୍ତ୍ର କରି ଉଚ୍ଚାରଣ
ଭକତି ଭାବେ ତାହାଙ୍କୁ କରିବ ପୂଜନ ।
ଏହିରୂପେ ବିଧିମତେ ପୂଜା ଶେଷ କରି
ସ୍ତବ କରିବ ହରିଙ୍କ ପ୍ରମାଣ ଆଚରି ।
ଆପଣାକୁ କୃଷ୍ଣମୟ କରି ସୁ-ଚିନ୍ତନ
କରିବ ପବିତ୍ର ମନେ ଶ୍ରୀକୃଷ୍ଣ ପୂଜନ ।
ଶ୍ରୀ ବିଷ୍ଣୁ ନିର୍ମାଲ୍ୟ ତଥା ମସ୍ତକେ ଧରିବ
ପୂଜିବାକୁ ହୃଦସ୍ଥାନେ ସ୍ଥାପନ କରିବ ।
ଏହିରୂପେ ଜଳଆଦି ସୂର୍ଯ୍ୟ ହୁତାଶନ
ଈଶ୍ୱର ଆତ୍ମାକୁ ହେତୁ କରିବ ଅର୍ଚ୍ଚନ ।
ଅନାୟାସେ ମୁକ୍ତ ହେବ ସଂସାରୁ ସେ ଜନ
ତୁମ୍ଭଙ୍କୁ କହିଲି ମୁହିଁ ମୁକ୍ତିର ବିଧାନ ।
ଏମନ୍ତେ ମୁନିମାନଙ୍କ ଏ ବ୍ରହ୍ମ ସମ୍ବାଦ
ବସୁଦେବଙ୍କ ଆଗରେ କହିଲେ ନାରଦ ।
ଏଥୁଅନ୍ତେ ନାରାୟଣଙ୍କର ଅବତାର
ଶୁଣାଇଲେ ବିସ୍ତାରଣ ବ୍ରହ୍ମାଙ୍କ କୁମର ।
ପୁଣି ବୋଇଲେ ହରଷେ ଆହେ ବାସୁଦେବ
ତୁମ୍ଭେ ଭକତି ଆଚରି ନାରାୟଣ ସେବ ।
ସାର ପରମାର୍ଥ ଧର୍ମ କରି ହେ ଆଶ୍ରୟ
ପାଇବ ପରମ ପଦ କହିଲି ନିଶ୍ଚୟ ।
ତୁମ୍ଭର ଯଶରେ ପୂର୍ଣ୍ଣ ହୋଇଛି ସଂସାର
ପୁତ୍ରରୂପେ ତୁମ୍ଭ ଗୃହେ ବିଷ୍ଣୁ ଅବତାର ।
କୃଷ୍ଣେ ସ୍ନେହକାରୀ ଆତ୍ମା ତୁମ୍ଭମାନଙ୍କର
ଦର୍ଶନେ ସ୍ପର୍ଶନେ ତାହା ପବିତ୍ର ନିକର ।
ଶିଶୁପାଳ ପଉଣ୍ଡ୍ରକ ଶାଲ୍ୱ ନରବର
ବୈରିତା କାରଣେ କୃଷ୍ଣେ ଭାବ ନିରନ୍ତର ।
ପାଇଲେ ପରମ ଗତି ତାହାର କାରଣ
ତେଣୁ ବୁଝ ସର୍ବଆତ୍ମା ଦେବ ନାରାୟଣ ।
ନ ଭାବିବ ଭାବେ ତାଙ୍କ ପୁତ୍ର କଦାଚନ
ମାୟାମୟ ନରଭାବ ଜାଣ ହେ ରାଜନ ।
ପରମ ପୁରୁଷ କୃଷ୍ଣ ଅନନ୍ତ ଅବ୍ୟୟ
ପୃଥ୍ୱୀର ମହାଭାର ଦୁଷ୍ଟ ନୃପଚୟ ।
ଅସୁର ସ୍ୱଭାବଗଣେ ନିଧନ କାରଣ
ସାଧୁମାନଙ୍କୁ କରିବା ପାଇଁକି ପାଳନ ।

ଅବନୀରେ ଅବତୀର୍ଣ୍ଣ ପ୍ରଭୁ ବିଶ୍ୱମ୍ଭର
ତାହାଙ୍କ ଏ ଯଶପୂର୍ଣ୍ଣ ଜଗତ ମଧ୍ୟର ।
ସୁତ ମହର୍ଷି କହନ୍ତି ଶୁଣ ତପୋବନ୍ତ
ମହାଭାଗ ବସୁଦେବ ଦେବକୀ ସହିତ ।
ଏ କଥାକୁ ଶୁଣି ଦୁହେଁ ମଣିଲେ ଚକିତ
ଅନ୍ତରଗତରୁ ମୋହ ଘୁଞ୍ଚିଲା ତୁରିତ ।
ଶୁଣ ଆହେ ମୁନିମାନେ ପବିତ୍ର ମନରେ
ଏ ପୁରାଣ ଗାଥା ଯେହୁ ଶୁଣଇ କର୍ଣ୍ଣରେ ।
ସଂସାର ମାୟା ବନ୍ଧନ ତାକୁ ନ ଲାଗଇ
ଅନ୍ତଃକାଳେ ବଇକୁଣ୍ଠେ ଯାଇଣ ବସଇ ।
ଅଷ୍ଟାଦଶ ପୁରାଣର ମଧ୍ୟେ ଅଟେ ସାର
ଶୁଣିଲେ ଘୁଞ୍ଚଣ ଯାଏ ଭବ ଅନ୍ଧକାର ।
ପରଂବ୍ରହ୍ମ କୃଷ୍ଣ ପାଦ ଭଜ ନାରାୟଣରେ
ଅପୂର୍ବ ଆନନ୍ଦ ଜାତ ହୋଇବ ମନରେ ।
କୃଷ୍ଣଭଜ କୃଷ୍ଣଚନ୍ଦ୍ର ଶ୍ରୀକୃଷ୍ଣରେ ମଜ୍ଜ
କୃଷ୍ଣ କୃଷ୍ଣ ବୋଲି ସଦା ଅନ୍ତରରେ ଭଜ ।
ଯେବେ ସଂସାର ବନ୍ଧରୁ ହୋଇବ ଉଦ୍ଧାର
ସେ ପଦେ ଶରଣ ମାଗେ କ୍ଷେତ୍ରବାସୀ ସ୍ଥିର ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ବସୁଦେବ
ବ୍ରହ୍ମବୋଧ ପ୍ରସଙ୍ଗ ବର୍ଣ୍ଣନେ ନାମ
ଷଟ୍ ସପ୍ତତିତମୋଽଧ୍ୟାୟଃ ।



## ସପ୍ତସପ୍ତତିତମୋ ଅଧ୍ୟାୟ
## ଦେବତାମାନେ ପରଂବ୍ରହ୍ମଙ୍କ ଧ୍ୟାନ କରିବା

ସୁତ ଉବାଚ

ଶୁଣ ଶୁଣ ସୁଜ୍ଞଜନେ ଦେଇ ମନକର୍ଣ୍ଣ
ମୁନିମାନଙ୍କୁ ବୋଇଲେ ସୁତ ତପୋଧନ ।
ପରଂବ୍ରହ୍ମ ଦରଶନେ ସକଳ ଅମରେ
ପ୍ରବେଶ ହୋଇଲେ ଶୁଭେ ଦ୍ୱାରବତୀ ପୁରେ
ଯେଝା ପରିବାର ଘେନି ଅମରେ ଚଳିଲେ
ସେମାନଙ୍କ ସଙ୍ଗତରେ ଧାତା ଚଳିଗଲେ ।
ଭୂତ ଗଣ ଘେନି ସଙ୍ଗେ ଗଲେ ମହେଶ୍ୱର
ସକଳ ଦେବଙ୍କ ସଙ୍ଗେ ଚଳେ ସୁନାଶିର ।

ଇନ୍ଦ୍ରଗଣ ବସୁଗଣ ଯେ ଆଦିତ୍ୟ ଗଣ
ଅଶ୍ୱିନୀ କୁମାର ଆଦି ଗନ୍ଧର୍ବ ଚାରଣ ।
ଅଙ୍ଗିରାଙ୍କର ସହିତେ ନାଗଗଣ ଯେତେ
ଅପ୍ସରା କିନ୍ନରଗଣେ ଚଳିଲେ ସମସ୍ତେ ।
ପିତୃଗଣ ଋଷିଗଣ ସିଦ୍ଧ ବିଦ୍ୟାଧର
ହେଲେ ସର୍ବେ କୃଷ୍ଣଙ୍କର ଦର୍ଶନେ ବାହାର
କୃଷ୍ଣରୂପେ ମନୋହର ଆକାର ଧାରଣ
କରିବାରେ ମାନବଙ୍କ ପାପ ବିମୋଚନ ।
କଲେ ଯେ ଅତୁଳ ଯଶ ଜଗତେ ବିସ୍ତାର
ବଖାଣୁଛୁ ସାତକଥା ତୁମ୍ଭ ଅଗ୍ରତର ।
ଦ୍ୱାରକା ଆକାଶେ ସର୍ବେ ମିଳି ଆନନ୍ଦରେ
ନିରୀକ୍ଷଣ କରିଲେ ଯେ ଏକାନ୍ତ ଭାବରେ ।
ଶୂନ୍ୟମାର୍ଗରୁ ହୁଅନ୍ତେ ପୁଷ୍ପ ବରଷଣ
କରଯୋଡ଼ି ସ୍ତବକଲେ ଗାଇ କୃଷ୍ଣ ଗୁଣ ।
ବୋଇଲେ ହେ ଜୟ ଜୟ ଜଗତ ଜୀବନ
ଜୟ ଜୟ ପରଂବ୍ରହ୍ମ ପତିତପାବନ ।
ଜୟ ଜୟ ଜଗନ୍ନାଥ ଅଗତିର ଗତି
ଜୟ ଜୟ ଜଗନ୍ନାଥ ଦୀନଜନ ପତି ।
ହେ ତ୍ରୈଲୋକ୍ୟ ଚିନ୍ତାମଣି ବାରେ ଦୟାକର
ଆମ୍ଭ କର୍ମମୟ ଦୃଢ଼ ପାଶ ଛିନ୍ନ କର ।
ଭାବୁକମାନେ ଭାବିଣ ସଦା ହୃଦଗତେ
ଯେଉଁ ପାଦପଦ୍ମ ଭାବୁଥାନ୍ତି ଅବିରତ ।
ମନ ପ୍ରାଣ ବିଦ୍ୟା ବୁଦ୍ଧି ସକଳ ଅର୍ପିଣ
ସେହି ଅଭୟ ପୟରେ ପଶିଲୁ ଶରଣ ।
ଆପଣ ହୋଟି ଅଛନ୍ତି ଚରାଚର ମୟ
ମାୟାର ଗୁଣରେ ଅବସ୍ଥିତ ସୁନିଶ୍ଚୟ ।
ତ୍ରିଗୁଣ ମାୟାରେ କରି ଧରଣୀ ସୃଜନ
ଆପଣା ଇଚ୍ଛାରେ କର ନିଧନ ପାଳନ ।
ମାତ୍ର ସେ ମାୟାରେ ଲିପ୍ତ ନ ହୁଅ ମୁରାରି
କ୍ରୋଧ ବିରହିତ ତୁମ୍ଭେ ଯେ ତ୍ରିଗୁଣଧାରୀ ।
ଯୋଗୀ ମୁନିଗଣେ ସର୍ବଦା କରି ନାମ ଗାନ
ଆନନ୍ଦ ଜଳଧି ମଧ୍ୟେ ହୁଅନ୍ତି ମଗନ ।
ବିଦ୍ୟାଶ୍ରୁତି ଅଧ୍ୟୟନ ଆଉ ତପସ୍ୟାରେ
ସେପରି ଆନନ୍ଦ କେବେ ନପାନ୍ତି ମନରେ ।
ଜଗତର ପୂଜ୍ୟ ତୁମ୍ଭେ ଆହେ ପଶୁପତି
ସକଳର ସାର ତୁମ୍ଭେ ଅନାଥର ଗତି ।

ମୋକ୍ଷ ହେବାପାଇଁ ସଦା ମୁନିଋଷି ଗଣେ
ଭକ୍ତିଭାବେ ଭଜୁଥାନ୍ତି ତବ ଶ୍ରୀଚରଣେ ।
ଐଶ୍ୱର୍ଯ୍ୟ ଲାଭ ନିମନ୍ତେ ତବ ଭକ୍ତ ଯେତେ
ବାସୁଦେବ ଆଦି ମୂର୍ତ୍ତି ପୂଜନ୍ତି ନିରତେ ।
ଆଉ ଯେତେ ମହାଜନେ ଶାନ୍ତ ସଦାଶୟ
ପୂଜୁଥାନ୍ତି ଭକ୍ତିଭାବେ ସକଳ ସମୟ ।
ଲଭିବାକୁ ଶ୍ରୀବୈକୁଣ୍ଠ ବାସନା ମନରେ
ତେଣୁ ଶ୍ରୀପଦ ପୂଜନ୍ତି ମହା ଆନନ୍ଦରେ ।
ବେଦ ବିଧିମତେ ଯେତେ ଯଜ୍ଞକାରୀଗଣ
ଅନୁକ୍ଷଣ କରନ୍ତି ସେ ପ୍ରଭୁଙ୍କ ଅର୍ଚ୍ଚନ ।
ମାୟାକୁ ଜିଣିବା ଇଚ୍ଛା ଯେଉଁଜନ କରେ
ଯେଉଁ ଚରଣ ଚିନ୍ତନ୍ତି ଆଧ୍ୟାତ୍ମ ରୂପରେ ।
ଜଗତର ଶ୍ରେଷ୍ଠ ମହା ଭାଗବତ ଗଣ
ସର୍ବଦା ଚିନ୍ତା କରନ୍ତି ଯେଉଁ ଶ୍ରୀଚରଣ ।
ସେ ଅଭୟ ପଦଦାନ କରି ଆମ୍ଭ ପ୍ରତି
ବିଷୟ ବାସନା ନାଶ କର ହେ ଶ୍ରୀପତି ।
ଆହେ ଦେବ ଜଗନ୍ନାଥ ବିଶ୍ୱର କାରଣ
ଯେଉଁ ପଦୁଁ ପାପ ବିନାଶିନୀ ଗଙ୍ଗା ଜନ୍ମ ।
ଅଭୟ ଭୟପ୍ରଦ ଯେ ଦେବସୁର ଗଣେ
ସ୍ୱର୍ଗଗାମୀ ହୋନ୍ତି ଭଜି ତବ ଶ୍ରୀଚରଣେ ।
ସାଧୁମାନେ ସ୍ୱର୍ଗେ ଯାନ୍ତି ଚରଣ କୃପାରେ
ଖଳଙ୍କୁ ଦୁର୍ଗତି ତୁମ୍ଭେ ଦିଅ ଏ ଧରାରେ ।
ବିଶ୍ୱକର୍ତ୍ତା ବ୍ରହ୍ମା ଆଦି ହୋଇ ପୀଡ଼୍ୟମାନ
ତବ ଅନୁବର୍ତ୍ତୀ ସଦା ଆହେ ଭଗବାନ ।
ହେ ଦେବ ପୁରୁଷୋତ୍ତମ ତବ ଶ୍ରୀଚରଣ
କରୁଁ ଆମ୍ଭମାନଙ୍କର ମଙ୍ଗଳ ବିଧାନ ।
ବିଶ୍ୱର ନିଅନ୍ତା ତୁମ୍ଭେ ପୁରୁଷ ପ୍ରକୃତି
ତୁମ୍ଭରେ ପୂଜିତ ବିଶ୍ୱ ତୁମ୍ଭରେହିଁ ସ୍ଥିତି ।
ତୁମ୍ଭେ ଅଟ ଏ ବିଶ୍ୱର ନାଶର କାରଣ
ମହାକାଳ ରୂପୀ ତୁମ୍ଭେ ଆହେ ନାରାୟଣ ।
ଉତ୍ତମପୁରୁଷ ଅଟ ତୁମ୍ଭେ ସର୍ବ ଧାର
ପୁରୁଷ ପ୍ରକୃତି ରୂପେ ତୁମେହିଁ ସଂସାର ।
ସ୍ଥାବର ଜଙ୍ଗମ ଛନ୍ତି ଏ ସଂସାରେ ଯେତେ
ତୁମ୍ଭଠାରୁ ଉତପତ୍ତି ତୁମ୍ଭ ଅନୁଗତେ ।
ମାୟାମୟ ସର୍ବାଶ୍ରୟ ଅନାଦି କାରଣ
ବିଷୟାଦି ଭୋଗେ ମତ୍ତ ନୁହ କଦାଚନ ।

ଷୋଳ ସହସ୍ର ପତ୍ନୀଏ ଭୁବନ ମଧ୍ୟରେ
ମୋହି ନ ପାରନ୍ତି ତୁମ୍ଭ ମନ ନିରନ୍ତରେ ।
ତବ ପାଦ ପ୍ରକ୍ଷାଳନ ଜଳ ହେ ଶ୍ରୀନାଥ
ତ୍ରିଲୋକ ପାପନାଶନେ ଅଟଇ ସମର୍ଥ ।
ଏହିପରି ଦେବଗଣ ହୋଇଣ ଏକତ୍ର
ବ୍ରହ୍ମା ଶିବ ସାଥେ ସ୍ତବ କରିଲେ ବହୁତ ।
ପୁଣି ନମସ୍କାର କରି ଦେବ ସୃଷ୍ଟିପତି
ଅନ୍ତରୀକ୍ଷେ ଥାଇ କୃଷ୍ଣେ କହିଲେ ଭାରତୀ ।
ପୂର୍ବରୁ କାହାଣୀ ନାଥ କରିସି ଶ୍ରବଣ
ମହୀଭାର କରିବାକୁ ଆପଣ ହରଣ ।
ଜଣାଇଲୁ ସର୍ବେ ମିଳି ନିକଟେ ତୁମ୍ଭର
ସେହି କାର୍ଯ୍ୟ ଅବହେଳେ ସାଧିଲ ଶ୍ରୀଧର ।
ସାଧୁମାନଙ୍କୁ ଶିଖାଇ ଧର୍ମର ଆଚାର
ଅଶେଷ କୀର୍ତ୍ତି ସ୍ଥାପିଲେ ସଂସାର ମଧ୍ୟର ।
ଯଦୁବଂଶେ ଜନମିଲ ରୂପ ମନୋହର
କଲ ଯେ ଆଶ୍ଚର୍ଯ୍ୟ କାର୍ଯ୍ୟ ଭାରତ ଭିତର ।
ଆଜ କିବା ଜଣାଇବୁ ତୁମ୍ଭରେ ଶ୍ରୀପତି
କଳିଯୁଗେ ତୁମ୍ଭନାମେ ଘୁଞ୍ଚଇ ଦୁର୍ଗତି ।
ତୁମ୍ଭର ଚରିତ ଯେବା କରିବେ ଶ୍ରବଣ
ତୁମ୍ଭ ଅତୁଳ ଯଶକୁ ଗାଇବେ ଯେ ଜନ ।
ମହା ପାପରୁ ସେ ପ୍ରାଣୀ ପାଇବେ ନିସ୍ତାର
ହେ ପ୍ରଭୁ ପୁରୁଷୋତ୍ତମ ଜଗତ ଆଧାର ।
ଯଦୁବଂଶେ ଅବତୀର୍ଣ୍ଣ ହୋଇ ଯଦୁମେଳେ
ଉଦ୍ଧାରିଲେ ଦେବକାର୍ଯ୍ୟ ପରମ କୌଶଳେ
ଯଦୁବଂଶ ବ୍ରହ୍ମଶାପେ ହେବ ବିନାଶିତ
ଅତଏବ ଏବେ ଯେବେ ଅଟଇ ବିହିତ ।
ତେବେ ନାଥ ନିଜଧାମେ କରନ୍ତୁ ଗମନ
ପରିହାଣ କରି ଆସି ଆହେ ନାରାୟଣ ।
ବ୍ରହ୍ମାଙ୍କ ସ୍ତବେ ସନ୍ତୋଷ ହୋଇ ଭଗବାନ
ବୋଇଲେ ଶୁଣହେ ବ୍ରହ୍ମା ମୋହର ବଚନ ।
ତୁମ୍ଭମାନଙ୍କ କାର୍ଯ୍ୟେ ମୁଁ ରତ ଅନୁକ୍ଷଣ
ମହୀଭାର ନାଶ ହୋଇଅଛି ବର୍ତ୍ତମାନ ।
ଏବେ ମହା ବଳଶାଳୀ ଯାଦବ ସକଳେ
ଗ୍ରାସିବାକୁ ଉଦ୍ୟତ ମୁଁ ନିଜ ବୀର୍ଯ୍ୟବଳେ ।
ସମୁଦ୍ର କୂଳରେ ଯେହ୍ନେ ସେ ଖର-ରକ୍ଷିତ
ତେସନେ ଯାଦବମାନେ ମୋହର ଆଶ୍ରିତ ।

ସେହି ହେତୁ ଦେବଗଣ ଶୁଣ ମୋ ବଚନ
ସେମାନଙ୍କୁ ରଖି ଯେବେ କରିବି ଗମନ ।
ତାହାଲେ ଜାଣିବ ତୁମ୍ଭେ ସକଳେ ନିଶ୍ଚୟ
ଯାଦବଙ୍କ ଲାଗି ଧରା ହୋଇଯିବ କ୍ଷୟ ।
ଏବେ ତୁମ୍ଭେମାନେ ସର୍ବେ ଜାଣ ନିରନ୍ତରେ
ବିନାଶ ହେବ ଏ ବଂଶ ବ୍ରାହ୍ମଣ ଶାପରେ ।
ଏଣୁ କହୁଅଛି ଜାଣ ଆହେ ସୃଷ୍ଟିପତି
ଯଦୁକୁଳ ଅବସାନେ କରିବି ମୁଁ ଗତି ।
ମହାବଳ ଯଦୁବଂଶ ହୋଇଲେ ନିଧନ
ନିଶ୍ଚୟ ମୁଁ ଚଳିଯିବି ବୈକୁଣ୍ଠ ଭୁବନ ।
ଏକଥା କହି ଶ୍ରୀହରି ହୋଇଲେ ମଉନ
ଚଳିଗଲେ ମନ୍ଦାକିନୀ ତୀରେ ଦେବଗଣ ।
ଅମରଗଣଙ୍କ କୃଷ୍ଣ ସ୍ତବ ମନୋହର
ଶ୍ରବଣ କଲେ ଅଶାନ୍ତି ହୋଇଯାଏ ଦୂର ।
ଶ୍ରୀହରିଙ୍କ ତିରୋଧାନ କଥାମୃତ ସାର
ଏଥୁ ଅନନ୍ତରେ ଶୁଣ ଆହେ ମୁନିବର ।
ଯେପରି ଉଦ୍ଧବ କୃଷ୍ଣ ବ୍ରହ୍ମଜ୍ଞାନ ଦେଲେ
କହିବି ସେକଥା ମୁହିଁ ତୁମ୍ଭ ଆଗେ ଭଲେ ।
ଏହିପରି ପୌରାଣିକ ସୁତ ମୁନିବର
ବଖାଣ କରିଲେ ସର୍ବ ତପୀଙ୍କ ଆଗର ।
ପରମବ୍ରହ୍ମ ଶ୍ରୀଗୁରୁ ଚରଣ ସରୋଜେ
ଅଧମ କ୍ଷେତ୍ରମୋହନ ଦ୍ୱିବାନିଶି ଭଜେ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ଦେବଗଣଙ୍କ
ଧ୍ୟାନ ବିବରଣେ ନାମ
ସପ୍ତତିତମୋଽଧ୍ୟାୟଃ ।

—:o:—

## ଅଷ୍ଟତିତମ ଅଧ୍ୟାୟ

## ଉଦ୍ଧବଙ୍କର ବ୍ରହ୍ମଜ୍ଞାନ ଲାଭ ଓ ବ୍ରାହ୍ମଣ ଶାପରେ ଯଦୁବଂଶ ଧ୍ୱଂସ ବିବରଣ

ସୁତ ଉବାଚ

କହନ୍ତି ଯେ ପୌରାଣିକ ଶୁଣ ମୁନିମାନେ
ଅପୂର୍ବ ଗାଥା କହିବି ତବ ସନ୍ନିଧାନେ ।

ଏହିରୂପେ ବେଦବର ସୃଷ୍ଟିର ଈଶ୍ୱର
ଶିବଙ୍କ ଅଗ୍ରତେ ବଖାଣିଲେ ମାୟାଧର ।
ତଦନ୍ତେ ତାଙ୍କ ଚରଣେ ନମି ଦେବଗଣେ
ଆପଣା ଆପଣା ସ୍ଥାନେ ଚଳିଲେ ତକ୍ଷଣେ ।
ତାପରେ ଦ୍ୱାରକା ପୁରେ ହେଲା ଯା ଘଟଣ
ବଖାଣ କରୁଛି ତାହା ଶୁଣ ଦେଇ ମନ ।
ଇଚ୍ଛାମୟଙ୍କ ଇଚ୍ଛାରେ ସେ ଦ୍ୱାରକାପୁରେ
ବିଷମ ଉତ୍ପାତ ଆସି ଘଟିଲା ସତ୍ୱରେ ।
ତାହା ସମସ୍ତ ଦେଖିଣ ପ୍ରଭୁ ଭଗବାନ
ବୃଦ୍ଧ ଯାଦବଙ୍କୁ ଡାକି ବୋଇଲେ ବଚନ ।
ଦେଖ ଦେଖ ଆହେ ବୟୋବୃଦ୍ଧ ବ୍ୟକ୍ତିମାନେ
ମହା ଅନର୍ଥ ଘଟିଲା ଆସି ଏହି ସ୍ଥାନେ ।
ଦେଖ ଦିବସରେ ଉଲ୍‌କାପାତ ହେଉଅଛି
ବିନା ମେଘେ ପୁଣି ବଜ୍ରପାତ ଯେ ଘଟୁଛି ।
ରକ୍ତବୃଷ୍ଟି ଅଗ୍ନିବୃଷ୍ଟି ଚୌଦିଗେ ହୁଅଇ
ପଶୁମାନେ କାନ୍ଦୁଛନ୍ତି ପୁଣି ଦେଖ ଗୃହୀଁ ।
ଏହିରୂପେ ଅଶକୁନମାନ ଘଟୁଅଛି
ଦେଖ ଚଉଦିଗେ ଖାଲି ଚିତ୍କାର ଶୁଭୁଛି ।
କୋକୁଆଭୟ ଘୋଟୁଛି ଆସି ଦ୍ୱାରକାରେ
ତେଣୁ କମ୍ପାଇ ସନ୍ଦେହ ହୁଏ ମୋ ମନରେ
ଯେବେ ରକ୍ଷା ହୋଇବାକୁ ମନରେ ବିଚାର
ତାହେଲେ ମୋହର କଥା ମାନ ନିରନ୍ତର ।
କ୍ଷଣେ ମାତ୍ର ଏଠାବରେ ନ ରହିଣ କେହି
ଚାଲ ପ୍ରଭାସ ତୀର୍ଥକୁ ଯିବା ସର୍ବେ ଧାଇଁ ।
ଆଉ ତିଳେ ମାତ୍ର ତୁମ୍ଭେ ବିଳମ୍ବ ନକର
ପ୍ରଭାସେ ସ୍ନାନ କରିଲେ ପାପ ହୁଏ ଦୂର ।
ଦେଖ ଚନ୍ଦ୍ରମାଙ୍କୁ ଶାପ ଦେଇଥିଲେ ଦକ୍ଷ
ଯକ୍ଷ୍ମା ରୋଗରେ ସେ ହେଲେ ମଳିନ ବିମୁଖ
ସେହି ପ୍ରଭାସ ତୀର୍ଥରେ କରିବାକୁ ସ୍ନାନ
ତାହାଙ୍କ ଅଙ୍ଗରୁ ବ୍ୟାଧି ହୋଇଲା ମୋଚନ
ଶାପରୁ ମୁକୁଳି ପୁଣି କଳାବୃଦ୍ଧି ପାନ୍ତି
ତେଣୁ କହୁଛି ସେ ତୀର୍ଥେ ଚଳହୋ ତୁରନ୍ତ ।
ସେ ତୀର୍ଥରେ ସ୍ନାନ କରି ସର୍ବେ କୁତୂହଳେ
ତର୍ପଣ ଆଦି କରିବ ପିତୃ ମାତୃକୁଳେ ।
ବିପ୍ର ଜନେ କରାଇବ ଯତନେ ଭୋଜନ
ଦାନ ଆଦି କର୍ମସବୁ ହେବ ସମାପନ ।

ନଉକା ଯୋଗେ ଯେସନେ ନଦୀ ହୋଇପାର
ସେହିମତେ ପାପ ଦୂର ହୋଇବ ସବୁର ।
କୃଷ୍ଣଙ୍କ ବଚନେ ତହୁଁ ଯାଦବ ସକଳେ
ମହା ଆନନ୍ଦେ ପ୍ରଭାସ ତୀର୍ଥକୁ ଚଳିଲେ ।
ତୀର୍ଥ ଗମନ ନିମନ୍ତେ ଯଦୁବଂଶୀ ଯେତେ
ନାନାଦି ଯାନ ବାହନ ସଜ କଲେ କେତେ
ଏଥିଅନ୍ତେ ମନଦେଇ ଶୁଣ ମୁନିଗଣ ।
ମହାମନ୍ତ୍ରୀ ଉଦ୍ଧବ ଯେ ଦେଖି ସେ ବିଧାନ ।
ଅମଙ୍ଗଳ ଚିହ୍ନ ଦେଖି ନଗରେ ତୁରିତ
ମହା ବୁଦ୍ଧିମାନ ସେ ହେ କୃଷ୍ଣ ଅନୁଗତ ।
ନିର୍ଜ୍ଜନେ କୃଷ୍ଣଙ୍କ ସଙ୍ଗେ ମିଳିତ ହୋଇଲା
ସେ ଜଗନ୍ନାଥଙ୍କ ପାଦେ ମଥା ଲଗାଇଲା ।
ମନେ ମନେ ଏହି କଥା କରି ସେ ଚିନ୍ତନ
କି କରିବଇଁ ଉପାୟ ଭାବିଲା ସେକ୍ଷଣ ।
କୃତାଞ୍ଜଳି କରି କହେ କୃଷ୍ଣଙ୍କୁ ବହନ
ହେ ଦେବେଶ ମହାଯୋଗୀ ପରମ କାରଣ ।
ଯଦୁବଂଶୀଗଣେ ତୁମ୍ଭେ ନିଶ୍ଚୟ ନାଶିବ
ଇହଲୋକ ଛାଡ଼ି ପ୍ରଭୁ ନିଜ ଧାମେ ଯିବ ।
ତାହାର କାରଣ ନିଶ୍ଚେ ଜାଣିଅଛି ମୁହିଁ
ତୁମ୍ଭ ଯୋଗେ ବ୍ରହ୍ମ ଶାପ ଅବଶ୍ୟ ଖଣ୍ଡଇ ।
ତଥାପି ସେ ଶାପ ତୁମ୍ଭେ ନ କରି ଖଣ୍ଡନ
ଅବଶ୍ୟ ଯାଦବଗଣେ କରିବ ନିଧନ ।
ହେ କେଶବ ଲକ୍ଷ୍ମୀଧବ ଶୁଣ ମୋର ବାଣୀ
ଏ ଚରଣ ଛାଡ଼ି ନ ପାରିବ ଚକ୍ରପାଣି ।
ତୁମ୍ଭ ଅଭୟ ପୟର କ୍ଷଣେ ମାତ୍ର ମୁହିଁ
ଦର୍ଶନ ନ କଲେ ପ୍ରଭୁ ନ ପାରିବ ରହି ।
ଏଣୁ ତୁମ୍ଭେ ଦୀନନାଥ ଅଗତିର ଗତି
ଦୟାକର ଦୟାନିଧି ଏ ଅଧମ ପ୍ରତି ।
ବୈକୁଣ୍ଠ ଗମନ କର ମୋତେ ସଙ୍ଗେ ନେଇ
ଏହି ନିବେଦନ କରେ ଶ୍ରୀଚରଣେ ମୁହିଁ ।
ହେ କୃଷ୍ଣ କରୁଣାନିଧି ମଙ୍ଗଳ ଆଧାର
ତବ ନାମ ସୁଧା କଲେ ପିଇ ବାରମ୍ବାର ।
ବିଷୟ ବାସନା ଆଶା ତେଜି ସର୍ବ ଜନେ
କେମନ୍ତେ ରହିବୁଁ ଆମ୍ଭେ ଏ ମର୍ତ୍ତ୍ୟ ଭୁବନେ
ଶୟନେ ଭ୍ରମଣେ ସ୍ଥିତି ଭୋଜନ କ୍ରିୟାରେ
ମୋର ଆତ୍ମା ଅନୁଗତ ଅଛି ତୁମ୍ଭଠାରେ ।

କହ ନାଥ କେମନ୍ତେ ମୁଁ ତୁମ୍ଭଙ୍କୁ ଛାଡ଼ିବି
କେମନ୍ତ ଏ ପାଦପଦ୍ମ ନ ଦେଖି ରହିବି ।
ତୁମ୍ଭ ଉପଯୋଗୀ ଯେତେ ମାଲ୍ୟାଦି ଚନ୍ଦନ
ମହାମୂଲ୍ୟ ଅଟେ ଯେତେ ବସନ ଭୂଷଣ ।
ତୁମ୍ଭର ଉଚ୍ଛିଷ୍ଟ ଭୋଜୀ ଆମ୍ଭେ ଯେ ସକଳେ
ଆଶ୍ରିତ ହୋଇଛୁ ସଦା ଶ୍ରୀପଦ କମଳେ ।
ତୁମ୍ଭର ମାୟାରୁ ଜିଣି କରି କୃତୁହଳେ
ଊର୍ଦ୍ଧ୍ୱରେତା ଦିଗମ୍ବର ସନ୍ନ୍ୟାସୀ ସକଳେ ।
ଶାନ୍ତ ସର୍ବତ୍ୟାଗୀ ଆଦି ଯେତେ ଋଷିଜନ
ସମସ୍ତେହିଁ ବ୍ରହ୍ମଧାମେ କରନ୍ତି ଗମନ ।
କହିଲି ମୁଁ ସେହିକଥା ଆହେ ଦୟାମୟ
ଆମ୍ଭମାନଙ୍କୁ ଦେଇଛ ଶ୍ରୀପଦ ଆଶ୍ରୟ ।
ମାତ୍ର ଆମ୍ଭମାନଙ୍କର କଥା ଏବେ ଶୁଣ
ଜଣାଉଛି କରଯୋଡ଼ି ମୁଁ ତୁମ୍ଭ ଅଧୀନ ।
ସଂସାର କର୍ମପଥରେ କରିଣ ଭ୍ରମଣ
ତୁମ୍ଭ ଭକ୍ତଗଣ ସଙ୍ଗେ ଗାଇ ତୁମ୍ଭ ଗୁଣ ।
ତୁମ୍ଭ ଯଶ ଗାନକରି ସେହି ଭକ୍ତଙ୍କ ସହ
ଅବିରତ ତୁମ୍ଭନାମେ ଚିତ୍ତ ଦିଏ ମୋହ ।
ଏ ଭବ ସାଗର ନାଥ ବିଷମ ବିସ୍ତାର
ଅନାୟାସେ ତରିବଇଁ ଘୋର ଅନ୍ଧକାର ।
ତହିଁକି କିଛିହିଁ ମୋର ନାହିଁ ଯେ ସଂଶୟେ
ଦାସ ଭାବେ ଶ୍ରୀଚରଣେ ଯେହ୍ନେ ମତି ରହେ
ମହର୍ଷି ସୂତ କହନ୍ତି ଶୁଣ ମୁନିଗଣ
ଉଦ୍ଧବଙ୍କୁ କହିଲେ ସେ କମଳ ଲୋଚନ ।
ଆହେ ମହାମତି ଶୁଣ ବଚନ ମୋହର
ଯେଉଁ କଥା କହିଲ ହେ ତୁମ୍ଭେ ମୋ ଆଗର
ମୋହର ମନ ତହିଁରେ ଜାଣିବ ନିଶ୍ଚୟ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଉ ଦେବଚୟ ।
ସମସ୍ତ ମୋହର ପାଶେ ଆସିଣ କହିଲେ
ବୈକୁଣ୍ଠ ଧାମେ ଯିବାକୁ ପ୍ରାର୍ଥନା ସେକଲେ
ଏ ପୃଥିବୀ ମଧ୍ୟରେ ହେ ଉଦ୍ଧବ ମୁହିଁ
ଅପାର କାର୍ଯ୍ୟ ସାଧିଲି ଦେବତାଙ୍କ ପାଇଁ ।
ବ୍ରହ୍ମାର ବଚନେ ମୁହିଁ ଯେଉଁ କାରଣରେ
ନରରୂପେ ଅବତାର ହୋଇଲି ଧରାରେ ।
ବ୍ରାହ୍ମଣ ଶାପରେ ଯଦୁବଂଶ ଧ୍ୱଂସ ହେବ
କଳହ କରିବେ ଜାଣ ପରସ୍ପରେ ସର୍ବ ।
ଆପଣା ଆପଣା ମଧ୍ୟେ ହଣାହଣି ହେବେ
ମଦିରା ପାନରେ ଭୋଳା ହୋଇଣ ଯାଦବେ
ଏହିଭାବେ ଯଦୁକୁଳ ହୋଇବ ନିଧନ
ଆଉରି ଏକଇ କଥା ଶୁଣ ଦେଇ ମନ ।
ଏହି ଦ୍ୱାରକା ନଗର ସାଗର ଜଳରେ
ନିମଗ୍ନ ହୋଇବ ଜାଣ ଶୁଣ ସୁଚିତ୍ତରେ ।
ଯେତେବେଳେ ଛାଡ଼ିବି ମୁଁ ଏହି କଳେବର
ଘଟିବ ଯେବଣ ବାକ୍ୟ ଶୁଣ ଭକ୍ତ ବୀର ।
ମହା ଅମଙ୍ଗଳ ଆସି ପ୍ରବେଶ ହୋଇବ
ଭୟାନକ ବଳି ଏହି ବସୁଧା ଗ୍ରାସିବ ।
ଆଉରି ମୁଁ ଏହି ଧରା ତେଜିବି ଯେ କ୍ଷଣ
ନ ରହିବ ଏହି ସ୍ଥାନେ ତୁମ୍ଭେ କଦାଚନ ।
କଳିଯୁଗ ମାନବଙ୍କ ବୁଦ୍ଧି ଜ୍ଞାନ ଯେତେ
ତାହା ସବୁ ଅନାୟାସେ ହଜିବ ତୁରିତେ ।
ଏଣୁ ହେ ଉଦ୍ଧବ ମାନ ମୋହର ବଚନ
ପରିଜନ ବନ୍ଧୁଜନ ତେଜଣି ବହନ ।
ସକଳ ସ୍ନେହ ବନ୍ଧନ ଛିନ୍ନ କରି ଦେଇ
ସର୍ବଭାବେ ଦରଶନ କର ଦୃଷ୍ଟି ଦେଇ ।
ଏହି ଯେ ମହାଜଗତ ନେତ୍ରେ ଦେଖାଯାଏ
ଈଶ୍ୱର ଶରୀର ଏହା ଅଟେ ମାୟାମୟେ ।
ଚଞ୍ଚଳ ଚିତ୍ତ ଯାହାଙ୍କ ଆହେ ମହାମତି
ତାହାଙ୍କର ଗୁଣ ଦୋଷ ରହିଥାଏ ଅତି ।
ଏହି ଦୋଷ ଗୁଣେ ସର୍ବ କର୍ମ ଭକ୍ତିମୟ
ସାରତତ୍ତ୍ୱ ତୁମ୍ଭ ଆଗେ କହିଲି ନିଶ୍ଚୟ ।
କହନ୍ତି ଯେ ପୌରାଣିକ ଆହେ ମୁନିବର
ଏକାନ୍ତ ମନରେ ଶୁଣ ଶ୍ରୀକୃଷ୍ଣଙ୍କ ଗିର ।
ପରମ ବୈଷ୍ଣବ ସେହି ଉଦ୍ଧବ ସୁଜ୍ଞାନୀ
ଭକ୍ତିଭାବେ କୃଷ୍ଣପାଦେ ନମି ତତକ୍ଷଣି ।
କରଯୋଡ଼ି ବିନୟରେ ବୋଇଲେ ବଚନ
ଆହେ ଯୋଗେଶ୍ୱର ମୋତେ କୁହନ୍ତୁ ବହନ
ଯେବଣ ଆଦେଶ ମୋର ଦେଲ ଦୟାମୟ
ମୁକ୍ତିର କାରଣ ନ କହିଲ ମହାଶୟ ।
ମାତ୍ର ଦେବ କଥାଏ ମୁଁ କରେ ନିବେଦନ
ବିଷୟ ଆସକ୍ତ ସଦା ଯାହାଙ୍କର ମନ ।
ଆଶା ତ୍ୟାଗ ସେମାନଙ୍କ ବଡ଼ାଇ ଦୁଷ୍କର
ତେଣୁ ଭକ୍ତିହୀନ ହୋନ୍ତି ମାୟା ମୁଗଧ ନର

ତୁମ୍ଭ ମାୟାରେ ମୋହିତ ଅଟେ ଏ ଜଗତ
ମୁହିଁ ହୀନ ଜନ ତାହା ଜାଣିବି କେମନ୍ତ ।
ସେହି ମାୟା କୂପ ମଧ୍ୟେ ପଡ଼ିଅଛି ମୁହିଁ
ତବ ଉପଦେଶ ଶିରପରେ ବହିବଇଁ ।
ଏତିକ ମାତର ପ୍ରଭୁ ବିନତି ମୋହର
କିପରି ଭବସାଗରୁ ହୋଇବି ଉଦ୍ଧାର ।
ସେହି ଶିକ୍ଷା ଦିଅ ମୋତେ ଆହେ ନାରାୟଣ
କୃପାକର କୃପାନିଧି ଦିଅ ଦିବ୍ୟଜ୍ଞାନ ।
ବିଚିତ୍ର ତୁମ୍ଭର ମାୟା ଆହେ ଯୋଗେଶ୍ୱର
ବ୍ରହ୍ମାଦି ଅମରଗଣେ ମୁଗ୍ଧ ନିରନ୍ତର ।
ତୁମ୍ଭ ମାୟାବଳେ ହରି ସକଳେ ମୋହିତ
ନେଲି ଶରଣ ମୁହିଁ ତବ ପାଦଗତ ।
ତୁମ୍ଭେ ସର୍ବଜ୍ଞ କରତା ଆହେ ଦୟାମୟ
ତୁମ୍ଭେ ଅବିନାଶି ଅନ୍ତର୍ଯ୍ୟାମୀ ବା ଅକ୍ଷୟ ।
ଜୀବମାନଙ୍କର ଅଟ ଯେ ପରମ ଗତି
ତବ ଅଭୟ ପଦରେ ଜଣାଏ ପ୍ରଣତି ।
ଏହାଶୁଣି ଉଦ୍ଧବକୁ କହନ୍ତି କେଶବ
ଅପୂର୍ବ ଭାରତୀ ଏକ ଶୁଣ ହେ ଉଦ୍ଧବ ।
ପୃଥିବୀର ଲୋକ ଯେତେ ବଞ୍ଚିବା ବାସନା
ମନରେ ନ ପାନ୍ତି ଶାନ୍ତି ନ ପାନ୍ତି ସାନ୍ତ୍ୱନା
ଆତ୍ମା ଯୋଗେ ଏହି ବିଷୟରୁ ଯେ ଆତ୍ମାକୁ
କରନ୍ତି ଉଦ୍ଧାର ମୁହିଁ କହିଲି ତୁମ୍ଭକୁ ।
ଆତ୍ମା ଅଟଇ ଆତ୍ମାର ଗୁରୁ ହେ ଉଦ୍ଧବ
ଦେଖୁଅଛ ଏ ଜଗତେ ଯେତେ ସବୁ ଜୀବ ।
ଏକ ପଦ ଦୁଇପାଦ ତ୍ରିପାଦ ପ୍ରଭୃତି
ଚତୁଷ୍ପଦ ବହୁପଦ ବିବିଧ ଆକୃତି ।
ବହୁରୂପେ ଦେହ ଅଛି କହେ ଅକପଟେ
ପୁରୁଷ ଶରୀର ପ୍ରିୟ ସଦା ମୋର ଅଟେ ।
ସେହି ମୋର ପ୍ରିୟପାତ୍ର ଜାଣ ହେ ନିଶ୍ଚୟେ
ମୋହର ବଚନ କେବେ ଅନ୍ୟଥା ନ ହୁଏ ।
ପୁଣି ଶୁଣ ଯେତେ ଛନ୍ତି ଅପ୍ରମତ୍ତ ଜନେ
ଅତି ଗୁଢ଼ ଗୁଣ ଚିହ୍ନ ହେତୁ ଦରଶନେ ।
ମୋହର ସନ୍ଧାନ ସେ କରନ୍ତି ଅନୁକ୍ଷଣ
ପୂର୍ବ ଇତିହାସ ଏକ ଅଛି ସୁକଥନ ।
ଯଦୁପତି ଅବଧୂତଙ୍କର ବିବରଣ
ଅପୂର୍ବ କାହାଣୀ ସେହି ଉପଦେଶ ପୂର୍ଣ୍ଣ ।

ଏମନ୍ତେ ସେ ଅବଧୂତ ଗୀତା ସାରବାଣୀ
ଉଦ୍ଧବଙ୍କୁ କହିଲେ ସେ ପ୍ରଭୁ ଚକ୍ରପାଣି ।
ହେ ଉଦ୍ଧବ ଶୁଣିଥାଅ ମୋ ହିତ ଭାରତୀ
ନକରିବ ଅତି ସ୍ନେହ କେବେ କାହାପ୍ରତି ।
ତହିଁରେ ହୋଇବ ଘୋର ଦୁଃଖ ଅତିଶୟ
ତହୁଁ ବିପରୀତ ଫଳ ଘଟିବ ନିଶ୍ଚୟ ।
ମାନବ ଜନମ ଲଭି ଯେଉଁ ମୂଢ଼ଜନ
ଗୃହରେ ଆସକ୍ତ ହୁଏ ରହି ଅନୁକ୍ଷଣ ।
ଆରୂଢ଼ ଚ୍ୟୁତର ନାମେ ଅଭିହିତ ହୁଏ
ଶାସ୍ତ୍ରର ବଚନ ଏହା କେବେ ମିଥ୍ୟା ନୁହେ
ହେ ଉଦ୍ଧବ ବୁଝି ଦେଖ ଆପଣାର ମନେ
କପୋତ କପୋତି ସମ ନ ହେବ ଭୁବନେ ।
ଛାଡ଼ିଲେଟି ମାୟାମୋହ ମମତାକୁ ଜାଣ
ଅନାୟାସେ ଘୁଞ୍ଚିଯାଏ ସଂସାର ବନ୍ଧନ ।
ପୁଣି ଶୁଣ ହେ ଉଦ୍ଧବ କରି ମନ ସ୍ଥିର
ଆସକ୍ତିର କଥା କିଛି କରିବା ଗୋଚର ।
ଦେହିଗଣେ ଯେଉଁରୂପେ ଦୁଃଖ ହୁଏ ଜାତ
ତେସନ ଇନ୍ଦ୍ରିୟ ସୁଖ ଜାଣିବ ନିଶ୍ଚିନ୍ତ ।
ସ୍ୱରଗ ନରକ ତଥା ଅଟେ ଦୁଇସ୍ଥାନ
ବାଞ୍ଛା ନ କରନ୍ତି ତାହା ପଣ୍ଡିତ ସୁଜନ ।
ଅଜଗର ବୃତ୍ତିଧାରୀ ଉଦାସୀନ ଗଣ
ସରସ ନିରସ କିଛି ନ ଭାବନ୍ତି ମନେ ।
ଅଳପ ବହୁତ ଦେହି ଯାହା ବା ପାଆନ୍ତି
ଆନନ୍ଦ ମନରେ ତାହା ଗରାସ କରନ୍ତି ।
ସେମାନଙ୍କୁ କେବେ ଯଦି ନମିଳେ ଆହାର
ସେହି ସମୟେ ସ୍ମରନ୍ତି ଜଗତ ଈଶ୍ୱର ।
ଏହା ଭାବି ଧୈର୍ଯ୍ୟଧରି ଅଜଗର ମତେ
ନିରାହାରେ ନିରୁଦ୍ୟମେ ଥାନ୍ତି ଅବିରତେ ।
ସ୍ତିମିତ ପ୍ରବାହ ଶାନ୍ତ ସମୁଦ୍ରର ମତ
ଗମ୍ଭୀର ଅନନ୍ତ ପାର ମୁନିଏ ସମସ୍ତ ।
ଜଳପୂର୍ଣ୍ଣବତୀ ନଦୀ ବର୍ଷାରେ ଯେସନ
ଅତିବେଗେ ସମୁଦ୍ରକୁ କରଇ ଗମନ ।
ତଥାପି ସୁସ୍ଥିର ହୋଇଥାଏ ସେ ସାଗର
କଦାଚ ନହୁଏ ସେହି ଅର୍ଣ୍ଣବ ଦୁସ୍ତର ।
ତେସନେ ଯେ ମୁନିମାନେ କୃପା ପରାୟଣ
କାମଲୁବ୍ଧ ହୋଇ ମୁଗ୍ଧ ନୁହନ୍ତି ସେ ଜାଣ

ଅଜିତ ଇନ୍ଦ୍ରିୟ ଯେହ୍ନ ଶୁଣ ମୁଁ କହଇ
ସଦା ମୁଗ୍‌ଧ ହୋନ୍ତି ଯେହୁ ରମଣୀକି ପାଇ
ଅନେକ ପତଙ୍ଗେ ଯେହ୍ନେ ଲୋଭେ ପଡ଼ମରେ
ନରକେ ପଡ଼ନ୍ତି ସେ ଯେ ତେସନ ପ୍ରକାରେ
ଏ ଅନ୍ତେ ପ୍ରେମର ବୃତ୍ତି କରନ୍ତେ ଶ୍ରବଣ
ମୁନିମାନେ ଏହି ବୃତ୍ତି କରନ୍ତି ଧାରଣ ।
ଜୀବନ ଧାରଣ ହୁଏ ଯେଣନ ପ୍ରକାରେ
ପୀଡ଼ନ ନକରେ ଗୃହେ କହୁଛି ତୁମ୍ଭରେ ।
ଏକମାତ୍ର ଗ୍ରାସ ତଥା କରିବ ଗ୍ରହଣ
ଅଳ୍ପ ଅଳ୍ପ କରି ତାହା କରିବ ଭୋଜନ ।
ଭ୍ରମର ପୁଷ୍ପରୁ ଯେହ୍ନେ ମଧୁପାନ କରେ
ସେହିପରି ବୃତ୍ତିକି ଯେ ପଣ୍ଡିତ ଆଚରେ ।
ଏଣୁ ମଧୁକରୀ ଭିକ୍ଷା ଅଟେ ତାର ନାମ
ଗୃହୀଙ୍କି ଅଧିକ କ୍ଳେଶ ନୁହେ ଏ ବିଧାନ ।
କ୍ଷୁଦ୍ର ବା ବୃହତ ଶାସ୍ତ୍ର ଅଛି ଅଗଣନ
ପଣ୍ଡିତେ ତହିଁରେ ସାର କରନ୍ତି ଗ୍ରହଣ ।
ପୁଣି ଶୁଣ ଭିକ୍ଷାଦ୍ରବ୍ୟ ଆଣିବଟି ଯାହା
ପରଦିନ ପାଇଁ କେବେ ନ ସଞ୍ଚିବ ତାହା ।
ସଞ୍ଚିଲେ ମକ୍ଷିକା ପରି ନାଶ ପ୍ରାପ୍ତ ହେବ
ସେ ସଞ୍ଚିତ ଦ୍ରବ୍ୟ ଯାହା ଅନ୍ୟ ନେଇଯିବ ।
ଆଉରି ଏକଇ କଥା ଶୁଣ ମହାମତି
ଦାରୁମୟୀ ଅଟେ ଯେବେ ସୁନ୍ଦରୀ ଯୁବତୀ ।
ଏ ସଂସାର ମଧ୍ୟେ ଜାଣ ଭିକ୍ଷୁକ ସେ ଜନ
ନିଜ ପାଦେ ତାକୁ ନ ଛୁଇଁବ କଦାଚନ ।
ତାହାକୁ ଛୁଅଇଁ ଯଦି ସେ ଭିକ୍ଷୁକ ନର
ହାତୁଣୀ ଲୋଭରେ ହାତୀ ଯେସନେ ଗର୍ଭର
ପଡ଼ଇ ତେମନ୍ତ ଜାଣ ଭାବିଣ ମନରେ
ବର୍ଜିବନ୍ତି ସୁଧା ଆପଣା ପତ୍ନୀକୁ ସଙ୍ଗରେ ।
ଆହୁରି ମଧ ଲୋଭରେ ଯେଉଁ ଦୁଃଖୀଜନ
ସଞ୍ଚୟ କରିଣ ଧନ ନ କରଇ ଦାନ ।
ଅନାୟସେ ଖଣ୍ଡମାନେ ତାକୁ ହରନ୍ୟନ୍ତି
ମଧୁମାଛି ପରି ମଧ ତା ପ୍ରାଣ ନାଶନ୍ତି ।
ତେମନ୍ତ ଦୁଃଖେ ଅର୍ଜିତ ଅଟେ ଯେତେ ଧନ
କଦାପି ନହୁଏ ତାହା ସୁଖ ପ୍ରୟୋଜନ ।
ଆହୁରି କଥାଏ ମୁହିଁ କହୁଅଛି ଶୁଣ
କେବେ ନ ଶୁଣିବ ଅଟେ ନିକୃଷ୍ଟ ଯୋଗାନ

ହରିଣ ମୋହିତ ଯେହ୍ନେ ଶୁଣି ବ୍ୟାଧ ଗୀତ
ତେମନ୍ତ ଦଶା ଲଭିବ ଶୁଣି ଗ୍ରାମ୍ୟ ଗୀତ ।
ଆଜନମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗ ଥିଲେ
କାମିନୀମାନଙ୍କ ଗୀତେ ମୋହିତ ହୋଇଲେ
ବଡ଼ଶୀ କଣ୍ଟାରେ ମୀନ ଯେହ୍ନେ ବନ୍ଧ ହୁଏ
ତେସନ ଅଜ୍ଞାନୀ ଜନ ଜାଣିବା ନିଶ୍ଚୟେ ।
ଭଲେ ବୁଝ ଜଗତରେ ଯେ ପଣ୍ଡିତ ଜନ
କାମିନୀକୁ ଜିଣି ନ ପାରଇ କଦାଚନ ।
ଆଉ ଯେତେ ଇନ୍ଦ୍ରିୟ କରଇ ପରାଜୟ
ଅଜ୍ଞାନୀ ମାନବ ଏହା ଜାଣିବ ନିଶ୍ଚୟ
ଯେ ଜନ ପୁରୁଷ ଅଟେ ଶୁଣ ଦେଇ ମନ
ଆନ ରିପୁ ବଶକରେ ସେହି ଅନୁକ୍ଷଣ ।
ମାତ୍ର ରସନାକୁ ଯଦି ନ କରଇ ଜୟ
କେହି ଯେ କହନ୍ତି ନାହିଁ ତାକୁ ଜିତେନ୍ଦ୍ରିୟ ।
ଜିଣିଲେଟି ରସନାକୁ ଜିତେନ୍ଦ୍ରିୟ ମଣି
ତୁମ୍ଭଙ୍କୁ ବିଶେଷ କରି କହୁଛି ଏ ବାଣୀ ।
ଅନ୍ୟାନ୍ୟ ଆସକ୍ତି ଗାଥା ଶୁଣହେ ସୁମତି
ଆଶାଟି ପରମ ଦୁଃଖ ସୁଖ ନାହିଁ ଏଥି ।
ମାନବର ଆଶା ଅଟେ ଅପାର କଷଣ
ଆଶା ତ୍ୟାଗ କଲେ ସୁଖ ମିଳଇଟି ଜାଣ ।
ତାହାପରେ ହେ ଉଦ୍ଧବ ମନ ଦେଇ ଶୁଣ
କରିବ ତୁମ୍ଭ ପ୍ରାଣକୁ ଆସକ୍ତି ବିହୀନ ।
ଆହୁରି ଏକଇ କଥା ଶୁଣ ମନ ଦେଇ
ଜଗତର ସାର ଏକ ମାତ୍ର ଭବଗ୍ରାହୀ ।
ଏକାନ୍ତ ମନରେ ତୁମ୍ଭେ ଭଜ ସେ ଚରଣ
ଅନାୟାସେ ସେହି ପାପୁଁ ହୋଇବ ମୋଚନୀ
ଯଦୁ ରାଜନକୁ କହିଥିଲେ ଅବଧୂତ
ଯାହାଙ୍କର ଗୃହେ ଅଛି ବୁଝ ଦେଇ ଚିତ୍ତ ।
ତାଙ୍କର ସର୍ବଦା ଚିନ୍ତା ମନରେ ଉଦୟ
ଗୃହ କଲି ପ୍ରାଣୀ ମନେ ସଦା ଜାତ ଭୟ ।
ମାନ ଅପମାନ ଯେହ୍ନେ ନ ଜାଣେ ବାଳକ
ସାଧୁମାନଙ୍କ ସ୍ୱଭାବ ସେହିପରି ଦେଖ ।
ଗୃହୀଙ୍କ ପରାୟେ ଚିନ୍ତା ନ ଥାଏ ତାଙ୍କର
ଆଶକ୍ତି ଜନ୍ମଇ ନାହିଁ ମନରେ ମାତର ।
ବାଳକ ଅଜ୍ଞାନ ଏକ ଉଦ୍ୟମ ବିହୀନ
ପ୍ରକୃତି ପରମ ଆଉ ଈଶ୍ୱର ବିଲୀନ ।

ଦୁଇ ଏକ ଜଣ ସୁଖୀ ସଂସାର ମଧ୍ୟରେ
ସାର ତତ୍ତ୍ୱ କହିଲଇ ତୁମ୍ଭ ଅଗ୍ରତରେ ।
ଏହିରୂପେ ଅବଧୂତ ଯଦୁରାଜ ପ୍ରତି
ଅପୂର୍ବ ସାଧନତତ୍ତ୍ୱ କହିଲ ସମ୍ପ୍ରତି ।
ହେ ଉଦ୍ଧବ ଏହି କଥା ମୋର ଅଭିମତ
ଏହି ଭାବେ ତୁମ୍ଭେ ସଦା ଭାବ ଅବିରତ ।
କୁମାରୀ କଙ୍କଣ ପରି ସଙ୍ଗ ହୀନ ହେବ
ଏକାକୀ ରହିଲେ ନିଶ୍ଚେ ମଙ୍ଗଳ ଲଭିବ ।
ଏଣୁ ସର୍ବ ଆଶା ତେଜି ଏକାନ୍ତ ଭାବରେ
ଭଜ ହୀନ କର୍ମ ଛାଡ଼ି ବିଭୁଙ୍କ ପଦରେ ।
ଆଦର ଅଭ୍ୟାସ କରି ନିତି ପ୍ରତିଦିନ
ଭଗବାନଙ୍କ ପାଦରେ କରିବ ଭଜନ ।
ଈଶ୍ୱରଙ୍କ ଚରଣରେ ଚିତ୍ତ ରଖି କନା
ବର୍ଜ୍ଜନ କରିବ ସର୍ବ କର୍ମର ବାସନା ।
ସତ୍ତ୍ୱ ଗୁଣକୁ ଆଶ୍ରିତ କରି ଅନୁକ୍ଷଣ
ରଜ ତମ ଗୁଣ ଯେବେ ହେବ ବିନାଶନ ।
ତାହେଲେ ନିର୍ବାଣ ଗତି ପ୍ରାପତ ହୋଇବ
ପରମ ଗତି ଲଭିବ କହିଲ ଯେ ସର୍ବ ।
ଯେତେବେଳେ ଚିତ୍ତ ତାର ଏକାନ୍ତ ହୋଇବ
ଅନ୍ୟ ଦିଗକୁ ଆଉ ସେ ଭୁଲେ ନ ଧାଇଁବ ।
ବାହ୍ୟ ଅଭ୍ୟନ୍ତର ନ ଜାଣିବ କିଛି ସେହି
ଯୋଗୀ ଜନଙ୍କର ଚିତ୍ତ ଯେପରି ଅଟଇ ।
ଲକ୍ଷ୍ୟରେ ନିବିଷ୍ଟ ଚିତ୍ତ ହୁଏ ଯେଉଁଜନ
ନୃପତି ଗଲେ ପାଶରେ ନ ଜାଣେ ଯେସନ
ସେହିପରି ଚିତ୍ତ ଯଦି ଅବରୁଦ୍ଧ ହୁଏ
ଭିତରେ ବାହାରେ କିଛି ଜ୍ଞାନହିଁ ନ ରହେ ।
ସର୍ପ ସମ ମୁନି ହେବ ସଦା ସାବଧାନ
ଏକଚାରୀ ଗୃହହୀନ ହେବ ପ୍ରତିଦିନ ।
ଗୁହାଶାୟୀ ଅସହାୟ ଅଳ୍ପଭାଷୀ ହେବ
ଆଗୃର ଅଲକ୍ଷ୍ୟ ହେବେ ମୁନିମାନେ ସର୍ବେ ।
ଗୃହାରମ୍ଭ ମନୁଷ୍ୟର ଦୁଃଖର କାରଣ
ନିଷ୍ଫଳ ସର୍ବଦା ତାହା ଭଲେ ଏହା ଜାଣ ।
ବହୁ ଜନ୍ମପରେ ହୁଏ ମାନବ ଜନମ
ମାନବ ଜୀବନ ଅଟେ ଦୁର୍ଲ୍ଲଭ ପରମ ।
ଏମନ୍ତ ଜନମ ଲଭି ଯେତେ ମୂଢ଼ ଜନ
ବିଷୟ ଆସକ୍ତ ହୋଇ ଲଭନ୍ତି ମରଣ ।

ଧୀର ପ୍ରାଣୀ ମୁକ୍ତି ପାଇଁ ଉଦ୍ୟୁକ୍ତ ସନ୍ତତ
ଆତ୍ମନିଷ୍ଠ ହୋଇ ସେ ରହନ୍ତି ଅବିରତ ।
ଅହଙ୍କାର ସଙ୍ଗ ଆଦି କରି ପରିହାର
ପୃଥିବୀ ଭ୍ରମଣ ସୁଖେ କରେ ନିରନ୍ତର ।
ଉଦ୍ଧବଙ୍କୁ କୃଷ୍ଣ ଏହା କହିଲେ ସାଦରେ
ଏହିରୂପେ ଅବଧୂତ କହି ଯଦୁବରେ ।
ଆନନ୍ଦ ମନରେ ତହୁଁ କଲେ ସେ ଗମନ
ମହା ପାପରୁ ମୁକତି ଲଭିଲେଟି ଜାଣ ।
ଏଥିଅନ୍ତେ ମୁନି ମେଳେ ସୁତ ହରଷେଣ
ବଖାଣିଲେ ହରି କଥା ସାରତତ୍ତ୍ୱ ପୁଣ ।
ବୋଇଲେ ଶୁଣହେ ମୁନି ସୁଧାମୟ କଥା
ଯାହାକ ଶୁଣିଲେ ଦୂର ହୁଏ ଭବ ବ୍ୟଥା ।
ମହାଯୋଗୀ ଶୁକଦେବ ପରୀକ୍ଷିତ ଆଗେ
କହିଥିଲେ ଗଙ୍ଗାତୀରେ ଅତି ଅନୁରାଗେ ।
କୃଷ୍ଣ ଉଦ୍ଧବଙ୍କୁ କ୍ରମେ କ୍ରମେ ବୁଝାଇଣ
ବହୁ ତତ୍ତ୍ୱ କଥାମାନ କଲେ ଯେ ବଖାଣ ।
ବଦ୍ଧ ମୁକ୍ତ କଥା ଆଉ ସାଧୁ ସଙ୍ଗ କଥା
କର୍ମ ଅନୁଷ୍ଠାନ ବିଧି ତ୍ୟାଗର ବ୍ୟବସ୍ଥା ।
ପରମହଂସ କାହାଣୀ ସାଧନ ବର୍ଣ୍ଣନ
ଧ୍ୟାନ ଯୋଗ ସଙ୍ଗେ ଅଷ୍ଟ ସିଦ୍ଧିର ବିଧାନ ।
ବିଭୂତି କଥନ ଆଉ ବର୍ଣ୍ଣାଶ୍ରମ ଗିର
ଯତି ଧର୍ମ ଆଦି ଯେତେ ନିଷ୍ଠୟ ସଦ୍ଭର ।
ମଙ୍ଗଳର ଭେଦ ବାଖ୍ୟା ଭକ୍ତି ଯୋଗ ବାଣୀ
ଜ୍ଞାନ ଯୋଗ କ୍ରିୟା ଯୋଗ ଅପୂର୍ବ କାହାଣୀ
ଦ୍ରବ୍ୟାଦିର ଗୁଣ ଦୋଷ ବିସ୍ତାର କଥନ
ତତ୍ତ୍ୱ ସମ୍ବନ୍ଧରେ ଯେତେ ବିରୋଧ ଭଞ୍ଜନ ।
ତିରସ୍କାର ସହିବାର ଯେମନ୍ତ ଉପାୟ
ସାଂଖ୍ୟ ଯୋଗ ଆଦି ଯେତେ କଥା ସମୁଦାୟ
ସତ୍ତ୍ୱାଦି ଗୁଣରେ ଯେ ବୃତ୍ତି ନିରୂପଣ
ଋତୁରବା ଗୀତା ଆଉ କ୍ରିୟାର ବର୍ଣ୍ଣନ ।
ପରମାର୍ଥ କଥା ଆଦି ମହାତତ୍ତ୍ୱ ବାର୍ତ୍ତା
ଉଦ୍ଧବଙ୍କୁ କହିଲେ ଯେ ପ୍ରଭୁ ଚକ୍ରପାଣି ।
ପୁରାଣ ବକ୍ତା ବୋଲନ୍ତି ଶୁଣ ମୁନି ବର୍ଗେ
ଉଦ୍ଧବ ଜଣାନ୍ତି ପୁଣି କୃଷ୍ଣଙ୍କ ସରାଗେ ।
ଦୟା ବହି କହ ପ୍ରଭୁ ଏବେ ଏ ଦାସରେ
ଏ ଭବ ମାୟାରୁ ପାର ହେବ କି ପ୍ରକାରେ

ଆହେ ଜଗନ୍ନାଥ ଶୁଣ ଦଇନ ମୋହର
ତୁମ୍ଭଠାରେ ମନ ବଶ ନୁହଇ ଯାହାର ।
ନିଜ ମନ ବଶୀଭୂତ ଯାହାର ନ ହୁଏ
ଯୋଗ ଆଚରଣ ତାର ନୁହଇ ନିଶ୍ଚୟେ ।
ଏଣୁ ଆହେ କୃପାସିନ୍ଧୁ କରେ ନିବେଦନ
ଯହିଁରେ ହୋଇବ ସିଦ୍ଧି କହେ ସେ ବଚନ ।
କେରୂପେ ବୁଝି ପାରିବ ତତ୍ତ୍ୱ ସମୁଦାୟ
ତାହା କହ ହେଉ ମୋର ଆନନ୍ଦ ହୃଦୟ ।
ହେ ପ୍ରଭୁ ପଦ୍ମ ଲୋଚନ ଯେତେ ଯୋଗୀଜନ
ଚିତ୍ତ ନିଗ୍ରହ କରନ୍ତି ସଂଯମ କାରଣ ।
ତହିଁରେ ସେମାନେ ଅତି କ୍ଲେଶକୁ ଲଭନ୍ତି
ଏହାର କାରଣ କିଛି କହନ୍ତୁ ମୋ ପ୍ରତି ।
ଏହିହେତୁ ଜଣାଉଛି ହେ ପଦ୍ମ ନୟନ
ସାର ବା ଅସାର ଜ୍ଞାନ ଯାର ଅନୁକ୍ଷଣ ।
ସେ ଜନ ଏହି ଶ୍ରୀପଦ ପୂଜା ନ କରଇ
ଏହି ଶ୍ରୀଚରଣ ତବ ଆନନ୍ଦେ ଭଜଇ ।
ତବ ମାୟା ମୋହେ ଯେବା ନ ହୁଏ ପତନ
ଅହଙ୍କାର ନ କରଇ ଯୋଗର କାରଣ ।
ସମସ୍ତଙ୍କ ମିତ୍ର ତୁମ୍ଭେ ଅଟ ହେ ଅଚ୍ୟୁତ
ଯେଉଁମାନଙ୍କର ମନ ନୁହଁଇ ମୋହିତ ।
ସେହି ଦାସ ମନେ ତବ ବଶ ହୋଇଥାନ୍ତି
ଏଥିରେ କିବା ଆଶ୍ଚର୍ଯ୍ୟ ଅଛି ହେ ଶ୍ରୀପତି ।
ତୁମ୍ଭଙ୍କୁ କିସ କହିବ ଆହେ ଜନାର୍ଦ୍ଦନ
ନତଥାନ୍ତି ତବପାଦେ ସର୍ବ ଦେବଗଣ ।
ତଥାପି ବାନର ସଙ୍ଗେ ଆନନ୍ଦ ମନରେ
କ୍ରୀଡ଼ା କରିଲ ହରି କାନନ ମଧ୍ୟରେ ।
ଚୈତନ୍ୟ ସ୍ୱରୂପ ତୁମ୍ଭେ ଅଟ ନାରାୟଣ
ଭକ୍ତର ଦାନ ସାଦରେ କର ଯେ ଗ୍ରହଣ ।
ତୁମ୍ଭ ଭକତଙ୍କ ପ୍ରତି କେଉଁ ବ୍ୟବହାର
ନ ଜାଣେ ତୁମ୍ଭଙ୍କୁ କେହ୍ନେ କରେ ପରିହାର
ତେବେ ଆଉ କେଉଁ ଜନ ଏହି ଜଗତରେ
ତୁମ୍ଭ ବିନା ଆନ ଦେବ ଭଜିବ ଭକ୍ତିରେ ।
ଅସାର ସଂସାର ଏହୁ ଆହେ ଦୟାମୟେ
ତୁମ୍ଭ ଚରଣରେ ଭୃତ୍ୟ ଅଟେ ମୁଁ ନିଶ୍ଚୟେ ।
କି ଗତି ହେବ ମୋହର ଆହେ ଦାମୋଦର
ଦୟାକର କହ ତାହା ଦୟାର ସାଗର ।

କହ ଦେବ ଗୁରୁ ରୂପେ ରହିଣ ବାହାରେ
ରହି ଅନ୍ତର୍ଯ୍ୟାମୀ ରୂପେ ପ୍ରାଣୀଙ୍କ ଶରୀରେ ।
ବିଷୟ ବସନା ପ୍ରଭୁ କରନ୍ତୁ ହରଣ
ଶେଷେ ଆପେ ପରକାଶ ହୁଅ ନାରାୟଣ ।
ପୁଣି ଆନ ନିବେଦନ ଶୁଣ ଲକ୍ଷ୍ମୀପତି
ଧାତା ସମ ପରମାୟୁ ଯେନ ଏ ଧରଣୀ ।
ଯେଉଁଜନ ନ ପାରଇ ସୁଝି ତବ ଋଣ
କହୁଛି ଶୁଣ ହେ ନାଥ ତାହାର କାରଣ ।
ତବ ଉପକାର ଯେହୁ ସ୍ମରଣ କରନ୍ତି
ତହିଁରେ ଭକତେ ବହୁ ଆନନ୍ଦ ଲଭନ୍ତି ।
ମୁନିମେନେ ପୌରାଣିକ କହନ୍ତି ବୁଝାଇ
ସତ ରଜ ତମ ଗୁଣ ସରଜିଲେ ଯହିଁ ।
ଯେଉଁ ପ୍ରଭୁ କଲେ ତିନି ମୂରତି ଧାରଣ
ଏ ଜଗତ ଅଟେ ତାଙ୍କ ବିସ୍ତାର କାରଣ ।
ଉଦ୍ଧବ ମୁଖରୁ ଶୁଣି ଏହିପରି ବାଣୀ
ମଧୁରେ ହସି ବୋଇଲେ ପ୍ରଭୁ ଚକ୍ରପାଣି ।
ଶୁଣ ହେ ଉଦ୍ଧବ ତୁମ୍ଭେ ଧାର୍ମିକ ସୁଜନ
କହୁଛି ତୁମ୍ଭଙ୍କୁ ମୁହିଁ ପ୍ରକୃତ ବଚନ ।
ମୋହର ଯେ ଧର୍ମ ତାହା କହିବି ତୁମ୍ଭରେ
ଯେସନ୍ତ ସେ କାର୍ଯ୍ୟ କରଇ ଭକ୍ତି ସହକାରେ
ମୋଠାରେ ଯେବଣ ଜନ ମନ ସମର୍ପନ୍ତି
ଦୁର୍ଜ୍ଜୟ ଭବ ସଂସାରୁ ସେହୁ ତରଯାନ୍ତି ।
ଏହି ରୂପେ ଯେହୁ ମୋରେ କରିବ ସ୍ମରଣ,
ମୋହର ଧର୍ମରେ ତାଙ୍କ ମଗ୍ନ ହେବ ମନ ।
ସର୍ବ କର୍ମମାନ ସେହୁ ସାଧନ କରିବେ
ସାର କଥା ବଖାଣିଲି ମୁହିଁ ତୁମ୍ଭ ଆଗେ ।
ପୁଣି ଶୁଣ ହେ ଉଦ୍ଧବ ମୋହର ବଚନ
ଜଗତେ ମୋହର ଭକ୍ତ ଅଟେ ଯେଉଁ ଜନ ।
ଦେବତା ଅସୁର ଆଉ ମାନବ ନିକର
ଯେଉଁମାନେ ଅଟନ୍ତି ଯେ ଭକତ ମୋହର ।
ସାଧୁଙ୍କ ମଧ୍ୟରେ ସେହୁ ଗଣନା ହୁଅନ୍ତି
ସର୍ବଦା ତାହାଙ୍କପରେ ଥାଏ ମୋର ଦୃଷ୍ଟି
ତିଳେମାତ୍ର ବାଧା ବିଘ୍ନ ତାଙ୍କୁ ନ ଲାଗଇ
କହି କଷାଇଣ ମୁହିଁ ଧନ ଦେଉଥାଇ ।
ପୁଣି ନିର୍ମଳ ଚିତ୍ତରେ ଯେତେକ ମାନବ
ଭକ୍ତିଭାବେ କରିବନ୍ତି ମୋର ମହୋତ୍ସବ ।

ଆକାଶ ପରି ନିର୍ମଳ ଅନ୍ତର ତାଙ୍କର
ମୋହର ଦର୍ଶନ ପାନ୍ତି ସେ ପୁଣ୍ୟାତ୍ମା ନର ।
ଏଣୁ ହେ ଉଦ୍ଧବ କହେ ତୁମ୍ଭଙ୍କୁ ବୁଝାଇ
ଏହିରୂପେ ଜ୍ଞାନ ନେତ୍ର ଯାହାଙ୍କର ଥାଇ ।
ସର୍ବଭୂତେ ସମଭାବେ କରନ୍ତି ସେ ଜ୍ଞାନ
ମୋହର ସ୍ୱରୂପ ସେହି ପାଇବେଟି ଜାଣ ।
ବ୍ରାହ୍ମଣ ହେଉ କି ଅବା ହେଉ ସେ ଚଣ୍ଡାଳ
ଅତି ପ୍ରିୟ ପାତ୍ର ମୋର ଜାଣ ସେ ସକଳ ।
ଯେ ପୁରୁଷ ମନପ୍ରାଣ ସମପେ ମୋଠାରେ
ପ୍ରକୃତ ଭକତ ସେହୁ ଅଖିଳ ସଂସାରେ ।
ନିଜର ଭାବନ୍ତି ଯେହୁ ସକଳ ଜୀବଙ୍କୁ
ସମନ ଆସି ନ ପାରେ କେବେହେଁ ତା ପାଶକୁ ।
ସକଳ ପାତକ ରାଶି ତାର ନାଶ ହୁଏ
କହିଲିଟି ତତ୍ତ୍ୱକଥା ତୁମ୍ଭଙ୍କୁ ନିଶ୍ଚୟେ ।
ଆଉ ମୁଁ ଅଧିକ କି କହିବି ବର୍ତ୍ତମାନ
ଲଜ୍ଜା ପରିତ୍ୟାଗ କରି ସାଧୁ ଯେଉଁ ଜନ ।
ଶ୍ୱାନ ଶୃଗାଳ ବା ଗାଈ ଗର୍ଦ୍ଦଭଙ୍କ ପ୍ରତି
ଭୂମିରେ ପଡ଼ି ସାଷ୍ଟାଙ୍ଗେ ଜଣାଏ ପ୍ରଣତି ।
ସର୍ବଭୂତେ ସମଭାବେ ଜ୍ଞାନ ନ ହୁଅଇ
ଯେତେଦିନ ଏହିରୂପେ ନିଷ୍ଠିନ୍ତେ ରହଇ ।
ତେତେଦିନ ଯାଏ ବାକ୍ୟ ମନବୃତ୍ତି ଦେଇ
ଏହିରୂପେ ଉପାସନା କରିବଟି ଜାଣି ।
ଈଶ୍ୱର ଦୃଷ୍ଟି ସକଳେ ହୋଇବେ କ୍ଷେପଣ
ଯେ ବିଦ୍ୟା ହେବ ତହିଁରେ ମନଦେଇ ଶୁଣ
ସଂଶୟରୁ ମୁକତିକି ଲଭିବ ତକ୍ଷଣ
ନିସ୍ପୃହରୁହିଁ ଉପରତି ଜାଣିବ ସେ ଜନ ।
ଦେହ ବୃତ୍ତି ବାକ୍ୟ ମନ ଦେଇ ଯେଉଁ ଜନ
ସର୍ବଭୂତେ ଆତ୍ମାକୁହିଁ କରେ ଦରଶନ ।
କଳ୍ପ ମଧ୍ୟରେ ତାହାକୁ ସମୀଚୀନ କହି
ସାର କଥା କହିଲିଟି ତୁମ୍ଭେଆଗେ ମୁହିଁ ।
ପୁଣି ଶୁଣ ହେ ଉଦ୍ଧବ ମୋହର ବଚନ
ମୋହର ଧର୍ମରେ ହୁଏ ନିଷ୍କାମ ଯେ ଜନ ।
ଅଣୁ ମାତ୍ର ଧ୍ୱଂସ ତାର ନୁହେ କଦାଚନ
ତାହାର କାରଣ ଏବେ କହୁଅଛି ଶୁଣ ।
ମୋର ଧର୍ମ ଜାଣିବ ହେ ନିର୍ଗୁଣ ଅପାର
ସଂସାର ପ୍ରବଳ ଅଟେ ମାୟା ଯେ ମୋହର ।
ଲୌକିକ ବାସନା ତେଜି କର୍ମଯାକ ସର୍ବ
ଫଳ ଇଚ୍ଛା ତେଜି ସଦା ମୋତେ ସମର୍ପିବ ।
ତହିଁରେ ଯେ ଧର୍ମ ତାର ଶୁଣ ମହାମତି
ତୁମ୍ଭଙ୍କୁ କହିଲି ଏହି ଅପୂର୍ବ ଭାରତୀ ।
ଶୁଣ ହେ ଉଦ୍ଧବ ପୁଣି ବଚନ ମୋହର
ଜ୍ଞାନ ଯୋଗ ବାକ୍ୟ କିଛି କହିବି ଏଥର ।
ଯେଉଁ ଜନ ଏହି ବାକ୍ୟ କର୍ଣ୍ଣରେ ଶୁଣିବ
ସେହି ପ୍ରାଣୀ ସଂଶୟରୁ ନିଷ୍କୃତି ପାଇବ ।
ବେଦରେ ଯା ଅଗୋଚର ତାହା ତୁମ୍ଭଆଗେ
ପରମ ସାଦରେ କହିଲି ମୁଁ ଅନୁରାଗେ ।
ଯେଉଁ ଜନ ଏହି ବାକ୍ୟ କରିବ ଶ୍ରବଣ
ନିଶ୍ଚୟ ବ୍ରହ୍ମ ପ୍ରାପତ ହେବ ସେହି ଜାଣ ।
ମୋର ଭକ୍ତେ ସେବା ଏହା ପ୍ରଦାନ କରିବେ
ମୋଠାରେ ଆସି ସେ ଜନେ ମିଳିତହୋଇବେ
ଶୁଦ୍ଧଚିତ୍ତେ ଶୁଚିମନ୍ତ ହୋଇ ଅନୁକ୍ଷଣ
ଏହି କଥା ଉଚ୍ଚସ୍ୱରେ କଲେଟି ପଠନ ।
ଜ୍ଞାନଆଲୋକେ ଯେଜନ ଦେଖିବେଯେ ମୋତେ
ସେ ପ୍ରାଣୀ ପବିତ୍ର ହେବ ଭୁଲନାହିଁ ଏଥେ ।
ଶ୍ରଦ୍ଧାମନେ ସ୍ଥିରଭାବେ ଶୁଣିବେ ଯେ ଜନ
ଆବଦ୍ଧ ନ ହେବେ କେବେ ସଂସାର କର୍ମେଣ
ହେ ସଖା ଉଦ୍ଧବ ତୁମ୍ଭେ ଶୁଣ ମୋର ଗୀର
ଏବେ ଆତ୍ମଜ୍ଞାନ ତତ୍ତ୍ୱ ଶୁଣିଲ ସତ୍ୱର ।
ଶୋକ ମୋହ ଅପନିତ ହେଲା ସମୁଦାୟ
ଆତ୍ମଜ୍ଞାନ ଅନ୍ତର୍ଗତେ ହୋଇଲା ଉଦୟ ।
ଆଉରି ଶୁଣ ହେ ସଖା ବଚନ ମୋହର
ଦାମ୍ଭିକ ନାସ୍ତିକ ଶଠ ଯେଉଁ ଦୁରାଚାର ।
ଏହା ନ ବରିବ ଦାନ ସେହି ସବୁ ଜନେ
ମୋର ଏକଥାକୁ ତୁମ୍ଭେ ରଖିଥାଅ ମନେ ।
ଶ୍ରଦ୍ଧାବାନ ଶୂଦ୍ର ଆଉ ହରିକାଙ୍କ୍ଷୀ ଗଣେ
ପରମ ପବିତ୍ର ସାଧୁ ଅଟନ୍ତି ଯେମାନେ ।
ଆଉ ଯଦି ଶ୍ରଦ୍ଧାବାନ ପୁତ୍ରଙ୍କୁ ରମଣୀ
ତାହାଙ୍କୁ କରିବ ଦାନ ଆହେ ଭକ୍ତମଣି ।
ସାର ତତ୍ତ୍ୱ କହିଲି ମୁଁ ତୁମ୍ଭ ସନ୍ନିଧାନ
ଚିରଦିନ ତୁମ୍ଭେ ଏହି ତତ୍ତ୍ୱେ ରଖ ମନ ।
ସୂତ ମହର୍ଷି କହନ୍ତି ଶୁଣ ମୁନିଗଣ
ଏହି ଉପଦେଶ ବାଣୀ ଶୁଣି ତତକ୍ଷଣ ।

ଉଦ୍ଧବର ବେନି ନେତ୍ର ଅଶ୍ରୁ ଜଳେ ପୂର୍ଣ୍ଣ
କଣ୍ଠରୁଦ୍ଧ ଏକାବେଳେ ନ ସ୍ଫୁରେ ବଚନ ।
ବେନିକର ଯୋଡ଼ି ତହିଁ ରହେ ହୋଇ ସ୍ଥିର
ପ୍ରେମେ ଆକୁଳ ହୁଅଇ ଉଦ୍ଧବ ସୁଧୀର ।
କ୍ଷଣକ ପରେ ଉଦ୍ଧବ ଧଇର୍ଯ୍ୟ ଧରିଲ
କୃଷ୍ଣ ପାଦପଦ୍ମେ ଆଣି ମଥା ଲଗାଇଲ ।
ଭକ୍ତିଭାବେ ଗଦଗଦ ସ୍ୱରେ କହେ ବାଣୀ
ଏ ଅଧମେ ଯେଉଁ ଦୟାକଲ ଚକ୍ରପାଣି ।
ମାୟା ମୋହ ଅନ୍ଧକାରେ ପଡ଼ିଥିଲି ମୁହିଁ
ତୁମ୍ଭ କୃପାରୁ ଏବେ ତା ଗଲା ଦୂର ହୋଇ ।
ସୂର୍ଯ୍ୟ କିରଣରେ ଯଥା ଶୀତ ଅନ୍ଧକାର
ଭୟ କି ପ୍ରଭାବ କେବେ ହୁଏ ହେ ପ୍ରଭୁର ।
ଆଜ ଏ ଭୃତ୍ୟର ପ୍ରତି ଦୟା ପ୍ରକାଶିଲ
ଜ୍ଞାନମୟ ଦୀପ ମୋତେ ପ୍ରଦାନ ଯେ କଲ ।
ତବ କୃତ ଉପକାର ଜାଣିଛି ଯେ ଜନ
କେବେହେଁ ସେ ନ ଛାଡ଼ଇ ତୁମ୍ଭ ଶ୍ରୀଚରଣ
କେବଣ ମୂଢ଼ ନେଇଛି ଅନ୍ୟର ଆଶ୍ରୟ
ତୁମ୍ଭ ଛଡ଼ା କାହାକୁ ବା ଭଜିବ କି ପ୍ରାୟ ।
ପାଳନ କରିବା ପାଇଁ ଆପଣାର ସୃଷ୍ଟି
ମାୟାବଳେ ମୋର ଚିତ୍ତ ଆହେ ପରମେଷ୍ଠି ।
ସୁଦୃଢ଼ ସ୍ନେହର ପାଶ କରିଛ ବିସ୍ତାର
ପୁଣି ଜ୍ଞାନ ଖଡ଼୍‌ଗେ ତାହା କରିଲେ ସଂହାର
ଆହେ ମହାଯୋଗୀ ମୁହିଁ ଅତି ହୀନମତି
ତବ ଶ୍ରୀଚରଣେ ଯେହ୍ନେ ରହେ ମୋର ମତି
ସଦା ପଦ୍ମପାଦତଳେ ରହୁ ମୋର ମନ
ଏହି ଜ୍ଞାନ ଦିଅ ମୋତେ ଜଗତ ଜୀବନ ।
ଉଦ୍ଧବଙ୍କୁ କହିଲେ ଯେ ପ୍ରଭୁ ଦାମୋଦର
ବଦରିକା ଆଶ୍ରମକୁ ଚଳ ଭକ୍ତବର ।
ପାଇବ ସେଠାରେ ପାଦତୀର୍ଥ ଜଳମାନ
ପବିତ୍ର କରିବ ଅଙ୍ଗ କରଣ ସ୍ନାହାନ ।
ବୃକ୍ଷର ବଳ୍‌କଳ ପିନ୍ଧି ରହିବ ନିଶ୍ଚିନ୍ତେ
ମୁକତହେବ ଅଳକାନନ୍ଦା ଦେଖି ନେତ୍ରେ ।
କରିବ ଭୋଜନ ବନ୍ୟଜାତ ଫଳ ମୂଳ
ଭୋଗଇଚ୍ଛା ନ କରିବ ସେଠାରେ କେବଳ ।
ଗ୍ରୀଷ୍ମ ବରଷା ବା ଶୀତ ବସନ୍ତ ହେମନ୍ତ
ଇତ୍ୟାଦି ସମାନ ଭାବେ ସହିବ ସମସ୍ତ ।
ଶାନ୍ତ ଭାବେ ଏକାଗ୍ରତା କରି ଆଚରଣ
ମୋହର ଅର୍ପିତ ଜ୍ଞାନ ଭାବ ହୃଦୟେଣ ।
ମୋଠାରେ ସର୍ବଦା ମନ ରଖିଣ ଏକାନ୍ତ
ଆଦର ମୋହର ଧର୍ମ କରିବ ପାଳିତ ।
ସତ୍ତ୍ୱ ରଜ ତମଗୁଣ ବାହାରେ ରହିବ
ତାହେଲେ ପରମଗତି ନିଶ୍ଚୟ ଲଭିବ ।
ବଦନ୍ତି ସେ ପୌରାଣିକ ଶୁଣ ମୁନିଗଣ
ସଂସାର ବିନାଶ ଯାକୁ କରିଲେ ସ୍ମରଣ ।
ସେହି କୃଷ୍ଣ ଉଦ୍ଧବଙ୍କୁ କହନ୍ତେ ଏସନ
ଭକତିଭାବେ ଉଦ୍ଧବ ନମି ଶ୍ରୀଚରଣ ।
କୃଷ୍ଣଙ୍କ ପୟରେ ରଖି ଆପଣା ମସ୍ତକ
ଆନନ୍ଦରେ ଝର ଝର ବୁହାଇ ଲୋତକ ।
ଶ୍ରୀକୃଷ୍ଣ ଅର୍ପିତ ରତ୍ନ ପାଦୁକା ଯୁଗଳ
ଯତନରେ ମସ୍ତକରେ ଥୋଇଣ ଚଳିଲା ।
ବାର ବାର ପ୍ରଭୁ ପାଦେ କରି ନମସ୍କାର
ବାହାର ନୋହିଲା ମାତ୍ର ବଚନ ତାଙ୍କର ।
ବଦରିଆଶ୍ରମେ ଯାଇ ତପ ଆଚରିଲ
ଶ୍ରୀହରି ସ୍ୱରୂପ ଲଭି ଶ୍ରୀଅଙ୍ଗେ ମିଶିଲ ।
ଅତ୍ୟନ୍ତ ଅଦ୍ଭୁତ ଗାଥା ଶ୍ରୀହରି ଚରିତ
ଯେଉଁ ଜନ ଶୁଣେ କର୍ଣ୍ଣେ ଲଭଇ ମୁକତି ।
କୃଷ୍ଣ କଥାମୃତ ପାନ କରେ ଯେଉଁ ଜନ
ମୁକତି ଲଭିଣ ପାଏ ବୈକୁଣ୍ଠରେ ସ୍ଥାନ ।
ଏ ସଂସାର ମଧ୍ୟେ ଏକା ହରି ନାମ ସାର
ତାଙ୍କ ବିନା ଭବୁଁ କେ ନ କରିବ ଉଦ୍ଧାର ।
ଏଣୁ କହୁଛି ହେ ମୁନି କରି ହରିଧ୍ୱନି
ହରିନାମେ ଗତି ନାହିଁ ଏ ଭୁବନ ତିନି ।
ଏହା କହି ସୂତ ମୁନି ହୋଇଲେ ମଉନ
ଗୀତ ଛନ୍ଦେ ବିରଚିଲ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୂତ ଶୌନିକ ସମ୍ବାଦେ ଉଦ୍ଧବ
ବ୍ରହ୍ମଜ୍ଞାନ ଲାଭ କଥନଂ ନାମ
ଅଷ୍ଟସପ୍ତତିତମୋଽଧ୍ୟାୟଃ ।

—o—

## ଊନଅଶୀତି ଅଧ୍ୟାୟ
## ବ୍ରହ୍ମଶାପ ହେତୁ ଯଦୁବଂଶ ଧ୍ୱଂସ ବିବରଣ

ଶୌନକ ଉବାଚ

ଶୌନକ ବୋଇଲେ ଶୁଣ ଆହେ ଜ୍ଞାନବାନ
ସକଳ ଶାସ୍ତ୍ରରେ ତୁମ୍ଭେ ଅଟ ଯେ ମହାନ ।
କହ ପରମ ବୈଷ୍ଣବ ଉଦ୍ଧବ ସୁମତି
ଶ୍ରୀକୃଷ୍ଣ ବଚନେ କଲେ ବନ ଯେ ଗତି ।
ତଦନ୍ତେ ଶ୍ରୀ ଜଗନ୍ନାଥ ଦ୍ୱାରିକା ପୁରେ
କେଉଁ କେଉଁ ଲୀଳା କଲେ କୁହନ୍ତୁ ଆମ୍ଭରେ
ବ୍ରହ୍ମଶାପ ହେତୁ ଯଦୁକୁଳ ନରନାରୀ
କପର ଚେଷ୍ଟକଲେ ତାଙ୍କୁ ପ୍ରଭୁ ଦଇତ୍ୟାରି ।
ଆପଣା ବଂଶ କପର କରିଲେ ନିଧନ
ତାହା ସବୁ ବୁଝାଇଣ କୁହ ତପୋଧନ ।

ସୂତ ଉବାଚ

ଏହାଶୁଣି ପୌରାଣିକ ମହାମୁନି ସୂତ
ବୋଇଲେ ଶ୍ରବଣ କର ଆହେ ତପୋବନ୍ତ
ଅତି ବିଚିତ୍ର କଥନ କହୁଅଛୁ ମୁହିଁ
ଅଶୁଭ ଦେଖିଣ ସ୍ୱର୍ଗେ ମର୍ତ୍ତ୍ୟେ ଯଦୁସାଇଁ ।
ଆପଣେ ହରି ସୁଧର୍ମା ସଭାରେ ବସିଲେ
ଯାଦବମାନଙ୍କୁ ରହିଁ କହି ଆରମ୍ଭିଲେ ।
ଶୁଣ ଯଦୁବଂଶୀମାନେ ଏବେ ମୋ ବଚନ
ହୋଇଲା ଦ୍ୱାରକା ପୁରେ ଉତ୍ପାତ ଘଟନ ।
ଯମ ସ୍ୱରୂପଟି ଏହା ଜାଣ ହେ ନିଷ୍ଟୟେ
ଏଣୁ ଏଥି ରହିବାର ଉପଯୁକ୍ତ ନୁହେ ।
ଯଦି ଏ ସ୍ଥାନରେ ଆମ୍ଭେମାନେ ରହିଥିବା
ମହା ବିପଦ ପଡ଼ିବ ଅବଶ୍ୟ ଭୋଗିବା ।
ଏଣୁ ସର୍ବେ ପାଳ ଏବେ ମୋହର ବଚନ
ରମଣୀଏ ଶଂଖୋଦ୍ଧାରେ କରନ୍ତୁ ଗମନ ।
ବାଳ ବୃଦ୍ଧମାନେ ସର୍ବେ ସେହିଠାକୁ ଯିବେ
ପ୍ରଭାସକୁ ଆମ୍ଭେମାନେ ଯିବା ଅବିଳମ୍ବେ ।
ପଶ୍ଚିମ ବାହିନୀ ତହିଁ ନଦୀ ସରସ୍ୱତୀ •
ତହିଁରେ କରିବା ସ୍ନାନ ଶୁଣ ହେ ସଂପ୍ରତି ।
ଉପବାସ କରି ତହିଁ ବ୍ରତ ଆଚରିବା
ଅଭିଷେକ କରି ସର୍ବଦେବଙ୍କୁ ପୂଜିବା ।

ସ୍ୱସ୍ତ୍ୟୟନ ଆଦି କର୍ମ କରି ସମାପନ
ବ୍ରାହ୍ମଣମାନଙ୍କୁ ପରେ କରିବା ଅର୍ଚ୍ଚନ ।
ଅଶୁଭ ନାଶନ ଅଟେ ଏ ବିଧି ସକଳ
ଏଥିରେ ଜାଣିବ ମନେ ନିଷ୍ଟୟ ମଙ୍ଗଳ ।
କୃଷ୍ଣଙ୍କ ମୁଖୁଁ ଏକଥା କରନ୍ତେ ଶ୍ରବଣ
ଯଦୁବଂଶ ମଧ୍ୟେ ଥିଲେ ଯେତେ ବୃଦ୍ଧାଗଣ ।
ପ୍ରଭାସକୁ ଯିବାପାଇଁ ଉଦଯୋଗ କଲେ
ନଉକା ଯାନେ ସକଳେ ଆନନ୍ଦେ ଚଳିଲେ
ଆରପାରେ ଯାଇ ତହୁଁ ରଥ ଆରୋହଣେ
ପ୍ରଭାସ ଚଳିଗଲେ ଯଦୁବଂଶୀମାନେ ।
କେତେତହେଁ କବେନେ ଯେଣ୍ଟ ପ୍ରଭାସେ ମିଳିଲେ
ବିଧିମତେ ସମୁଦାୟ କାର୍ଯ୍ୟମାନ କଲେ ।
କୃଷ୍ଣ ଆଜ୍ଞାମତେ କାର୍ଯ୍ୟ ସାରିଲେ ସକଳେ
ଦୈବ ବିଡ଼ମ୍ବନ ଯାହା ଶୁଣ ମୁନିକୁଳେ ।
ସମସ୍ତଙ୍କ କୁପ୍ରବୃତ୍ତି ହେଲା ତତକ୍ଷଣେ
ବିଶେଷରେ ସୁରାପାନ କଲେ ଯଦୁଗଣ ।
ସେହି ମଦ୍ୟପାନେ ସର୍ବେ ହେଲେ ତହିଁ ମତ୍ତ
କୃଷ୍ଣଙ୍କ ମାୟାରେ ପଡ଼ି ହେଲେ ବିମୋହିତ
ଏକାବେଳେ ବୀରମାନେ ହାରିଲେ ଚେତନା
ହେଲା ପରସ୍ପରେ ଅତି ବିରୋଧ ଘଟଣା ।
ତଦନ୍ତେ ପ୍ରବଳ କ୍ରୋଧ ଯଦୁଗଣ ହେଲେ
ବଧିବାକୁ ପରସ୍ପରେ ମନ ବଳାଇଲେ ।
ଧନୁଶର କୁନ୍ତ ଭାଲ ଆଦି ଠେଙ୍ଗାବାଡ଼ି
ଧଇଲେ ସକଳେ ହାତେ ସ୍ନେହଭାବ ଛାଡ଼ି ।
ଯୁଦ୍ଧ କରିବାକୁ ବାହାରିଲେ ତତକ୍ଷଣେ
ବାରଣ ନକଲେ କେହି ସେତେବେଳେ ଜଣେ
ପ୍ରଭାସ କୂଳରେ ହେଲା ବିଷମ ସମର
ଅତି ଭୟଙ୍କର ସେହି ଯୁଦ୍ଧ ଘୋରତର ।
ଯଦୁବଂଶଧର ସର୍ବେ ହେଲେ ବିଶୃଙ୍ଖଳ
ମହାକ୍ରୋଧେ ଯୁଦ୍ଧ କଲେ ହୋଇଣ ଚଞ୍ଚଳ
କେହି ଅଶ୍ୱେ କେହି ଗଜେ କେହି ରଥପରେ
ଆପଣା ଆପଣା ମଧ୍ୟେ ମାତିଲେ ସମରେ ।
ବନେ ମତ୍ତହସ୍ତୀ ଯେସନେ ଦନ୍ତର ଘର୍ଷଣ
ସେହିମତେ କଲେ ସର୍ବେ ବାଣ ବରଷଣ ।
ବିଷମ ସଂଗ୍ରାମେ ସେ ଯାଦବେ ପ୍ରବର୍ତ୍ତିଲେ
ଆପଣାର ବୋଲି ଆଉ କେହି ନ ମାନିଲେ

ପୁତ୍ରମାନେ ପିତା ସଙ୍ଗେ କଲେ ଘୋର ରଣ
ଭାଇରେ ଭାଇରେ ହେଲେ ହଣାହଣି ପୁଣ ।
କୃଷ୍ଣ ମାୟାରେ ସକଳେ ବିମୋହିତ ହୋଇ
ଧରାଧରି ମରାମରି ହୋନ୍ତି ମିଳି ତହିଁ ।
ନଦାରୁଣ ଘାତେ ସର୍ବେ ହେଲେ ପିଟାପିଟି
ଚଡ଼ାଚଡ଼ ହୁଅନ୍ତି ସେ ଯେନ ଠେଙ୍ଗା ଯଷ୍ଟି
ମିତ୍ରତା ଛାଡ଼ି ସେମାନେ ଆପଣା ଭିତରେ
ହାଣ ଗୋଳ ଲଗାଇଲେ ସର୍ବେ ପରସ୍ପରେ
ସେହି ଯେ ବିଷମ ଯୁଦ୍ଧ ଅତି ଭୟଙ୍କର
ହେନେ କାଳେ ଦେଖା ନାହିଁ ଏମନ୍ତ ସମର
ଭଣଜା କରଇ ଯୁଦ୍ଧ ମାତୁଳ ସହିତ
ପୁତୁରା ଯୁଝଇ ଆଣ୍ଟେ ଖୁଡ଼ୁତାର ସାଥ ।
ଅଜା ସଙ୍ଗେ ନାତି ଯୁଝେ ମହାମତ୍ତ ଭରେ
ଏହିପରି ଘୋର ଯୁଦ୍ଧ ଆପଣା ଭିତରେ ।
ବାଣଶୂନ୍ୟ ତୂଣ ଆଉ ଭଗ୍ନ ଶରାସନ
ସର୍ବେ ଅସ୍ତ୍ରଶୂନ୍ୟ ହୋଇ ଗଲେ ତତକ୍ଷଣ ।
ଅସ୍ତ୍ରଶୂନ୍ୟ ତୂଣ ଯହୁଁ ନୟନେ ଦେଖିଲେ
ପ୍ରଭାସ କୂଳରୁ ଏରକାକୁ ଉପାଡ଼ିଲେ ।
ଏରକା ବନର ତୃଣ ବଜ୍ର ପରି ଜାଣ
ଯେସନେକ ଲୌହଦଣ୍ଡ ଅଟେ ତେହ୍ନେ ବାଣ
ସେହି ତୃଣକୁ ଉପାଡ଼ି ପରସ୍ପର ମଧ୍ୟେ
ଏକକୁ ଆରେକ ତହିଁ ପିଟିଲେ ବିବାଦେ ।
ଅତି ଆଣ୍ଟେ ଏରକା ଯେ କରନ୍ତି ପ୍ରହାର
ଏକା ପ୍ରହାରେ ଛାଡ଼ଇ ଜୀବନ କାହାର ।
ଖଣ୍ଡା ଦାଢ଼ ପରି ଅଟେ ସେ ଏରକା ଧାର
ସେହି ଧାରେ କାଟି ହୋଇ ମରଯାନ୍ତି ବୀର ।
ଅତ୍ୟନ୍ତ ବିଚିତ୍ର କଥା ଶୁଣ ମୁନିଜନ
ଏ ସମସ୍ତ ଲୀଳା ଅଟେ କୃଷ୍ଣଙ୍କର ଜାଣ ।
ଈଶ୍ୱରଙ୍କ ମାୟା ଅବା କଏ ବୁଝିପାରେ
ଯଦୁକୁଳ ବିମୋହିତ ତାହାଙ୍କ ମାୟାରେ ।
ସେ ଯାଦବେ ଅହଙ୍କାରେ ହୋଇ ଉନମତ
ଧାଇଁଲେ ରାମକୃଷ୍ଣଙ୍କୁ କରିବାକୁ ହତ ।
ଶତ୍ରୁ ବିଚାରିଣ ତାଙ୍କୁ ବିନାଶିବା ପାଇଁ
ଧାମନ୍ତି ସକଳ ଯଦୁ ଏକ ମେଳ ହୋଇ ।
ତିଳେମାତ୍ର ଜ୍ଞାନ ଆଉ ନଥାଏ କାହାର
ବିଭୋଳ ହୋଇଥାନ୍ତି ସର୍ବେ ଖାଇ କାଦମ୍ବର ।

ତାହାଦେଖି ରାମକୃଷ୍ଣ ଅତି କ୍ରୋଧ ହେଲେ
ଲୌହସମ ତୃଣ କରେ ଧରି ବୁଲାଇଲେ ।
ଏକା ଏକା ପ୍ରହାରକେ ହଜାର ହଜାର
ବୀରଙ୍କୁ ମାରି ଶୁଆଇ ଦେଲେ ଭୂମିପର ।
ବେଣୁଜାତ ଅଗ୍ନି ଯେହ୍ନେ ବନକୁ ଦହଇ
ସେହିମତେ ଅହଂକାରୀ ଯଦୁଗଣେ ହୋଇ ।
କୃଷ୍ଣଚନ୍ଦ୍ରଙ୍କ ମାୟାରେ ହୋଇଲେ ମୋହିତ
ପୁଣି କୃଷ୍ଣେ ମାରିବାକୁ ଧାଇଁଲେ ତୁରିତ ।
ଦେଖି କ୍ରୋଧଭରେ ରାମକୃଷ୍ଣ ଯେ ତାହାଙ୍କୁ
ବିନାଶ କଲେ ନ ବାରି ପର ଅପରକୁ ।
ପୁଣି ଅପୂର୍ବ କାହାଣୀ ମନ ଦେଇ ଶୁଣ
ଏମନ୍ତେ ସେ ଯଦୁକୁଳ ଧ୍ୱଂସ ହେଲେ ଜାଣ
କେବଳ କୂଳରେ ମାତ୍ର କେଶବ ରହିଲେ
ମନେ ମନେ ଜନାର୍ଦ୍ଦନ ବସି ଚିନ୍ତାକଲେ ।
ଅବନୀ ମସ୍ତକ ଭର ଘୁଞ୍ଚିଲା ଏଥର
ମହାବଂଶ ଯଦୁମାନେ ହୋଇଲେ ସଂହାର ।
ପ୍ରଭାସ କୂଳରେ ବଳରାମ ଯେ ବସିଲେ
ଈଶ୍ୱର ନାଶିବା ପାଇଁ ଘୋର ତପ କଲେ
ଏମନ୍ତେ ଆପଣା ବଂଶ କରନ୍ତେ ବିନାଶ
ପୃଥିବୀର ଭାରଭାର ହୋଇଲା ଉଶ୍ୱାସ ।
ଜ୍ୟେଷ୍ଠଭ୍ରାତ ବଳରାମ ମୁଦିଣ ନୟନ
ବାହ୍ୟଜ୍ଞାନ ହୃଦୟରୁ ତେଜିଣ ବହନ ।
ପ୍ରଭାସ କୂଳରେ ବସି ମହାଯୋଗ କଲେ
ପରମ ପୁରୁଷ ପାଦେ ମନ ନିବେଶିଲେ ।
ଆପଣା ଆତ୍ମା ମିଶାଇ ପରମ ଆତ୍ମାରେ
ଇହ ଲୋକ ଛାଡ଼ିଗଲେ ମହାଶୂନ୍ୟ ପୁରେ ।
ତାହାଙ୍କ ନିର୍ବାଣ କୃଷ୍ଣ କରି ଦରଶନ
ଭାବିଲେ କପରି ମୁହିଁ ଚଳିବି ବହନ ।
ଏମନ୍ତେ ବିଚାରି ମନେ ଅଶ୍ୱତ୍ଥ ମୂଳରେ
ବସିଲେ ଜଗତନାଥ ଯିବାକୁ ସ୍ୱପୁରେ ।
ଅପୂର୍ବ ସୁନ୍ଦର କାନ୍ତି ହରେ ଜନମନ
ଆଲୋକିତ କରି ଦେଲେ ସେହୁ ସାରାବନ ।
ସେ ରୂପେ ବର୍ଣ୍ଣିବେ ଶକ୍ତି ଅଛି ବା କାହାର
ସ୍ୱୟଂ ଧାତା ହାରିଯିବେ ମୁଁ ତ ଅତି ଛାର ।
କମଳ ନୟନ ଯୁଗ ମନୋହର ଅତି
ଶଙ୍ଖ ଚକ୍ର ଗଦାପଦ୍ମ ଶ୍ରୀକରେ ଶୋଭନ୍ତି ।

ସର୍ବାଙ୍ଗରେ ଶୋଭାପାଏ ରତ୍ନ ଅଳଙ୍କାର
ଗଳେ ବର୍ଣ୍ଣମାଳା ଦୋଳେ ଅତି ଚମତ୍କାର
ଦ୍ରବ୍ୟରେ ଗୋପନ ଯଥା ହୁଏ ହୁତାଶନ
ତେମନ୍ତେ ରୂପ ପ୍ରକାଶି ଜଗତ ଜୀବନ ।
ଧାରଣ କରିଣ ତହୁଁ ମଉନ ଭାବକୁ
ଚିନ୍ତାମଗ୍ନ ହୋଇ ନିଜେ ସ୍ମରିଲେ ନାମକୁ
ଏଥୁଅନ୍ତେ ଯାହାହେଲା ଶୁଣ ଦେଇମନ
ଜରା ଶବର ନାମରେ ଥିଲା ଏକ ଜଣ ।
ମୂଷଳର ଯେଉଁଅଂଶ ଯଦୁବୀର ମାନେ
ସାଗରକୁ ଫିଙ୍ଗି ଥିଲେ ହେୟ ଭାବି ମନେ
ସେହି ଲୌହରେ ଶବର ତିଆରିଣ ଶର
ମୃଗ ଖୋଜି ଖୋଜି ଆସି ମିଳିଲା ସେଠାର ।
ଲୋହିତ ଚରଣ ଯୁଗ ମୃଗ କର୍ଣ୍ଣ ମଣି
ବାଣେକ ବିନ୍ଧି ସେ ବ୍ୟାଧ ଧାଇଁଲା ତକ୍ଷଣି ।
ଦେଖିଲା ପରମବ୍ରହ୍ମ ବ୍ରହ୍ମାଣ୍ଡ ଗୋସାଇଁ
ଚତୁର୍ଭୁଜ ଧାରୀ ଦେଖି ମହାଭୟ ପାଇ ।
ପ୍ରଭୁଙ୍କ ଅଭୟ ପାଦେ ଲଗାଇଣ ଶିର
ସାଷ୍ଟାଙ୍ଗେ ଭୂମିରେ ଶୋଇ ବୋଇଲା ସେଗିର
ହେ ଦେବ ମଣିମା ମୁହିଁ ମହା ପାପୀଜନ
ଅଟେ ଅତି ଦୁରାଚାର ଆହେ ନାରାୟଣ ।
ଆହା ମୁଁ କି ଅପରାଧ କଲି ଶ୍ରୀଚରଣେ
ବୁଡ଼ିଲି ମହା ପାପରେ ନ ଜାଣିବା ପଣେ ।
ନ ବୁଝି ଏ ମନ୍ଦକର୍ମ କରିଛି ଗୋସାଇଁ
ଏଣୁ ଦୋଷ କ୍ଷମାକର ଜଗତର ସାଇଁ ।
ପରମ ଦୟାଳୁ ହରି ଶରଣ ରକ୍ଷଣ
ଭକତ ବତ୍ସଳ ତୁମ୍ଭେ ପତିତ ପାବନ ।
ମୋ ଅପରାଧ କ୍ଷମିବା ଉଚିତ ତୁମ୍ଭର
ଅଜ୍ଞାନ ତିମିର ଘୁଞ୍ଚେ ସ୍ମରଣେ ଯାହାର ।
ସେହି ପରଂବ୍ରହ୍ମ ତୁମ୍ଭେ ହେ କମଳାପତି
ଅକାରଣେ ହିଂସା କଲି ମୁଁ ଯେ ତବ ପ୍ରତି ।
ଏଣୁ ମୋହର ପ୍ରାର୍ଥନା ଶୁଣ ନାରାୟଣ
ମୁଁ ପାପୀ ଲୁବ୍‌ଧକ ମୋର ସଂହାର ପରାଣ
ତହିଁରେ ହୋଇବ ମୋର ସୁଜ୍ଞାନ ଉଦୟ
ଏ କର୍ମରେ ଆଉ ମନ ନ ବଳେ ଯେ ପ୍ରାୟ
ବ୍ରହ୍ମା ଆଦି ଅନନ୍ତ ଯା ମାୟାରେ ସଙ୍କିତ
ରୁଦ୍ରାଦି ଦେବ ଯହିଁରେ ହୋନ୍ତି ବିମୋହିତ ।
ସେମାନେ ଚିହ୍ନି ପାରନ୍ତି ନାହିଁ ହେ ତୁମ୍ଭରେ
ତୁମ୍ଭ ମାୟା ମୁଁ ଜାଣିବି ଅବା କି ପ୍ରକାରେ ।
ଅତି ନୀଚ ଜାତି ମୁଁ ତ ଆହେ ଭଗବାନ
ତୁମ୍ଭ ମାୟାରେ ମୋହିତ ଅଛି ଅନୁକ୍ଷଣ ।
ଶ୍ରୀହରି ବୋଇଲେ ତହୁଁ ଲୁବ୍‌ଧକ ବଚନେ
ଏହା ସବୁ କହି କିମ୍ପା ଭୟ କରୁ ମନେ ।
ଉଠ ଉଠ ହେ ଶବର ଘେନ ମୋ ବଚନ
ମୋର ଇଚ୍ଛା ମତେ କାର୍ଯ୍ୟ ହୋଇଲା ଘଟନ
ଯାହା ମୋର ଅଭିଳାଷ ତାହା ଘଟିଛଇଁ
ଏଥିରେ ତୋହର ଦୋଷ କିଛିମାତ୍ର ନାହିଁ ।
ମୋ ଆଜ୍ଞାରେ ତୋର ହେଲା ପାପବିମୋଚନ
ସାଧୁ ସଙ୍ଗେ ବୈକୁଣ୍ଠକୁ କର ତୁ ଗମନ ।
କୃଷ୍ଣଙ୍କ ବଚନେ ବ୍ୟାଧ ଆନନ୍ଦିତ ହେଲା
ପ୍ରଦକ୍ଷିଣ କରି ପ୍ରଭୁ ପାଦେ ପ୍ରଣମିଲା ।
ତଦନ୍ତେ ବୈକୁଣ୍ଠେ ଗଲା ଦିବ୍ୟ ବିମାନରେ
ଯଥାର୍ଥ କଥା କହିଲି ମୁଁ ତୁମ୍ଭ ଆଗରେ ।
ଏ ଉତ୍ତାରେ ସମାଚାର ଶୁଣ ହେ ସୁମନ୍ତି
ଦାରୁକ ନାମେ ଯେ ଥିଲା କୃଷ୍ଣଙ୍କ ସାରଥି ।
ନିର୍ଜନରେ ଶ୍ରୀକୃଷ୍ଣଙ୍କୁ ଖୋଜି ଖୋଜି ଜାଣି
ଚିହ୍ନି ସେହିସ୍ଥାନେ କିଛି କଲା ଅନୁମାନ ।
ତୁଳସୀ ସୁଗନ୍ଧ ତୁଲେ ବହଇ ପବନ
ସେ ଗନ୍ଧ ଆଘ୍ରାଣେ ତହୁଁ ଦାରୁକ ଯେସନ
ପଥ ଅନୁସରି ବେଗେ ସେ ଗମନ କଲା
ଅଶ୍ୱତ୍ଥ ମୂଳରେ ନାରାୟଣଙ୍କୁ ଦେଖିଲା ।
ମହା ତେଜଶାଳୀ ହରି ପ୍ରକାଶିତ ତହିଁ
ଅସ୍ତ୍ରେ ବେଷ୍ଟିତ ହୋଇଛନ୍ତି ଯଦୁସାଇଁ ।
ଦରଶନେ ଯେ ଦାରୁକ ସ୍ନେହରେ ମଜ୍ଜିଲା
ତତକ୍ଷଣେ ରଥରୁ ସେ ଡେଇଁଣ ପଡ଼ିଲା ।
ଅଶ୍ରୁଜଳେ ପୂର୍ଣ୍ଣ ନେତ୍ର ପଡ଼େ ପାଦତଳେ
କହି ଲାଗିଲା କୃଷ୍ଣଙ୍କ ଚରଣ କମଳେ ।
ହେ ଦେବ ଶ୍ରୀ ନାରାୟଣ ଜଗତ ଠାକୁର
ନ ଦେଖି ଏ ପାଦପଦ୍ମ ରହେ କି ପ୍ରକାର ।
ନୟନ ହୋଇଛି ଅନ୍ଧ ତବ ଅଦର୍ଶନେ
ଯଥା ଅମାନିଶା ନାଥ ଚନ୍ଦ୍ରମା ବିହୀନେ ।
ଶାନ୍ତ ନ ପାଏ ମୁଁ ହୃଦେ ମାନସ ଚଞ୍ଚଳ
ଏମନ୍ତେ ଦାରୁକ କାନ୍ଦି ହୁଅଇ ବିକଳ ।

ଦାରୁକ ଏମନ୍ତ କେତେ ବିନତୀ ହୋଇଲା
ସେହିକାଳେ ବିଷ୍ଣୁ ରଥ ଆସି ପହଞ୍ଚିଲା ।
ଶ୍ୱେତ ଅଶ୍ୱ ଯୋଗ୍ୟ ରଥ ଗରୁଡ଼ ବାହନେ
ଧ୍ୱଜର ସହିତେ ତାହା ଉଠିଲା ଗଗନେ ।
କୃଷ୍ଣ ଅସ୍ତ୍ର ସବୁ ତାର ସଙ୍ଗରେ ଚଳିଲା
ଦର୍ଶନେ ଦାରୁକ ଅତି ଆଶ୍ଚର୍ଯ୍ୟ ମଣିଲା ।
ତଦନ୍ତେ କୃଷ୍ଣ ଦାରୁକେ କରି ସମ୍ବୋଧନ
ବୋଇଲେ ମଧୁର ସ୍ୱରେ ସଧୀରେ ବଚନ ।
ଆହେ ସୂତ ଶୀଘ୍ରେ ତୁମ୍ଭେ ଦ୍ୱାରକାକୁ ଯାଅ
ଜ୍ଞାତଙ୍କ ନିଧନ ବାର୍ତ୍ତା ସଭିଙ୍କୁ ଜଣାଅ ।
ନିର୍ବାଣ ପାଇଲେ ଏଥେ ଦେବ ସଙ୍କର୍ଷଣ
ମୋର ଅନ୍ତର୍ଦ୍ଧାନ ହେବା କରୁଛ ଦର୍ଶନ ।
ଏ ସବୁ ବାରତା ତୁମ୍ଭେ କହି ବନ୍ଧୁଗଣେ
ଆଉ ଯେତେ ଛନ୍ତି ସବୁ ଆତ୍ମୀୟ ସ୍ୱଜନେ ।
ନ ରହିବ ସେମାନଙ୍କୁ ପୁରୀ ଦ୍ୱାରାବତୀ
ସମୁଦ୍ର ଗ୍ରାସିବ ବେଗେ ଜାଣ ମହାମତି ।
ସମୁଦ୍ର ଜଳେ ଦ୍ୱାରକା ଭୁବନ ବୁଡ଼ିବ
ଏହି କଥା ବନ୍ଧୁ ବର୍ଗମାନଙ୍କୁ କହିବ ।
ଆଉରି ଏକଇ କଥା ଶୁଣ ମନଦେଇ
ମୋର ପିତାମାତା ପତ୍ନୀ ସହିତେ ସବୁହିଁ ।
ବୀର ଅରଜୁନଙ୍କର ନିକଟେ ରହିବେ
ସକଳେ ତା ସଙ୍ଗେ ଇନ୍ଦ୍ରପ୍ରସ୍ଥକୁ ଚଳିବେ ।
ତୁମ୍ଭେ ମୋହର ଧର୍ମରେ ହୋଇଣ ଦୀକ୍ଷିତ
ଅନ୍ତିମେ ପରମ ପଦ ହୋଇବ ପ୍ରାପତ ।
ଗୁପତ ବଚନ ଏକ କହୁଅଛୁ ଶୁଣ
ଏ ମାୟା ଶରୀର ସିନା ହୋଇଲା ମରଣ ।
କିନ୍ତୁ ସର୍ବତ୍ର ବିରାଜ କରିଅଛୁ ମୁହିଁ
ଜଳ ସ୍ଥଳ ଆକାଶରେ ଅଛଇଁ ଯେ ରହି ।
ଯେ ମୋତେ ଯେମନ୍ତ ଭାବେ କରିବ ଭଜନ
ତେମନ୍ତ ସ୍ୱରୂପ ସେହୁ କରିବ ଦର୍ଶନ ।
ଯାଅ ହେ ଦାରୁକ ଆଉ ବିଳମ୍ବ ନ କର
କହିବ ମୋ ବୃଦ୍ଧ ପିତା ମାତାଙ୍କୁ ଏ ଗିର ।
ସେମାନେ କ୍ରନ୍ଦନ ନ କରିବେ ମୋର ପାଇଁ
ସର୍ବଦା ତାହାଙ୍କ ପାଶେ ରହିଅଛୁ ମୁହିଁ ।
ଯଥା ସର୍ପ ତା ଶରୀରୁ ଛଡ଼ାଇଲେ କାତି
ଅଧିକ ଜାଜ୍ୱଲ୍ୟମାନ ବିକାଶଇ ଜ୍ୟୋତି ।
ତେମନ୍ତ ଭାବେ ଅକ୍ଷମ କାୟ ତେଜି ଜନ
ନୂତନ ଘଟେ ଆଶ୍ରୟ କରଇ ଯାଇଣ ।
ମୁହିଁ ମଧ୍ୟ ଏ ଶରୀର ଗୋଟି ପରିହରି
ଆନ ଜନମରେ ପୁଣ ହୋଇବ ତାଙ୍କର ।
ଏମନ୍ତ କହିଲେ ଯହୁଁ ପ୍ରଭୁ ଭଗବାନ
ଦାରୁକ ସାଷ୍ଟାଙ୍ଗେ ନମି କରିଣ କ୍ରନ୍ଦନ ।
ଅତ୍ୟନ୍ତ ଦୁଃଖିତ ମନେ ତହୁଁ ବାହୁଡ଼ିଲା
ଦ୍ୱାରାବତୀ ନଗ୍ରେ ଯାଇ ପ୍ରବେଶ ହୋଇଲା ।
ଏ ବ୍ରହ୍ମ ପୁରାଣ ପରଂବ୍ରହ୍ମଙ୍କ ଆଖ୍ୟାନ
ଶ୍ରଦ୍ଧା ଭକତିରେ ପାଠ କରେ ଯେଉଁଜନ ।
ମାନବ ଜନମ ତାର ସାର୍ଥକ ହୁଅଇ
କାଳେକାଳେ ସୁଖେ ଚଳି ପରେ ସ୍ୱର୍ଗେ ଯାଇ
ସ୍ୱୟଂ ବିଷ୍ଣୁ ଅବତାରୀ ଯେଉଁ ବ୍ୟାସଦେବ
ଏ ଚରିତ ତାହାଙ୍କର ଶ୍ରୀମୁଖୁଁ ଉଦ୍ଭବ ।
ପରୀକ୍ଷିତଙ୍କର ଆଗେ ତାହାଙ୍କ ନନ୍ଦନ
ଗଙ୍ଗାତୀରେ କରିଥିଲେ ଏହାକୁ ବଖାଣ ।
ମୁହିଁ ନବ ମୁନିଙ୍କର ମେଳେ ତହିଁଥିଲି
ସକଳ ମାନସେ ରଖି ତୁମ୍ଭରେ କହିଲି ।
ଆଉ ଯାହା କିଛି ଅଂଶ ମାତ୍ର ଅଛି ରହି
ଅପର ଗ୍ରନ୍ଥରେ ତାହା ଶେଷ କରିବଇଁ ।
ଏହା କହି ସୂତ ମୁନି ହୋଇଲେ ମଉନ
ଶୁଣି ମୁନିଗଣଙ୍କର ନେତ୍ରୁ ବହେ ବନ ।
ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଦେହ ତ୍ୟାଗ ବିବରଣ
କର୍ଣ୍ଣପଥେ ଶୁଣି ମୂକ ପ୍ରାୟ ତପିଗଣ ।
ବସିଲେ ବଦନ ପୋତି ଊର୍ଦ୍ଧ୍ୱକୁ ନ ଚାହିଁ
ତୁଣ୍ଡରୁ ମାତ୍ରକ କାର ବାକ୍ୟ ନ ସ୍ଫୁରଇ ।
ସତେକି ଶରୀର ମଧ୍ୟେ ନାହିଁ ତାଙ୍କ ପ୍ରାଣ
ହା କୃଷ୍ଣ ହା କୃଷ୍ଣ ପ୍ରଭୁ ଶରଣ ରକ୍ଷଣ ।
ଅଧମ ଜନର ଦୁଃଖ ଦୂରିଭୂତ କର
ଅନ୍ତିମ କାଳକୁ ସାହାହୁଅ ଚକ୍ରଧର ।
ଏତିକି ମାତର ଦାସି କରେ ନିବେଦନ
କ୍ଷେତ୍ର ମୋହନକୁ ଥରେ ଦିଅନ୍ତୁ ଦର୍ଶନ ।
ଇତି ଶ୍ରୀବ୍ରହ୍ମ ପୁରାଣେ ସୂତ ଶୌନକ ସମ୍ବାଦେ
ଯଦୁବଂଶ ଧ୍ୱଂସ କଥନଂ ନାମ ଊନ-
ଅଶୀତିତମୋଽଧ୍ୟାୟଃ ।

—*—

## ଶ୍ରୀକୃଷ୍ଣଙ୍କର ବୈକୁଣ୍ଠ ଗମନ ବାର୍ତ୍ତା ପାଇ ଚିନ୍ତାମଗ୍ନା ଆଦି ପରିଜନମାନଙ୍କର ଖେଦ ଓ ଦେହ ତ୍ୟାଗ

ଶୁଣନ୍ତୁ ବିବୁଧ ଜନେ ମନ କର୍ଣ୍ଣ ଦେଇ
ଯାହା ଶ୍ରବଣରେ ହୃଦ ଅସ୍ଥିର ହେବଇଁ ।
ସେହି ବ୍ରହ୍ମ ପୁରାଣର ଶେଷ କଥାମାନ
ବିରସ ମନରେ ସୁତ କରିଲେ ବୟାନ ।
ନୟନରୁ ଅବିରତ ଅଶ୍ରୁ ବିଗଳିତ
ଗାଇବା ବେଳରେ କଣ୍ଠ ହୁଅଇ ପ୍ଲାବିତ ।
ଚଉପାଖେ ମୁନିମାନେ ଘେରି ବସିଥାନ୍ତି
ସଭିଙ୍କ ମନ ବିରସ ମୁଖଥାନ୍ତି ପୋତି ।
ବୋଇଲେକ ସୁତମୁନି ତପିଙ୍କୁ ଅନାଇଁ
ଘଟ ତେଜିବା ପୂର୍ବରୁ ବ୍ରହ୍ମାଣ୍ଡ ଗୋସାଇଁ ।
ସ୍ୱର୍ଗ ଅମର ମଣ୍ଡଳେ ପଡ଼ିଲା ଚହଳ
ବାହାରିଲେ ଦରଶନ ଲାଗି ସୁରକୁଳ ।
ବ୍ରହ୍ମା ସାବିତ୍ରୀଙ୍କୁ ଘେନି ହଂସ ବାହନରେ
ବାହାର ହୋଇଲେ ବିଷ୍ଣୁ ଦର୍ଶନ ଆଶାରେ
ଶଚୀ ସଙ୍ଗତରେ ଇନ୍ଦ୍ର ଆଗମନ କଲେ
ବୃଷଭ ବାହନେ ଶିବ ପାର୍ବତୀ ଚଳିଲେ ।
ବରୁଣ କୁବେର ଯମ ଧର୍ମ ସହିତରେ
ସକଳ ଅମରଗଣ ଚଳିଲେ ସେଠାରେ ।
ରମ୍ଭା ମେନକା ଉର୍ବଶୀ ଘୃତାଚୀ ସହିତେ
ତିଲୋତ୍ତମା ଆଦି ଅଷ୍ଟଅପ୍ସରାଦି ଯେତେ ।
ବିବିଧ ବେଶେ ସଜ୍ଜିତ ହୋଇଣ ଚଳିଲେ
ଗନ୍ଧର୍ବେ ତାଳ କଂସାଳ ଧରି ବାହାରିଲେ ।
ପୁଣି ଚନ୍ଦ୍ର ସୂର୍ଯ୍ୟ ସହ ଦଶଦିଗପାଳ
ବିଷ୍ଣୁଙ୍କ ଦର୍ଶନ ଲାଗି ଚଳିଲେ ତତ୍କାଳ ।
ଯକ୍ଷ ରକ୍ଷ ବିଦ୍ୟାଧର ସିଦ୍ଧ ମୁନିଗଣ
ଗମନ କଲେ ବ୍ରାହ୍ମଣମାନଙ୍କୁ ଘେନିଣ ।
ପିତୃଗଣମାନେ ତାଙ୍କ ସଙ୍ଗରେ ଚଳିଲେ
ଏରକା ବନ ସନ୍ନିଧେ ଆକାଶେ ରହିଲେ ।
ଦେଖିଲେ ଶିଆଳୀଲତା ମୂଳେ ନାରାୟଣ
ବିଜେ କରିଛନ୍ତି ଶର ଲାଗିଛି ଚରଣ ।
ସମ୍ମୁଖ ଭାଗରେ ଉଭା ହୋଇଅଛି ପାର୍ଥ
ବେନି କରଯୋଡ଼ି ବ୍ୟାଧ ହୁଏ କୃତ୍ୟ କୃତ୍ୟ
ମହାବ୍ରହ୍ମେ ପରଂବ୍ରହ୍ମ କରିଛନ୍ତି ଲୟ
ମାୟାରେ ନୟନୁ ଅଶ୍ରୁ ଗଳେ ଅତିଶୟ ।
ଆବର ଅତି ବ୍ୟାକୁଳ ହୁଅନ୍ତି ମାଧୋଇ
କହନ୍ତି ହେ ପାର୍ଥ ବହୁ କଷ୍ଟ ଭୋଗୁଛଇଁ ।
ଆସ ଆସ ସଖା ଟିକେ ପାଶକୁ ମୋହର
ଆଉଁସି ଦିଅ ହେ ବ୍ୟଥା ହୋଇଯାଉ ଦୂର ।
ଯେତେମତେ ଡାକୁଛନ୍ତି ଜଗତ ଜୀବନ
ନ ଯାନ୍ତି ପାଶକୁ ତାହାଙ୍କର ଅରଜୁନ ।
ଅର୍ଜୁନ ନିମନ୍ତେ କଳେବର ନ ତେଜିଣ
କଲବଲ ହେଉଥାନ୍ତି ଜଗତ ଜୀବନ ।
ସମ୍ପୂର୍ଣ୍ଣ କଳା ନ ନେଇ କେଉଁ ପରକାରେ
ଯିବେ ଅବା ଜଗନ୍ନାଥ ବଇକୁଣ୍ଠ ପୁରେ ।
ଯେ ହେତୁ ଦ୍ୱିତୀୟ କୃଷ୍ଣ ଅଟନ୍ତି ଅର୍ଜୁନ
ଶ୍ରୀ ବିଷ୍ଣୁଙ୍କ ଅଂଶେ ହୋଇଛନ୍ତି ଅବତୀର୍ଣ୍ଣ ।
ତେଣୁ କଳା ନେବାପାଇଁ ସବ୍ୟସାଚୀଠାରୁ
ଡାକୁଥାନ୍ତି କୌଶଳରେ ଜଗତର ଗୁରୁ ।
ତାହାଙ୍କ ପାଶକୁ ପାର୍ଥ ଯିବା ସମୟରେ
ଧର୍ମରାଜ ବାରବାର କହିଛନ୍ତି ତାରେ ।
ସାବଧାନ କରୁଅଛି ଆହେ ଅରଜୁନ
ନ ଛୁଇଁବୁ କଦାପିରେ ବାବୁ ଶ୍ୟାମଘନ ।
ଛୁଇଁଦେଲେ ତୋର ବୀରପଣ ସରିଯିବ
ଚଳିବା ପାଇଁକି ସୁଧା ଶକ୍ତି ନ ରହିବ ।
ସେହି କଥା ପାର୍ଥ ବୀର ବିଚାରି ମନରେ
ନଯାଇ ପ୍ରଭୁଙ୍କ ପାଶେ ଥାଏ ଖଣ୍ଡେଦୂରେ ।
ଡାକି ଡାକି କୃଷ୍ଣ ଯହୁଁ ଅଥୟ ହୋଇଲେ
ମାୟା ଅଭିନୟ କରି ବହୁତ କାନ୍ଦିଲେ ।
କହିଲେ ଆହାରେ ମୋର ସଖା ଅରଜୁନ
ଏତେବେଳେ ନ ଛୁଇଁ ତୁ ପୁଣି ମୋ ବଦନ
କେତେସାହା ହୋଇନାହିଁ ଭାରତ ଯୁଦ୍ଧରେ
ତୋ ଲାଗି କଳହ କରି ଭାଇଙ୍କ ସଙ୍ଗରେ ।
ତୋର ବୀରପଣ ଟେକ ରଖିବାର ପାଇଁ
ନିଜେ ପୁଣି ସାରଥି ମୁଁ ତୋର ଥିଲି ହୋଇ
ସେ ସବୁ କଥାକୁ ଟିକେ ନ ଭାବୁ ମନରେ
ଦୁଃଖବେଳେ ଆହା ତୁହି ନ କରୁ ମୋହରେ
ଏହି କି ଅଟଇ ତୋର ବନ୍ଧୁ ନିଦର୍ଶନ
ଜାଣିଲି ଜଗତେ ଏକା ଅଟୁ ତୁ କୃତଘ୍ନ ।

ଶାପେ ଅଛୁ ପଶ୍ଚାତରେ ବନ୍ଧୁ ଯେ ଅଟଇ
ଦୁଃଖବେଳେ ବାନ୍ଧବକୁ ସାହାଯ୍ୟ କରଇ ।
ଯାଉଅଛୁ ମୋର ପ୍ରାଣ ପାଉଅଛୁ କଷ୍ଟଣ
ଭାଇବନ୍ଧୁ କେହ୍ନ ପୁଣି ନାହାନ୍ତି ପାଚଶଣ ।
ଏବେବେଳେ ତୃଷାପାଏ ଜଳ ଦେଉନାହୁଁ ତୁହ୍ନ
ଶରୀରରେ ଟିକେ ହାତ ଦେଉନୁ ବୁଲାଇ ।
ଗଲା ଗଲା ପ୍ରାଣ ଭାଇ ଆସ ପାଶ ମୋର
ବଢ଼ାଇବେ ଧନୁ ପଛେ ନ ଛୁଅଁ ଶରୀର ।
ଏପରି ବ୍ୟାକୁଳ ଯହୁଁ ହେବେ ନାରାୟଣ
ସମ୍ଭାଳି ନ ପାରି ପାର୍ଥ ସମସ୍ତ ଭୁଲିଲେ ।
ଗାଣ୍ଡିବ ଧନୁବ ଯହୁଁ ଦେଲାକ ବଢ଼ାଇ
ସ୍ପର୍ଶକଲା ମାତ୍ରେ ବସ୍ତୁ କଲା ଗଳେନେଇ ।
ତାପରେ ଅର୍ଜୁନେ ଶୁଣି ବୋଇଲେ ବଚନ
ବଦାସ୍ତୁ ବଦାସ୍ତୁ ଆଜ ସଖା ଅରଜୁନ ।
ଏହା କହି ପଡ଼ିଲେକ ତଳ ଭଗବାନ
ଯୋଗନିଦ୍ରା ତେଜି ହେଲେ ମହାନନ୍ଦେ ମଗ୍ନ
ଏହା ଦେଖି ଦେବଗଣେ ପୁଷ୍ପ ବରଷିଲେ
ଅମର କାମିନୀଗଣେ ହୁଳହୁଳି ଦେଲେ ।
ଦୁନ୍ଦୁଭି ନାଦରେ କମ୍ପି ଗଲା ବନସ୍ଥଳୀ
ଅପସରାମାନେ ନାଚିଲେ ରଙ୍ଗ ପାଦଗୁଳି ।
ଶଙ୍କର ତାଣ୍ଡବ ନୃତ୍ୟେ ହୋଇଲେକ ଭୋଳ
ଗନ୍ଧର୍ବ ଗଣ ବାଇଲେ ମୃଦଙ୍ଗ କଂସାଳ ।
ଏଣେ ଗୋଲକ ଭବନୁଁ ଲକ୍ଷ୍ମୀ ସରସ୍ୱତୀ
ଘେନିଣ ବଦାଣ ସ୍ୱାମୀ ମିଳିଲେ ତତ୍‌ପରି ।
ଅପୂର୍ବ ଯାନ ଘେନିଣ ବଇକୁଣ୍ଠ ପୁର
ଘେନିଗଲେ ନାରାୟଣେ ଆନନ୍ଦ ମନର ।
ମହାନନ୍ଦେ ସେବକୀ ଗଣ ଯେ ଯାହାର
ସେବାରେ ନିଯୁକ୍ତ ହୋଇ ଚଳିଲେ ରଥର
କାଏ ତାଳବୃନ୍ତ ଚାମର କେ ସିଞ୍ଚେ ଚନ୍ଦନ
କେହୁ ପକାନ୍ତି ଆଲଟ କରିଣ ଯତନ ।
କର୍ପୂର ଗୁଣ୍ଡି ସିଞ୍ଚଇ କାଏ ସର୍ବାଙ୍ଗରେ
ସୁବାସ ଅତର କାଏ ମାଖଇ ଶିରରେ ।
ଯେମନ୍ତେ ପରକାର ବାଦ୍ୟ ଥିଲା ଗୋଲକରେ
ସକଳ ବାଇ ବିଷ୍ଣୁଙ୍କୁ ନେଲେ ପହଣ୍ଡରେ ।
ରଥପରେ ବିଜେ କରି ଯାନ୍ତି ଭଗବାନ
ଲକ୍ଷ୍ମୀ ସରସ୍ୱତୀ ପାଦ ସେବନ୍ତି ଯତନେ ।

ଏହିପରକାରେ ସର୍ବେ ମହା ଆଡ଼ମ୍ବରେ
ଶ୍ରୀ ଜଗନ୍ନାଥଙ୍କୁ ଘେନିଗଲେ ନିଜ ପୁରେ ।
ଏ ସମସ୍ତ ଦୃଶ୍ୟ ଆନେ ଦେଖି ନ ପାରିଲେ
କେବଳ ଯୋଗ ମାର୍ଗରେ ଶଙ୍କର ଦେଖିଲେ
ଏଣେ ବୀର ଅରଜୁନ ବ୍ୟାଧକୁ ବୋଲନ୍ତି
ଚନ୍ଦନ କାଷ୍ଠ ଏ ବନୁ ଆଣସି ଝଟତି ।
ବିଳମ୍ବ କରିବା ଆଉ ପ୍ରୟୋଜନ ନାହିଁ
ଏ ପିଣ୍ଡକୁ ଦାହ କରି ଯିବା ଯେ ପଳାଇ ।
ଆଜ୍ଞା ମାତ୍ରକେ ସେ ବ୍ୟାଧ ବହନ ଚଳିଲା
ଚନ୍ଦନ ଅଗୁରୁ କାଷ୍ଠ ଆଣି ଜମାକଲା ।
ଅତ୍ୟନ୍ତ ଯତନେ ଚିତା କରିଣ ପ୍ରସ୍ତୁତ
ବିଷ୍ଣୁଙ୍କ ପିଣ୍ଡକୁ ନେଇ ବ୍ୟାଧ ଆଉ ପାର୍ଥ ।
ଚିତାରେ ଆରୋହି ଅଗ୍ନି ସଂଯୋଗ କରିଲେ
ଯଥା ନିୟମରେ ପାର୍ଥ ମୁଖଅଗ୍ନି ଦେଲେ ।
ଛୁଇଁବା ମାତ୍ରେ ଅନଳ ପ୍ରବଳ ତେଜରେ
ନେଲିହାନ ଜିହ୍ୱା ବିସ୍ତାରିଣ ଉଠେ ଖରେ ।
କିନ୍ତୁ ବଡ଼ ଅଘଟଣ କଥା ଶୁଣ ସର୍ବେ
ସେ ବିଷ୍ଣୁଙ୍କ ପିଣ୍ଡଗୋଟି ନ ହହିଲା କେବେ ।
ଦୁଇଦିନ ଦୁଇରାତି ଅନଳ ଜଳିଲା
ତଥାପି ଶ୍ରୀବିଷ୍ଣୁ ପିଣ୍ଡ ପୋଡ଼ି ନ ହୋଇଲା ।
ଏହା ଦେଖି ଅରଜୁନ ବିଚାରିଲା ମନ
ମହାପାପୀ ଯେଉଁମାନେ ନ ହୋନ୍ତି ଦହନ ।
ଏହି କୃଷ୍ଣ ଜୀବନରେ ଅପାର ପାତକ
ଅର୍ଜିଅଛୁ ବୋଧେ ତେଣୁ ନ ଭକ୍ଷେ ପାବକ
ଏହି ପରକାର ପାର୍ଥ ବିଚାରନ୍ତେ ମନ
ଶୂନ୍ୟ ମଧ୍ୟରୁ ଶବଦ ହେଲା ଘନ ଘନ ।
ଆହେ ମଧ୍ୟମ ପାଣ୍ଡବ ଭାବୁଅଛ ଯାହା
ଚିନ୍ତା ପରିହରି ମନୁଁ କେବେ ନୁହେ ତାହା ।
ନିଷ୍କଳଙ୍କ ନିଜପଟ ଯେ ପିଣ୍ଡ ଅଟଇ
ପୁଣି ସାରା ଜଗତର କର୍ତ୍ତା ଯେ ବୋଲାଇ ।
ତାହାକୁ ଦହିବା ଶକ୍ତି କାହିଁ ଅନଳର
ନ ପୋଡ଼ିବ ଯୁଗ ଯୁଗ ଗଲେ ଏ ଶରୀର ।
ଆମ୍ଭର ବଚନେ ସେ ଅକ୍ଷୟ ପିଣ୍ଡ ନେଇ
ସାଗର ଜଳ ମଧ୍ୟରେ ଆସ ମେଲିଦେଇ ।
ମହା ଘୋର କଳିଯୁଗେ ଉଦ୍ଧବ ରୂପରେ
ପୂଜା ପାଇବ ସେ ପିଣ୍ଡ ନୀଳ ସୁନ୍ଦରରେ ।

ଏହା ଶୁଣି ଅରଜୁନ ବ୍ୟାଧ ମୁଖ ଚାହିଁ
ବୋଇଲା ଅନଳ ମଧ୍ୟେ କୋହିବ ଏ ଦହି ।
ସ୍ଥୂଳ ସାଗର ଜଳରେ ଭସାଇଣ ଦେବା
ଆଉ ବୃଥା ପରିଶ୍ରମ ଏଥି ନ କରିବା ।
ଏହିପରି ପରସ୍ପରେ କଥାବାର୍ତ୍ତା ହୋଇ
ଦରପୋଡ଼ା ପିଣ୍ଡଗୋଟି ଅଗ୍ନି ମଧ୍ୟୁ ନେଇ
ସାଗର ଜଳେ ମେଲିଣ ଦିଅନ୍ତେ ବହନ
ହୋଇ ଉଚ୍ଛଳିତ ସିନ୍ଧୁ କରି ଗରଜନ ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ପିଣ୍ଡ ଧରିଣ କୋଳରେ
ପବିତ୍ର ହୋଇଲା ସେହୁ ଶୁଣ ମୁନିବରେ ।
ଅର୍ଜ୍ଜୁନ ବୀର ଜଳରେ ପିଣ୍ଡ ମେଲିଦେଇ
ବାହାରିଲା ଦ୍ୱାରବତୀ ନଗ୍ରେ ଯିବାପାଇଁ ।
ଦାରୁକଠାରୁ ପୂର୍ବରୁ ଶୁଣି ଏହି ଗୀର
ଅଚେତନ ହୋଇଥିଲେ ମାତା ଓ ପିଅର ।
ଅର୍ଜ୍ଜୁନଙ୍କୁ ସହୁଁ ନେତ୍ରେ ଯେମାନେ ଦେଖିଲେ
ଅତ୍ୟନ୍ତ ବ୍ୟାକୁଳେ ମୁଣ୍ଡ କଚାଡ଼ି କାନ୍ଦିଲେ
ତାହାଙ୍କୁ ଯେତେ ପ୍ରବୋଧ ଦେଲେ ବୀରପାର୍ଥ
ଅଧିକ ବ୍ୟସ୍ତ ହୋଇଲେ କୃଷ୍ଣ ତାତ ମାତ
ହା କୃଷ୍ଣ ହା କୃଷ୍ଣ ବୋଲି କ୍ଷଣକ ମଧ୍ୟରେ
ପରାଣ ହାରିଲେ ପିତା ମାତା ସେହିଠାରେ
ତାହାଙ୍କ ସଂସ୍କାର କରି ବୀର ଅରଜୁନ
ଆନ ରମଣୀମାନଙ୍କୁ ନେଇଣ ବହନ ।
ଯେଉଁଣ ସ୍ଥାନେ ଯାଦବେ ମରି ପଡ଼ିଥିଲେ
ସେହି ସ୍ଥାନରେ ଯାଇଣ ପ୍ରବେଶ ହୋଇଲେ
ଯେ ଯାହା ପତିଙ୍କ ଶବ ଚହ୍ନିଣ ସୁନ୍ଦରୀ
କୋଳରେ ଧରିଣ ପ୍ରାଣ ହାରିଲେ ଚତୁରୀ ।
ସଭଙ୍କୁ ସାଗର ଜଳେ ମେଲି ଅରଜୁନ
ଶ୍ରୀକୃଷ୍ଣ ବାମାମାନଙ୍କୁ ସଙ୍ଗରେ ଘେନିଣ ।
ଇନ୍ଦ୍ରପ୍ରସ୍ଥ ଯିବା ପାଇଁ ହୋଇଲେ ବାହାର
ଯେଉଁ ସ୍ଥାନେ ପିଣ୍ଡ ମେଲି ଦେଲେ ସାଗରର
ସେଠାରେ ପ୍ରବେଶ ହୋଇ କୃଷ୍ଣଙ୍କର ନାରୀ
ଅର୍ଦ୍ଧ ଦଗ୍ଧ ପିଣ୍ଡଗୋଟି ଦରଶନ କରି ।
ହା ନାଥ ହା ନାଥ ବୋଲି କାନ୍ଦି ଉଚ୍ଚସ୍ୱରେ
ସ୍ନାହାନ କରିବା ଲାଗି ପଶିଲେ ଜଳରେ ।
ଏକାବେଳେ ବାମାଗଣେ ପତିଙ୍କୁ ସୁମରି
ଜଳରେ ବୁଡ଼ିଲେ ସ୍ୱାମୀ ସଙ୍ଗ ବାଞ୍ଛା କରି

ସେହି କାଳରେ ସାଗର ପ୍ରଳୟ ଗର୍ଜ୍ଜନେ
ଧାଇଁଆସି ଶ୍ରୀକୃଷ୍ଣଙ୍କ ନାରୀଙ୍କୁ ତକ୍ଷଣେ ।
ବହୁତ ଦୂର ପଥୁ ତହୁଁ ଘେନିଗଲା
କିଏ କେଉଁଆଡ଼େ ଗଲେ ଅନ୍ତ ନ ମିଳିଲା ।
ଅନେକ କାଳ ପର୍ଯ୍ୟନ୍ତ ବୀର ଅରଜୁନ
କୂଳେ ଚାହିଁ ୨ ନ ଦେଖିଣ ବାମାଗଣ ।
କି ହେଲା କି ହେଲା ବୋଲି ହୁଅନ୍ତେ ବ୍ୟଥିତ
ଶୂନ୍ୟରୁ ଶୁଭିଲା ପାର୍ଥ ନ ହୁଅ ତୁ ବ୍ୟସ୍ତ ।
ଯାହାର ପ୍ରେୟସୀ ସେହୁ ଗଲେଣି ବହୁତ
ବୈକୁଣ୍ଠ ଭୁବନେ ସର୍ବେ ହେଲେଣି ପ୍ରବେଶ
ଯାଅ ହେ ଅର୍ଜ୍ଜୁନ ଆଉ ବିଳମ୍ବ ନକର
ଅନ୍ତ୍ୟେଷ୍ଟି କ୍ରିୟାଦି ସାରି କୃଷ୍ଣଚନ୍ଦ୍ରଙ୍କର ।
ପରୀକ୍ଷିତଙ୍କୁ ବସାଇ ରାଜ ସିଂହାସନେ
ତୁମ୍ଭେ ପାଞ୍ଚଭାଇ ଚଳ ବୈକୁଣ୍ଠ ଭୁବନେ ।
ଏହାଶୁଣି ପାର୍ଥବୀର ବହନ ଚଳିଲା
ଦ୍ୱାରକା ପୁରକୁ ତହୁଁ ନେତ୍ରେ ନିରେଖିଲା
ଏମନ୍ତ ଅପୂର୍ବ ପୁର କ୍ଷଣକ ମଧ୍ୟରେ
ବିଲୀନ ହୋଇଣ ଗଲା ସାଗର ବାରିରେ ।
ଜଳରେ ସାରା ଦ୍ୱାରକା ପୁର ନାଶ ଗଲା
କେବଳ ମାତ୍ରକ କୃଷ୍ଣ ନିବାସ ରହିଲା ।
ଗାଣ୍ଡିବ ଧନୁକୁ ଅରଜୁନ ଶିରେ ବହି
ହସ୍ତିନା ନଗ୍ର ମଧ୍ୟରେ ମିଳିଲାକ ଯାଇଁ ।
ଧର୍ମରାଜଙ୍କ ଅଗ୍ରତେ କହିଲା ସକଳ
ଶ୍ରବଣେ ଉଠିଲା ସାରାପୁରେ କାନ୍ଦଗୋଳ ।
ତାପରେ କେତେକ ଦିନ ବରଷ ଶତରେ
ରାଜୁତି କଲେ ପାଣ୍ଡବେ ସାରା ଭାରତରେ ।
ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଗୁଣ ସଦା ଗୁଣି ଗୁଣି
ପରୀକ୍ଷିତ ହସ୍ତେ ରାଜ୍ୟ ଅର୍ପି ବୀରମଣି ।
ମହାଯାତ୍ରା ପଥେ ପାଞ୍ଚ ପାଣ୍ଡବେ ମିଳିଲେ
ଚାରିଭାଇ ଦ୍ରୌପଦୀଙ୍କ ଖପରେ ପଡ଼ିଲେ ।
ଏକାମାତ୍ର ଧର୍ମରାଜ ଦେବ ଯୁଧିଷ୍ଠିର
ସ୍ୱ ଦେହରେ ସ୍ୱର୍ଗପୁରେ ଗମିଲେ ସତ୍ୱର ।
ଏହିଠାରୁ କୃଷ୍ଣଚନ୍ଦ୍ରଙ୍କର ଲୀଳାମାନ
ଠିକେ ଠିକେ ତୁମ୍ଭ ଆଗେ କରିଲି ଗାୟନ ।
ଏ ବ୍ରହ୍ମ ପୁରାଣ ଅଟେ ଯେ ଅମୃତମୟ
ଶ୍ରଦ୍ଧାମନେ ଯେ ଶୁଣଇ ପାପ ହୁଏ କ୍ଷୟ ।

ଇହକାଳେ ଯେତେଦିନ ଦେହ ବାସକରେ
ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପାଦ ଯେବେ ସେ ସ୍ମରେ ।
ଅତ୍ୟନ୍ତ ସୁଖରେ କାଳ କରଇ ଯାପନ
ଅନ୍ତଃକାଳେ ପରଂବ୍ରହ୍ମେ ହୁଅଇ ସେ ଲୀନ ।
ଆନ ଯେତେ ଶାସ୍ତ୍ରମାନ ରଚିତ ହୋଇଛି
ଶ୍ରୀକୃଷ୍ଣଙ୍କଲୀଳାମାନ ତହିଁ ନାହିଁ ବେଶି ।
ସକଳ ଶାସ୍ତ୍ରମାନଙ୍କେ ସାର ଏ ଅଟଇ
ଅଷ୍ଟାଦଶ ପୁରାଣର ଆଦ୍ୟ ଅଟେ ଏହି ।
ବେଦବ୍ୟାସଙ୍କ ରଚିତ ଅଟେ ଏ ପୁରାଣ
ଦଶ ହଜାର ଶ୍ଳୋକରେ ବର୍ଣ୍ଣିତ ଏ ଜାଣ ।
ପୌରାଣିକ ସୁତ ମୁନି ଏହାର ବକତା
ଶୌନକାଦି ଆନ ମୁନିମାନେ ହେଲେ ଶ୍ରୋତା
ଜଗତ ଜନନୀଙ୍କର ଥିବାରୁ କରୁଣା
ଦୀନ କ୍ଷେତ୍ରମୋହନ ଯେ ଏ କରିଲା ଭରଣା ।

ଇତି ଶ୍ରୀ ବ୍ରହ୍ମ ପୁରାଣେ ଉତ୍ତର ଖଣ୍ଡେ
ସୁତ ଶୌନକ ସମ୍ବାଦେ ଶ୍ରୀକୃଷ୍ଣଚନ୍ଦ୍ର-
ଙ୍କର ବୈକୁଣ୍ଠ ଗମନ ବର୍ଣ୍ଣନଂ
ନାମ ଅଶୀତିତମୋଽଧ୍ୟାୟଃ ।



ରଚୟିତାର ନିବେଦନ

ଏ ବ୍ରହ୍ମ ପୁରାଣ ଅଟେ ଅଗାଧ ସରିତ
ବହୁ ପରିଶ୍ରମେ ଆଜ କଲି ସମାପତ ।
ଏ ଗ୍ରନ୍ଥ ମଧ୍ୟରେ ଯେଉଁ ମହାତ୍ମ୍ୟ ରହିଛି
ତାହା ପୂରଣ କରିବା ଶକ୍ତି ନାହିଁ କିଛି ।
କେବଳ ଜଣକ ଦୟାବଳେ ଏ ମହାନ
ଗ୍ରନ୍ଥ ଏତେଦିନ ପରେ ହୋଇଲା ସମ୍ପୂର୍ଣ୍ଣ ।
ସାଧୁ ସୁଜ୍ଞଜନଙ୍କୁ ମୁଁ କରେ ନିବେଦନ
ଯଦ୍ୟପି ଏଥିରେ କିଛି ଥିବ ଭ୍ରମ ପୂର୍ଣ୍ଣ ।
ଅପାର କରୁଣା ଗୁଣେ ତା ମାର୍ଜନା କରି
ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବେ ସବୁରି ।
ବ୍ୟାସଦେବଙ୍କ ରଚିତ ଅଟେ ଯେ ସଂସ୍କୃତ
ପ୍ରାକୃତ ବନ୍ଧରେ ଏହା କରିଲି ରଚିତ ।
ଆପଣା ଭାଷାରେ କେତେ ବାହୁଲ୍ୟ ହୋଇଛି
କେତେକ ସ୍ଥାନରେ ତ୍ରୁଟି ରହିଥିବ କିଛି ।
ମୁନିନାଞ୍ଚ ମତିଭ୍ରମ ରହିଛି ଶାସ୍ତ୍ରରେ
ସମ ନୁହେଁ ମୁହିଁ ମାଙ୍କ ପୟର ରେଣୁରେ ।
ଜଗତ ଜନନୀ ମାତ ଦୟାମୟୀଙ୍କର
ଅଭୟ ପାଦ ପଦ୍ମକୁ ଜପି ନିରନ୍ତର ।
ଲେଖନୀ ଗୃହିଲି ନ ବୁଝିଣ ଭଲ ମନ୍ଦ
ଦୋଷଥିଲେ ନିଜଗୁଣେ କ୍ଷମିବେ କୋବିଦ ।
ଆହୁରି ମଧ୍ୟ ଜଣାଉଅଛି ବିନୟରେ
ଶ୍ରୋତା ବକତା ଇତ୍ୟାଦି ସଭିଙ୍କ ପୟରେ ।
ଆପଣା ସନ୍ତାନ ପରି ବିଚାରି ମନରେ
କ୍ଷମିବେ କ୍ଷେତ୍ରମୋହନ ନିବେଦନ କରେ ।

ସ ମା ପ୍ତ



ମୁଦ୍ରାକାର—ବିଶ୍ୱବିଦ୍ୟା ପ୍ରେସ, ଅଲିଶାବଜାର, କଟକ-୨

## ନିବେଦନ

ଶ୍ରୀମଦ୍ ଭାଗବତ ସ୍ୱୟଂ ଶ୍ରୀହରିଙ୍କ ମୁଖ ନିଃସୃତ ବାଣୀ ହେତୁ ଏହା ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥରୂପେ ପରିଗଣିତ । ଏଣୁ ଏହି ଗ୍ରନ୍ଥ ଘରେ, ମଠରେ ଏବଂ ଦେବାଦେବୀ ମନ୍ଦିରମାନଙ୍କରେ ପୂଜା ହେଉଛି ତଥା ପାଠ କରା ହେଉଛି । ତେଣୁ ଏହି ଭାଗବତ ୧୮ ଖଣ୍ଡ ବହି ହେବୁ ଦର୍ଶନ ସହ ତା'ର ମାହାତ୍ମ୍ୟ ଜାଣିବା ଦରକାର ବହୁ ଦିନୁ ଥିଲା । ଏଣୁ ମୋର ଲେଖକଙ୍କୁ ଅନୁରୋଧ କରିବା ଫଳରେ ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତ ଶ୍ଳୋକର ଅନୁବାଦ ସହ 'ଭାଗବତ ମାହାତ୍ମ୍ୟ' ପୁସ୍ତକ ଖଣ୍ଡ ପାଠକଲେ ସବୁ ଦେବଦେବୀ ଭଗବତ ଶକ୍ତିର ମାହାତ୍ମ୍ୟ ଅବଗତ ହୋଇପାରିବେ । ଏହା ବ୍ୟତୀତ ଏହି ଭାଗବତ ମାହାତ୍ମ୍ୟ ବହିଟି ପାଠକଲେ ସେଥିରୁ ପାଇବେ— ଚତୁଃଶ୍ଳୋକୀ ଭାଗବତ, ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ପ୍ରତି ଉପଦେଶ, ଶ୍ରୀମଦ୍ ଭାଗବତ ମାହାତ୍ମ୍ୟ, ଦେବର୍ଷି ନାରଦଙ୍କ ଭକ୍ତି ସହ ଭେଟ, ଭକ୍ତିର ଦୁଃଖ ନିବୃତ୍ତି ପାଇଁ ନାରଦଙ୍କ ଉଦ୍ୟୋଗ, ଗୋକର୍ଣ୍ଣ ଉପାଖ୍ୟାନ, ଧୁନ୍ଧୁକାରୀ ପ୍ରେତ ଯୋନିରୁ ମୁକ୍ତି ଓ ଶ୍ରୀହରି ଦର୍ଶନ ତଥା ଶ୍ରୀମଦ୍ ଭାଗବତ ସପ୍ତାହ ପାଠର ବିଧି ।

ଏତଦ୍ବ୍ୟତୀତ ବେଦ, ବେଦାନ୍ତ, ଉପନିଷଦ, ଗୀତା, ଚାଳି, ପୁରାଣ, ସମସ୍ତ ପ୍ରକାର ପୁସ୍ତକ, ଜନ୍ମ, ନାଟକ, ଚଉତିଶା, ବ୍ୟାକରଣ ସହ ସ୍କୁଲ କଲେଜ ଛାତ୍ରମାନଙ୍କ ବ୍ୟବହାର୍ଯ୍ୟ ପାଇଁ ବହୁଳ ପ୍ରକାରର ଅନେକ ଶିକ୍ଷାବସ୍ତୁ ଆମ ଠିକଣାରେ ଯୋଗାଯୋଗ କଲେ ସୁବିଧା ଦରରେ ପାଇପାରିବେ ।

ଠିକଣା
ମେସର୍ସ—ଧର୍ମ ଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର— ଶ୍ରୀ ଉଦୟାଧର ସାହୁ
ଓଡ଼ିଆବଜାର, କଟକ-୨
ଫୋନ୍ ନଂ-୨୭୭୯